# କବିଚନ୍ଦ୍ର ଗ୍ରନ୍ଥାବଳୀ

ଦ୍ୱିତୀୟ ଖଣ୍ଡ

କଟକ-ଷ୍ଟୁଡେଣ୍ଟସ୍-ଷ୍ଟୋର

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

●

ପ୍ରଥମ ପ୍ରକାଶ
ଜାନୁୟାରୀ-୧୯୭୦

●

ମୂଲ୍ୟ –
ବନ୍ଧେଇ : କୋଡ଼ିଏ ଟଙ୍କା
ଅବନ୍ଧା : ସତର ଟଙ୍କା

KABICHANDRA GRANTHABALI

Works of
*Kobi Chandra Kali Charan Pattanaik*

●

Publisher
*Anant Misra*
Cuttack Students Store
Cuttack-2

●

Second Volume

●

First Edition
January : 1970

●

Price
Bound : Rs.20-00
Unbound : Rs. 17-00

# ବିଷୟ ସୂଚୀ

**ଟିକିଏ କହୁଛି—**

'ଧ୍ରୁବ' ନାଟକଟି ଲେଖିଥିଲି ୧୯୧୮ରେ । ନାଟକ ଲେଖାରେ ଏ ମୋର ହାତ ବଳାଇବାବେଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗାଁଆରେ, କଲେଜ ଛୁଟି ବେଳେ—ଖରାଦିନେ, କେତେଜଣ ପିଲାଦିନଆ ସାଥୀ ପିଲାଙ୍କୁ ଶିଖାଇ ନାଟକଟି ଅଭିନୀତ କରାଇଥିଲି । ଦେଖଣାହାରିଏ ଖୁବ୍ ତାଳିମାଡ଼ କଲେ—ଏଇତକ ମନେଅଛି ଆଜ ।

ସେଦିନ—ସେକାଳର କଥା ତ ! ପାଠକେ ଦୋଷ ଗୁଣ ଯାହା ଅଛି, ନ ହସି, କ୍ଷମାଦେବେ ।

**କାଳୀଚରଣ**

**ପାତ୍ର ପରିଚୟ**

**ପୁରୁଷ—**

ଉତ୍ତାନପାଦ, ମନ୍ତ୍ରୀ, ନାରଦ, ନାରାୟଣ, ଭରତ ସାମନ୍ତ ଋଷି କୁମାରବୃନ୍ଦ………

**ନାରୀ—**

ସୁରୁଚି, ସୁନୀତି, ରସ, ବନଦେବୀ………

# କବିଚନ୍ଦ୍ର ଗ୍ରନ୍ଥାବଳୀ

( ଦ୍ୱିତୀୟ ଖଣ୍ଡ )

## ଧ୍ରୁବ

### ପ୍ରସ୍ତାବନା

[ଜଣେ ସନ୍ନ୍ୟାସୀ ଗାଉ-ଗାଉ ପ୍ରବେଶ]

(ଗୀତ)

ଗୋବିନ୍ଦ-ପଦାରବିନ୍ଦ, ମକରନ୍ଦ,
ଅମନ୍ଦ ମଳୟ-ଗନ୍ଧହର ।
ସୁଧାମୟୂଖଧାର ଜଗତ-ଶାନ୍ତିବାର
ନିତ୍ୟମାଧୁରୀଭର । ୦ ।
ହରି ! ନିତ୍ୟାନନ୍ଦକାରୀ
ଭକତ-ମନଚାରୀ
ଜଗତ-ଦୁଃଖହାରୀ
ଘନ-ଦଇତାରି
ଦୀନସହ । ୧ ।

(ଗାଇ-ଗାଇ ଚାଲିଗଲେ)

### ପ୍ରଥମ ଅଙ୍କ — ପ୍ରଥମ ଦୃଶ୍ୟ

( ଉଦ୍ୟାନ—ତରତର ହୋଇ ପ୍ରବେଶ କଲା ରଘୁ )

ରଘୁ—ହରି ହେ ହରି, ସତ । ସେ ପରା ଯୁଗ ଓଲଟିଗଲା । "ମୁଁ ଧାଇଁଥାଏ ତମରି ପାଇଁ—ନା ତମର ଦୟା ମାୟା ଟିକିଏ ନାହିଁ ।" ଠିକ୍, ମୁଁ କହୁଛି କି ଆଉ ମହାଦେବ, ତାଙ୍କୁ ପାଖରୁ ଟିକେ କୁଆଡ଼େ ଛାଡ଼ନ୍ତି ନାହିଁ ଟି ! ( ତାଚ୍ଛଲ୍ୟ-ହାସେ ହସି ) ହେଁ, ମୋ ଭାଲବାନ୍ଧଙ୍କୁ ବାଲ ମୋଟୋଡ଼ି କଣ କହନ୍ତି ନାହିଁ, "ମୋତେ ଯେତେ ମାଠିବ ମାର୍—ନା ମୁଁ ସେଇ ଦରପୋଡ଼ା କାଠ୍ ।" ସିଏ ପରା ଏଇଲେ ନୂଆ ହେଲେ । ନୂଆ ପରା ଗ୍ରନ୍ଥ-ଶିଖିଛୁ ହେ । ଆରେ ଦଳବି ରେ ! ତତେ କିଏ ମହାଦେବ କଲା ସେ ? କୋଉ ଗଧର ବୁଦ୍ଧିଶୁଦ୍ଧି ନ ଥିଲା ସେ ? ନିହାତି ଗୋବରମୁଣ୍ଡା ! ଇଏ ସିନି ରଜାଙ୍କ ପାଟମହାଦେଈ ହବି । ହୁଁ—

"ରାଣୀ ହୋଇଥାନ୍ତା ରଘୁ—
ତେବେ ଦେଖନ୍ତି, ଦେଖନ୍ତୁ ହେ ରାଣୀ !
ପାନଖିଲି ଖାଇ କେମିତି ମଜାରେ
ହସୁଥାନ୍ତା ହସହସ,
ନୀଳକମଳ ପରି ରଜାଙ୍କୁ ମୋର
କରି ରଖିଥାନ୍ତା ବଶ ।"

(ନେପଥ୍ୟରୁ କୋମଳ ସ୍ୱରରେ ଡାକ ଶୁଭିଲା)

ମଦନ ସିଂହ—ରଘୁ ! ରଘୁ ମ !

ରଘୁ—ଆହା ! ଏକା ବଡ଼ କଅଁଳ ଡାକ । (ଉଚ୍ଚ ସ୍ୱରରେ) ଆଜ୍ଞା ଯାଆନ୍ତୁ, ଏଇଠିକି ବିଜେ କରନ୍ତୁ । (ମୁହଁ ଫେରାଇ) ଆଉ ଆଗ ଆସନ୍ତୁ··· (ଜିଭ କାମୁଡ଼ି) ଆସିଲେଣି ହେ ମା' !

ମଦନ—(ପ୍ରବେଶ କରି ନିକଟକୁ ଆସି) ରଘୁ ! ରଘୁ ମ !

ରଘୁ—(ମୁହଁ ଘୁରାଇଦେଇ) ଆଉ ଫେର୍ କାହିଁକି ? (କାନବାପରି) ରଘୁ ମଲାଣି ।

ମଦନ—କଅଣ ହେଲା ? ରସ—ଜୀବନ ମୋର ! ଛି ଛି, ଏଡ଼େ ଅଭିମାନ କାହିଁକି ମ ? ଆ, ଚାନ୍ଦ ମୋର, ଚିନ୍ତା କଅଣ ? ଆଉ କେତେ ଦିନ କି ? ଦେଖିବୁ ମଦନ ଯୋଡ଼ି ଫିକର ଫାନ୍ଦିଚି, ସେଥିରେ କଅଣ ଭୁଲ୍ ଅଛି । ଆରେ ରସ, ଦେଖିବୁ—ତୁ ତ ରାଣୀ, ମୁଁ ତ ରଜା ।

ରସ—(କୋମଳ ସ୍ୱରରେ) ଏଁ, କଅଣ କହୁଛ ମ ? ସତ ?

ମଦନ—ତୁ ଦେଖ୍, ଫେର୍ ବୁଝିବୁ ନାଇଁ ସତ କି ମିଛ ? ଭଉଣୀକି ତ ଶିଖେଇ ମଣେଇ ଦହେଁ ମିଶି ବଡ଼ ରାଣୀଙ୍କି ତଡ଼େଇଲୁଁ । ସେ ତ ଗଲା ବଣକୁ—କୁଆଡ଼େ ବାଘ ଭାଲୁ ଖାଇବେଣି କି କଣ ! ଏଣେ ରଜା ତ ବାୟାପର ହେଲେଣି । ବାକି ଥିଲା ମଝିରେ ସେଇ ନଟକୁଟିଆ ବୁଢ଼ା ମନ୍ତ୍ରୀ । ସେ ଯେମିତି ଯାହା ହେଲା, ସବୁ କଥା ତ ତୁ ଜାଣୁ । ଆଉ କେତେ କି ?

ରସ—ମୁଁ କଅଣ ଯାଁ ଜାଣିଚି ? ସାରୁଭିତରେ ମାରୁ ଅଛି ବୋଲି ଫେର୍ କିଏ ଜାଣେ ? ପୁଣି ଶୁଣୁଛି, ସେ ଛତରଖାଣ୍ଡ ସୁମିତ୍ରର ପୁଅଟେ ନା କଅଣ ଅଛି । ସେ କଥା ଫେର୍ ସତ ନା ମିଛ ? ସେ କଥା ହୋଇଥିଲେ, ସବୁ ଗଲା । କରମ, ଧରମ ସମସ୍ତଙ୍କ ମୁହଁରେ ନିଆଁ, ମୁଣ୍ଡରେ ଧୂଆଁ ଲାଗିଯିବ ।

ମଦନ—ରଖ୍ ରସ ! ଏଇ କଥା ତ, ସେ କଅଣ ଆଉ ବଞ୍ଚିଲେଇଯିବ କି ?

ରସ—ଆହେ ! ବଞ୍ଚିଲେଇବ ନାହିଁ ଯେ, ତା ପାଖରେ ସେ ଯୋଉ ଛତରଖାଣ୍ଡ କନକ ନା କଅଣ ହେଇଚି ଅଛି, ନାଟର ଗୁରୁ ସେଇଖଣ୍ଡିକ ।

ମଦନ—ଆରେ ରଖ୍ ତୋର କନକ ଫନକ—ଏମିତି ଏକା ଗୁଳିଛିଟାକେ କେତେ କନକ ଚଟା କାଟିଯିବେ । ଚାଲ୍ ରସ ଚାଲ୍, ଟିକିଏ ବସିଲେଇବା ।

ରସ—ମୁଁ ପରା ଶହେ ବାର କହିଲିଣି—ସେ ଗୁଳି-ଚୁଳି ଛାଡ଼ ବୋଲି । 'ଯେତେ ବୋଲିବୁ ବୋଲ, ମୋ ଦେହଟାଯାକ ପୋଲ'—ଛିଃ !

ମଦନ—ଶୁଣ୍ ରସ, ସତ କହୁଛି । ଗୁଳି—ଚୁଳି । ଯେ ନ ଖାଏ ଗୁଳି, ସେ ମଣିଷଯାକରେ ଚୁଳି । ବୁଝିଲୁ ? (କହୁକହୁ ହାତ ଧରିପକାଇଲା ।)

ରସ—ଥାଉ...ଥାଉ, ମତେ ସେ ଶୁଖିଲା ସୁଆଗ-ଗୁଡ଼ାକ ସୁଖ ଲାଗେ ନାହିଁ ।

(ହାତ ଛଡ଼ାଇ ଚାଲିଗଲା)

ମଦନ—ରସ, ରସ ! (ଡାକି-ଡାକି ପଛ-ପଛେ ଗଲା ।)

---

## ଦ୍ୱିତୀୟ ଦୃଶ୍ୟ

(ରାଜଭବନ—ରାଜା ଉତ୍ତାନପାଦ ଚିନ୍ତିତଭାବେ ପଦଚାରଣ କରୁଛନ୍ତି)

ରାଜା—ଓଃ, ଫେର୍ ସେଇକଥା,
ସେଇକଥା ଲାଗଇ ମରମେ ।
ନିକ୍ଷେପିଲେ ଦୂରେ,
ସନ୍ନିକଟେ ଦେଖାଦିଏ ଆସି ।

(କିଛି କ୍ଷଣ ନୀରବ)

ବିଭୁ !
କିସ ଏହା ?
କି ଗୁପତ ଭେଦ ଅଛି ନିହି ?
ବୁଝି ତ ନ ପାରେଁ କିଛି ।
ସବୁ ସୁଖ ଗଲା ଜଳିପୋଡ଼ି ।
ହାୟ ରେ କନକଲତା !

(ଅଶ୍ରୁମୋଚନ)

ରାଣୀ—(ପ୍ରବେଶ)
କି ଚିନ୍ତା କରୁଛନ୍ତି ମହାରାଜ ?
କେଉଁ ଲତାଲାଗି ଏତେ ଭାବନା ?

(କିଞ୍ଚିତ୍ ରୁକ୍ଷ କଣ୍ଠରେ)

ରାଜା—(ଚମକିପଡ଼ି ସ୍ୱଗତ) ପ୍ରଭୋ !
ଏ ପୁଣି କଅଣ ?

ଥରେ ସୁଦ୍ଧା ଭାବିବାକୁ ନ ଦେବ ସମୟ ?
ଓଃ, ଏ କି ଛଳନା !
ଏ କି ପରୀକ୍ଷା !
କି ଉଦ୍ଦେଶ୍ୟ ଅବା ଅଛି ପ୍ରଭୁ !

ରାଣୀ—(ବାଧା ଦେଇ) ନିରୁତ୍ତର ରହିଲେ ଯେ ?

ରାଜା—(ଅଳ୍ପ ହସି) ନାଁ ପ୍ରିୟେ ! ତୁମେ କଅଣ ଜାଣ ନାହିଁ, ମୁଁ ସର୍ବଦା ଚିନ୍ତାନ୍ୱିତ । ରାଜ୍ୟର ଅବସ୍ଥା କ'ଣ ବୁଝି ନାହିଁ ? ରାଜାର ଆଉ ଚିନ୍ତା କ'ଣ ?

ରାଣୀ—ଆସନ୍ତୁ, ବିଶ୍ରାମ-ସମୟ ଅତୀତ ହୋଇଗଲାଣି । ଥାଉ ସେ ଚିନ୍ତା ।

ରାଜା—ଚାଲ ପ୍ରିୟେ !

(ଚାଲିଗଲେ)

ରାଜା—(ଦୀର୍ଘଶ୍ୱାସ ପକାଇ) ଧନ୍ୟ ରମଣୀ ! ଧନ୍ୟ ତୋର ବାକ୍ୟର ଗୁରୁତ୍ୱ ! ସେ ନାଗପାଶଠାରୁ ମଧ୍ୟ ଆହୁରି ବଳବାନ୍ । ଧନ୍ୟ ସୃଷ୍ଟି ! ଧନ୍ୟ କଳ୍ପନା !! ଧନ୍ୟ, ଧନ୍ୟ ଜଗତ !!!

---

## ତୃତୀୟ ଦୃଶ୍ୟ

(ଅରଣ୍ୟ—ଭରତ ସାମନ୍ତ ପ୍ରବେଶ)

ଭରତ—(ଚମକିପଡ଼ି) ଏ କି ଶବ୍ଦ ! ହୋଇଥିବ, ଆସୁଥିବେ କାଳେ ଶୁଣାଏଁ ସଙ୍କେତ ।

(ତାଳି ମାରିଲେ)

(ବୀରବେଶଧାରୀ ସୈନିକଗଣଙ୍କ ପ୍ରବେଶ)

(ଗୀତ)

ସତ୍ୟ ଜୀବନ, ସତ୍ୟ ମରଣ, ସତ୍ୟ କରମସାର,
ଭୁବନବନ୍ଦିତ, ସତ୍ୟ ନାମ, ସତ୍ୟ ଅଙ୍ଗ ଧାର,
ସତ୍ୟ ଜୀବନ-ତାର
(ଆରେ) ସତ୍ୟ କଣ୍ଠହାର । ୧ ।
ସତ୍ୟ ଏ କରବାଳ—ସତ୍ୟ ଏ ବୀରଚୂଳ
ସତ୍ୟ, ସତ୍ୟ, ସତ୍ୟ ନାମ, ସତ୍ୟଲାଗି ଏ ଧର ।
ପାଳିବୁଁ ସତ୍ୟ, ରଖିବୁଁ ସତ୍ୟ, ସତ୍ୟ ଜୀବନ-ଧାର
ସତ୍ୟ ଜୀବନ-ତାର
(ଆରେ) ସତ୍ୟ କଣ୍ଠହାର । ୨ ।

(ସମସ୍ତଙ୍କ ପ୍ରଣାମ)

ଭରତ—ବୀରବୃନ୍ଦ ! ଆଜି କି କି କାର୍ଯ୍ୟ ସାଧନ କରିଅଛ ?

୧ମ—ସେ ପ୍ରଜାପୀଡ଼କ ରଘୁନାଥର ସର୍ବସ୍ୱ ଅପହରଣ କରାଯାଇଅଛି ।

୨ୟ—ବିଦ୍ରୋହୀ ସାମନ୍ତରାଜା ତ୍ରିଲୋଚନ ଦେଓଙ୍କ ରାଜକୋଷ ଲୁଟ୍ ହୋଇଅଛି ।

୩ୟ—ଆମେ ଧର୍ମଦ୍ରୋହୀ ନବୀନ ମନ୍ତ୍ରୀଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରିଅଛୁଁ ।

ଭରତ—ଉତ୍ତମ । ବୀରଗଣ ! ବର୍ତ୍ତମାନ ତୁମମାନଙ୍କୁ ଆଉ ଗୋଟିଏ ଗୁରୁତର କାର୍ଯ୍ୟ ସାଧନ କରିବାକୁ ହେବ । ତୁମେମାନେ ତ ବର୍ତ୍ତମାନ ଦେଶର ଅବସ୍ଥା ଜାଣିଛ, ତାହାର ଅନୁସରଣରେ ଉତ୍ତର-ପଶ୍ଚିମାଞ୍ଚଳୀୟ ଶତ୍ରୁମାନେ ଅସ୍ତ୍ର-ଝଂକାର କରୁଅଛନ୍ତି । ଶୀଘ୍ର ସେମାନଙ୍କ ଦମନଲାଗି ବ୍ୟବସ୍ଥା କରିବା ଆବଶ୍ୟକ ।

୪ର୍ଥ—(ମୁଣ୍ଡନୁଆଇଁ) ଏ ସାମାନ୍ୟ ବିଷୟରେ ଏତେ ଚିନ୍ତିତ କାହିଁକି ସେନାପତି ? 'ଯତୋ ଧର୍ମ, ତତୋ ଜୟ ।' ଚାଲ ସୈନ୍ୟଗଣ ।

ସମସ୍ତେ—ଜୟ ସତ୍ୟର ଜୟ, ଜୟ ଧର୍ମର ଜୟ, ଜୟ ଭରତ ଜୟ ।

(ପୂର୍ବପରି ଗାଇ-ଗାଇ ଚାଲିଗଲେ)

ଭରତ—ଧନ୍ୟ ରେ ନିୟତି !
କାହିଁ ମନ୍ତ୍ରିପଦ ମମ,
କାହିଁ ଆଜି ଛଦ୍ମବେଶେ କାନନ-ଭ୍ରମଣ ।
ଦସ୍ୟୁବୃତ୍ତି !
ନୀଚ ଦସ୍ୟୁପଣ—
ବଡ଼ ଘୃଣ୍ୟ !
କିନ୍ତୁ,
କେଜାଣି କାହିଁକି,
ଭଲ ଲାଗେ ଏହା ।
ସେହି କୋଳାହଳମୟ ରାଜକାର୍ଯ୍ୟ—
ଶତ ଗୁଣେ ଭଲ ଲାଗେ ।
ନ ଜାଣେ, କି ଅଛି ମାଦକତା

ଦସ୍ୟୁବୃତ୍ତିମଧ୍ୟେ ।
ବଧି !
ଧନ୍ୟ ତୁହ୍ନି ।
କାହାକୁ ସେ କସ କରୁ—
ନାହିଁ ତା ଇସ୍ୱତ୍ତା ।
ଅଜଣା, ଅଶୁଣାଭାବେ
ଆସେ ଭଲମନ୍ଦ,
କରିଯାଏ ନିଜ କାର୍ଯ୍ୟ ଭବେ ।

(ନେପଥ୍ୟରୁ ଭାସିଆସିଲା ସଂଗୀତ)

(ଗୀତ)

ଆରେ ମୋର ଜୀବନ-ବୀଣା-ତାର,
ମଧୁରେ ବାଜ ବିଜନେ ।୦।
ଗୋପନେ, ବନେ-ବନେ ବାଜ ଥରେ
ଆସିବେ ଜୀବଧନ ନାଚ ଥରେ,
ଆହା ମୋ ବୀଣାତାର !
ଜୀବନସାର-ସାର—
ମୋ ଗଳା ମୋତିହାର ।
ନିଶାଶେ, ହିତାଶେ, ତଗ୍ସେ, ସୁମନେ । ୧ ।

ଭରତ—ହିଁ, ଗାଅ ମା !
ଆଉ ବାରେ ବାଜିବାକୁ କହ,
ବାଜ୍ ସେଇ ବୀଣାସ୍ୱର ଏ ପାନ-ଜୀବନେ ।
ମାଆ ମୋର,
ଚିରଦିନ ସେହିଭାବେ—
ଡାକୁଥାଅ ଜୀବନ-ନାଥଙ୍କୁ ।
ଘାନବନ୍ଧୁ !
ଅଚିରେ ଗୋ,
ଏ ଦୁଃଖୀର ଆରତ-ଗୁହାରି ଶୁଣିବେ ନିଶ୍ଚୟ ।
ଥାଅ ସେହିଭାବେ ମଜ୍ଜି ।

(କନକମାଳୀ ପ୍ରବେଶ)

କନକ—ବାପା ! ସନ୍ଧ୍ୟାର ବେଳ ଅସ୍ତମିତ ହୋଇ-
ଯାଉଛି, ଆସ ।

ଭରତ—ହିଁ, ଚାଲ୍ ମା ! ଟିକିଏ ଅନ୍ୟମନସ୍କ ଥିଲି ।
ଚାଲ୍ ।

(ଉଭୟଙ୍କ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

(ପର୍ଣ୍ଣକୁଟୀରସମ୍ମୁଖସ୍ଥ ଭୂମି—ମଳିନବେଶୀ ସୁମୀତ୍ତି ଉପବିଷ୍ଟା)

ସୁମୀତ୍ତି—ସଂସାର ! କପରି ଗଢ ତୋର ? ହେ ପ୍ରଭୁ ଦୟାମୟ ! ଏ ହତଭାଗିନୀର କଅଣ ଏ ସଂସାରରେ ଆଉ ସ୍ଥାନ ନାହିଁ ? ଏ ଶୁଷ୍କ-ଶ୍ୱାମ ମରୁଚକାରେ କଅଣ ଅଧୀନାର ସେ ପୀତପଙ୍କର ଅଞ୍ଚଳତଳେ ସ୍ଥାନ ନାହିଁ ? ଧ୍ରୁବ ମୋର ମାମା ବୋଲି ମୋନକଣ୍ଠକୁ ଆସି ଭଲ-ମନ୍ଦ ଅଳି କରୁଥିବ···ଆଉ ମୁଁ ଅଭାଗିନୀ ନିଷ୍ଫଳ ନୟନରେ ଅନାଇ ରହିଥିବ ? ଆଉ କେତେ ଦିନ ଏ ଦୁଃଖର ସହଚରୀ ହେବ ପ୍ରଭୁ ? କେତେ ଦିନ ଏ ମନର ବେଦନା ନିର୍ଜନ କାନନକୁ ଶୁଣାଇବ ? କେତେ ଦିନ ଆଉ···(ଅଶ୍ରୁମୁଞ୍ଚନ) କହ ତେବେ, ମିଛର ଆଶା-ବାରିଧିର ବିଶାଳ ବାଲୁମୟ ତଟରେ ଆଉ କାହିଁକି ତୃଷ୍ଣାତୀରେ ଠିଆହୋଇ ରହିବ ?

ଧ୍ରୁବ—(ପ୍ରବେଶ) ମାମା ! ମୋର ସେ କଣ୍ଢେଇ କାହିଁ ? ମୋର ସେ ହରି ଠାକୁର କାହିଁ ? ଦିଅ, ମୋତେ ଚେଣେ ସାଙ୍ଗପିଲାଏ ରହିଁବସିଥିବେ, ଖେଳିବାକୁ ଯିବି ।

ସୁମୀତ୍ତି—(ଲୁହ ପୋଛି ଧ୍ରୁବକୁ କୋଳକୁ ନେଇ) ଅଛି ବାବା ! ତୋର ସବୁ ଖେଳନା ଅଛି । ନେ ବାବୁ ! ଆ, କନକ ଅପା ଫଳମୂଳ ଦେଇଯାଇଛି, ଖାଇକରି ଖେଳିବାକୁ ଯିବୁ । ଚାଲ୍ ।

ଧ୍ରୁବ—ନାଇଁ ମାମା ! ମୁଁ ଆଗେ ଖେଳିବାକୁ ଯିବି । ମୋତେ ଭୋକ ନାହିଁ, ଆସିଲେ ଖାଇବି ।

ସୁମନ୍ତ—ଆ, ମୋ ଧନ ପରା ! ଛି, ଏ ଅମାନିଆ କଥା ତତେ ଫେର୍ କିଏ ଶିଖେଇଲା ? ଆ, ମୋ ଧନଟି ପରା ! ଖାଇକରି ଯିବୁ ।

(କୋଳ କରି ନେଇଯିବା)

---

## ପଞ୍ଚମ ଦୃଶ୍ୟ

(ଋଷିକୁମାରଗଣ ଗୀତ ଗାଇ-ଗାଇ ଧ୍ରୁବର କୁଟୀର ନିକଟରେ ପ୍ରବେଶ କଲେ ।)

(ଗୀତ)

କାନନବିହାରୀ ମୋହନ ହରି
ଏ ଭବସାଗର-ତାରଣ-ତରୀ । ୦ ।
ଶ୍ୟାମ ନାଚେ ତଳ-ତଳ
ଶିରେ ଶିଖୀଚୂଡ଼ା ଗଳେ ବନମାଳା
ରାଧିକା ମନ-ମୋହନ ହରି । ୧ ।
ଜୟ ହେ, ଜୟ ହେ, ଜୟ ହେ
ମୁନିଜନ-ମନ-ମୋହନକାରୀ,
ଯମୁନାକୂଳଆ ବିପଦହାରୀ ।
ଶ୍ୟାମ ନାଚେ ତଳ ତଳ । ୨ ।

ସତ୍ୟ—(ହାତରେ ଫୁଲମାଳା ଧରି) ମା ! ଧ୍ରୁବ କାହିଁ ?

ସୁମନ୍ତ—(ଆନନ୍ଦରେ ବାହାରକୁ ଆସି) ଆସ ବାପା-ମାନେ ! ଧ୍ରୁବ ଆସୁଛି । (ମନେ-ମନେ) ଧ୍ରୁବପ୍ରତି ଏମାନଙ୍କର କେତେ ଶ୍ରଦ୍ଧା ସତେ ! (ଧ୍ରୁବର ପ୍ରବେଶ)

ସତ୍ୟ—ତତେ ଭାଇ ଆମେ କେତେ ଡାକିଲୁଣି, ତୁ ଏତେବେଳଯାଏଁ କୁଆଡ଼େ ଥିଲୁ ? କେମିତି ଆମମାନଙ୍କୁ ତୁ ଭୁଲିଯାଉଛୁ ମ ?

ସୁମନ୍ତ—(ଧ୍ରୁବପ୍ରତି) ଯା ବାବୁ ! ଆଉ ଥରେ ସେଇ ଗୀତଟି ଗାଇଲ ପିଲାମାନେ ।

ସତ୍ୟ ଓ ଧର୍ମ—ଧ୍ରୁବ ! ତୁ ଗାଆ । ଆମେ କଅଣ ଗାଇବୁ ମ' ? ଧ୍ରୁବ ଆମଠାରୁ ଆହୁରି ଭଲ ଗାଇବ । ଗାଇଲୁ ଧ୍ରୁବ !

ଧ୍ରୁବ—ହଉ ଗାଉଛି ।

(ପୂର୍ବ ଗୀତଟି ଗାଇଗାଇ ଚାଲିଗଲେ)

ସୁମନ୍ତ—(ଠିଆହୋଇ ଶୁଣୁଥାନ୍ତି) ଆହା, କି ସୁନ୍ଦର ଦୃଶ୍ୟ ! କି ସୁନ୍ଦର ଲୀଳା ତୁମର ହରି !

(ପଟ୍ଟପତନ)

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ରାଜଭବନ—ଉତ୍ତମ ଓ ସୁରୁଚି)

ଉତ୍ତମ—ମାମା ! ଗୁରୁଦେବ କହୁଛନ୍ତି, "ଆତ୍ମ-ବତ୍ ମନ୍ୟତେ ଜଗତ୍" ଅର୍ଥାତ୍ ପରକୁ ଆପଣାପରି ଦେଖିବ ।

ସୁରୁଚି—ହଁ ରେ ବାପ ! ହେଲା କଅଣ ?

ଉତ୍ତମ—କଅଣ ହେବ ଆଉ; ଯାହା ହେବାର, ହୋଇଗଲାଣି । ତମେ ତେବେ କେମିତି ବଡ଼ମାମାଙ୍କୁ ତଡ଼େଇଲ ? ସେ କଅଣ ତୁମର ନିଜର ନୁହଁନ୍ତି ?

ସୁରୁଚି—ହେଲା ଲୋ ହେଲା ! ଯାଙ୍କୁ ପୁଣି ଏ ପାଠ କିଏ ଶିଖେଇଲାଣି ! ଯୁଆଡ଼େ ଦେଖିବ ତ ସମସ୍ତେ ମୋର ଶତ୍ରୁ । ମୁଁ ଏବେ କରେଁ କଅଣ ? ରସ ! ରସ ...

ନେପଥ୍ୟେ—ମହାଦେଈ !

ସୁରୁଚି—ରସ ! ଶୁଣିଲୁଣି ଏ ଟୋକାଖଣ୍ଡକର ଗୁଣ । ଏ ପୁଣି ମତେ ପଚାରୁଛି କଅଣ ନା ଯା ଛତରଖାଇ ବଡ଼ମାମାଙ୍କୁ ମୁଁ ତଡ଼ିଦେଲି କିଆଁ ? ହା ରେ ବିଧାତା !

ରସ—(ପ୍ରବେଶି) ହଇ, ଏ ପୁଣି କଅଣ ? ଗମ୍ଭୀର ସାଆନ୍ତ ! ହଇଏ ବାବା ! ଏ କ'ଣ ପୁଣି ? ଏ କି ବୁଦ୍ଧି ? ଦିନକୁ ଦିନ ବଡ଼ ହେଲ—ରଜା-ଘର ପୁଅ, ରଜା-ବୁଦ୍ଧି କରିବ, ରଜା ହବ—ନା ଏଇଆ ବସି କହୁଛ ?

ଉତ୍ତମ—ମୁଁ ତ ରଜା ନୁହେଁ, ରଜା ବଡ଼ମାମାଙ୍କ ପୁଅ । ସେ ବଡ଼ ପୁଅ—ମୋର କଅଣ ଅଛି ?

ସୁରୁଚି—(ମୁଣ୍ଡରେ ହାତ ଦେଇ ବସିପଡ଼ିଲେ) ଶୁଣ୍, ଶୁଣ୍···

ରସ—(ଜିଭକାମୁଡ଼ି) ଆରେ, ସଇଲ ଲୋ ସଇଲ ! ମୁଁ ପରା ସେଇଦିନୁ କହୁଛି, ତାଙ୍କୁ ଦାଣ୍ଡମୁଣ୍ଡକୁ ଛାଡ଼ ନାହିଁ ବୋଲି । ପୋଡ଼ଯାଉ ସେ ଚୂଲି ପାଠପଢ଼ା । ରଜାଘରର ପୁଅ, ପାଠ ନ ପଢ଼ିଲେ ବାଙ୍କ ଖସିଗଲା ! ପିଲା-କୁଟୁମ୍ବ ଉପାସ ରହିବେ ପରା ! ଛାଡ଼ୁଥା'—ଏଥର ଭଲକରି ପାଠ ପଢ଼ାଅ । ମୁ କହୁଛି ପରା—ସେ ଡାଆଣୀ ସୁନୀତି କଅଣ ମନ୍ତ୍ରର କରିପକେଇବ । ଏବେ ହେଲା, ମନବୋଧ ହେଲା ? ମୋ କଥା ତ ଖାଲି ଗନ୍ଧାଏ । ରାଜାଙ୍କୁ ସେମିତି ଛାଡ଼ିଦେଲ ଯେ ସେ ସେଇଦିନୁ ବାଘୁଆପରି । ଏତେ କଥା କଲ ତ କୋଉ ସୁଖ ରହିଲା ଭଲା ?

ସୁରୁଚି—ପୋଡ଼ଯାଉ ମୋ ସୁଖ ! (ଉତ୍ତମପ୍ରତି) ଚାଲ୍, ତତେ ବି ମୁଁ ଆଜି ଦଉଚି । ରସ ! ଉତ୍ତମ ଆଉ ପାଠପଢ଼ିବ ନାହିଁ । କାଲିଠାରୁ ସେ ଗୁରୁଙ୍କୁ କହିଦିଅ, ସାଅନ୍ତେ ଆଉ ପାଠ-ପଢ଼ିବେ ନାହିଁ, ତାଙ୍କର ଢେର୍ ହୋଇଗଲାଣି । ସବୁ ନଷ୍ଟକୁଷ୍ଟ ତାହାର । ଆସୁ ସିଏ ଆଗ···

ଉତ୍ତମ—ତାଙ୍କର କଅଣ ଦୋଷ ମାମା ? ରଜାପୁଅ—ପାଠ ପଢ଼ିବ, ଯୁଦ୍ଧ ଶିଖିବ ନା ଉଆସ-କଣରେ ସ୍ତ୍ରୀ-ଲୋକଙ୍କପରି ଲୁଚିରହିବ ? ନାଇଁ ମାମା, ମୁଁ ପାଠପଢ଼ିବି, ନଇଲେ କାଲିଠାରୁ ମୋର ଠା' ହବ ନାଇଁ ।

ରସ—ହଁ ହଁ, ଥାଉ ଥାଉ । ଆହୁଉଁ ତ ଏମିତି ପଢ଼ିଲଣି ଆଉ ତ ଦିନକାଳ ଅଛି । ହାତରେ ମୁଣ୍ଡ କାଟିପକେଇବେ ଲୋ ମା ! (ରାଣୀଙ୍କପ୍ରତି) ବଡ଼େ ହୁଅନ୍ତୁ ମଣିମା ! ମୁଁ ତାଙ୍କୁ ସୁଧୁରେଇ-ଦଉଚି । ଆଲୋ ନଳିତା !

(ଉତ୍ତମଙ୍କୁ କୋଳେଇନେଲା—ରାଣୀ ଧୀରେ-ଧୀରେ ଚାଲିଗଲେ )

ରସ—ନଳିତା ! ମଲ୍ ରେ ଏଇଠା ! ପୋଡ଼ଯାଉ ସେ କାନ । ରଙ୍ଗ, ଅସିବଟି ଲେ, କଅ—ସାଅନ୍ତଙ୍କୁ କଅ, ଗୀତ ଗାଅ, ନାଚ କର ।

(ନୃତ୍ୟବାଳାଙ୍କର ପ୍ରବେଶ)

(ଗୀତ)

ଆସ କୁସୁମିତ ଲତିକା, ଦରହାସୀ କଳିକା,
ଆସ ଆସ ଯେନପିବ ଜୀବନଲାଗି ।
ଆସ ଆସ ରେ ମଳୟ-ସମୀର
ସୁଷମା ସଉରଭ ପରାଣେ ଜାଗି ।୦।
ପିକ ଡାକେ କୁହୁ କୁହୁ ବନେ ଭବନେ
ପରମାଦ ଗଣଇ ବିରହୀ ଜୀବନେ ।
କି'ବା କୁସୁମବନେ, କି'ବା କେଳି-କାନନେ,
ମହୁଆ ମଧୁପ ବୁଲେ ପୀରତି ମାଗି ।୧।

---

## ଦ୍ୱିତୀୟ ଦୃଶ୍ୟ

( ଅରଣ୍ୟ—ଋଷିକୁମାରମାନଙ୍କସହ ଧ୍ରୁବ ଗୀତ ଗାଇ-ଗାଇ ପ୍ରବେଶ )

(ଗୀତ)

ନିଖିଳ ଜଗତ ଘୁମ ଅଚେତନ ସ୍ତବ୍ଧ ଭୁବନସାରା ।
ସେକାଳେ ଉଠିଲା ଆକାଶ ଅଙ୍ଗେ
ଗୋଟିଏ ଶୁଭ୍ରତାରା ଆଲୋକଲା ହୃଦକାରା ।୦।
ଛୁଏଁ-ଛୁଏଁ ଫୁଟି ଛୁଏଁ-ଛୁଏଁ ତୁଟି
ଏକୁଟିଆ ଧରା ଲୁଟିଲା ସେ ।
କି ଜାଣି କିଲାଗି ଉଠିଥିଲା ଜାଗି
କିସ ଅବା ଭାବ ଛପିଲା ସେ ।
ତନ୍ଦ୍ରା-ମଗନ ବିଜନ-କୋଣରେ,
ସେ ଆଲୋକରେଖା ଦିଶିଲା ।
ସେ ଆଲୋକଦେହେ ଫୁଟିଲା ବିକଶି
କୋଟିଏ ରଶ୍ମି ଧାରା
କୋଟିଏ ଚନ୍ଦ୍ର-ତାରା
ଗଗନ-ରତନହାରା ।୧।
( ସମସ୍ତଙ୍କ ଉପବେଶନ )

ସତ୍ୟ—ଭାଇ ଧ୍ରୁବ ! ତୋ ମୁହଁ କାହିଁକି ଆଜ ଶୁଖିଯାଇଛି ?

ଧର୍ମ—ସତେ ଭାଇ ! ଧ୍ରୁବଲାଗି ଏକା ସବୁ ଆନନ୍ଦ, ସେ ନ ଥିଲେ କାହିଁକି ସବୁ ଖାଲି-ଖାଲି ଲାଗେ ।

ଧ୍ରୁବ—ତୁ ଭାଇ, ମୋତେ ଭଲ କାହିଁକି ଏମିତି ପରିହାସ କରୁଛ ? (ଲୁହ ପୋଛି) ମୁଁ ତ ବଡ଼ ଦୁଃଖୀ । ମୋଭଳି ହୀନକର୍ମା ଆଉ ଜଗତରେ କେହି ନାହିଁ ।

ଦଣ୍ଡ—ନାଇଁ ଭାଇ, ଆମେମାନେ କାହିଁକି ତତେ ପରିହାସ କରିବୁଁ ? ସତ କହୁଛୁଁ, ତୁ ନ ଥିଲା-ବେଳେ ସବୁ ଖରାପ ଲାଗେ ।

ସତ୍ୟ—ସତେ ଭାଇ, ଧ୍ରୁବ ନ ଥିଲେ ଫୁଟାଫୁଲ ମଉଳିଲାପରି ଦିଶେ, ବସନ୍ତ ପବନ ଦେହକୁ ଗରମ ଲାଗେ, ମନ ଖରାପ ହୁଏ ଆଉ ଖେଳ-ବୁଲରେ ମନ ଜମା ଲାଗେ ନାହିଁ ।

ମାନ—(ମୁଣ୍ଡହଲାଇ) ହିଁ ହିଁ, ମୁଁ ନ ଥିଲେ ତ ମତେ ସେମିତି ସେମିତି ଲାଗେ । ସେମିତି ମନ ହୁଏ ନାହିଁ ଖେଳିବାକୁ ।

ଦଣ୍ଡ—(ହସିହସି) ତୁ'ଟା କହାଉ ହୁଣ୍ଡା ।

ମାନ—ହିଁ, ହେଲେ ହେଲୁଁ । ଆମେ ତେବେ ଏଥର କୌଣସି କଥାରେ କଥା କହିବା ନାଇଁ । ଆମ ପାଟି ବନ୍ଦ ଥାଉ । (ମୁହଁଟିରେ ଅଙ୍ଗୁଠି ଦେଇ ଫେର ଠିଆହେଲେ) ।

ଧ୍ରୁବ—ତୁ ଭାଇ, ଏ କଅଣ ? ସେ କଅଣ କହିଲା ଯେ ତୁ କଥା କହିବୁ ନାଇଁ, ତା'ଲାଗି ମତେ ପଛକେ ବରକ୍ତ ହୁଅ ।

ସତ୍ୟ—(ମାନପ୍ରତି) ଛାଡ଼ ସେ କଥା; ଆସ, ସମୟ ହେଲାଣି—ଗୁରୁଦେବଙ୍କର ଫୁଲଫଳ ସଂଗ୍ରହ କରିବାକୁ ହେବ । ତୁ ଚଢ଼ିଯାଇ ସେ ମାଳତୀ-ଗଛରୁ ପେନ୍ଥାପେନ୍ଥା କରି ଫୁଲ ତଳକୁ ପକା, ଆମେମାନେ ତୋଳିନେଇ ବାଛିପକାଇବୁ ।

ମାନ—(ମୁଣ୍ଡ ତଳକୁ କରି ଠିଆହେବା)

ଧ୍ରୁବ—ଭାଇ ମାନ, ଏ କଅଣ ? ଶୁଣ୍ ।

ମାନ—ମୋ ମୁହଁ ତ ବନ୍ଦ, ଫେର୍ ଫିଟିବ କେମିତି ?

ଦଣ୍ଡ ଓ ଧର୍ମ—ହିଁ ହିଁ, ( ତାଳିମାରି ) ଏବେ ତ ଫିଟିଲା—ଫିଟିଲା କେମିତି ? (ମାନକୁ ଧରି) ଚାଲ୍, ଫୁଲ ତୋଳିବୁ ।

(ସମସ୍ତେ ମିଶି ମାନକୁ ଟାଣିଲେ)

ମାନ—ହଉ, ଯେମିତି କହୁଛ, ସେମିତି ଖୋସାମତ୍ କର ।

(ସମସ୍ତେ ଟେକି ନେଇ ଚାଲିଗଲେ)

---

## ତୃତୀୟ ଦୃଶ୍ୟ

(ପଥ—ଭିଖାରୀ ଗାଇ-ଗାଇ ପ୍ରବେଶ)

(ଗୀତ)

ଜଗତ-କରତା ହରି, ଏ କିସ ତବ ବିଚାର
ଯେ ଭଜେ ତମରି ନାମ
ବୁଡ଼ିଯାଅ ତାହାରି ଘର । ୦ ।

ଅନ୍ୟାୟ ଅଧର୍ମ କରି ଯେ ବାହେ ଜୀବନ-ତରୀ
ତାହାରି କପାଳେ ବହେ ସତେ କି କରୁଣା କ୍ଷୀର ।
ଯାହା ଇଚ୍ଛା, ତାହା କର ସବୁ ତ ତୁମ ବିଚାର
ଅଧରମ ଅକରମ
ନ ହେଉ ଜଗତେ ସାର । ୧ ।

(ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

( ଜଙ୍ଗଲ—ଚିନ୍ତିତ ମନରେ ବୃକ୍ଷମୂଳେ ଛିଡ଼ା-ହୋଇଛନ୍ତି ମଦନ ସିଂହ )

ମଦନ—କି ବିପଦ ! ଜଣା ନାହିଁ ପଥ । କ୍ଷତ୍ରିୟ ସନ୍ତାନ ବୋଲି ସ୍କନ୍ଧରେ ରହିଛି କେବଳ ଧନୁ;

କିନ୍ତୁ କି ଲଜ୍ଜା ! କି ନିନ୍ଦା ! ଜାଣେ ନା କାହିଁର ଘଟଣା । ଏ ହିଂସ୍ରଜନ୍ତୁପୂର୍ଣ୍ଣ ଅରଣ୍ୟରେ କି ଉପାୟ ମୋର ? (ଚିତ୍କାର କରି) ଭାଗବତିଆ ! ଭାଗବତିଆ···

ଭାଗବତ—(ପ୍ରବେଶି) ଆଜ୍ଞା ! କାହିଁ, ବାଟ ତ ମିଳୁ ନାହିଁ । ଘୂରିଆସିଲି ଜଙ୍ଗଲ । ପାଖରେ-ଆଖରେ କେଉଁଠି ତ ଗାଁ-ଗଣ୍ଡା ନାହିଁ । ହେଇଟି, କେଉଁଠି ବାଘ-ଭାଲୁର ଶୁଭୁଛି ।

ମଦନ—ଭାଗୁ ! ଏଁ, କଅଣ କହିଲୁ ? ହଁ ତ··· (କ୍ରନ୍ଦନ)

ଭାଗୁ—ଡରୁଛ କଅଣ ସାଆନ୍ତେ ? ଧନୁଶର ଅଛି ଟି ?

ମଦନ—(କ୍ରନ୍ଦନସ୍ୱରରେ) ଧେତ୍, ଧନୁଶର ଥିଲେ କଅଣ ହେବ ? ଆମକୁ କଅଣ ମାରିଆସେ ?

ଭାଗୁ—ନ ହେଲେ ନାହିଁ, ମତେ ତ ଆସେ । ପିଲାଦିନେ ଆମ ବଣିକାଗି କେତେ ଝିଙ୍କିକା ମାରିଛି, ମୁଁ କ'ଣ ଗୁଡ଼ଦେବି ?

ମଦନ—ଭଉଣୀ-ବୋଲରେ ପଡ଼ି ଧ୍ରୁବକୁ ମାରିବାକୁ ଆସିଲେ ଯେ, ଏବେ ନିଜେ ମରିବାକୁ ବସିଲେଣି । ହେ ମା ବନଦେବତି !

ଭାଗୁ—ସାଆନ୍ତେ, କଅଣ ପତର ମଡ଼-ମଡ଼ ଶୁଭୁଛି··· (ବାଘ-ଗର୍ଜ୍ଜନ ଶୁଭିଲା)

ମଦନ—ଭାଗୁ ! ମତେ କାହିଁକି କେମିତି କେମିତି ଲାଗୁଛି । ଚାଲ୍, ଫେରିପଳେଇବା ।

ଭାଗୁ—ହଁ, କଅଣ କହିବା ?

ମଦନ—କହିବା, ପାଇଲୁ ନାହିଁ ।

ଭାଗୁ—ସାଆନ୍ତେ, ସାଆନ୍ତେ ! ଏ ପାଖକୁ ଶୁଣିଲେଣି ?

ମଦନ—ଆଉ ଶୁଣିବି କଅଣ ରେ ଭାଗୁ ! ମୋ ମୁଣ୍ଡ ଚକ୍କର ଦେଲାଣି । ଆମ ରଜା ହେବା କଥା ଇତି । ପଳେଇଯାଇ ବଞ୍ଚିପାରିଲେ···

ଭାଗୁ—ସାଆନ୍ତେ, ଆସ ବାହାର । ହେଇ ଦେଖିଲଣି, କେଡ଼େ ବଡ଼ ସାପଟାଏ ! ଇଲେ ମୋ ବୋପା ଲେ ! (ପ୍ରାଣ ନେଇ ଦୌଡ଼ିଲେ)

ମଦନ—(ବିକଳରେ) ହେ ଭଗବାନ୍ ! ରକ୍ଷା କର, ରକ୍ଷା କର ହେ ହରି ! (ପଳାୟନ)

---

## ପଞ୍ଚମ ଦୃଶ୍ୟ

(ବନମଧ୍ୟସ୍ଥ ଆଶ୍ରମ—ଋଷିକୁମାରମାନେ ଧୂଳି ଗୁଡୁଛନ୍ତି)

ସତ୍ୟ—ଭାଇ ଧର୍ମ, ଆସ ଖେଳିବା ।

ଧର୍ମ—ଧ୍ରୁବ ତ ନାହିଁ, ଖେଳିବାକୁ ମନ ବଳୁ ନାହିଁ ।

ମାନ—ମ, ଧ୍ରୁବ ନ ଥିଲେ କଅଣ ହେଲା ? ମୁଁ ତ ଅଛି, ରଜା ହେବି । ଆସ, ରାଜା-ମନ୍ତ୍ରୀ-ଖେଳ ଖେଳିବା ।

ସତ୍ୟ—ଛି, ମାନ ! ତୋର ଏକା ସବୁଥିରେ ଯେମିତି ହେଲେ ଗୋଟେ ଦୁଷ୍ଟାମି ନିଶ୍ଚେ ଥିବ ।

ଦଣ୍ଡ—ନା, ମୁଁ ଯିବି, ଧ୍ରୁବକୁ ଡାକିଆଣିବି ।

ସମସ୍ତେ—ଯା ।

ସତ୍ୟ—(କାନ ଡେରି ଆଙ୍ଗୁଠି ଦେଖାଇ) ଶୁଣ୍ ଶୁଣ୍, ଧ୍ରୁବ ଆସୁଛି ପରା—ଏକା ବଡ଼ ମଧୁର କଣ୍ଠ ! କେଉଁଠି ଥିବ—ହଜିଲା ବଳଦ, ଖୋଜିଲା-ଠେଇଁ···

ନେପଥ୍ୟେ—(ଗୀତ)

ନବୀନ ଉଷା କି ମଧୁରେ ସଜାଇଛି,
କି ମୋଦରେ ମଜାଇଛି ॥ ୦ ॥
ଆସିଛି ନବ ବେଶେ ନବୀନ ଦିବସ
ବିତନରେ ଦିଶେ-ଦିଶେ ନବୀନ ହରଷ
କୁସୁମ-ସୁଷମା, ଆହା କି ସରସ !
ଦିଗେ, ବିଦିଗେ, ବିହଗେ ସରଗେ ଗାଉଅଛି । ୧ ।

(ଧ୍ରୁବର ପ୍ରବେଶ)

ସତ୍ୟ—ତତେ ଆମେ କେତେବେଳୁଁ ଖୋଜୁଥିଲୁଁ । ଏଇନେ ତ ଡାକିବାକୁ ଯାଉଥିଲୁ, ତୁ ପହଞ୍ଚିଗଲୁ ।

ଧ୍ରୁବ— କାହିଁକି ଭାଇ ! ମୁଁ ତ ନିତାନ୍ତ ଅଧମ । ତମମାନଙ୍କ ସାଙ୍ଗକୁ ସମ୍ପୂର୍ଣ୍ଣ ଅଯୋଗ୍ୟ । ମୋତେ କାହିଁକି ଖୋଜୁଥିଲ ଭାଇ ?

ସତ୍ୟ—ଧ୍ରୁବ ! ତୁ ଆମମାନଙ୍କର ପ୍ରାଣ, ଆନନ୍ଦ । ଏପରି କଥା କାହିଁକି କହୁ ଭାଇ ? ସବୁବେଳେ ତୋ ମୁହଁ କାହିଁକି ଶୁଖିଥାଏ ?

(ଧ୍ରୁବର ଲୁହ ପୋଛିଲେ)

ଧର୍ମ—ହଁ, ସତେ ଏ କି କଥା ? ସବୁବେଳେ କାହିଁକି ସେ ବିରସ ଥାଏ ?

ମାନ—ହଉ, ସେ କଥା ପରେ ହେବ । ଆସ, ଖେଳିବା ପରା ?

ଦଣ୍ଡ—ଚାଲ, କ'ଣ ଖେଳିବା ?

ଧର୍ମ—ରଜା-ମନ୍ତ୍ରୀ ଖେଳ ।

ଦଣ୍ଡ—ରଜା କିଏ ହେବ ?

ମାନ—ମୁଁ-ମୁଁ-ମୁଁ-ମୁଁ ହେବ । (ଉଠି ଠିଆହେଲା)

ଧର୍ମ—ଧେତ୍, ଏ ଗୋଟେ ରଜା ହେବ !

ସତ୍ୟ—ନା ନା, ରଜା ଆମର ଧ୍ରୁବ ।

ଧ୍ରୁବ—ନାହିଁ ଭାଇ, ମୁଁ ରଜା ହେବି ନାହିଁ । ମୁଁ ଦୁଃଖୀର ପୁଅ, ମୁଁ ହେବି ନାହିଁ । ତମଭିତରୁ କିଏ ହଉ । ମୋତେ ସେ କଥା କୁହ ନା ।

ସତ୍ୟ—ଭାଇ ! କଅଣ ଆମ ଖେଳ ଭାଙ୍ଗିଦେବୁ ? ତୁ ରଜା ନ ହେଲେ ଆମେ ଆଉ ଖେଳିବୁ ନାହିଁ ।

ଧ୍ରୁବ—ନା ଭାଇ, ଖେଳିବ ନାହିଁ କାହିଁକି ? ମୁଁ କଅଣ ଖେଳିବାକୁ ମନା କଲି ? ଖେଳ, ମୋତେ ବାକି ରଜା କର ନାହିଁ ।

ସମସ୍ତେ—ନା ନା, ତୁ ହବୁ । ତୁ ନ ହେଲେ ଆମେ ଖେଳିବୁ ନାହିଁ । (ଧ୍ରୁବକୁ ଧରି ନେଇ ରଜା କରିବା ଓ ଅନ୍ୟମାନେ ଦୁଇ ପାର୍ଶ୍ୱରେ ଦଣ୍ଡାୟମାନ ହେବା )

ଦଣ୍ଡ—ଆଜି ସେ କୁରୁବକ-କଣ୍ଟା-କଥା ବିଗୁର ହେବ । ସେ କାହିଁକି କାଲି ମୋ ଦେହରେ ଫୁଟି-ଯାଇଥିଲା ?

ମାନ—ହଁ ହଁ ।

(ବନଦେବୀଙ୍କ ପ୍ରବେଶ)

(ଗୀତ)

ଫୁଟ ରେ ମଧୁମାସେ କୁସୁମ
କୋଟରେ, କୋଟରେ, ଫୁଟରେ, ଛୁଟରେ, ଲୁଟରେ
ଲୁଟରେ ସମୀରେ ସଧୀରେ ।୧।
ଗୁମ୍ଫିତ ଗୁଞ୍ଜ ସୁମଞ୍ଜୁଳ, ମଣ୍ଡିତ
ଗୁଞ୍ଜିତ ଭୃଙ୍ଗ-ସ୍ୱଆବର-କମ୍ପିତ
ରଞ୍ଜିତ, ନନ୍ଦିତ, ରଙ୍ଗେ ତରଙ୍ଗିତ
ବିହଗଗୁମ୍ଫିତ, କି ସୁଷମ ! ।୨।

ବନଦେବୀ—(ପଛକୁ ଚାହିଁ) ଏ କି ଲୀଳା ? ଯାଏଁ, ଦେଖେଁ । ( ପ୍ରକାଶ୍ୟେ ) ତୁମେମାନେ କିଏ ବାଳକ ?

ବାଳକମାନେ—ଆମେମାନେ ଋଷିକୁମାର । ରଜା-ମନ୍ତ୍ରୀ-ଖେଳ ଖେଳୁଛୁଁ ।

ବନଦେବୀ—ରଜା କିଏ ?

ସତ୍ୟ—(ଧ୍ରୁବପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି) ଏ ଆମ ରଜା ।

ବନଦେବୀ—(ମନେ-ମନେ ହସି) ଠିକ୍ । ଏ ତ ଋଷିକୁମାର ନୁହେଁ । ରାଜପୁତ୍ରକୁ ରଜା କରିଛନ୍ତି । ଦେଖେଁ । (ପ୍ରକାଶ୍ୟେ) ତୁମେମାନେ କାହା ପୁତ୍ର ? ସମସ୍ତେ କ'ଣ ଋଷିପୁତ୍ର ?

ଧ୍ରୁବଭିନ୍ନ ସମସ୍ତେ—ହଁ ।

ବନଦେବୀ—ଆଉ ତୁମ ରଜା ?

ସତ୍ୟ—କହ ଧ୍ରୁବ ! ତୁ କାହା ପୁଅ ?

ଧ୍ରୁବ—(ନୀରବରେ ଅଶ୍ରୁମୁଞ୍ଚନ)

(ବନଦେବୀ ଈଷତ୍ ହସି ଲୁଚିଗଲେ)

ସତ୍ୟ—କହ, କାନ୍ଦୁଛୁ କାହିଁକି ?

ମାନ—ସେ ଅଣବାବୁଆ ମ ।

ଧ୍ରୁବ—(କାନ୍ଦି) ନା ଭାଇ, ମତେ ସେମିତି କୁହ ନା — ମୋର ମାମା ପରମା ସତୀ ।

ମାନ—କହ ତେବେ, ତୁ କାହା ପୁଅ ?

ଧ୍ରୁବ—ମାମା ମନା କରିଥିବାରୁ କହି ନାହିଁ । ମୋର ପିତା ରାଜା ଉତ୍ତାନପାଦ ।

ମାନ—(ହସିହସି ତାଳି ମାରି) ମିଛ ମିଛ, କଞ୍ଚା ମିଛ ! ଆମ ରଜା ହଉ-ହଉ ଧ୍ରୁବ ବାପୁ ହେଲାଣି ।

ଧ୍ରୁବ—(କାନ୍ଦି) ଭାଇ ! ତୁମେମାନେ ଯାହା ମନେ କର, ଯାହା ଇଚ୍ଛା, ତାହା କୁହ; କିନ୍ତୁ ମୁଁ ସତ୍ୟ କହୁଛି ।

ସତ୍ୟ—ହଉ ତେବେ, କାଲି ରଜାଙ୍କ ପାଖରେ ଯାଇ ଏ କଥା ପଚାରିବା ।

ଧ୍ରୁବ—ହଉ ।

ମାନ—(ତାଳିମାରି ଗୀତ ବୋଲିବାପରି)

ଧ୍ରୁବ ବାପୁ ହେଲାଣି,
ଖେଳୁ-ଖେଳୁ ଧ୍ରୁବ ଆଜ ରଜା ହେଲାଣି,
ଧ୍ରୁବ ବାପୁ ହେଲାଣି ।

ଧ୍ରୁବ—(କାନ୍ଦି-କାନ୍ଦି ପଳେଇଲା)

---

## ଷଷ୍ଠ ଦୃଶ୍ୟ

(କୁଟୀରସମ୍ମୁଖସ୍ଥ ବନ)

ଧ୍ରୁବ—(କାନ୍ଦି-କାନ୍ଦି) ମାମା, ମାମା···

ସୁନୀତି—(ଧାଇଁଆସି) କଅଣ ବାବା ? ଏ କଅଣ ରେ, ତୁ କାନ୍ଦୁଛୁ କାହିଁକି ଧନ ? କିଏ କଅଣ କହିଲା ? ଭଗବାନ୍ ! ଆଖି ବୋଲି ଗୋଟିଏ ଦେଇ ସେତକ ପୁଣି ଲୁହଭରା କଲ ? କଅଣ ଇଚ୍ଛା ତୁମର ? (ଧ୍ରୁବକୁ କୋଳେଇ) କହିଲୁ ଧନ ! କଅଣ ହେଲା ?

ଧ୍ରୁବ—ମୁଁ ରାଜସଭାକୁ ଯିବି ।

ସୁନୀତି—ଏ ପୁଣି କି କଥା ଆଜି ? ତୋତେ ଏ କଥା କିଏ କହିଲା ? ବଡ଼ ହୁଅ—ତରତର କାହିଁକି ?

ଧ୍ରୁବ—ନାଇଁ ମାମା, ଆଜି ଯିବି ।

ସୁନୀତି—କଥା କଅଣ, କହୁ ନାଉଁ ।

ଧ୍ରୁବ—ମୋତେ ଋଷି-ପିଲାମାନେ ଅଣବାପୁଆ ବୋଲି କହିଲେ । ମୁଁ କହିଲି, ମୁଁ 'ଉତ୍ତାନପାଦ ରଜାଙ୍କ ପୁଅ । ସେମାନେ ସମସ୍ତେ କହିଛନ୍ତି ଯେ ଆଜି ରାଜସଭାକୁ ଯାଇ ସବୁ ପଚାରିବେ । ମୁଁ ଯିବି ମାମା !

(କନକର ପ୍ରବେଶ)

ସୁନୀତି—କନକ ! ଶୁଣିଲୁ ଯା ଅଝଟପଣିଆ । କହୁଛି କ'ଣ ନା ରଜାଙ୍କ ପାଖକୁ ଯିବ । ଋଷିପିଲାଙ୍କ ସାଙ୍ଗରେ ପୁଣି···

ଧ୍ରୁବ—ନାଇଁ ମାମା ! ମୋତେ ମନା କର ନାହିଁ । ମୁଁ ନିଶ୍ଚେ ଯିବି ।

କନକ—ବାବୁ ! ସେଠି ତମର ବିମାତା ଅଛି । ସେ ଗୋଟିଏ ବାଘୁଣୀ । ତମକୁ ଦେଖିଲେ କଅଣ ନାଇଁ କଅଣ କହିବ । ଆମର ଦରକାର ନାହିଁ । ବଡ଼ ହୁଅ, ଯିବ ।

ଧ୍ରୁବ—ନା, ମୁଁ ନିଶ୍ଚେ ଯିବି; ମତେ କେହି ମନା କର ନା ।

ସୁନୀତି—ହଉ ବାପ, ଯା ମନ । ଭଗବାନ୍ ତ ମୋତେ ସବୁଥିରେ ହୀନିମାନି କରିଛନ୍ତି । ଆଉ···

(କାନ୍ଦି ଲୁହ ପୋଛୁଲେ)

ଧ୍ରୁବ—ମାମା ! କାନ୍ଦୁଛ କାହିଁକି ? ମୁଁ ବେଗେ ଫେରିଆସିବି ଯେ । ମତେ ଖଣ୍ଡେ ଲୁଗା ଦିଅ ମାମା !

ସୁନୀତି—(ଲୁହ ଝରାଇ) ଲୁଗା କାହୁଁ ପାଇବି ଧନ ? ତୁ ଦେଖୁଛୁ, ଏଇଖଣ୍ଡିକ ତ ଧୋଇ ଶୁଖାଇ ପିନ୍ଧୁଛି । ମୋ ବାପଟା ପରା ! ଅଳି କର ନା—ମୋ ଛାତି ଫାଟିଯାଉଛି ।

(ଧ୍ରୁବକୁ କୋଳ କରିବା)

ଧ୍ରୁବ—ମୁଁ ତେବେ ଯିବି କେମିତି ? ମୋତେ ଯେମିତି ହେଲେ ଖଣ୍ଡେ···

ସୁନୀତି—(ଆପଣା କାନିରୁ ଝିଣ୍ଡେ ଚିରି) ନେ, ତୋର ତ କର୍ମରେ ଦୁଃଖ ଅଛି । ନେ, ଏଇ-ଖଣ୍ଡିକ ପିନ୍ଧି ଯାଆ ।

(କାନ୍ଦି ଲୁହ ପୋଛିବା)

କନକ—ଯା ବାବା ! ଶୁଭରେ ଫେରିଆସ ।
ସୁମନ୍ତ—କନକ ! ମୋର କାହିଁକି ମନ ହେଉ ନାହିଁ, ମୁଁ ଛାଡ଼ିଦେଇପାରିବ ନାହିଁ ।
ଧ୍ରୁବ—(ପ୍ରଣାମ କରି) ଥାଅ ମାମା ! ମୁଁ ବେଗେ ଫେରିଆସିବ ।
ସୁମନ୍ତ—(ଧ୍ରୁବ-ମସ୍ତକରେ ହାତ ବୁଲାଇଲେ ଏବଂ ନିଜ ଲୁହ ପୋଛିଲେ) ।
ଧ୍ରୁବ—(ଧୀରେ-ଧୀରେ ଆଗେଇଲେ)
ସୁମନ୍ତ—(ଧ୍ରୁବ ଗଲାପରେ ବିକଳରେ ଡାକିଲେ) କନକ ! କନକ ! ଧ୍ରୁବ ମୋର କ'ଣ ସତରେ ଗଲା ?

(ତଳେ ପଡ଼ିଗଲେ)

କନକ—(ଟେକା ଧରିଲେ)

(ପଟ୍ଟପତନ)

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ରାଜଭବନ—ଚିନ୍ତା-ମଗ୍ନ ମହାରାଜ ଉତ୍ତାନପାଦ)

ରାଜା—ଶେଷ !
ଶେଷ ହେଲା କାଳ—
ଅଜ୍ଞାତରେ, ଅଗୋଚରେ ମୋର ।
କିଏ ମୁହିଁ, କି ବା ମୁହିଁ ?
କିପାଇଁ ବା ଆଗମନ ମମ,
ଏହି ଧରାଧାମେ ?
ନ ପାରଇ ବୁଝି ।
ରାଜା ମୁହିଁ,
କେଜାଣି, କିପାଇଁ, କିନ୍ତୁ
ରାଜପଦଲାଗି
ଅଯୋଗ୍ୟ ଅଟଇ ।
ଜଣାଯାଏ ମୋତେ,
କେହି ଜଣେ ଗୋପନରେ
କହେ ମୋର କାନେ—
ରାଜପଦେ ଅଧିଷ୍ଠିତ
ଶୃଗାଳ ନରେଶ ।
ଓଃ,
ଅସମ୍ଭବ, ଅସମ୍ଭବ;
ଆଉ ନ ପାରଇ ସହି,
ବିକଳିତ ହୁଏ ପ୍ରାଣ
ପଳାଇବ କେଉଁଣେ ।

(ଟିକିଏ ପରେ)

ସୁମନ୍ତ !
ଅନ୍ତଃପୁରବାସିନୀ ସେ,
ନିର୍ବାସିତା ଆଜ ।
ବାଚ୍ୟା ସୃଷ୍ଟି କରେ ମୋରେ
ସ୍ୱପ୍ନେ—ସ୍ୱପନେ ।
କେତେବେଳେ ଅବା ଶାନ୍ତ,
କରୁଣ ନୟନେ—
ଜଣାଏ ତା ବ୍ୟଥିତ କାହାଣୀ ।
କେତେବେଳେ ପୁଣି
ରଣଚଣ୍ଡୀବେଶେ ଧାଇଁଆସେ
ଧ୍ୱଂସିବାକୁ ମୋତେ,
ଗୃହେ ପ୍ରତିହିଂସା ।
କି'ବା ଉପାୟ ମୋହର ?
ରାଜା ହୋଇ ମୁହିଁ
ନ ପାରଇ କରି ଯଦି
ମୀମାଂସା ଏହାର,
କି'ବା ପ୍ରୟୋଜନ
ଭୋଗି ରାଜସିଂହାସନ ?

(ଦୂତର ପ୍ରବେଶ—ଅଭିବାଦନ)

ରାଜା—କି ସମ୍ବାଦ ଦୂତ ?
ଦୂତ—ଦେବ !
ଆସିଛନ୍ତି ଆଶ୍ରମବାସୀ ତାପସ-ତନୟେ
ଗୁମ୍ଫୁ-ଦରଶନଆଶେ ।
ରାଜା—ଯାଅ ଦୂତ ! ବିଧିମତେ 'ସତ୍କାର କର ସେମାନଙ୍କର । କହ, କ୍ଷଣପରେ ଦେଖାହେବ ! ଯାଅ ।

ଦୂତ—ଯେ ଆଜ୍ଞା ମହିମା !

(ପ୍ରଣାମ ଓ ପ୍ରସ୍ଥାନ)

ରାଜା—ଏ କି କଥା ପୁଣି ?
କହାଁ ଆସିଛନ୍ତି ଏତେ ପଥ ଧାଇଁ—
ତାପସ-ତନୟେ ?
ଯାଏଁ, ଦେଖେଁ ।

(ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

(ରାଜସିଂହାସନ—ଉତ୍ତାନପାଦ ଓ ଉତ୍ତମ)

ରାଜା—ଏ କଅଣ ? ମନଟା କାହିଁକି ଆଜ ବଡ଼ ବିକଳ ହେଉଛି । ବିନା କାରଣରେ ହୃଦୟ ଥରଉଠୁଛି ।

ନେପଥ୍ୟେ—ଆଜ୍ଞା ହେଉ ମହାରାଜ !

ରାଜା—ଋଷିକୁମାରମାନଙ୍କୁ ଆସିବାକୁ କହ ।

ନେପଥ୍ୟେ—ଯେ ଆଜ୍ଞା ମହାରାଜ !

ଉତ୍ତମ—ପିତା ! ଋଷିକୁମାରମାନେ କଅଣ ଆମର-ପର ହୋଇଥିବେ ?

ରାଜା—ହଁ, ସେମାନେ ଧଳୁବେଳେ ଗେରୁଆ ଲୁଗା ପିନ୍ଧିଥାଆନ୍ତି ଆଉ ବଡ଼ ସରଳ । ଦେଖିଲେ ବୁଝିପାରିବୁ, ସେମାନେ କପଟଭାବରେ ଜୀବନ ନିର୍ବାହ କରନ୍ତି ।

ନେପଥ୍ୟେ—ଜୟ ତୁ ମହାରାଜ ! (ଋଷିକୁମାରମାନଙ୍କର ପ୍ରବେଶ)

ରାଜା—ବସନ୍ତୁ ଋଷିକୁମାରଗଣ ।

(ଆସନ ଦେଖାଇଲେ, ଋଷିକୁମାରମାନେ ବସିଲେ)

ରାଜା—ଆଶ୍ରମର ସମସ୍ତ କୁଶଳ ତ ?

ସତ୍ୟ—ହଁ ମହାରାଜ !

ରାଜା—ଆସିବାର ଅଭିପ୍ରାୟ ?

ସତ୍ୟ—ରାଜଦର୍ଶନ ମାତ୍ର ।

ରାଜା—(ଚମକପଡ଼ି) ଏ କ'ଣ ? ଏ କି ଦୃଶ୍ୟ ? ଏ କିଏ ? ଏ ତ ଋଷିପୁତ୍ରପରି ଦିଶୁ ନାହିଁ ! ସମସ୍ତ ରାଜଲକ୍ଷଣ ପ୍ରସ୍ଫୁଟିତ ! ଓଃ, ହୃଦୟ କାହିଁକି କମ୍ପିଉଠୁଛି ମୋର ! ବାତ୍ସଲ୍ୟ-ମମତା ପ୍ରତ୍ୟେକ ଅଙ୍ଗରେ ଅନୁଭୂତ ହେଉଛି । କି ଆଶ୍ଚର୍ଯ୍ୟ ! ଏ ବାଳକସହ ଅବା ମୋର କି ସମ୍ପର୍କ ! (ବାଳକପ୍ରତି) ବାଳକ ! ଆସ, ମୋ ନିକଟକୁ ଆସ । ଥରେ ମୁଁ ତୁମକୁ ମନ ପୂରାଇ ଆଲିଙ୍ଗନ କରେଁ । ମୋ ହୃଦୟ କାହିଁକି ବଡ଼ ଅଥୟ ହେଉଛି ।

ଧ୍ରୁବ—(ମୁଖ ତଳକୁ କରି ପୂର୍ବପରି ବସିରହିଲା)

ଧର୍ମ—ଯାଅ ଭାଇ, ମହାରାଜଙ୍କ ଇଚ୍ଛା ପୂରଣ କର ।

ବାଳକ—(ଦଣ୍ଡାୟମାନ ହେବା)

ରାଜା—ବାଳକ ! ଭୟ କଅଣ ? ମୁଁ ଅନୁମତି ଦେଉଛି । ଯେ ମୋର ଇଚ୍ଛା । କାହାର କିଛି ଅଧିକାର ନାହିଁ । ତୁମର ଭୟର କାରଣ କଅଣ ? (ଉତ୍ତମପ୍ରତି) ବାବା ! ତୁ ତ ସବୁ ଦିନ କୋଳରେ ବସୁଛୁ, ଆଜ ଏହି ବାଳକକୁ ଟିକିଏ ବସିବାକୁ ଦେ । ପୁଣି ତୁ ବସିବୁ ଯେ···

ଉତ୍ତମ—ହଁ ପିତା ! ଭଲ । (ଉଠିଯାଇ ବାଳକର ହାତ ଧରି ) ଆସ, ଆସ । (ଟେକିଆଣି ରାଜାଙ୍କ କୋଳରେ ବସାଇ) ପିତା ! ମତେ ଥରେ ବସିବାକୁ ଦିଅ ।

ରାଜା—ତୁ ପରେ ବସିବୁ । ସବୁ ଦିନେ ତ ବସୁଛୁ ।

ଉତ୍ତମ—ନା ପିତା ! ମୁଁ ଥରେ ତାଙ୍କସଙ୍ଗେ ଏକାଠି ବସିବି ।

ରାଜା—(ହସି) ବେଶ୍ , ଆସ । (କୋଳରେ ବସାଇ) ଅଚ୍ଛା କହ ତ ବାଳକ, ତୁମେ କାହାର ସନ୍ତାନ ?

ଧ୍ରୁବ—(ନିରୁତ୍ତର)

ସତ୍ୟ—କହ ଭାଇ, ଲଜ୍ଜା କଅଣ ? ଭୟ କାହିଁକି ?

ଧ୍ରୁବ—ମାମା ମନା କରିଛନ୍ତି ।

ରାଜା—(ଚମକପଡ଼ି) କି, ଏଥିରେ ମଧ୍ୟ କିଛି ଅଭିପ୍ରାୟ ଅଛି ? (ପ୍ରକାଶ୍ୟେ) ମୋ ନିକଟରେ କହିଲେ କିଛି କ୍ଷତି ନାହିଁ । ତୁମର ମାତା କିଏ ?

ଧ୍ରୁବ—ମୋର ମାତାଙ୍କ ନାମ ସୁନୀତି, ମୋର ନାମ ଧ୍ରୁବ, ପିତା···

ରାଜା—(ବ୍ୟସ୍ତଭାବେ) ଓଃ, ଅଶାନ୍ତ ହୃଦୟ ! ଥୟ ହୁଅ । (ଧ୍ରୁବର ମୁଖ ଚୁମ୍ବନ କରି) ହଁ ବାବା, ପିତା ତୋର ଏହି ନାରକୀ ।

ଉତ୍ତମ—(ଉଠିପଡ଼ି) ପିତା ! ଏ କଅଣ ମୋର ବଡ଼ ମାମାଙ୍କ ପୁଅ, ମୋର ଭାଇ ? (କୁଣ୍ଢାଇପକାଇ) ଆଉ ମୁଁ ତୁମକୁ କୁଆଡ଼େ ଛାଡ଼ିଦେବି ନାହିଁ ଭାଇ ! ଏତେ ଦିନଯାଏ ତୁମେ କେଉଁଠି ଥିଲ ? ପିତା ! ପିତା ! ୟାଙ୍କୁ କାହିଁକି ମୋପରି ପୋଷାକ ଦେଇ ନାହଁ ? ସେ କାହିଁକି ଋଷି-କୁମାରମାନଙ୍କପରି ଗେରୁଆ ଲୁଗା ପିନ୍ଧିଛନ୍ତି ?

ରାଜା—(ଅଧୋମୁଖେ) ନାହିଁ ବାବା ! ପୋଷାକ ଦେଇ ନାହିଁ ତୋର ମାତା । ଆଉ ଗେରୁଆ ଲୁଗା ପିନ୍ଧାଇଛି ମୋହି ପାପିୟସୀ ।

(ସକୋପେ ସୁରୁଚିର ପ୍ରବେଶ)

ସୁରୁଚି—କ, ମୁଁ ତେବେ ପାପିୟସୀ ? ନିର୍ଲଜ୍ଜ ! କାପୁରୁଷ ! ମୁଁ ଅନ୍ତରାଳରୁ ସବୁ ଶୁଣିଛି । (ଧ୍ରୁବର ହାତ ଟିଙ୍କି) ବେଶ୍ୟାପୁତ୍ର ! ତୋର ଏଡ଼େ ସାହସ ଯେ ଆସି ରାଜାକୋଳରେ ବସି-ପଡ଼ୁଛୁ ? ଯା, ଉଠ୍ । ତୋର ସେ ଭାଗ୍ୟ ନାହିଁ । ଯା, ଭଗବାନ୍‌ଙ୍କୁ ତପସ୍ୟା କର । ପୁଣି ମୋ କୋଳରେ ଜନ୍ମ ହେଲେ ବସିବୁ । ଯାଆ ।

(ଠେଲିଦେଲେ ଓ ଧ୍ରୁବ କାନ୍ଦିଲେ)

ଉତ୍ତମ—ଆଉ ମାମା ! ଏ କଅଣ ? ସେ ମୋର ଭାଇ···

ସୁରୁଚି—ହଁ ହଁ, ୟାର ଭାଇ ! ବେଶ୍ୟାର ପୁଅ, ତୋର ଭାଇ କିପରି ସେ ?

(ଉତ୍ତମକୁ ଟାଣି ନେଇଯିବା)

ରାଜା—(ଇତସ୍ତତଃ ଚାହିଁ ଅଧୋମୁଖେ ପଳାୟନ)

ଧର୍ମ—(ଧ୍ରୁବର ଲୁହ ପୋଛି) ଆ ଭାଇ, କାନ୍ଦୁଛୁ କାହିଁକି ? କିଛି ଚିନ୍ତା ନାହିଁ । ହରି ଅଛନ୍ତି, ସେ ବୁଝିବେ ।

(ସମସ୍ତେ ଧ୍ରୁବକୁ ନେଇ ଚାଲିଗଲେ)

## ତୃତୀୟ ଦୃଶ୍ୟ

(ପଥ—ଜଣେ ଭିଖାରୀ ଗାଇ-ଗାଇ ପ୍ରବେଶ)

(ଗୀତ)

ମନୁଆ ! ଫଳିବ ତୋ କରମର ଫଳ
ଏ ହାତର ପାପ ନୁହେ ସେ ହାତର କାଳ । ୦ ।
ରୋପିଲୁ ଯେ ତରୁବର
ଭୋଗିବୁ ଫଳ ତାହାର,
ଏଥକୁ କାହିଁକି ଆଉ ହେଉଛୁ ବିକଳ । ୧ ।

(ଗାଇ-ଗାଇ ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(ରାଜଦରବାର—ରାଜା ଆସୀନ—ବନ୍ଦୀ ଓ ପ୍ରହରୀଗଣ)

ରାଜା—କହ ଅପରାଧି ! ତୁମର ଏ ଅପରାଧର ଦଣ୍ଡ···

ବନ୍ଦୀ—ଦଣ୍ଡବିଧାନ ରାଜାଙ୍କ ଆୟତ୍ତ । ବନ୍ଦୀ ଦଣ୍ଡ-ଗ୍ରହଣଲାଗି ପ୍ରସ୍ତୁତ; କିନ୍ତୁ ତା ପୂର୍ବରୁ ମୋର···

ରାଜା—କିଛି କହିବାର ଅଛି ? ହଉ, କହ ।

ବନ୍ଦୀ—ମୁଁ ଅପରାଧୀ ହୋଇପାରେ; କିନ୍ତୁ ମୁଁ ଏ ରାଜ୍ୟର ରାଜାଙ୍କଠାରୁ ଅଧିକ ଅପରାଧୀ ବୋଲି ଆପାତତଃ ମୋର କ୍ଷୁଦ୍ର ବୁଦ୍ଧିର ବିବେଚନାରେ ମନେ ହୁଏ ନାହିଁ । ମୁଁ ଯାହା କରିଛି, ନ୍ୟାୟର ନିମିତ୍ତ ଆଉ ସେ ସ୍ୱୟଂ ଅନ୍ୟାୟର ଅବତାର । ମୁଁ ଈଶ୍ୱରଙ୍କର ଅଭିପ୍ରେତ କାର୍ଯ୍ୟ କରିଛି ଆଉ ସେ ପିଶାଚର ଅନୁଗତ କିଙ୍କର । ମୁଁ ରକ୍ଷକର କାର୍ଯ୍ୟ କରିଛି ଆଉ ସେ ଭକ୍ଷକ ପାଲଟିଛନ୍ତି । ଏଇ ମୋର ଅପରାଧ । ଘୋର ଅପରାଧୀ କେବେ ଜଗତ-ଚକ୍ଷୁରେ ଅପରାଧୀ ବୋଲି ପ୍ରମାଣିତ ନିରପରାଧର ଦଣ୍ଡବିଧାନକୁ ସମର୍ଥ ନୁହେଁ ।

ରାଜା—(ରାଗରେ) ବନ୍ଦୀ !

ବନ୍ଦୀ—ନା, ନୁହେଁ । ସହସ୍ର ବାର କହେ—ନୁହେଁ ।

ରାଜା—ପ୍ରହରୀ ! କଟୁଆଳକୁ ଆଦେଶ ଦିଅ, ଶୀଘ୍ର ବଧଭୂମିକୁ ନେଇ ଉଦ୍ଧତର ମସ୍ତକ ଛେଦନ କରୁ ।

ପ୍ରହରୀ—ଯେ ଆଜ୍ଞା ମହାରାଜ !

ରାଜା—(ଗମନୋଦ୍ୟତ)

ବନ୍ଦୀ—କିନ୍ତୁ ମହାରାଜ ! ମୋର କଥା ଶେଷ ହୋଇ ନାହିଁ ।

ରାଜା —(ଶଙ୍କିତ ମନେ ଫେରିଆସି) ତେବେ ତୁମେ କ'ଣ ଚାହଁ ? ତୁମେ ଅପରାଧୀ ବୋଲି ଅସ୍ୱୀକାର କର ?

ବନ୍ଦୀ—ହଁ ମହାରାଜ !

ରାଜା—କିପରି ? (ବସିଲେ)

ବନ୍ଦୀ—ସେ କଥା ସ୍ୱାମୀଠାରୁ ବିଚାର ହେଉ ।

ରାଜା—କିଏ ଅଛ ?

ନେପଥ୍ୟେ—ମହାରାଜ !

ରାଜା—ଯାଅ, ସ୍ୱାମୀକରଣଙ୍କୁ ଡାକିଆଣ ! ସେ ଅପରାଧୀର ଅପରାଧସମ୍ବନ୍ଧ ଜଣାଇଦେବେ ।

ଦାସୀ—ଯେ ଆଜ୍ଞା ମହାରାଜ !

(ଚାଲିଗଲା ଓ ପୁଣି ସ୍ୱାମୀକରଣଙ୍କୁ ନେଇ ପ୍ରବେଶ)

ରାଜା—ସ୍ୱାମୀକରଣେ ! କହିବଟି ବନ୍ଦୀର ଅପରାଧ ।

ସ୍ୱାଃ କଃ—(ତାଳପତ୍ର ଦେଖି) ପ୍ରଥମେ ରଘୁନାଥ ସାମନ୍ତଙ୍କ ସର୍ବସ୍ୱ ଅପହରଣ, ଦ୍ୱିତୀୟରେ ହିରେନ୍ଦ୍ର ଦେବଙ୍କ ଗଣ୍ଡାଘର ଲୁଣ୍ଠନ, ତୃତୀୟରେ ନୂତନ ମନ୍ତ୍ରୀଙ୍କୁ ବନ୍ଧନୀକରଣ ଓ ଚତୁର୍ଥରେ ମଦନ ସିଂହଙ୍କର ହତ୍ୟା ।

ରାଜା—ଶୁଣିଲ ତ ଅପରାଧ ! ଏଥିରୁ କେଉଁଥିରେ ତୁମେ ଅପରାଧୀ ନୁହଁ ?

ବନ୍ଦୀ—ସ୍ୱାମୀ ! ଅନୁମତି ହେଉ ଅଧୀନକୁ, ଯାହା କହିବାର, କହିବ ।

ରାଜା—କହ ।

ବନ୍ଦୀ—ମୋର ପ୍ରଥମ ଅପରାଧ—ରଘୁନାଥ ସିଂହ ନିତାନ୍ତ ଧର୍ମଦ୍ରୋହୀ ଓ ପ୍ରଜାପୀଡ଼କ । ତେଣୁ ତାଙ୍କର ଦଣ୍ଡ ଅବଶ୍ୟ କର୍ତ୍ତବ୍ୟ । ସେ ଧନ···

ରାଜା—ହଁ, ତେବେ ତାଙ୍କ ଧନ କଅଣ ହେଲା ?

ବନ୍ଦୀ—ସ୍ୱର୍ଣ୍ଣପୁର କ୍ଷେତ୍ରରେ ଏକ ଶିବ-ମନ୍ଦିର ନିର୍ମାଣ କରାଇ ତହିଁର ସେବା-ପୂଜାନିମିତ୍ତ ସମସ୍ତ ଆୟୋଜନ କରାଯାଇଅଛି । ଏଥିନିମିତ୍ତ ମୁଁ ଭଗବାନ୍‌ଙ୍କ ନିକଟରେ ଅପରାଧୀ ନୁହେଁ, ଆଉ ମୋର ଦ୍ୱିତୀୟ ଅପରାଧ—ସ୍ୱାମୀଙ୍କ ଭୁଲ ବୁଝାମଣା-ଯୋଗୁଁ ଓ ସର୍ବଦା ଦୁଷ୍ଟା ରାଣୀଙ୍କ ବଶ ହୋଇ ରହିବାରୁ ସ୍ୱାମୀଙ୍କର ହୀରପୁର ଗଣ୍ଡାଘର ଲୁଣ୍ଠନ କରି ହିରେନ୍ଦ୍ର ଦେବ ସମସ୍ତ ଧନ ଆତ୍ମସାତ୍ କଲେ; ତେଣୁ ତାହା ଲୁଣ୍ଠନ କଲୁଁ ।

ରାଜା—(ଆଶ୍ଚର୍ଯ୍ୟ ହୋଇ) କି ଆଶ୍ଚର୍ଯ୍ୟ ! ହୀରପୁର ଗଣ୍ଡାଘର ଲୁଣ୍ଠିତ ହୋଇଅଛି ? ସ୍ୱାମୀକରଣେ ! ହୀରପୁର ଗଣ୍ଡାଘର କଥା କ'ଣ ଜାଣ ?

ସ୍ୱାଃ କଃ—ନାହିଁ ସ୍ୱାମୀ ! ମୁଁ ତ ସେସବୁ କିଛି ଶୁଣି ନାହିଁ, କେଜାଣି···

ରାଜା—(ବିରକ୍ତ ହୋଇ) ତେବେ ଆମ୍ଭଙ୍କୁ କିଛି ଜଣାଇ ନାହିଁ କାହିଁକି ? ବନ୍ଦୀ ! ସେ ଧନରତ୍ନ ?

ବନ୍ଦୀ—ରାଜାଙ୍କନିମିତ୍ତ ରକ୍ଷିତ ଅଛି । ସମୟ ହେଲେ ସ୍ୱାମୀରେ ଉଇଠ ହେବ ।

ରାଜା—ବେଶ୍, କହିଯାଅ ।

ବନ୍ଦୀ—ନୂତନ ମନ୍ତ୍ରୀ ନିତାନ୍ତ ଉଦ୍ଧତ ଓ ତାଙ୍କର ଅତ୍ୟାଚାରହେତୁରୁ ସେ ଶାସ୍ତି ଭୋଗକଲେ । ଆଉ ମୋର ଚତୁର୍ଥ ଅପରାଧ—ସେ କଥା ସ୍ମରଣ କଲେ ମୋର ହୃତ୍‌କମ୍ପ ହୁଏ । ସେହି

ନାରକୀ ହିଁ ରାଜ୍ୟ ଅଧୋପତନର ମୂଳ କାରଣ । ଦୁଷ୍ଟା ରାଣୀଙ୍କୁ କୁପରାମର୍ଶ ଦେଇ ମୋ ପରବର୍ତ୍ତୀମାନ ସିଂହାସନପରେ ମଧ୍ୟ ସେ ସନ୍ତୁଷ୍ଟ ନ ହୋଇ ନିଜେ ରାଜ୍ୟର ରାଜା ହେବା ମାନସରେ ବୃଦ୍ଧ, ପ୍ରଜାହିତକର୍ମୀ, ରାଜଭକ୍ତ ମନ୍ତ୍ରୀଙ୍କୁ ସବଂଶ ରାଜ୍ୟରୁ ନିର୍ବାସିତ କରାଇଲା । ତଥାପି ସନ୍ତୁଷ୍ଟ ନ ହୋଇ ଅର୍ଦ୍ଧାଙ୍ଗ ନିର୍ବାସିତା ଅନାହାର-ପ୍ରପୀଡ଼ିତା ହତଭାଗିମାର···(ଅଶ୍ରୁବର୍ଷଣ) ଓଃ, ମହାରାଜ ! କ୍ଷମା କରନ୍ତୁ ମୋତେ । ଆଉ ସହିହେଉ ନାହିଁ, କଅଣ କହିବ ? ମନ ଥିଲା—ମନକଥା ମନରେ ମିଳାଇଯିବ । ନା, ଥାଉ···

ରାଜା—(ଅଧୀର ହୋଇ) କହ ବନ୍ଦୀ ! ଭୟ ନାହିଁ ।

ବନ୍ଦୀ—ଭୟ ନୁହେଁ ମହାରାଜ ! ମୁଁ କାପୁରୁଷ ବା ଭୀରୁ ନୁହେଁ । ମୃତ୍ୟୁ ! ସେ ତ ଘରର କଥା । ଜନ୍ତୁକାକୁ ଜାଣେ, ମଣିଷର ମରଣ ଧ୍ରୁବ; କିନ୍ତୁ ଯେଉଁ କଥା ମୁଖରେ ଆଣିବାକୁ ଲଜ୍ଜା ଲାଗେ ତାକୁ ହିଁ ମୋର ଭୟ । ଓଃ, ମହାରାଜ ! ସେ ନର-ପିଶାଚ ଦୁଃଖିମାର ଧନ ଧ୍ରୁବର ହତ୍ୟା-ଲାଗି ଅରଣ୍ୟକୁ ଯାଇଥିଲା । ସହିପାରିଲି ନାହିଁ ମହାରାଜ ! ପିଶାଚର ପାଶ୍ଚାଦ୍‌ଗମନ କରି ତା'ର ପ୍ରାଣହତ୍ୟା କରିଛି । କହନ୍ତୁ ସ୍ୱାମୀ ! ଏ ଅପରାଧ କାହାର ? ରାଜାଙ୍କର ନା ବନ୍ଦୀର ? ଯେ ଶାସନ-ଦଣ୍ଡ ଧାରଣ କରି ଜଣେ ସାମାନ୍ୟ ନାରୀର ଇଙ୍ଗିତରେ ପରିଚାଳିତ ହୁଏ, ସେପରି ନିର୍ବୋଧ ରାଜାଙ୍କୁ ରାଜଚ୍ୟୁତ କରିବା ଉଚିତ ନୁହେଁ କି ?

ରାଜା—(ଉଠିପଡ଼ି) ଥାଉ ବନ୍ଦୀ ! ବହୁତ କହିଲଣି । ମୋ କୃତକର୍ମର ଫଳ ଭୋଗୁଅଛି । ପ୍ରହରୀ, ଶୀଘ୍ର ବନ୍ଦୀର ବନ୍ଧନ ଉନ୍ମୋଚନ କର ।

ବନ୍ଦୀ—ନା, ଥାଉ ମହାରାଜ ! ମୁଁ ଏପର୍ଯ୍ୟନ୍ତ ମଧ୍ୟ ବନ୍ଦୀ । ମୋର ବକ୍ତବ୍ୟ ଶେଷ ହୋଇ ନାହିଁ । ସ୍ୱାମୀଙ୍କ କୁଶାସନଫଳରୁ ଉତ୍ତର-ପଶ୍ଚିମାଞ୍ଚଳରେ ବିଦ୍ରୋହର ନିଆଁ ଜଳିଉଠିଛି । ଶ୍ରୀଘ୍ରମୂର ଅବଗତ ଅଛି ତ ?

ରାଜା—ନା, ଜଣା ନାହିଁ ।

ବନ୍ଦୀ—ସ୍ୱାମୀ ପରେ ବୁଝିବେ । ଏ ବିଦ୍ରୋହ କେବଳ ଅଧମ ଦମନ କରିପାରିଛି । ନଚେତ୍ ସ୍ୱାମୀ ଆଉ ସ୍ୱାମୀ ହୋଇ ନ ଥା'ନ୍ତେ । ସ୍ୱାମୀଙ୍କ ଅଜ୍ଞାତରେ ମୁଁ ଏହିସବୁ ଅପରାଧ କରିଛି, ତେଣୁ ମୁଁ ଦଣ୍ଡନୀୟ । ମୋତେ ଏ ଥର ଦଣ୍ଡାଦେଶ ହେଉ ମହାରାଜ !

ରାଜା—ଥାଉ ବନ୍ଧୁ ! ଆଉ ଲଜ୍ଜା ଦିଅ ନା । ଆସ । (ଆଲିଙ୍ଗନ କରିବାକୁ ଚାଲିଗଲେ—ଏହି ସମୟରେ ବନ୍ଦୀ ଛଦ୍ମବେଶ ଖୋଲିବାର ଦେଖି ରାଜା ଆଶ୍ଚର୍ଯ୍ୟରେ) କିଏ ? ମହାମନ୍ତ୍ରୀ, ତୁମେ ? କି ଦୁର୍ଭାଗ୍ୟ ମୋର ! (ମହାମନ୍ତ୍ରୀଙ୍କୁ ଆଲିଙ୍ଗନ କଲେ ।)

(ପଟ୍ଟପତନ)

---

## ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

(ବନ୍ୟ କୁଟୀର)

ସୁମାତି—କନକ ! ଦେଖିଲୁ ମୋ କପାଳକୁ । ଅମାନିଆ ହୋଇ ଗଲା ସେ କେତେବେଳେ ଆସୁଛି କେଜାଣି । ମୋତେ ତ ଜମା ସୁଖ ଲାଗୁ ନାହିଁ । ଖାଇ ନାହିଁ, ସେଥିରେ ପୁଣି ଏତେ ବାଟ ! କି ବିକଳ ହେଉଥିବ ! କଅଣ କରିବ କହ ତ ?

କନକ—ମା ! କାହିଁକି ବ୍ୟସ୍ତ ହେଉଛ ? ଏଇନାଗେ ନେଉଟିଆସିବେ ଯେ । ଥାଉ, ମୁଁ ଫଳମୂଳ ଆଣିଛି, ଦି'ଟା ଖାଇଦେବ । ସକାଳୁ ତ ପେଟରେ କିଛି ପଡ଼ି ନାହିଁ । (ଅନ୍ତରାଳକୁ ଚାହିଁ) ଆଲୋ, ତୁଣ୍ଡ-କଥା ତୁଣ୍ଡରେ ଅଛି; ହେଇ ତ ଆଇଲେଣି ପରା ! (ଧ୍ରୁବର ପ୍ରବେଶ) ଇଏ କ'ଣ ? କାନ୍ଦୁଛ କାହିଁକି ? କ'ଣ ହେଲା ?

ସୁମାତି—କଅଣ ହବ ଆଉ; ଯାହା ଭାବିଥିଲି, ସେଇଆ ହେଇଥିବ । (ଧାଇଁ ଯାଇ ଧ୍ରୁବକୁ କୋଳ କରି) କଅଣ ହେଲା ଧନ ?

ଧ୍ରୁବ—ସାନ ମାମା ମୋତେ ବେଶ୍ୟାପୁଅ ବୋଲି କହିଲେ । ବାବା ତ ମୋତେ ନେଇ ତାଙ୍କ କୋଳରେ ବସାଇଥିଲେ, ସେ ଉଠାଇଦେଇ କହିଲେ, ତପସ୍ୟା କଲେ ଯାଇ ମୁଁ ରଜା-କୋଳରେ ବସିପାରିବ । ମାମା, ମୁଁ ତପସ୍ୟା କରିବ ।

ସୁନୀତି—ଛି ଧନ ! ସେ କଥା ମନରେ ଆଣ ନା । ଅରଣ୍ୟଭିତରେ ବାଘ-ଭାଲୁଙ୍କ ଘର । ତୁ ପିଲା-ଲୋକ । ତାଙ୍କ ମେଳରେ କି ତପସ୍ୟା କରିବୁ ? ତୁ ଆମର ଏଇଠି କୁଡ଼ିଆଭିତରେ ଥାଇ ହରିଙ୍କି ଡାକ । ସେ ତୋ ଗୁହାରି ଶୁଣିବେ ଯେ । ସେ ବଡ଼ ଦୟାଳୁ, ଦୁଃଖୀର ଦୁଃଖ ଦେଖିଲେ ସହି-ପାରନ୍ତି ନାହିଁ । ଆକୁଳ ହୋଇ ତାଙ୍କୁ ଡାକିଲେ ସେ ଆରତ ମୋଚନ କରନ୍ତି ।

ଧ୍ରୁବ—ହରି କେମିତିକା ମାମା ?

ସୁନୀତି—ସେ ଚତୁର୍ଭୁଜ, ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ, ଶଶିବର୍ଣ୍ଣ, ଶୁକ୍ଳାମ୍ବରଧର ।

ଧ୍ରୁବ—ତପସ୍ୟା କଲେ କଅଣ ତାଙ୍କୁ ଦେଖିପାରିବ ?

ସୁନୀତି—ତୁ କାହୁଁ ପାଇବୁ ? ବଡ଼-ବଡ଼ ମୁନି-ଋଷି ତାଙ୍କୁ ସହଜେ ଦେଖିପାରନ୍ତି ନାହିଁ । ମୋ ଧନଟା ପରା, ସେଥିକି ଆଉ ମନ ବଳା ନା । ଆ, ସଞ୍ଜ ହୋଇଆସିଲାଣି, କିଛି ଖାଇ ନାହୁଁ, ଗଣ୍ଡେ ଖାଇ ମୋ କୋଳରେ ଶୋଇପଡ଼ିବୁ ।

ଧ୍ରୁବ—ନା, ମୁଁ ହରିଙ୍କି ନ ପାଇଲେ କିଛି କରିବ ନାହିଁ—ସତ୍ୟ କରୁଛି ।

ସୁନୀତି—ହା ଦଇବ ! ପୁଅ ବୋଲି କାଣି-ଆଖିରେ କଜଳଗିରା । ମୁଁ ରଣ୍ଡାଚୁଣୀ କାହିଁକି ହରି-ନାମ ତାକୁ କହିମଲିଟି ! ଯାଏଁ, କେମିତି ଭୁଲାଇ ଶୁଆଇପକାଏ । ବାପା ! ତୁ ଗଲେ ମୁଁ ଆଉ କାହାକୁ ଚାହିଁ ବଞ୍ଚିବ ? ସାନ ମାମା କହିଲେ ତ କହିଲେ । ସେଥିରୁ ଆମକୁ କଅଣ ମିଳିବ ? ମୁଁ ତା'ର ଉପାୟ କରିବ । ଚାଲ୍, ତୋର କାହିଁକି ଚିନ୍ତା ପଡ଼ିଛି ? ତୁ କାହିଁକି ଏତେ କଷ୍ଟ ସହିବୁ, କହିଲୁ ?

(ହାତ ଧରି ଟାଣିନେଲେ)

ଧ୍ରୁବ—ନାଇଁ ମାମା ! ମୋତେ ମନା କର ନା; ମୁଁ ନିଶ୍ଚେ ସେ ହରିଙ୍କି ଖୋଜିବାକୁ ଯିବ, ମୋତେ ଛାଡ଼ିଦିଅ । (ଅଳି କଲା)

---

## ଦ୍ୱିତୀୟ ଦୃଶ୍ୟ

(କୁଟୀର—ସୁନୀତି ଓ ଧ୍ରୁବ ଶୋଇଥିଲେ)

ଧ୍ରୁବ—(ଧୀରେ-ଧୀରେ ଉଠି ମା'ଙ୍କ ନିଃଶ୍ୱାସ ବାରି) ଠିକ୍, ମାମା ଶୋଇପଡ଼ିଛନ୍ତି । ଏତିକିବେଳେ ଚାଲିଯିବ । ମାମା ! ତମଠାରୁ ବିଦାୟ ନେଉଛି । ହରିଙ୍କି ପାଇଲେ ଫେରିବ, ନ ହେଲେ ଏଇ ଶେଷ ଦେଖା । କାନ୍ଦିବ ନାଇଁ । ମୋତେ ଆଶୀର୍ବାଦ କର ମାମା !

(ପ୍ରଣାମ କରି ଧୀରେ-ଧୀରେ ଚାଲିଗଲେ)

ସୁନୀତି—(କିଛି କ୍ଷଣପରେ ନିଦରୁ ଉଠି ଚାରିଆଡ଼କୁ ଅନାଇ) ଏଁ, କୁଆଡ଼େ ଗଲା ? ଧ୍ରୁବ ! ଧ୍ରୁବ ! ଏତେ ରାତିରେ ଉଠି କୁଆଡ଼େ ଚାଲିଗଲା ! (କାନ୍ଦିବା) କନକ ! କନକ ! ଧ୍ରୁବ ମୋର କେଉଁଆଡ଼େ ଚାଲିଗଲା । କ'ଣ କରିବ ? ହୃଦୟ, ଏତେ ଯାତନା ସହି ତୁ ରହିଛୁ ? ଫାଟି ଯାଉନୁ ! ଏତେ କଷଣ ଆଉ ସହିପାରିବ ନାହିଁ । ହରି ! ତମର କ'ଣ ଏଇ ଇଚ୍ଛା ? ଆଜନମ ସେବା କଲି ଏଇ କ'ଣ ତା'ର ଫଳ ? ଏଇ କ'ଣ ତମର ଦୟା ? ଏଇ ତମର ବିଚାର ? ଧ୍ରୁବ ! ଗଲା-ବେଳେ ଥରେ ତୋର ଦୁଃଖିନୀ ମା କଥା ଭାବିଲୁ ନାହିଁ ? ସେ ତୋଲାଗି କ'ଣ ହେବ, ଥରେ ଚିନ୍ତା କଲୁ ନାହିଁ ? ବିଧାତା··· (ପଡ଼ିଗଲେ)

---

## ତୃତୀୟ ଦୃଶ୍ୟ

(ଅରଣ୍ୟ—ଧ୍ରୁବ)

ଧ୍ରୁବ—(ଗୀତ)

ଏ କି ମୋ ହରି ଗାଏ
କୁହୁ କୁହୁ କୁହୁ ତାନେ
ପତର-ଗହଳେ (କେବେ) ଲତିକା ବିତାନେ ।୧।
ହରି ହେ, ହରି ହେ, ହରି ହେ
ଜୟ ମୁକୁନ୍ଦମୁରାରି ହେ,
ଲୁଚିଅଛ କାହିଁ ଦେଖାଦିଅ ସାଇଁ
ରହିଅଛ କି'ବା ମାନେ ? ।୨।

(ପାଗଳପରି ଗଛ ଫୁଲ ପ୍ରଭୃତିକୁ କୁଣ୍ଢାଇ)

ହରି ! ହରି ! ତୁମେ ଆସିଛ ? ମୋ ପାଖକୁ ଆସ । ମୁଁ ତୁମକୁ କେତେ ଖୋଜିଲିଣି ।

(ନାରଦଙ୍କ ପ୍ରବେଶ)

ନାରଦ—(ଦୂରରୁ) ବାଳକର କି ଦୃଢ଼ ପ୍ରତିଜ୍ଞା ! କି ଅଟଳ ନିର୍ଭୀକତା ! ଦେଖିଲେ ହୃଦୟରେ ଦୟାର ସଞ୍ଚାର ହୁଏ । ଯାଏଁ, ଦେଖେଁ ।

ଧ୍ରୁବ—(ନିକଟକୁ ଆସି ପାଦତଳେ ପଡ଼ି) ତୁମେ କଅଣ ମୋର ହରି ? ମୁଁ ତୁମକୁ ବନବନ୍ତ କେତେ ଡାକୁଛି, ଟିକିଏ ହେଲେ ଶୁଣୁ ନାହଁ ? ତୁମକୁ କ'ଣ ଡାକ ଶୁଭୁ ନାହିଁ ?

ନାରଦ—(ଉଠାଇ) ଉଠ ବାବୁ ! ମୁଁ ହରି ନୁହେଁ ।

ଧ୍ରୁବ—ଏଁ, ସତ କହ, ତୁମେ ହରି ନୁହଁ ? ତେବେ ତୁମେ କିଏ ? ମୋ ହରିଙ୍କି ଦେଖିଛ ?

ନାରଦ—ନାଁ, ମୁଁ ହରି ନୁହେଁ । ମୁଁ ତାଙ୍କର ଜଣେ ସେବକ ମାତ୍ର ।

ଧ୍ରୁବ—ମୋତେ କହିଦେବ, ମୁଁ ତାଙ୍କୁ କେଉଁଠି ଖୋଜିଲେ ପାଇବି ?

ନାରଦ—ତୁମେ ଶୁଦ୍ଧଭାବରେ ଶୁଦ୍ଧାସନରେ ବସି ଜପ କଲେ ପାଇବ ।

ଧ୍ରୁବ—ମୋତେ ତେବେ କହିଦିଅ, କପରି ଜପ କରିବାକୁ ହୁଏ ।

ନାରଦ—ବେଶ୍, ଉତ୍ତମ । (ନିକଟକୁ ଯାଇ କାନରେ କହିଲେ) ଏଇ ମନ୍ତ୍ର ଜପ କରୁଥାଅ । ତପସ୍ୟାରେ ଅନେକ ବାଧା-ବିଘ୍ନ ପଡ଼ିବ । ନିଶ୍ଚଳଭାବରେ ବସି ନୟନ ମୁଦ୍ରିତ କରି ଜପ କରୁଥିବ । ଯେ ଯାହା କରୁ ଭୟ କରିବ ନାହିଁ କିମ୍ବା କାହାରି ଆଡ଼କୁ ଚାହିଁବ ନାହିଁ । ହରିଙ୍କର ପ୍ରକୃତ ଉଦୟବେଳେ ତୁମ ନୟନ-ସମ୍ମୁଖରେ ତୁମ୍ଭେ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଦିବ୍ୟ ମୂର୍ତ୍ତିଙ୍କର ଆବିର୍ଭାବ ଦେଖିପାରିବ । ସେତେବେଳେ ନୟନ ମେଲି ତାଙ୍କର ପଦତଳେ ପ୍ରଣାମ କରିବ । ଆଚ୍ଛା, ଆମ୍ଭେ ସ୍ୱର୍ଗକୁ ଯିବୁଁ । ଆମ୍ଭେ ଦେବର୍ଷି ନାରଦ ।

ଧ୍ରୁବ—(ଭୂମିଷ୍ଠ ପ୍ରଣାମ କଲେ)

ନାରଦ—ସିଦ୍ଧ ହେଉ ବାଳକ ତୁମ ମନୋରଥ ।

(ଚାଲିଗଲେ)

ଧ୍ରୁବ—(ଉପବେଶନ କରି)

(ଗୀତ)

ଘନଶ୍ୟାମରମ୍ୟଂ ମୁକୁନ୍ଦଂ ଶ୍ରୀବକ୍ଷଂ
ନମାମି ହରି ତ୍ୱଂ ନମାମି ନମାମି ।

---

## ଚତୁର୍ଥ ଦୃଶ୍ୟ

(ଇନ୍ଦ୍ରସଭା—ଅପସରୀମାନଙ୍କ ନୃତ୍ୟ । ନୃତ୍ୟପରେ ଅପ୍ସରୀମାନେ ଚାଲିଗଲେ ।)

ଇନ୍ଦ୍ର—(ଚିନ୍ତିତଭାବେ) ଦେବଗୁରୁ ! ଏହାର କୌଣସି କାରଣ ଅନୁମାନ କରିପାରୁଛ କି ? କାଲି ରାତି ଦ୍ୱିପ୍ରହର ସମୟରେ ସ୍ୱର୍ଗପୁର କାହିଁକି ଘନ-ଘନ କମ୍ପିତ ହେଲା, ତେଣୁ ମୁଁ ଅତ୍ୟନ୍ତ ଚିନ୍ତିତ ।

ନାରଦ—ଦେବରାଜ ! ମର୍ତ୍ତ୍ୟରେ ଜଣେ ବାଳକ ତପସ୍ୟା କରିବାର ଆମ୍ଭେ ଦେଖିଆସିଛୁଁ ।

ମନେ କରୁଁ, ତାହାର ତପସ୍ୟାଫଳରେ ଏହିପରି ସ୍ୱର୍ଗପୁରର ଅମଙ୍ଗଳ ସୂଚନା ମିଳୁଛି ।

ଇନ୍ଦ୍ର—(ଆଶ୍ଚର୍ଯ୍ୟଭାବେ) ଜଣେ ବାଳକ !

ନାରଦ—ହଁ, ଜଣେ ବାଳକ ।

ଇନ୍ଦ୍ର—ଆଶ୍ଚର୍ଯ୍ୟ, କିଏ ସେ ବାଳକ ?

ନାରଦ—ଉତ୍ତାନପାଦ ରାଜାଙ୍କ ପୁତ୍ର ଧ୍ରୁବ ।

ଇନ୍ଦ୍ର—(ହତାଶଭାବେ) ତେବେ ଆଉ ଆମ୍ଭର କି ଆଶା ? ତପସ୍ୟା ପୂର୍ଣ୍ଣ ହେଲେ ସେ ଯେ ଆମ୍ଭର ଇନ୍ଦ୍ରତ୍ୱ ନ ନେବ, ଏ କଥା ଅସମ୍ଭବ କ'ଣ ?

ନାରଦ—ଆମ୍ଭେ ମଧ୍ୟ ସେହିି ଅନୁମାନ କରୁଁ । ରାଜପୁତ୍ର ଆଉ କେଉଁଥିଲାଗି ତପସ୍ୟା କରିପାରେ ?

କୁବେର—ତାହା ଅସମ୍ଭବ ନୁହେଁ । ଇନ୍ଦ୍ରପଦର ଲାଳସାରେ ବୋଧ ହୁଏ ତପସ୍ୟା କରୁଛି ।

ଇନ୍ଦ୍ର—ଉପାୟ ?

କାମଦେବ—ଭୟ ନାହିଁ ଦେବ ! ସଖା ଯା'ର ବସନ୍ତ, କି ଚିନ୍ତା ଆଉ ?

ବସନ୍ତ—ସନ୍ଦେହର ଅବକାଶ ନାହିଁ, ମୁଁ ତାହାର ଉପାୟ କରିବି । ମଦନସମ୍ମୁଖରେ ମୁନି-ଋଷି-ମାନେ ତ ସ୍ଥିର୍, ଆଉ ଏ ତ ସାମାନ୍ୟ ବାଳକ !

ଇନ୍ଦ୍ର—ଧନ୍ୟ ହେଲି । ଯାଅ କାମଦେବ ! ଅଚିରେ କାର୍ଯ୍ୟ ସମାଧାନ କର । ରମ୍ଭା, ଉର୍ବଶୀ, ମେନକା ପ୍ରଭୃତିଙ୍କୁ ସଂବାଦ ଦିଅ—କରନ୍ତୁ ତା'ର ତପସ୍ୟା ଭଗ୍ନ । ସାମାନ୍ୟ ମର୍ତ୍ତ୍ୟର ବାଳକ ହୋଇ ଏତେ ଦର୍ପ ତା'ର କରିବାକୁ ଇନ୍ଦ୍ରସିଂହାସନ ଆଶା ?

କାମଦେବ—ନିଶ୍ଚିନ୍ତ ରହନ୍ତୁ ଦେବରାଜ ! ଅବଶ୍ୟ ତାହାର ବିହିତ ଉପାୟ କରିବୁଁ । ଅବିଳମ୍ବେ ଫେରିଆସିବୁଁ ।

ବସନ୍ତ ଓ କାମଦେବ—(ପ୍ରଣାମ କରି ଚାଲିଗଲେ)

ଇନ୍ଦ୍ର—ଦେବବୃନ୍ଦ ! ଆଜିର ସଭାକାର୍ଯ୍ୟ ଏଠାରେ ସମାପନ ହେଉ ।

ସମସ୍ତେ—(ଉଠି) ଜୟ ଦେବରାଜ !

---

## ପଞ୍ଚମ ଦୃଶ୍ୟ

(ବନପଥ—ସୁମନ୍ତ ପାଗଳମାପରି ଆସୁଥିଲେ । ପଛରୁ କନକ ପ୍ରବେଶ)

କନକ—(ଆଗକୁ ଆସି) ଏ କଅଣ ? ବେଳବୁଡ଼ ହେଲାଣି, ବଣଭିତରେ ବାଘଭାଲୁ ମେଳା-ମେଳା; ତୁମେ ଘର ଛାଡ଼ି ଏକୁଟିଆରେ···

ସୁମନ୍ତ—ତାକୁ ଦେଖିଲ କନକ ? ଏଇଠି କୋଉଠି ତା ତୁଣ୍ଡ ଶୁଭିଲା ମତେ । ଡାକୁଚି, ମାମା ମାମା ବୋଲି । ତୁମେ ଦେଖି ନାହିଁ ତାକୁ ?

କନକ—ବଣସାରା ତ ମୁଁ ଆଉ ଋଷି-ପିଲାମାନେ ଧ୍ରୁବକୁ ଖୋଜିବୁଲୁଛୁଁ । ସ୍ୱଣ୍ଟୁଁ-ସ୍ୱଣ୍ଟୁଁ ତିନି ଦିନ କଟିଗଲାଣି । କାହାରି ଖିଆପିଆ ନାହିଁ । ଦେଖା-ମିଳୁ ନାହିଁ ତାଙ୍କର । ତୁମେ କୁଡ଼ିଆକୁ ଫେରିଚାଲ । ତୁମକୁ ଛାଡ଼ିଦେଇଆସି ତାକୁ ପୁଣି ଖୋଜି-ବାହାରିବୁଁ ଆମେମାନେ ।

ସୁମନ୍ତ—ସେ କଅଣ ବା ସତରେ···

(କଥା କହିପାରିଲେ ନାହିଁ । କାନ୍ଦିଉଠିଲେ)

କନକ—(ସୁମନ୍ତଙ୍କ ଲୁହ ପୋଛିଦେଇ) ତୁମେ ଏପରି ବିକଳ ହେଲେ ସମସ୍ତେ ଅଧୀର ହୋଇପଡ଼ିବେ । ଧ୍ରୁବର ସାଥୀପିଲାମାନେ ଏଣେ-ତେଣେ ଯାଇଛନ୍ତି । ବଣବାଟ ତ ତାଙ୍କୁ ଜଣା ନାହିଁ । ନଈକୂଳ, ପାହାଡ଼ତଳ—ସବୁ ଯାଗାରେ ସେମାନେ ଡାକ-ଡାକି ଖୋଜୁଛନ୍ତି । ନିଶ୍ଚେ କୋଉଠି ହେଲେ ଭେଟ ପାଇବେ ।

(ଜଣେ ଋଷିବାଳକଙ୍କ ପ୍ରବେଶ)

ସୁମନ୍ତ—ହେଇଟି, ମୋ ଧ୍ରୁବ ଆସିଲାଣି ।

ଋଷିବାଳକ—ମାଆ, ମୁଁ ଧ୍ରୁବ ନୁହେଁ । ଆମ ସାଙ୍ଗ ଛାଡ଼ିଦେଇ ସେ ଏକୁଟିଆ କୁଆଡ଼େ ଘରୁ ପଳାଇଚି । ସମସ୍ତେ ତାକୁ ଖୋଜିବୁଲୁଛୁଁ । ତୁମେ ଆସ ଆମ ଗୁରୁଙ୍କ ପାଖକୁ । ସେ ତୁମକୁ ଡକାଇପଠାଇଛନ୍ତି ।

ସୁମିତ୍ର—ସେ କଅଣ ଜାଣନ୍ତି, ଧ୍ରୁବ ମୋର କୁଆଡ଼େ ଗଲା ?

କନକ—ସେ ସର୍ବଜ୍ଞ ଋଷି । ତାଙ୍କୁ ସବୁ କଥା ଜଣା । ସେ ଯେତେବେଳେ ଡକାଇଛନ୍ତି, ଚାଲ ତାଙ୍କ ପାଖକୁ ଯିବା; ଆସ ।

(ସମସ୍ତଙ୍କ ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

(ଇନ୍ଦ୍ର ସଭା)

ଇନ୍ଦ୍ର—କି ଅପମାନ ! ସାମାନ୍ୟ ବାଳକଦ୍ୱାରା ଆଜି ସ୍ୱର୍ଗବାସୀ ପରାଭୂତ ?

କାମଦେବ—ଦେବ ! ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ସାମାନ୍ୟ ବାଳକ, କାମ-ରସର ମାଦକତା କ'ଣ ଜଣା ତାକୁ । ଆମେମାନେ ପୂର୍ବରୁ ଚିନ୍ତା କରିବାର ଥିଲା ।

ବସନ୍ତ—ଭୂତ, ପ୍ରେତ ପଠାଇ ଭୟ ଦେଖାଇଲେ ଅବଶ୍ୟ ସଫଳତା ଲାଭ କରିପାରିବା ।

ଇନ୍ଦ୍ର—ଉପଯୁକ୍ତ ପ୍ରସ୍ତାବ । ଶୀଘ୍ର ବନ୍ଦୋବସ୍ତ କର ।

କାମଦେବ—ଆଉ ଅଷ୍ଟଦିଗପାଳଙ୍କୁ ଜଣାଇଦିଅ ଯେ ଆବଶ୍ୟକମତେ ସାହାଯ୍ୟ କରିବେ ।

ଇନ୍ଦ୍ର—ମୁଁ ଅତ୍ୟନ୍ତ ଅଧୀର ହୋଇପଡ଼ୁଛି । କର୍ତ୍ତବ୍ୟ-ଧାରଣଶକ୍ତି ଏକପ୍ରକାର ଲୁପ୍ତପ୍ରାୟ । ତୁମ-ମାନଙ୍କର ଯେପରି ଇଚ୍ଛା, ସେପରି କାର୍ଯ୍ୟ କରି ବାଳକର ତପସ୍ୟା ଭଗ୍ନ କର ।

କାମଦେବ—ହଁ, ଯଦି ସେଥିରେ ଆମେ କୃତକାର୍ଯ୍ୟ ନ ହେଉ, ତେବେ ଶେଷ ଉପାୟ ମାୟାଦେବୀଙ୍କ ଭରସା ।

ଇନ୍ଦ୍ର—ସେ ପ୍ରସ୍ତାବ ମଧ୍ୟ ମନ୍ଦ ନୁହେଁ ।

ସମସ୍ତେ—ଉତ୍ତମ ! ଉତ୍ତମ !

ଇନ୍ଦ୍ର—ଦେବବୃନ୍ଦ ! ବର୍ତ୍ତମାନ ସଭା ଭଙ୍ଗ କର । ଆମେ ନିଜେ ଏବିଷୟରେ ଆଲୋଚନାଲାଗି ମାୟାଦେବୀଙ୍କ ପାଖକୁ ଯାଉଅଛୁଁ । ତୁମେମାନେ ପିଶାଚ ପଠାଇ ବାଳକକୁ ଉଦ୍ୱେଜିତ କରିଅ ।

(ଆସନତ୍ୟାଗ)

ସମସ୍ତେ—ଚାଲ, ସମସ୍ତେ ଏହାର ପ୍ରତିକାର କରିବା ।

(ପଟ୍ଟପତନ)

## ପଞ୍ଚମ ଅଙ୍କ—ପ୍ରଥମ ଦୃଶ୍ୟ

(ତପଃନିରତ ଧ୍ରୁବ)

ଧ୍ରୁବ—ଘନଶ୍ୟାମରୂପଂ ମୁକୁନ୍ଦଂ ଶ୍ରୀବକ୍ଷଂ
ନମାମି ହରି ତ୍ୱଂ ନମାମି ନମାମି ।

(ଗୀତ ଗାଇ-ଗାଇ ନାରଦଙ୍କର ପ୍ରବେଶ)

(ଗୀତ)

ବସେ ଏକା ନୀରବରେ ତପେ ଏକ ଧୀରରେ
ନିରଭୟ ଅନ୍ତରେ ଜପି ମହାମନ୍ତ୍ରରେ ।
ଟଳିବ ନାହିଁ ଡରି ଝଞ୍ଜାପବନେ,
ଡରିବ ନାହିଁ ଦେଖି ମେଘ ଗଗନେ
ଶେଷେ ଆସି ଭେଟିବ ଥରି-ଥରି ସାଗରେ ॥

(ଗାଉ-ଗାଉ ପ୍ରସ୍ଥାନ)

(ମାୟାସୁମିତ୍ରର ପ୍ରବେଶ)

ମାୟାସୁମିତ୍ର—(ବିକଳ କମ୍ପିତ କଣ୍ଠରେ) ବାପ ମୋର ! ଧ୍ରୁବ ! ମୋତେ ଏକା ଛାଡ଼ିଦେଇ କୁଆଡ଼େ ଚାଲିଆସିଲୁ ? ଛି, ତତେ ଏ ବାଳୁତ ବୟସରେ ଏ କଷ୍ଟ କିଏ ଦେଲା ? ମୁଁ ରାଣୀ ହୋଇଥିଲି, ଏବେ ଚାଣ୍ଡାଳୁଣୀରୁ ହୀନ ହେଲି । ତେବେ ମଧ୍ୟ ତୋରିଲାଗି ମୋତେ ସେ ଦୁଃଖ ବାଧୁ ନ ଥିଲା । ମୋ ଆଖି ଫୁଟାଇ ଏବେ କୁଆଡ଼େ ଗଲୁ ? ଆସିଲୁ ବାପ ! ଆ, ମୋ କୋଳକୁ ଆ । ବନସ୍ତରେ ବାଘ-ଭାଲୁ ମେଲା-ମେଲା । ତୁ ଏ ଅବସ୍ଥାରେ କି କଷ୍ଟ ସହୁଛୁ ? ପୋଡ଼ିଯାଉ ଆମର ସେ ତପସ୍ୟା । ନ ଆସିଲେ ତୋ'ରିଲାଗି ଜୀବନ ହାରିବି ।

ଧ୍ରୁବ—(ପୁଷ୍ପପତ୍ର ଶ୍ଳୋକ ପାଠ କରିବା)

ସୁମନ୍ତ—(ସ୍ୱଗତ) ନା, ଦେଖୁଛି, ଏ ଫେଳିବାର ନୁହେଁ । ଯାଏ ସ୍ୱର୍ଗପୁରକୁ—ଇନ୍ଦ୍ରଙ୍କୁ ଜଣାଇବି ।

(ଚାଲିଗଲା)

---

## ଦ୍ୱିତୀୟ ଦୃଶ୍ୟ

(ଜଙ୍ଗଲ—ତପସ୍ୟାନିରତ ଧ୍ରୁବ)

ଧ୍ରୁବ— ଘନଶ୍ୟାମରୂପଂ ମୁକୁନ୍ଦଂ ଶ୍ରୀବତ୍ସଂ
ନମାମି ହରି ତ୍ୱଂ ନମାମି ନମାମି ॥

(ନାରାୟଣଙ୍କ ଆବିର୍ଭାବ)

ଧ୍ରୁବ—(ସ୍ୱଗତ) ଏ କଅଣ ? ସହସା ଏ କି ଭାବ ? ମୋ ଅନ୍ତରମଧ୍ୟରେ ଏ କି ମନୋମୋହନରୂପ ?

ନାରାୟଣ—ଧ୍ରୁବ ! ଉଠ, ତୁମର ଅଟଳ ତପସ୍ୟାରେ ମୁଁ ସନ୍ତୁଷ୍ଟ ହୋଇଅଛି । ଉଠ ।

ଧ୍ରୁବ—(ମନେ-ମନେ) ପ୍ରଭୋ ! ଏ କି ମାୟା, ଏ କି ପରୀକ୍ଷା—ମୁଁ ତ କିଛି ଜାଣିପାରୁ ନାହିଁ ? ଦେବର୍ଷି ନାରଦ କହିଯାଇଥିଲେ, ଯେତେବେଳେ ଏହିପରି ରୂପ ଦେଖାଯିବ, ସେତେବେଳେ ଜାଣିବ ଯେ ହରି ଆସିଛନ୍ତି । ପ୍ରଭୁ, କଅଣ ସତେ ଆସିଛ ? ସତେ କଅଣ ଦୀନ ତୁମର ସେ ମନୋମୋହନ ରୂପ ଦେଖିପାରିବ ? ସତେ କଅଣ ମନ-କଥା କହିପାରିବ ?

ନାରାୟଣ—ଧ୍ରୁବ ! ଉଠ, ତୁମର ତପସ୍ୟା ପୂର୍ଣ୍ଣ ହୋଇଅଛି ।

ଧ୍ରୁବ—ପ୍ରଭୁ ! ଏ ତୁମର ମାୟା ବା ସତ୍ୟ, ମୁଁ ଜାଣେ ନା—ମୁଁ ପ୍ରଭୁ ମନେ କରି ଉଠିଲି ।

(ଚକ୍ଷୁ ଖୋଲି ପ୍ରଭୁଙ୍କ ପଦତଳେ ପଡ଼ିଲେ )

ନାରାୟଣ—(କୋଳରେ ଧରି) ଧ୍ରୁବ ! ମୁଁ ତୁମ ତପସ୍ୟାରେ ବଡ଼ ପ୍ରୀତ ହୋଇଅଛି । ତୁମର ଅଭିଳାଷ ଜଣାଅ, ଅଚିରେ ପୂରଣ କରିବ ।

ଧ୍ରୁବ—ମୋର ଅଭିଳାଷ ପ୍ରଭୁଙ୍କୁ ଅଜଣା ନାହିଁ, ମୁଁ ବା ଆଉ କ'ଣ ଜଣାଇବ ?

ନାରାୟଣ—(ହସି) ଧ୍ରୁବ ! ମୁଁ ବଡ଼ ସନ୍ତୋଷ ଲାଭ କଲି । ତୁମ ଇଚ୍ଛା ପୂରଣ ହେବ । ତୁମେ ଉତ୍ତମରୂପେ ପ୍ରଜାପାଳନ କରି ସ୍ୱର୍ଗଗାମୀ ହେବ । ତୁମନିମିତ୍ତ ଗୋଟିଏ ନୂତନ ସଂସାର ଗଢ଼ି ତା'ର ନାମ ଧ୍ରୁବଲୋକ ରଖିବି ଆଉ ତୁମେ ଯାବଚ୍ଚନ୍ଦ୍ରାର୍କେ ନକ୍ଷତ୍ରରୂପେ ଦେଦୀପ୍ୟମାନ ହୋଇ ରହିଥିବ । ଜଗତ ତୁମର ଅଟଳ ତପସ୍ୟାର ଫଳ ଦେଖୁଥିବ ।

ଧ୍ରୁବ—ପ୍ରଭୁ ! ଯେବେ କରୁଣା ଅଛି, ଅନୁମତି ଦିଅନ୍ତୁ, ମୁଁ ମୋର ପିତା-ମାତାଙ୍କୁ ସେ ସ୍ଥାନକୁ ନେଇ-ଯାଇପାରିବ ।

ନାରାୟଣ—ତଥାସ୍ତୁ ! ବର୍ତ୍ତମାନ ମୁଁ ଆସୁଛି । ଅଳ୍ପ କାଳପରେ ତୁମନିମିତ୍ତ ସଜ୍ଜିତ ରଥ ପ୍ରେରଣ କରିବି ଓ ତୁମେ ତୁମ- ପିତା-ମାତାଙ୍କୁ ଦେଖି ପାରିବ ।

ଧ୍ରୁବ—( ପୁନଃ ପଦତଳେ ପତନ—ନାରାୟଣଙ୍କ ଅନ୍ତର୍ଦ୍ଧାନ )

ପ୍ରଭୁ ! ପ୍ରଭୁ ! ଚାଲିଗଲ ? ଏ ଦାସକୁ କଅଣ ଏକାକୀ ଛାଡ଼ିଗଲ ପ୍ରଭୁ ? ହଉ, ତୁମ ଇଚ୍ଛା ।

(ଗୀତ)

ଏ ବନକନ୍ଦରେ ନାହିଁ ମୋର ସାହା,
ତୁମେ ଏକା ପ୍ରଭୁ ଜୀବନ-ନାଥ ।
ଅଧମ ଜୀବନେ ତୁମେ ଏକା ତାରା,
ଏ ପୋଡ଼ା ହୃଦେଣେ ତୁମେ ଜଳଧାରା ।
ତୁମେ ଏକା ମୋର ଆଉ ସବୁ ପର,
ତୁମେ ଏକା ପ୍ରଭୁ ଜୀବନ-ନାଥ ।

(ପ୍ରଣାମ କଲେ)

(ଉତ୍ତାନପାଦ, ସୁରୁଚି, ସୁମନ୍ତ, ମନ୍ତ୍ରୀ, କନକ ପ୍ରଭୃତିଙ୍କ ପ୍ରବେଶ)

ସୁନୀତି—(ଲୁହ ପୋଛୁପୋଛୁ) ଧ୍ରୁବ ! ଧ୍ରୁବ !
(ମୁଖଚୁମ୍ବନ)

ଧ୍ରୁବ—(ତଳୁ ଉଠି ସମସ୍ତଙ୍କୁ ପ୍ରଣାମ କଲେ)

ରାଜା—(କୋଳକୁ ନେଇ) ବାବୁ ! ଏ ଅଧମ ପିତା ତୋ ମନରେ କେତେ କଷ୍ଟ, କେତେ ଯାତନା ଦେଇଛି । ସମସ୍ତ ପାଶୋରିଦେ ବାପା ।

ସୁରୁଚି—ବାପା ! ଏଇ ବିମାତା ହିଁ ତୋର କଷ୍ଟର ମୂଳ କାରଣ । ମୋତେ କ୍ଷମା ଦେ ବାପା ।
(କୋଳକୁ ନେଲେ)

ଧ୍ରୁବ—ସାନ ମାମା ! ସେ ତୁମର ଦୋଷ ନୁହେଁ । ତୁମରି ପ୍ରେରଣାରୁ ମୁଁ ହରିଙ୍କି ପାଇଛି । ମାମା ! ଆଉ ଦୁଃଖ କର ନାହିଁ । ପିତା, ଏ ବୃଦ୍ଧ ମନ୍ତ୍ରୀ ଓ କନକ ମୋର ଜୀବନରକ୍ଷକ, ନୋହିଲେ ଧ୍ରୁବ ଆଉ ଆଜ ଜୀବନରେ ନ ଥା'ନ୍ତା ।

ମନ୍ତ୍ରୀ—(ବାଧା ଦେଇ) ଥାଉ ବାବା ! ସେ କଥା ଆଉ ମୁହଁରେ ଆଣ ନାହିଁ ।

ଧ୍ରୁବ—ପିତା ! ଆମ ରାଜ୍ୟରୁ ଅଧେ ଏହାଙ୍କୁ ଦାନ କର ।

ରାଜା—ଭଲ କହିଛୁ ବାପା ! ମୁଁ ମଧ୍ୟ ମନେ-ମନେ ତାହା ହିଁ ଭାବଥିଲି ।

ଧ୍ରୁବ—ପିତା ! ଆସ, ସେ କଥା ଥାଉ । ସମସ୍ତେ ଥରେ ଏ ଶୁଭମୁହୂର୍ତ୍ତରେ ହରିଙ୍କୁ ପ୍ରାର୍ଥନା କରିବା ।

ସୁନୀତି—ବାପା ! ତୁ ପ୍ରାର୍ଥନା କର, ଆମେମାନେ ଯୋଗଦେବୁଁ ।

ସୁରୁଚି—(ଲୁହ ପୋଛି) ସେ କ'ଣ ଏ ପାପିନୀର ଗୁହାରି ଶୁଣିବେ ?

ସୁନୀତି—ଛି ଭଉଣୀ, ସେ କି କଥା ?
(ନିଜ ପଣତରେ ସୁରୁଚିର ଲୁହ ପୋଛିଲେ)

ରାଜା—ତୁ ପ୍ରାର୍ଥନା କର ବାପା !
(ସମସ୍ତେ ନୟନ ମୁଦିଲେ—ଧ୍ରୁବ ଆଣ୍ଠୁ ମାଡ଼ି ବସି ପ୍ରାର୍ଥନା ଆରମ୍ଭ କଲେ)

(ଗୀତ)

ବିଜନ ଭବ-କନ୍ଦରେ କି ଜାଣି କିବା ଦ୍ବନ୍ଦରେ
ତମେ ହେ ସଖା, ଉଠିଲ ଏକା
ଢାଳି ସୁଧା ମନ୍ତ୍ରରେ ।୧।
ଭକତ-ପ୍ରାଣ ମୋହନ ଜଗତ-ଜୀବ-ଜୀବନ
ଦୁଃଖହାରୀ, ନରକତାରୀ ଧରି କି ଭାବ ଅନ୍ତରେ ॥

(ସମସ୍ତେ ଏକସ୍ୱରରେ ଗାଇ ପ୍ରଣାମ କଲେ)

—ଯବନିକା ପତନ—



# ସୂଚନା

‘ମୃଗୟା’ ନାଟକଟି ଅନ୍ଧମୁନି-ଦମ୍ପତିଙ୍କର ଏକମାତ୍ର ଆଶ୍ରୟ ସିନ୍ଧୁ-ବଧଘଟଣାର ନାଟ୍ୟରୂପ । ମୟୂରଭଞ୍ଜର ଶ୍ରେଷ୍ଠରାଜ୍ୟ ସାହେବ ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଙ୍କର ଶୁଭତିଳକଲଗି ଉତ୍ସବ ଉପଲକ୍ଷେ ବାରିପଦାରେ ଅଭିନୀତ । ତାଙ୍କର ପୃଷ୍ଠପୋଷକତାରେ ମୁଁ ବାରିପଦାରେ ଗୋଟିଏ ଦଳ ଗଢ଼ିଥିଲି ସେଠାର କେତେକ ପିଲାଙ୍କୁ ତାଲିମ ଦେଇ । ନାଟକଟି ସେମାନଙ୍କଦ୍ୱାରା ଅଭିନୀତ ହୋଇ ପ୍ରଶଂସା ଅର୍ଜନ କରିଥିଲା । ମହାରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଅତ୍ୟନ୍ତ ଆନନ୍ଦିତ ହୋଇ ମୋତେ ପୁରସ୍କୃତ କରିଥିଲେ । ନାଲୁ ( ଲଲମୋହନ ମହାପାତ୍ର ) ‘ସିନ୍ଧୁ’ଭୂମିକାରେ ଅଭିନୟବେଳେ ମୂର୍ଚ୍ଛା ହୋଇଯାଇଥିଲା । କିଛି ସମୟପରେ ପୁଣି ନାଟକ ଆରମ୍ଭ ହେଲା ।

ଏ ନାଟକରେ ବଙ୍ଗଳା ସିନ୍ଧୁବଧ ନାଟକର ଛାୟାପାତ ଘଟିଛି । ମୁଁ ତେଣୁ ଉକ୍ତ ନାଟକ-ଲେଖକଙ୍କ ନିକଟରେ ଋଣୀ ।

ଦକ୍ଷିଣସାହି ଛଉଦଳର କେତେକ ବାଦ୍ୟକାର ମୋତେ ସାହାଯ୍ୟ ଦେଇଛନ୍ତି । ନୃତ୍ୟ-ପରିକଳ୍ପନାରେ ଶ୍ରୀ ଶ୍ୟାମଚନ୍ଦ୍ର ପ୍ରହରାଜ ସାହାଯ୍ୟ କରିଛନ୍ତି । ସେମାନଙ୍କ ନିକଟରେ ମୁଁ କୃତଜ୍ଞ ।

ନାଟକଟିର ପ୍ରଥମ ଅଭିନୟ ରଜନୀ---ତା ୩୦ । ୩ । ୧୯୨୫ ।

ବିନୀତ

**ଲେଖକ**

# ପରିଚୟ

**ପୁରୁଷବର୍ଗ :**

ଅନ୍ଧମୁନି, ଦଶରଥ, ବିଦୂଷକ, ନାରଦ, ଋଷିପୁତ୍ର ସିନ୍ଧୁ, କଞ୍ଚୁକୀ

**ସ୍ତ୍ରୀବର୍ଗ :**

ମୁନିପତ୍ନୀ, ମାୟା, କୌଶଲ୍ୟା, କୌଶଲ୍ୟାଙ୍କ ସଖୀଗଣ



# ଉତ୍ସର୍ଗ

ପରମାରାଧ୍ୟ

ସ୍ୱର୍ଗତ

ପିତୃଦେବଙ୍କ

ପବିତ୍ର

ସ୍ମୃତିରେ

ଉତ୍ସର୍ଗୀକୃତ ।

ଚିରଆଶୀର୍ବାଦଲିପ୍ସୁ

—କାଳୀ

# ମୃଗୟା

## ପ୍ରସ୍ତାବନା

[ ସନ୍ଧ୍ୟା ଚନ୍ଦ୍ରୋଦୟ—ପର୍ବତମାଳା-ଶୋଭିତ ବନସ୍ଥଳୀ ]

ଏକ କୋଣରେ ମାୟା—

(ଗୀତ)

ମାୟାର ପାଲେ ଭିନ ଜଗତ
ମରତ ।
ସବୁ ମାୟା, ସାରା କାୟା, ଖାଲି ଛାୟା,
ନାହିଁ ପରତ ॥୦॥
ଦାରା ପୁତ୍ର କନ୍ୟା—ସବୁ ମାୟା,
ପୁଣି ସୁଖ ଦୁଃଖ ଖେଳ ଛାୟା,
ସୁରୂପ, କୁରୂପ ଯାହା ସଂସାରେ ଦେଖ
ସବୁ ଖାଲି ମୋହର କାୟା ।
ମାୟା ଖେଳା, ମାୟା ମେଳା,
ଚଉଦିଗେ ନୟନେ ଦେଖ ନରତ ।

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

(ଉଦ୍ୟାନ—ଦଶରଥ ଭ୍ରମଣ କରୁଥିଲେ ।)

ଦଶରଥ—ସୁନ୍ଦର ପଦାର୍ଥସବଙ୍କ ମଧୁର ମିଳନ ନୋହିଲେ ଜଗତ ସୁନ୍ଦର ଦିଶନ୍ତା କାହିଁକି ? ଚନ୍ଦ୍ରରେ ସ୍ନିଗ୍ଧ ମଧୁର କିରଣ ନ ଥିଲେ, ବସନ୍ତରେ ମଧୁର ମଳୟ ନ ଥିଲେ, ଜଗତ ମାତିଉଠନ୍ତା କାହିଁକି ? କି ସୁନ୍ଦର ଏ ଉଦ୍ୟାନର ଦୃଶ୍ୟ ! କି ସୁନ୍ଦର ଏ ବଧୂଳୀର ହାସ୍ୟ ! ଅଳିମୁଖ ପ୍ରତ୍ୟେକ ବାର ଚୁମ୍ବନ କରେ, କ୍ଷଣକପାଇଁ ପୃଥିବୀର ସାରା ସୌନ୍ଦର୍ଯ୍ୟ ଲୁଟିନିଏ ।

( ବିଦୂଷକ ଶୀଘ୍ର ପ୍ରବେଶ କଲେ )

ବିଦୂଷକ—କାହିଁ ମହାରାଜ !

ଦଶରଥ—କ'ଣ, କ'ଣ କହୁଛ ସଖା ?

ବିଦୂଷକ—ଲୁଟ୍ ହେବ ପରା ? ଶୁଣିକରି ଦଉଡ଼ି-ଆସିଛି ଯେ···

ଦଶରଥ—କାହିଁକି ସଖା ? ଉଦ୍ୟାନରେ ନାନାପ୍ରକାର ତରୁଲତା ରହିଛି, ସମସ୍ତ ଫଳଭରା । ଇଚ୍ଛା ଅନୁସାରେ ଉଦର ପୂରଣ କର ।

ବିଦୂଷକ—ରାଜବୁଦ୍ଧି ପ୍ରଳୟଙ୍କରୀ; ଏପରି ତୀକ୍ଷଣ ବୁଦ୍ଧି ନ ଥିଲେ ରାଜା କାହିଁକି ? (ଗମ୍ଭୀର ମୁଖରେ ଅନାଇଁରହିଲେ ।)

ଦଶରଥ—କପରି ?

ବିଦୂଷକ—ଏଇ ସାମାନ୍ୟ କଥାଟା ବୁଝିବାକୁ ବାକି ରହିଗଲା ? ଉଦ୍ୟାନରେ ତ ସର୍ବଦା ଆମ୍ଭର ସତର ଅଣା ଅଧିକାର, ତେବେ ଆପଣଙ୍କୁ ଜଣାଇବାର ବିଶେଷ ଅଭିପ୍ରାୟ ?

ଦଶରଥ—ଚିନ୍ତା ନାହିଁ ସଖା ! ଆମ୍ଭେ ସରଯୂତଟର ନିବିଡ଼ କାନନକୁ ମୃଗୟାନିମିତ୍ତ ଯିବୁଁ । ମୃଗ-ମାଂସରେ ତୁମ୍ଭର ଆଶା ପୂରଣ କରିବୁଁ ।

ବିଦୂଷକ—ମହାରାଜାଙ୍କର ଜୟ ହେଉ । ତେବେ ଦିଅନ୍ତୁ ମହାରାଜ ! ବ୍ରାହ୍ମଣୀଙ୍କୁ ମଧ୍ୟ ସନ୍ତୁଷ୍ଟ କରଦେବ । (କୋମଳ କଣ୍ଠରେ) ମୃଗନେତ୍ରୀ ବ୍ରାହ୍ମଣି ଗୋ,

ମାନମୟି ଶ୍ରୀମତୀ ରାଧିକେ,
ମୃଗନେତ୍ର ଦେନ
ନେବେ ତୋର ଦେବ ଯୋଡ଼ି,
ମାଂସ ହେବ ମୋ ଉଦର ପ୍ରିୟ ।

(ହସି-ହସି) କି ମହାରାଜ ! ପ୍ରସ୍ତାବ ମନ୍ଦ ନୁହେଁ ତ ?

ଦଶରଥ—(ହସି) ବେଶ୍, ବେଶ୍, ଉତ୍ତମ ପ୍ରସ୍ତାବ ! ତେବେ ସଖା, ଆଉ ଅଧିକ ସମୟ ନାହିଁ; ଚାଲ, ଅସ୍ତ୍ରାଗାରକୁ ଯାଇ ଭଲ-ଭଲ ଶର ବାଛିନେବା । ବହୁ ଦିନୁ ମୃଗୟାର ଆଶା କରିଛି । ଆଜ ଅନ୍ଧକାରରେ ମୃଗୟା କରିବ । ଶବ୍ଦଭେଦୀ ମୋର ପ୍ରଧାନ ଅସ୍ତ୍ର । ସେହି ଶରବଳରେ ବନ୍ୟଜନ୍ତୁ ବିନାଶ କରି ମନର ଆଶା ମେଣ୍ଟାଇନେବ । ଚାଲ, ଆଉ ବିଳମ୍ବ କର ନାହିଁ ।

ବିଦୂଷକ—(ଗ୍ରବଳିପରି) ଅଳ୍ପ ଅପେକ୍ଷା କରନ୍ତୁ ମହାରାଜ !

ଦଶରଥ—ଆଉ ପୁଣି କାହିଁକି ?

ବିଦୂଷକ—ମହାରାଜ ! ଏ ବ୍ରାହ୍ମଣର ଦଶରଥମୟ ଜଗତ । ଆପଣ ତ ବନକୁ ଯିବେ, ମୁଁ ରହିବି କପରି ?

ଦଶରଥ—ଆପ୍ୟାୟିତ ହେଲି ସଖା, ତୁମ୍ଭର ମୋପ୍ରତି ଅଗାଧ ପ୍ରେମ ! (ହସିଲେ)

ବିଦୂଷକ—ଶକ୍ତ ନାହିଁ ମହାରାଜ ! ଶକ୍ତ ନାହିଁ; ନୋହିଲେ ଏଇ ଶୁଭ୍ରପଇତାଲମ୍ବିତ, ଶୀର୍ଣ୍ଣ ପଞ୍ଜରଶୋଭିତ ହୃଦୟ ଚିରି ଦେଖାଇଦିଅନ୍ତି ମହାରାଜାଙ୍କୁ ମୁଁ କେତେ ଆଦର କରେଁ । ଏଭିତରେ କେତେ ପ୍ରେମ, କେତେ ଆଦର, ନିତି-ନିତି ମହାରାଜଙ୍କଲାଗି କଳହ କରୁଛନ୍ତି । ସାକ୍ଷୀ ତା'ର ମୋର ଏଇ ପରହୃଦୟଦର୍ଶୀ ଇନ୍ଦିବର-ନୟନଯୁଗଳ । (ସ୍ୱଗତ) ଆଉ ସାକ୍ଷୀ ତା'ର ଏଇ ଜଠରଜ୍ୱାଳା । ନୋହିଲେ କି, ଆଦର କରି ଭଲ ପାଏଁ ? ରାଜା—ନାଗସାପ, ତା'ର ଆଦର କରେ କିଏ ?—ଗଛ ନାହିଁ ଯାହାର, ପେଟ ପୋଡ଼େ ତାହାର ।

ରାଜାର ପୀରତି ବାଲିର ବନ୍ଧ,
ଦଣ୍ଡକେ କୋରଡ଼ା ଦଣ୍ଡକେ ଚାନ୍ଦ ।

ମହା ମୂର୍ଖ ନୋହିଲେ ରାଜାକୁ ବିଶ୍ୱାସ କରେ କେଉଁ ଅନ୍ଧ ? (ପ୍ରକାଶ୍ୟେ) ମହାରାଜ, ଏଇ ତ ପ୍ରାୟ ସନ୍ଧ୍ୟା ହେଲା, ତେବେ ଆଉ ବିଳମ୍ବ କାହିଁକି ?

ଦଶରଥ—ନା ସଖା ! ଏବେ ଦେଖ, ପଶ୍ଚିମ ଗଗନ କେଡ଼େ ସୁନ୍ଦର ଶୋଭା ଧରିଲାଣି । ଅଳ୍ପ କାଳ-ମଧ୍ୟରେ ରଜନୀ ସୁନ୍ଦର ତାରକା ଚୁମ୍ବକଖଚିତ ଘନଘୋର କୃଷ୍ଣଶାଢ଼ୀ ପିନ୍ଧି ଶିଶିର-ସୁଧାରେ ଅବନୀମୁଖ ଶୀତଳ କରିବ । ଚାଲ ସଖା, ତୁମେ ଯାଇ ସାରଥିକୁ ସମ୍ବାଦ ଦିଅ । ରଥ ପ୍ରସ୍ତୁତ କରୁ, ମୁଁ ଅସ୍ତ୍ରାଗାରକୁ ଯାଏଁ ।

ବିଦୂଷକ—ତେବେ ଗୋ ବ୍ରାହ୍ମଣୀ, ଚିନ୍ତା ଦୂର ମୋର, ଦେଖିବି ତୋର ଗବ । ହରିଣର ନୟନସଙ୍ଗେ ମିଳାଇବି ତୋର ନୟନଯୁଗଳ ।

ଦଶରଥ—ଅସ୍ତୁ ହୁଅ ସଖା ! ମୃଗୟାରୁ ଫେରିଲେ ସେ ଚିନ୍ତା । ବର୍ତ୍ତମାନ ଚାଲ । (ଅଗ୍ରସର ହେଲେ)

ବିଦୂଷକ—ତେତେବେଳେ ତ ପେଟ-ଚିନ୍ତା ମହାରାଜ ! ଯାହା କରିବାର, ଆଗରୁ କରିନିଏଁ । (ଦଶରଥଙ୍କ ପଛେ-ପଛେ ଗଲେ)

---

## ଦ୍ୱିତୀୟ ଦୃଶ୍ୟ

(ଅଳକାନନ୍ଦା ପଥ—ବୃଦ୍ଧ କଞ୍ଚୁକୀ ପ୍ରବେଶ)

କଞ୍ଚୁକୀ—ବୁଢ଼ା ହେଲେ ଆଖି-କାନ କେହି ଆୟତ୍ତରେ ରହନ୍ତି ନାହିଁ । ବଞ୍ଚିବାଠୁଁ ମରିବା ଭଲ । ଏବେ ଆଖିକି ଭଲ ଦିଶୁ ନାହିଁ । କାନକୁ ତ ଜମା ଶୁଭୁ ନାହିଁ ।

ବିଦୂଷକ—(ପ୍ରବେଶି) ବାବା, ଶକତ ଜନ୍ତୁ-ହାବୁଡ଼େ ପଡ଼ିଛି । ରାଜା କହିଲେ, ରଥପାଇଁ ସାରଥିକି ଡାକିବ, ଶିକାର କରିବାକୁ ଯିବେ । ମୁଁ ହେଲେ ଆଗରୁ ବନ୍ଦ ରହନ୍ତି । ଶିକାରରେ ଏମିତି ଜନ୍ତୁ ତ ମିଳିବେ ନାହିଁ । ଆଜ ଭାଗ୍ୟରେ କ'ଣ ଅଛି, ଜଣା ନାହିଁ । ସର୍ବପ୍ରଥମେ ଏ ଅମଙ୍ଗଳ ମୁହଁ ଦେଖାପଡ଼ିଲାଣି ତ !

କଞ୍ଚୁକୀ—(ପଛକୁ ଫେରିଚାହିଁ) ଏଁ, କିଏ ? କ'ଣ କହୁଛ ?

ବିଦୂଷକ—ରକ୍ଷା କର ବାବା !

କଞ୍ଚୁକୀ—ହଁ ଯିବା ? ମୋତେ ପଚାରୁଛ ନା ? ମୁଁ ନା ? ହଁ, ରାଜାଙ୍କୁ ତୁଳସୀ ଦବାକୁ ଯିବ ।

ବିଦୂଷକ—(ଉଚ୍ଚେ) ବୋଇଲି, କୋଉଆଡ଼େ ଯାଇଥିଲେ ?

କଞ୍ଚୁକୀ—କାଲି ! ହଁ, ପାଞ୍ଚ ଟଙ୍କାରେ କିଣିଲି । ( କାନେଇକରି ଶୁଣିଲେ )

ବିଦୂଷକ—ଓଃ, ଆଚ୍ଛା ହଇରାଣ ହେଲି ! (ବଡ଼ପାଟିରେ) କୁଆଡ଼େ ବାହାରିଛନ୍ତି ଏକୁଟିଆ ?

କଞ୍ଚୁକୀ—ହଁ ବାବା, ଛୁଆ-ଛୁଆ, ଦାନ୍ତ ନାହିଁ, ଦାନ୍ତ ନାହିଁ !

ବିଦୂଷକ—ବାବା, ଏ ତ ଜନ୍ତୁଟିଏ !

କଞ୍ଚୁକୀ—କ'ଣଟିଏ ? ହଁ, ଅଣ୍ଡିରାଟିଏ । ତୁମେ ଏତେ କଥା କେଉଁଠୁ ଜାଣିଲ ବାବା ? କାଲି ତ ବାଛୁରୀଟି କିଣିଛୁ ।

ବିଦୂଷକ—ନା ନା, ତା କହୁ ନାହିଁ । ଖାଇଲେଣି ?

କଞ୍ଚୁକୀ—ହଁ, ଘରକୁ ଆଣିଲଣି କାଲଠୁଁ ।

ବିଦୂଷକ—ଭଗବାନ୍ ! ଓଃ, କି ଅଡ଼ୁଆରେ ପଡ଼ିଲି । ସାରଥିକି ଦେଖିଥିଲେ ?

କଞ୍ଚୁକୀ—ଏଁ ?

ବିଦୂଷକ—(ଉଚ୍ଚେ) ସାରଥି, ସାରଥି ?

କଞ୍ଚୁକୀ—(ହସି) ହାତୀ ? ହାତୀ ନୁହେଁ ମ ଉଲୁ । ମୁଁ କାଲୁ ବୋଲି କି ତୁମେ କାଲୁ ? ମୁଁ ହାତୀ କିଣିବି କାହୁଁ ? ପାଞ୍ଚ ଟଙ୍କାରେ କି ହାତୀ ମିଳେ ? ହାତୀ ନୁହେଁ । ମୋତେ ପଚାରୁଛ ହାତୀ ? ହାତୀ ? ହାତୀ ନୁହେଁ ବାଛୁରୀ । ବାବା, ବୁଢ଼ା ହେଲେ ସେମିତି କାନକୁ ଶୁଭେ ନାହିଁ; ଏଇଥିପାଇଁ ତୁମେ ପରିହାସ କରୁଛ ? ହଁ ହଁ, ତୁମେ ବି ଦିନେ ଏଇ ଦଶା ଭୋଗିବ ଯେ; ଯା ଯା, ମୁଁ ଯାଉଛି । ସଞ୍ଜ ହୋଇଯିବ—ପରସାଦ-ପତର ରାଜାଙ୍କୁ ଦେବି !

ବିଦୂଷକ—ହଉ ହଉ, ମୁଁ ତେବେ ଯାଉଛି ।

କଞ୍ଚୁକୀ—ହଁ, ସବୁ ଦିନ ମୁଣ୍ଡିଆ ମାରୁଛି, ତେବେ କେମିତି ରାଜାଙ୍କର ପୁଅ ହେବ । ଯାଏଁ । (ପ୍ରସ୍ଥାନ)

ବିଦୂଷକ—ଉଲୁ ତ ଆଉ ଅଲଗାରେ ନ ଥା'ନ୍ତି । ଭଲ ପାଖେ-ପାଖେ ମନ୍ଦ । ଚନ୍ଦ୍ରଟି ଯେମିତି ସୁନ୍ଦର, ସେମିତି ତା' ହୃଦରେ କଳଙ୍କ-ଚିହ୍ନ ରହିଛି । ରାଜାଘରେ ଏତେ ଭଲ-ଭଲ ସ୍ବକର ଥାଉ-ଥାଉ ଗୋଟେ-ଦି'ଟା କୋଢ଼ୀ ହୁଣ୍ଡା ନ ଥିବେ କାହିଁକି ? ରଜା ଟୋକା, ଖାଇ-ପିଇ ଆଉ କି କାମ ? ପୋଷିଛନ୍ତି ଗୋଟେ କାଲୁ । ରଜାର ବା କି ଦୋଷ ? ସେ କି ଦେଖୁଛନ୍ତି ? ହୁଣ୍ଡା ଯେତେକ, ଆମେ ତାଙ୍କର ଶିଳ୍ପମନ୍ତ୍ରୀ ଧାର । ଆମେସବୁ ତ ଏ କଥା ତାଙ୍କ କାନକୁ ନେବା ଉଚିତ । ( ନେପଥ୍ୟକୁ ଶୁଣିଲେ । ) ଏ କିଏ ? ସାରଥି ତ ? (ବଡ଼ପାଟିରେ) ଓ ସାରଥି ? ଏ ସାରଥି । ଏଁ ଏଁ ଏଁ ଥି । ବା ବା, କପାଳଗୁଣେ ଏ ବି କି କାଲୁ ହେଲା ? ଯାଏଁ, ଗ୍ରହକ-ସୱାର ଘୋଡ଼ା ତ ଆମ୍ଭେମାନେ, ନ ଦଉଡ଼ ଗତି କାହିଁ ? ଦେ ଦୌଡ଼, ଦେ ଦୌଡ଼ । (ଶୀଘ୍ର ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ଅଳିନ୍ଦ—କୌଶଲ୍ୟାଙ୍କୁ ଘେନି ସଖୀମାନେ ପ୍ରବେଶ କଲେ ।)

ସଖୀଗଣ— ( ଗୀତ ଓ ନାଚ )

ପ୍ରେମ ପନ୍ଥ ପନ୍ଥ ଶିଖିବୁ ନବନା !
ମାନବ ଜାଣେ କି ତା ?
ପ୍ରେମ ଛନ୍ଦ ପ୍ରେମ-ରନ୍ଧ,
ଜାଣେ ପଞ୍ଚ ସତତା ।

ପ୍ରେମ କୁମୁଦ ହସଇ
ପ୍ରେମ-ଇନ୍ଦୁବଦନେ
ଦୂରେ ଦୁ'ଜଣ ନୟନେ ନୟନେ ଜୀବନ
ନାଚଇ ପ୍ରେମ-ପବନେ;
ଅଧିକ ଅନ୍ଧାର ଅଧିକ ଆଲୁଅ—
କୁମୁଦିନୀ ଦେଖେ ତା' ।
ଚନ୍ଦ୍ରିମା ନାହିଁରହେ ଚକିତା ।
ପ୍ରେମ ମାଗି, ପିଆସୀ କୁମୁଦ
ସଞ୍ଜଗଗନେ ଚାହେଁ
ପାଖୁଡ଼ା ମେଲଇ ସବୁରିକ ମଧ୍ୟ;
ଲଜ୍ଜଇ କୁତାଇ ନଏ;
ପ୍ରେମଟି ନ ଏକା, ଜୀବନ-ଜୀବିକା
ପ୍ରେମିକ ଜାଣଇ ତା ।

କୌଶଲ୍ୟା—ସେକଥା କହିବୁ ନାହିଁ ସଖି ! ଜଗତର ମନୁଷ୍ୟ ପ୍ରେମ କରିଜାଣେ ବୋଲି କହିଲେ ତା'-ସଙ୍ଗେ ମହାରାଜାଙ୍କୁ ମଧ୍ୟ କହିଦେଲୁ । ମିଛକଥା । ଏଇ ଦୃଷ୍ଟ ସହି ! ରବି ଯଦି କୁମୁଦକୁ ପ୍ରାଣଭରି ପ୍ରେମ ଦେଇଥାନ୍ତା, ତେବେ ଅସ୍ତ ହୁଅନ୍ତା କାହିଁକି ? ସଞ୍ଜ ହୋଇଗଲେ କୁମୁଦର ଆଉ ସେ ସୁଖ ଥାଏ କି ? ସେ କଥା, ସେ ଛଳନା ତ ମହାରାଜାଙ୍କୁ ଜଣା ନାହିଁ ।

୧ମ ସଖୀ—ସହି, ତୁମର ମନକଥା ଶୁଣିବାକୁ ସେମିତି ଗୋଟେ ଗୀତ ଗାଇଦେଇଥିଲୁଁ ନା । ବିଧାତା ଦୁହିଁଙ୍କୁ ସମାନ କରି ଗଢ଼ି ଜଗତକୁ ପଠାଇ-ଦେଇଛି ଆଉ ସେ ଖେଳ ଦେଖି ଭାଗ୍ୟବତୀ ତୁମର ଏହି ଆମେ ସଖୀମାନେ । (ଅନ୍ୟପ୍ରତି) ତୁହେଁ କି ଗୋ ?

୨ୟ ସଖୀ—ଏ କଥାରେ ଆଉ ପଦେ କହିବାକୁ ବାଟ ନାହିଁ ।

୧ମ ସଖୀ—(କୌଶଲ୍ୟାଙ୍କ ମୁଖଫେରାଇ) ଏଣେ ଅନାଁ, ଅନାଁ, ଆମେମାନେ ଗୀତଗାଉଛୁଁ । ଏଥର ମନ୍ଦ ତୋର କର୍ଣ୍ଣ ତୃପ୍ତ କର ।

(ହସି-ହସି ଗୀତ ଗାଇଲେ)

ରଖିଥା ସହି, ନୟନ-କଟାକ୍ଷ ସଜାଡ଼ି ।
ଆସିଲେ ଗୋ ଗୁଣମଣି,
ଅଭିମାନ ମନେ ଗୁଣି ଦେବୁଟି ଗୋ ଥରେ ଅଜାଡ଼ି ।

ଜଣେ—(ରାଣୀଙ୍କୁ ଟାଣିଧରି) ସହି, ସହି, ମୋର ପଦେ ଶୁଣ:—ପଡ଼ିବୁଟି ନାହିଁଟି ପ୍ରୀତି - ଫାନ୍ଦରେ
ଧରି ଭୁଲିଯିବୁ ନାହିଁ ଦେଖି
କେତକୀ-ଝରା ।

ଅନ୍ୟ ଜଣେ—ଏ, ମୋର ପଦେ, ମୋର ପଦେ:—
ଧୀରେ ସ୍ଥିର କର
ମନ ସ୍ଥିର କର
ମାର ଶାଣ କର
ନୟନ-କଟାକ୍ଷ
(ଛଳାଇ) (କମ) ନୟନ-କଟାକ୍ଷ ।
(ସଖୀଗଣ ପ୍ରସ୍ଥାନ)

କୌଶଲ୍ୟା—ଓଃ, କାହା ଜ୍ୱାଳାରେ ପୋଡ଼ିମରିବି ? (ଚମକି) କେଉଁ ତ ! ସତେ, ମହାରାଜା ତ !

ଦଶରଥ—( ପ୍ରବେଶ କରି ) ପ୍ରିୟେ, ବଡ଼ ଚଞ୍ଚଳ ଥିଲାପରି ଲାଗୁଛ ! କଥା କ'ଣ ?

କୌଶଲ୍ୟା—ନାଁ, କିଛି ନୁହେଁ ମହାରାଜ! (ଚମକିଚାହିଁ) ଏ ଅସମୟରେ ଏ ବେଶ କାହିଁକି ମହାରାଜ ? · · · ସମ୍ମୁଖରେ ସୁଖ-ନିଶାର ସହଚରୀ ମଧୁର ସନ୍ଧ୍ୟା, ଅନ୍ଧାର-ଅଲୋକର ବିଧିବହିତ ବିବାହ-ଲାଗି ଯେପରି ପଶୁ-ପକ୍ଷୀ ଆଗ୍ରହରେ ଶବ୍ଦ କରି ଏଣେ-ତେଣେ ଧାଉଁଛନ୍ତି, ସଞ୍ଜତାରା ପ୍ରଣୟୀର ପଥ ଚାହିଁ ସାଗରର ନୀଳ ଜଳ-ଦର୍ପଣରେ ମୁଖ ଦେଖି ନିଜ-ନିଜର ବେଶ ରଚନାରେ ବ୍ୟସ୍ତ । ଏ ମଧୁର ସମୟରେ ଆପଣ ଏ ବେଶରେ କାହିଁକି ମହାରାଜ ? ଏ ସମୟରେ କୁଆଡ଼େ ଯିବେ ?

ଦଶରଥ—ମୃଗୟାଲାଗି ଯିବାର ଇଚ୍ଛା କରୁଛି ପ୍ରିୟେ । (ଆଦର କରି କହିଲେ)

କୌଶଲ୍ୟା—ମୃଗୟା !

ଦଶରଥ—ହଁ ପ୍ରିୟେ, ଆଶ୍ଚର୍ଯ୍ୟ ହେଲ କାହିଁକି ?

କୌଶଲ୍ୟା—ହେଲି, ମହାରାଜାଙ୍କର ସମୟ-ବିବେଚନା ଦେଖି । ଚାରିଆଡ଼େ ହିଂସ୍ରଜନ୍ତୁ, ରଜନୀର ଘୋର ଅନ୍ଧକାର, ବନପଥ କଣ୍ଟକାକୀର୍ଣ୍ଣ; ତହିଁରେ ପୁଣି ବର୍ଷାକାଳ—ମେଘର ଘୋର ଗର୍ଜନ; ଥରେ-ଥରେ ଚପଳା-ଆଲୋକଚମକ-ରେଖା ନିବିଡ଼ ନିଶାର ଅନ୍ଧକାର ଆହୁରି ଶତ ଗୁଣ ବର୍ଦ୍ଧିତ କରିଦିଏ । ଏ ଅକାଳ ମୃଗୟାର ଇଚ୍ଛା ଦେଖି ଆଶ୍ଚର୍ଯ୍ୟ ହୁଏଁ ମହାରାଜ !

ଦଶରଥ—(ହସି) ଅକାଳ ! ଭୀରୁ ନାରୀ, ଆଶ୍ଚର୍ଯ୍ୟ ହେଲ ? କ୍ଷତ୍ରିୟର କାଳାକାଳ ବିବେଚନା ଶୁଣି ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି ପ୍ରିୟେ ! ବିଶେଷତଃ ମୁଁ ରାଜା । କୋଟିପ୍ରାଣର ଜୀବନୀଶକ୍ତି ଶିରାର ଅଣୁ-ପରମାଣୁମଧ୍ୟରେ ଅହରହ ଜାଗ୍ରତ । ତେବେ କି କଠୋର ପ୍ରାଣରେ ଚାରିଆଡ଼େ ହିଂସ୍ର-ଜନ୍ତୁର ଭୟରେ ଆକୁଳିତ ପ୍ରଜାପୁଞ୍ଜର ଚିତ୍କାର ଶୁଣି, ଧୈର୍ଯ୍ୟ ଧରି ରହିପାରିବି ପ୍ରିୟେ ? ନା ନା, ଶୀଘ୍ର ପ୍ରତିକାର ଆବଶ୍ୟକ ।

କୌଶଲ୍ୟା—ପ୍ରଜାରକ୍ଷଣ ରାଜାର କର୍ତ୍ତବ୍ୟ; କିନ୍ତୁ ପ୍ରିୟତମ, ନିୟମଲଙ୍ଘନ ମଧ୍ୟ ସେହିପରି ଅକର୍ତ୍ତବ୍ୟ । ବୁଝିପାରିଲି ନାହିଁ, ଅନ୍ଧକାର ରଜନୀରେ ଶିକାର କରିବା କିପରି ଉଚିତ ହେବ । ଚାରିଆଡ଼େ ଅନ୍ଧକାରରେ ଗୁପ୍ତ, ହିଂସ୍ରଜନ୍ତୁଙ୍କୁ ଲକ୍ଷ୍ୟ କରି କିପରି ଶରସନ୍ଧାନ କରିବେ ମହାରାଜ ? ଅସମ୍ଭବ ଆଶା, ମହାରାଜାଙ୍କର ବିଫଳ ମନୋରଥ ହୋଇ ଫେରିବା ତେତେ ପ୍ରଶଂସାର କଥା ବୋଲି ମନେ ହୁଏ ନାହିଁ । କଥା ମାନନ୍ତୁ ମହାରାଜ ! କାଲି ପ୍ରତ୍ୟୁଷରେ ଶିକାର କରିବାକୁ ଯିବେ ।

ଦଶରଥ—ସେ ଭୟ କର ନାହିଁ ପ୍ରିୟେ ! ରଜନୀର ଘନଘୋର ଅନ୍ଧକାର, ଝଡ଼ର ଗମ୍ଭୀର ଗର୍ଜ୍ଜନ, ବର୍ଷାର ଅବିରଳ ବାରିଧାରାମଧ୍ୟରେ ମୋର ଶର ରଣ-ରଙ୍ଗିମା ବିଜୁଳିଖେଳା ଖେଳାଇଦେବ । ଦେଖ, (ଶରକାଢ଼ି) ଏଇ ମୋର ଶବ୍ଦଭେଦୀ ବାଣ । ପଶୁର ଶବ୍ଦ ଲକ୍ଷ୍ୟ କରି ଶର ସନ୍ଧାନ କଲେ ନିଜେ କୃତାନ୍ତ କାଳ ମଧ୍ୟ ରକ୍ଷା କରି-ପାରିବ ନାହିଁ । ବାଧା ଦିଅ ନାହିଁ ପ୍ରିୟେ ! ଏହି ଶରର ଗୁଣ-ପରୀକ୍ଷାନିମିତ୍ତ ମୁଁ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଛି ।

କୌଶଲ୍ୟା—ଚିରକାଳ ପୁରୁଷଜାତିର ନାରୀ-ବାକ୍ୟରେ ଅନାସ୍ଥା ପ୍ରଦର୍ଶନର ଅଭ୍ୟାସ ରହିଛି; କିନ୍ତୁ ନାଥ, ଆଜି ମନ ଯେପରି ଥରେ-ଥରେ କାହିଁକି ଚମକିଉଠୁଛି ।

(ଟିକିଏ ଇତସ୍ତତଃ ହୋଇ ଆଶଙ୍କା ପ୍ରଦର୍ଶନ)

ଦଶରଥ—(କର ଚୁମ୍ବନ କରି ହସି) ସୋହାଗିନି ! ତୁମ୍ଭର ଅଗାଧ ପ୍ରେମ ହିଁ ତୁମ୍ଭ ମନରେ ଭୟର ସଞ୍ଚାର କରାଇଦେଉଛି । ଭୟ ନାହିଁ ପ୍ରିୟେ, (କଞ୍ଚୁକୀ ଆସୁଥିବାର ଦେଖି) ଏଇ ଦେଖ ପ୍ରିୟେ, ବିପ୍ରପଦ-କୃପା ତୁଳସୀର ମଞ୍ଜରୀ ନେଇ ବୃଦ୍ଧ ଉପସ୍ଥିତ । ମନୋବାଞ୍ଛା ନିଶ୍ଚୟ ସଫଳ ହେବ ।

କଞ୍ଚୁକୀ—(ଶୁଣି) ଏଁ ? ଅସମୟରେ ଏ କି ସାଜ ମହାରାଜ ! ମସ୍ତକରେ ତାଜ, ହାତରେ ଧନୁଶର ? ବଡ଼ ଭୟ ଲାଗେ ଯେ, କି ଶର ସେଇଟା ? ଓଃ, ଭାରି ତେଜ ତା'ର, ଏଁ ?

ଦଶରଥ—ଏ ଶର ଶବ୍ଦଭେଦୀ ।

କଞ୍ଚୁକୀ—କଅଣ ? ସତ୍ୟବାଦୀ ! ବାହା-ବା, ବାଃ ବାହାଦୂର ! ମହାରାଜାଙ୍କୁ ଲଗାଇ ତିନି ରାଜା ଅମଳ ଦେଖିଲି । ଅନେକ ଶରନାମ ଶୁଣିଛି, ବାକି ଏମିତି ନାଁ ଶୁଣି ନ ଥିଲି । ଏଣିକି-ଏଣିକି କାଳଟା ଯେମିତି ବିପରୀତ ରକମର ହେଲାଣି, ଶରର ନାମ ତ ସେମିତି ଅଡ଼ୁଆ-ତଡ଼ୁଆ ହେବା ଦର୍କାର । ଆଉ କିଛି ଦିନ ଗଲେ ଶରମାନଙ୍କର ନାମ ହେବ ଧାର୍ମ୍ମିକ, ଦୟାଳୁ, ସରଳ, ନ୍ୟାୟବାନ୍, ଇତ୍ୟାଦି ଇତ୍ୟାଦି ଇତ୍ୟାଦି । ହଁ ମହାରାଜ, ଏ ବେଶରେ କେଉଁ ଦେଶକୁ ଲଢ଼ିବାକୁ ବାହାରିଲେ ?

ଦଶରଥ—ଲଢ଼ିବାକୁ ନୁହେଁ, ମୃଗୟା ।

କଞ୍ଚୁକୀ—(ହସି-ହସି) ଓଃ, ଗୟା ? ଗୟା ? ହଁ, ସେ ତ ଉତ୍ତମ କଥା । ସତ୍‌ପୁଅ ହେଲେ ଗୟାରେ ପିଣ୍ଡଦାନ କରି ପିତାମାତାଙ୍କୁ ଉଦ୍ଧାର କରେ । ଯାଅ ବାବା, ମହାରାଜ ଅଜ, ମା' ଇନ୍ଦୁମତୀଙ୍କି ଗୋଟିଏ-ଗୋଟିଏ ପିଣ୍ଡ ଦେଇଆସ । ଆଉ ଗୋଟିଏ କଥା କହୁଛି ବାବା, ମୋର ତ ପିଲା-ଛୁଆ ନାହାଁନ୍ତି । ପିଲାଦିନରୁ ମହାରାଜାଙ୍କୁ ପୁଅପରି ପାଳି-ଆସିଛି, ସ୍ନେହ କରିଛି । ମନେ କରି ଏ ବୁଢ଼ା କଞ୍ଚୁକୀର ମଧ୍ଯ ଗୋଟିଏ ପିଣ୍ଡ ଦିଅ ବାବା ! ବେଶ୍ ସୁଖରେ ଅଛି । କେତେ କାଳର ହେଲାଣି, କାନକୁ ଆଉ ଜମା କିଛି ଶୁଭୁ ନାହିଁ । ଏତେ-ବେଳେ ମୁଠିଏ ପିଣ୍ଡ ପାଇଲେ ବଞ୍ଚିଯିବ । ଯଦିବା କହ, ଏ ବୁଢ଼ା ବ୍ରାହ୍ମଣଟା ବଞ୍ଚିଛି; ନାଇଁ ନାଇଁ ବାବା, ମୁଁ ବଞ୍ଚି ନାହିଁ—ମଲିଣି, ମଲିଣି ।

ଦଶରଥ—ପ୍ରିୟେ, ଏ ବଧିର ବ୍ରାହ୍ମଣଙ୍କୁ ବୁଝାଇବା ସାଧ୍ଯାତୀତ । ଦେଖ, ଯଦି ତୁମେ ପାର ।

କୌଶଲ୍ୟା—ଯୁଦ୍ଧ ନୁହେଁ, ଶିକାର ।

କଞ୍ଚୁକୀ—ନ ହେଲେ ଆଉ କି କରିବ ? ମହାରାଜ ସ୍ୱୀକାର କଲେ ନାହିଁ । ମୋର କର୍ମର ଦୋଷ ସେ । ଆଉ କି କରିବ ? ନିଜେ ନିଜର ପିଣ୍ଡଟା ଦେଇଦେବ ।

ଦଶରଥ—(ହସି) ବୃଦ୍ଧ ! ତୁମ୍ଭେ ପିତାସମ ମାନ୍ୟ । ତୁମ୍ଭର ସ୍ୱର୍ଗପ୍ରାପ୍ତି ହେଲେ ପିଣ୍ଡଦାନ ମୁଁ କରିବି । ଆଜି ବ୍ରାହ୍ମଣମାନଙ୍କୁ ତୁମ୍ଭଲାଗି ହଜାର ସୁନାର କଳସୀ ଦାନ କରିବି ।

କଞ୍ଚୁକୀ—ଏଁ ?

ଦଶରଥ—ହଜାର କଳସୀ ।

କଞ୍ଚୁକୀ—(ହସି) ପଜାର ତୁଳସୀ ? ହଁ, ଏବେ ଠିକଏ ଏମିତି ଜୋର୍‌ରେ ନ କହିଲେ କିଛି ଶୁଭୁ ନାଇଁ ବାବା ! ଏଇ ତ ଆଣିଛି । ମଥାରେ ଛୁଆଁ ଇଦିଏ । ବେଗେ କେମିତି ପୁଅମୁଖ ଦେଖ, ଆସ ମା ! ତୁମକୁ ଦିଏଁ । ପୁତ୍ରବତୀ ହୁଅ, ସୌଭାଗ୍ୟବତୀ ହୁଅ, ଶୀଘ୍ର ପୁଅମୁହଁ ଦେଖ ।

ଦଶରଥ—( ହସି ପ୍ରସ୍ଥାନ ଓ କୌଶଲ୍ୟାଙ୍କ ଲଜ୍ଜିତାବସ୍ଥା )

କୌଶଲ୍ୟା—ଦ୍ୱିଜବର ! ରାଜାଙ୍କର ମଙ୍ଗଳ-କାମନାରେ ବିଷ୍ଣୁ-ମନ୍ଦିରରେ ଯାଇ ଶୁଭସ୍ୱସ୍ତ୍ୟୟନ କର । (ପ୍ରସ୍ଥାନ)

କଞ୍ଚୁକୀ—କଣ କହିଗଲେ ? କାତ୍ୟାୟନ ? ଓଃ, ଋଷି ! କାତ୍ୟାୟନ ? ସେ ବି ମହାରାଜଙ୍କ ସଙ୍ଗରେ ଗୟା ଯିବେ ? ଯେ ଯା' ବାବା, ଏ ବୁଢ଼ାକୁ ବାକି ମୁଠେ ପିଣ୍ଡ ଦିଅ । ଏଇ କଥା । (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

( ପଥ—ନାରଦ ଗାଇ-ଗାଇ ପ୍ରବେଶ ହେଲେ )

ନିଖିଳ ଜଗତ-ମନ୍ଦିରେ ଘୋରେ,
ମୂର୍ତ୍ତିତ ତବ ତନ୍ତ-ଛାୟା ।
ବିପୁଳ, ବିରାଟ, ବିକଟ ତୁମ୍ଭେ,
ସର୍ବଜଗତ ମହାନ୍ କାୟା ।
ତୁମ୍ଭେ ଆଦି-ଅନ୍ତ, ତୁମ୍ଭେ ହେ ଅନନ୍ତ,
ତ୍ରିଜଗତେ ଏକା ତୁମ୍ଭେ ବଳବନ୍ତ ।
ସୃଷ୍ଟି-ସ୍ଥିତିକର୍ତ୍ତା, ଭୁବନ-ନିୟନ୍ତା,
ସୁଖ-ଦୁଃଖ-ଲୀଳା ତୁମ୍ଭର ମାୟା ।

ନାରଦ—ଜଗବନ୍ଧୁ ! ବେଶି ନାହିଁ, ଦିନାନ୍ତେ ଥରେ ବଳ ଦିଅ ହରି,
କହିବାକୁ ଜଗବନ୍ଧୁ ବୋଲି ।
ପାପୀ ପାମ୍ପ ଜଗତକୁ
ଉଦ୍ଧାର କାରଣେ,
ଶୁଣିଛି ମୁଁ ହରି,
ହୁଅ ଭବେ ଅବତୀର୍ଣ୍ଣ ।

କମ୍ପିତ ଧରଣୀ ଏବେ—
ଦୈତ୍ୟ-ପାପଭରରେ ।
ବାଜେ କୋଳାହଳ ଚଉଦିଗେ
ଏ କ୍ରନ୍ଦନ ନ ଶୁଭେ କି କର୍ଣ୍ଣ-କୁହରରେ ?
ହରି ! ଅନନ୍ତ-ଶୟନକାରୀ,
ନୀଳାଚଳ ନାଥ,
କିପରି ସହୁଛ ଏ ଦାରୁଣ ପାପ ?
କମ୍ପୁନାହିଁ ହୈମ ସିଂହାସନ ?
କେବେ ପ୍ରଭୁ ? କେତେ ଦିନ ଆଉ ବାକି ?
କେବେ ପ୍ରଭୁ ଦେବ ଦେଖା
ଦଶରଥ-ଗୃହେ ?
ନୀଳମଣି !
କୋଳ କରି ଦେଲେ,
ପବିତ୍ର କରିବୁଁ ପ୍ରାଣ ମନ ।
ତୁମ୍ଭ ମାୟା ତୁମ୍ଭଙ୍କୁ ଗୋଚର ହରି ।
କିନ୍ତୁ ପ୍ରଭୁ,
ଦୈତ୍ୟବଳେ ଦଳିତ ଦେବତା ।
କାହିଁ ଗଲେ ମାୟାଦେବୀ ?
ଦେବତା ପ୍ରାର୍ଥନା ଘେନି
ଅବତରିଥିଲେ ମର୍ତ୍ତ୍ୟେ ।
ଦେଖେଁ ! କରେ ମୁଁ ସ୍ମରଣ ତାଙ୍କୁ ।

(ବସି ଧ୍ୟାନ କଲେ । ମାୟା ଦେବୀଙ୍କ ଆବିର୍ଭାବ)

ମାୟା—(ଗୀତ)

କେ ବୁଝିବ ମୋର ଲୀଳା,
ତିନି ଜଗତରେ ।
ଲୁଚି-ଲୁଚି, ପଛେ-ପଛେ,
ରହୁଥାଏ ନିରନ୍ତରେ ॥ ୦ ॥
ପଲକେ-ପଲକେ ଛବି ନୂଆ କରଇ,
ପୁଲକେ-ପୁଲକେ ଦୁଃଖ ଦିଏ ମିଶାଇ
ଦୁଃଖି-ଦୁଃଖ ମାରଧାରେ
ଦୟା ନାହିଁ ମୋ ଅନ୍ତରେ ।

କହଁ ବତ୍ସ କରିଲ ସ୍ମରଣ ?
କିବା ପ୍ରୟୋଜନ ?

ନାରଦ—ପ୍ରଣମ ଜନନି ! (ପ୍ରଣାମ କଲେ)
ଜନନୀ ଗୋ,
ବହୁ ଦିନୁ ଦୈତ୍ୟଭୟରେ
ପ୍ରପୀଡ଼ିତ ସୁର-ନର-ଗନ୍ଧର୍ବ-କିନ୍ନର ।
ତେଣୁ ପ୍ରଭୁ ନୀଳାଚଳନାଥ କୃପାବନ୍ତ
ହେବେ ଅବତାର ନରଦେହେ ।
ତୁମ୍ଭ ବିନୁ ଏ କାର୍ଯ୍ୟସାଧନେ
ନୁହେଁ ଆନ ସମରଥ ।
ଜନନି ଗୋ !
ପ୍ରଶ୍ନ କରେଁ ଶ୍ରୀଚରଣେ
କେବେ ଆଉ ହେବ
ଆମ୍ଭ ଦୁଃଖ ବିମୋଚନ?
କେତେ ଦିନ ଆଉ ?

ମାୟା—ନୁହେଁ ବେଶି ବିଳମ୍ବ ତନୟ
ପଠାଉଛି ମାୟାବଳେ ନୃପ ଦଶରଥେ ବନେ
ଆଜ ନିଶି ହେବ କାଳନିଶି
କମ୍ପିବ ଭୁବନେ ।
ମାୟାବଳେ ମେଘମାଳ—
ଗରଜି ଭୈରବେ
ରଣରଙ୍ଗେ କରିବେ ନର୍ତ୍ତନ ।
ବିକଟ ପିଶାଚହାସେ କମ୍ପିବ ମେଦିନୀ ।
ଆଜ ନିଶା—କୃତାନ୍ତ ତାଣ୍ଡବ ।
ସ୍ୱୟଂ ମାୟା
ହେବେ ଅବତୀର୍ଣ୍ଣା ରଙ୍ଗମଞ୍ଚେ ।
ଛିନ୍ନ କରି ମମତା-ବନ୍ଧନ,
ହରିନେବ ମଥାମଣି—
ଅନ୍ଧ-ନୟନର ।
ନିର୍ମମ ନିୟତିର ଖେଳା !
ବଳେ-ବଳେ ନବ ତନ୍ତ୍ର କରି ପ୍ରଫୁଟିତ
ଖେଳାଇବ ମାୟାଖେଳା ।

ମୁହୂର୍ତ୍ତକଲାଗି,
ସ୍ନେହ, ଦୟା, ମମତା, ବାତ୍ସଲ୍ୟ,
ନେତ୍ରମୁଦ୍ର ବସିବେ ସକଳେ ।
ଉତ୍ତାଳ ଲହରୀ ମଥା ତୋଳଣ ସାଗର,
କରାଳ ବିକଟ ଭୀମ ହୁଙ୍କାର ଗର୍ଜନେ,
ନାଚିବ ମୁହୂର୍ତ୍ତେ
ଗ୍ରାସିବାକୁ ଲକ୍ଷ ଗ୍ରହ, କୋଟି ଚନ୍ଦ୍ର-ତାରା ।
ଚିନ୍ତା ନାହିଁ ବତ୍ସ,
ଆଜ କିଛି ପ୍ରଭାତ ନୋହୁଣୁଁ
ଅପୂର୍ବିକ ଲଭିବ ଇଷ୍ଟସ୍ୱ ବର,
ପୁତ୍ରଲାଭ ହେତୁ ।
ଯାଅ ବତ୍ସ, ଦୂର କର ଚିନ୍ତା ।

ନାରଦ—ଯଥା ଅଜ୍ଞା ଜନନୀ ଗୋ !
ନିରତ କୃତଜ୍ଞପାଶେ ବଦ୍ଧ ଦେବଗଣ
ତବ ପାଶେ ।
ହେଉ ତବ ଇଚ୍ଛା ପୂର୍ଣ୍ଣ ।
ନେଉଛୁ ମେଲାଣି ଶାନ୍ତ ମନେ ।
ବିଦାୟ ଜନନି ! (ପ୍ରଣାମ ଓ ପ୍ରସ୍ଥାନ)

ମାୟା—(ହସି) କ୍ଲାନ୍ତ କପଟ ଖେଳା
ବଡ ଭଲ ପାଏଁ ।
ଜନନୀ-ସମ୍ମୁଖେ
କରେଁ ସନ୍ତାନର ହତ୍ୟା ।
ବଡ଼ ହସ ଲାଗେ ମୋତେ
ଦୁଃଖୀର କ୍ରନ୍ଦନ ।
ଦେଇ ଘନେ ଛଳେ କଉଶଳେ
ଚିର ମୋର ଖ୍ୟାତି ତେଣୁ ଭବେ;
ଭୟେ ଭୀତ ସୁର, ନାଗ, ନର ।
କି ଅସାଧ୍ୟ ମାୟାନାମେ ମୋର ?
ଯାଏଁ, ଖେଳିବି ମୁଁ ଖେଳା;—
ବିଚିତ୍ର ଅଶ୍ରୁବ ।
ସ୍ତମ୍ଭୀଭୂତ ହେବ ଚରାଚର ।
ପଶୁ-ପ୍ରାଣେ ଯେ ଦର୍ଶନେ
ହେବ ଲବେ ଦୟା,
ତରଳିବ ପାଷାଣ ପ୍ରତିମା;
କଠୋର ମାୟାର ଲୀଳା
ଅଟ୍ଟହାସେ ହସିବି ମୁଁ ତହିଁ ।
କାହିଁ ଗଲ ସହଚରୀଗଣ ?
ଆସ ଆସ ।
ଗାଅ ଗୀତ, କର ନୃତ୍ୟ,
ବଢ଼ାଅ ଆନନ୍ଦ ମୋର ।
ସେ ଆନନ୍ଦେ ମାତିଉଠି
ମନ୍ଥିବି ସାଗର ।
ପ୍ରଳୟ କରିବି ଏ ଜଗତେ ।
କଟାକ୍ଷେ ଖେଳାଇଦେବି
ବିଜୁଳିବିକାଶେ-
ନିର୍ମମ କଠୋର ଲୀଳା ।
ଆସ, ଗାଅ, ନୃତ୍ୟ କର !
(ମାୟାକୁମାରୀଗଣ ପ୍ରବେଶ)
(ଗୀତ ଓ ନୃତ୍ୟ)

ଖେଳିବା ନୂତନ ଖେଳା
ମନ ଆନନ୍ଦରେ । ୦ ।
କାଳ ରଜନୀ, ଆମ ସଜନୀ,
ମନମୋହିନୀ ରେ ।
ତାରାସନେ ଟଳିବ ଆକାଶ ଚନ୍ଦ୍ର,
ଗରଜିବ, ଫେନିଳ ନୀଳ ସିନ୍ଧୁ,
ମନ ରସିବ, ପ୍ରାଣ ବାସିବ,
ଭବକାନ୍ଦିବ ରେ ।
(ପଟ୍ଟପତନ)

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ସରଯୂ-ତୀର—ରାତ୍ରି, ମେଘବର୍ଷା, ଝଡ଼ । ବଜ୍ରପାତ, ବିଜୁଳି । ଏକାକୀ ସିନ୍ଧୁ ଗାଇ-ଗାଇ ପ୍ରବେଶ ।)

(ଗୀତ)

ଧର ହେ ବାଦଲ ମିନତି ମୋର
ଡାକ ନା ଗମ୍ଭୀରେ ଗରଜି ଘୋର । ୦ ।
ଶିହରେ ପ୍ରାଣ, ଭୟେ ଥର-ଥର
କ୍ଷୀଣ ଶରୀର ହେ ।

ହେଲଣି ମୁଁ ଅତି ଅଧୀର ହେ ।
ଭୁଲଯା' ଚପଳା-ଚମକ ଗୃହିଣି
ଲୁଚ୍ଛଇ ରଖଗୋ ଭୀଷଣ ସାଜ,
ତୁହି ଘୁମାଇଲେ ବଜ୍ର ଗୋ ଶୋଇବ,
ଏ ଭୟ ଘୁଞ୍ଚିବ ମୋହର ଗୋ
ଝଡ଼ - ପବନ ହେ !
ନ ଭାଙ୍ଗ ଏ ଦୀନ-କୁଟୀର ହେ ।

(ଅଶ୍ରୁ ମୁଞ୍ଚନ)

ହା ବିଧାତା !
ଏ କି ଲୀଳା ତବ ?
ଅନ୍ଧ ପିତା-ମାତା ମୋର,
ମୁଁ ପୁଣି ବାଳକ,
ଜ୍ଞାନହୀନ ଚପଳ ସ୍ୱଭାବ ।
ଦୟାମୟ ! ଏ କି ଖେଳା ?
ଦୀନଗଣେ ଏ କି ତବ ଛଳ ?
ଏକେ ବର୍ଷା
ଖଣ୍ଡ-ଖଣ୍ଡ ସଚଳ ବାଦଲ
ଅବିରତ ଅବନୀରେ
ଅକୁଣ୍ଠିତେ ଢାଳେ ଜଳଧାରା ।
ସଙ୍ଗେ ପୁଣି—
ଘନ ଘୋର ଅନ୍ଧକାର,
ବଜ୍ରର ଦାରୁଣ ଡାକେ,
ଥରେ-ଥରେ ଚମକେ ପରାଣ,
ରଣରଙ୍ଗେ ଖେଳଇ ଚପଳା,
ପୂର୍ବବାୟୁ ବହେ ହୁ-ହୁ ରବେ,
କମ୍ପେ ଅଙ୍ଗ ଥର-ଥର,
ଝଡ଼ସନେ ଛିନ୍ନ କେଉଁ ପାଦପର ଶାଖା
ପିଟି ହୁଏ ଅଙ୍ଗେ ।
ନ ପାଇଲି ପଥ ଘାଟ,
କଣ୍ଟକ ବିକ୍ଷତ ଅଙ୍ଗସାରା ।
ହାୟ ହରି !
ଏ କି ତବ ଦୁର୍ଘଟ ଘଟଣା ?
ନ ମିଳିଲା ଫଳ-ମୂଳ କିଛି ।
ଜଗତ-ଜୀବନ ବର୍ଷା
ହେଲା ମୋର କାଳ ।
ହରି, ହରି ଦୀନବନ୍ଧୁ !
ସର୍ବୋପରି ଢାଳିଦେଲ ଦୁଃଖ ?—
ଦରିଦ୍ରର କିପାଁ ପ୍ରଭୁ ଜଠର-ଯାତନା ?
ଦରିଦ୍ର-ଜୀବନେ କିପାଁ ଜଠରର ସୃଷ୍ଟି ?
କିମ୍ବା,—
ଏ ଜଠର ଅଧିକାରୀ ଦରିଦ୍ର କେବଳ ?
ନାହିଁ ଡର, ଅନାହାରେ ମୋର ।
କିନ୍ତୁ ହରି,
ବୃଦ୍ଧ ପିତା-ମାତା ଆଶ୍ରୟ-ବିହୀନ
ଉପବାସେ ଅତ୍ୟନ୍ତ ଆକୁଳ ।
ଦୟାନିଧି !
କିପାଁ ହେଲ ପ୍ରତିକୂଳ ବିଧି ?
ସାରାଦିନ ଭ୍ରମି-ଭ୍ରମି
ନ ପାଇଲି କିଛି ।
ଆଶାର ଭରଷା କରି
ଆସିଥିଲି ପୁଣି ।
କିନ୍ତୁ ହାୟ !
ଆସିଲା ରଜନୀ,
ମେଘର ଅନ୍ଧାରେ ମିଶାଇଲା ନିଜ ଅନ୍ଧକାର ।
ଫଳ ଆଶା ବିଫଳ ହୋଇଲା ।
ଏଇ କି ବିଧିର ତବ ପ୍ରଭୋ !
ଭାଗ୍ୟ-ଫଳାଫଳ ଏଇ କି ରେ ? (ବିଦ୍ୟୁତାଲୋକ)
(ଚମକି) ଏହି ତ କୁଟୀର—
ଦେଖାଯାଏ ବିଦ୍ୟୁତର
କ୍ଷଣିକ ଚମକେ ।
ଚମକେ ପରାଣ ମୋର
ଏ କୁଟୀର ହେରି !
ହା ପିତଃ, ହା ମାତଃ,
ଚାହିଁରହିଥିବ ପଥ ।
କି ବୋଲିବି ?
କି ବୋଲି ମୁଁ ନିବାରଣ କରିବି

ବେଳ ଜନେ ? (ଅନ୍ତର୍ଦ୍ଧାନ)
(ସହସା ବିଦ୍ୟୁତ, ମେଘଗର୍ଜନ ଓ ବଜ୍ରପାତ)

ନେପଥ୍ୟେ ଅନ୍ଧମୁନି—କାହିଁ ଗଲୁ ଅଞ୍ଚଳର ନିଧି !
କାହିଁ ବାବା, କାହିଁ ସିନ୍ଧୁ ?
ଡାକେ ମେଘ, ଗରଜେ ଚଡ଼କ
କାହିଁ ଗଲ ବାପ ?
କେତେବେଳୁ ଯାଇଛୁ ତ ବନେ,
ଆଜ ଏତେ ବିଳମ୍ବ କିହେତୁ ?

ସିନ୍ଧୁ—(ବିକଳେ) ହାୟ ବୃଦ୍ଧ ପିତା-ମାତା !
ଅନ୍ତବଳୀୟାନ୍ ପୁତ୍ରସ୍ନେହ,
ମନେ ତେଣୁ ଯାଗଇ ସନ୍ଦେହ ।
ଆସେ ଖିନ୍ନ କ୍ଷଣେ-କ୍ଷଣେ ।
କିମ୍ବା ନୁହେଁ ଅସମ୍ଭବ,
ବିପଦେ ବା ବିଷମ ସଙ୍କଟେ
ମନନ ଅଙ୍କିତ-ସ୍ନେହ-ଛବି
ମାୟାଗୁଣେ ଜୀବନ୍ତସମାନ ଫୁଟେ ।
ବିଧିର ବିଚିତ୍ର ଖେଳା
ଦେଖେଁ ଏହିଠାରେ ।
ତେଣୁ ଆଜ ବିଧାତାର
ଏ କଠୋର ଲୀଳା ।
ମନ୍ଦ ନୁହେଁ; କିନ୍ତୁ ପ୍ରଭୁ !
ଶୁଷ୍କମୁଖେ, ଶନ୍ୟକରେ
କିସ ମୁଁ କହିବି ସତେ,
କ୍ଷୁଧାତୁର ଜନନୀ-ଜନକେ ?
ବୃଦ୍ଧି ଦିଅ ହରି ! (ମେଘଗର୍ଜନ, ବିଜୁଳି ଇତ୍ୟାଦି)

ନେପଥ୍ୟେ ମୁନିପତ୍ନୀ—ଓହୋ ! ଓହୋ !
ଏ କି ହେଲା ? କାହିଁ ଗଲୁ ?
ଆସ ବାବା, କୋଳେ ଆସ ।

ସିନ୍ଧୁ—କହିଁ ମାତା,
କରୁଛ ରୋଦନ,
କହିଁ ପିତା, କର ହା-ହାକାର ?
ହେଇ, ଆସିଛି ମୁଁ । (ପ୍ରସ୍ଥାନ)

ନେପଥ୍ୟେ ମୁନିପତ୍ନୀ—ସିନ୍ଧୁ ! କହିଁ ବାବା,
ତୋର ବିଳମ୍ବ ଆଜ ?
(ସହସା ପଟ୍ଟପତନ)

---

## (ପ୍ରଥମ ଗର୍ଭାଙ୍କ)

(କୁଟୀର—ଅନ୍ଧମୁନି ଓ ଅନ୍ଧମୁନିପତ୍ନୀ ବସିଥିଲେ ।
ସିନ୍ଧୁର ପ୍ରବେଶ)

ମୁନି—ସିନ୍ଧୁରେ,
(ଅଣ୍ଡାଳ-ଅଣ୍ଡାଳ ସିନ୍ଧୁନିକଟସ୍ଥ ହେଲେ)
ଶିର ଅନ୍ଧ ପିତା-ମାତା ତୋର,
ହରାଇଛୁଁ ନୟନର ତାରା;
କିନ୍ତୁ ଧନ, ଅନ୍ତର ନୟନେ
ଏ ଅନ୍ଧ, ଅନ୍ଧଣୀ—
ଗୃହ ନୟନର ତାରା ତୁହି ।
ନ ଦେଖି ଏ ଚନ୍ଦ୍ରମୁଖ ତୋର,
ମନ-ପ୍ରାଣ ଅତ୍ୟନ୍ତ ଆକୁଳ ।
ଆସ ଚନ୍ଦ୍ର, ଆସ ନିଧି,
ଅନ୍ଧ ଆଖି ଉଜ୍ଜ୍ୱଳ ଆଲୋକ !
ଆସ ରେ ନୟନତାରା !
ଆସ ଆସ, ଉଠିଆସ କୋଳେ !
ଆସ ବାବା !
(ହସ୍ତ ପ୍ରସାରଣ କଲେ)

ସିନ୍ଧୁ—ପିତା ! କ୍ଷୁଧାରେ ଆକୁଳ ତୁମ୍ଭେ
ତପସ୍ୟାରେ ପୁଣି
ଜୀର୍ଣ୍ଣଶୀର୍ଣ୍ଣ ଅଙ୍ଗ ।
କାତର ହୋଇବ ସରେ ମୋର ।
ଚିରଦିନ ମୋତେ ତ ଆଦରେ
ଧରିଅଛ କୋଳେ—
ପୁତ୍ରସ୍ନେହ ଆଲିଙ୍ଗନଦାନେ ।
ତବ ଦୟା,—
ଆଦର-ସୋହାଗ ଅଙ୍କେ,—
ଅହରହ ଖେଳୁଛି ମୁଁ ଦୋଳ ।

ମୁନି-ପତ୍ନୀ—ବାବା, ବାବା, ଭିଜୁଛି କୋମଳ ଅଙ୍ଗ,
(ସିନ୍ଧୁ ଦେହ ଆଉଁଷି) ଗୈରିକ ବସନ ।
କେଶପାଶ ଘଷି ଜଳଘରେ ।
ଆସ ବାବା, ଅଞ୍ଚଳେ ମୁଁ ଦିଏଁ ପୋଛି
ବରଷାର ବାରି ।
ଦୃଷ୍ଟି ନାହିଁ, ଦିଶୁ ନାହିଁ କିଛି ।
କହିଦେ, ମୁଁ ଦିଏଁ ପୋଛି । (ଅଞ୍ଚଳ ଘେନିବା)
ସିନ୍ଧୁ—ନାଇଁ ମା, ଥାଉ; ମୁଁ ନିଜେ ପୋଛିହେଉଛି ।
(ପୋଛିହେଲେ)
ମୁନି-ପତ୍ନୀ—ଅନ୍ଧନୟନ-ଅଞ୍ଜନ, ଜୀବନର ନିଧି !
ଏ କି କଥା ମୁଖେ ତୋର ଧନ ?
ନିଜେ ତୁ ପୋଛିବୁ ଅଙ୍ଗ ?
ଅନ୍ଧ ହେଲେ ପଛେ, ଜନନୀ ମୁଁ ତୋ'ର ।
ସହିବ କି ଦେଖି ଏହା, ଜନନୀର ପ୍ରାଣ ?
ମୁନି—ସିନ୍ଧୁ ରେ ! କ୍ଷୁଧିତା ଅତ୍ୟନ୍ତ ମାତା ତୋର,
କ୍ଷୁଧିତ ମୁଁ ମଧ୍ୟ ।
କାହିଁ ?
କି ଫଳ ଆଣିଛୁ ବାବା,
ଦିଅ, ଦିଅ ଜନନୀ-ପିଅରେ । (ହସ୍ତପ୍ରସାରଣ)
ସିନ୍ଧୁ—(ଚମକି ଉଠିଲେ ସ୍ୱଗତ)
ସ୍ତବ୍ଧ ହୁଅ, ସ୍ତବ୍ଧ ହୁଅ କଣ୍ଠ !
ଅନ୍ଧ ହୁଅ ନେତ୍ର !
ବଜ୍ର ! ପଡ଼ ମୋ ମସ୍ତକେ ।
ଭୀମ ଭୂମିକମ୍ପେ ଯାଉ ସ୍ୱର୍ଗ ରସାତଳେ,
ହେଉ ରେ ପ୍ରଳୟ ।
ହାୟ ବିଧି ! ଏ କି ହେଲା ?
କି ବୋଲି ଉତ୍ତର ଦେବି ମୁଁ ?
କି ବୋଲିବି ?
କ୍ଷୁଧାରେ ବିକଳ ପିତା-ମାତା
ଅତି ହତଭାଗ୍ୟ ମୁହିଁ ।
ନ ପାରିଲି ଶାନ୍ତ କରି ସେହୁହିଁଙ୍କ ଜ୍ୱାଳା ।
କୁକ୍ଷଣେ ପାଇଛି ଗତି ।
ଏହି ତ ! ପ୍ରସାରିତ ପିତାଙ୍କର କର ।
କି ଦେବି ଏ ହାତେ ?
ବିଧି ରେ ! ନିତାନ୍ତ ନିଷ୍ଠୁର !
ଏହି କି ହେ ବିଧାନ ତୁମ୍ଭର ?
ଘୋର ଅବିଚାର, ଘୋର ଅବିଚାର !
ଏହି ଗୁଣେ ଗୁଣବାନ୍ ତୁମ୍ଭେ ?
ଏହି ଗୁଣେ ବଡ଼ ଏ ଜଗତେ ?
ଛି ଛି ! କିବା ଅପରାଧେ
ଅପରାଧୀ ମୁହିଁ ?
ଜୀବନେ ଜୀବିତ ଥାଉ ମୋ'ସମ ସୁତ—
କିବା ଦୋଷ ପିତା-ମାତା
ପୁତ୍ରହୀନ ମୋର ?
ଓଃ, ବିଷମ ଏ ଜ୍ୱାଳା ! ବଜ୍ରସମ ବାଜେ ବୁକେ ।
ମୁନି—କାହିଁ ବାବା ! ବଡ଼ ଯେ ଜଠର ଜ୍ୱାଳା ।
ଶୂନ୍ୟ ଲାଗେ ଏ ତିନି ଭୁବନ ।
କାହିଁ ? ଦିଅ, ଫଳ ଦିଅ ।
ସିନ୍ଧୁ—(କାନ୍ଦି-କାନ୍ଦି) ବାବା, ବାବା ! (ପଦଧାରଣ)
ମୁନି—କି ବାବା ? ( କୋଳେଇନେଲେ )
ସିନ୍ଧୁ—ଫାଟିଯାଏ ଛାତି
ଯାତନା ଅତ୍ୟନ୍ତ ।
ନିତାନ୍ତ ଅଧମ ମୁହିଁ,
ଅପରାଧୀ ଶ୍ରୀଚରଣେ ତବ ।
ଘୋର ପାପୀ, ପାପ ଦେଖି ଭୟେ
ବଜ୍ର ସୁଦ୍ଧା ନ ପଡ଼ଣେ ମୋତେ ।
ପିତା, ପିତା ! କି କରିବି ?
କି ହେଲି ରେ ? ବିଧି !
ଧିକ୍ ଧିକ୍, ଶତଧିକ ମୋତେ ।
ହୀନ ପ୍ରାଣେ କିବା ପ୍ରୟୋଜନ ?
ମୁନି—କି ହେଲା ରେ ନୟନର ତାରା ?
କି ଦୁଃଖ ରେ ତୋର ?
ଏ ଅନ୍ଧ-ଅନ୍ଧୁଣୀ—
ବେନି ପିଣ୍ଡ ଜୀବନ ତ ତୁହି,
ତୋ ମୁଖରୁ ଏ ବାଣୀ ଶୁଣିଲେ

ବାବା ! ଘୁରଯାଏ ମଥା,
ଫାଟିଯାଏ ଛାତି ।
କି ହେଲା ରେ ବାବା,
ଆତ୍ମନନ୍ଦା କରୁ କପାଁ ମିଛେ ?

ସିନ୍ଧୁ—ବାବା, ବାବା, କି କହିବି ?
ବିଧି ବାମ !
ଫାଟିଛି କରମ ମୋର,
ନ ପୂରିଲା ଆଶା
ହିନସାରା ବନେ-ବନେ
ଭ୍ରମି ପ୍ରାଣପଣେ;
କାହିଁ ହେଲେ ନ ମିଳିଲା
ଫଳର ସନ୍ଧାନ ।
କିଛି ତ ପାଇଲି ନାହିଁ ।
ବାବା, କହେବ ହେ ? କି କରିବି ?
କ୍ଷୁଧିତ ଯେ ତୁମ୍ଭେ,
କ୍ଷୁଧିତା ଜନନୀ ।
ଛି ଛି; କି କଲି ମୁଁ ପାପୀ,
କ୍ଷୁଧିତ ପିତା-ମାତାଙ୍କୁ
ନ ଦେଲି ଆହାର ।
ଅହୋ ! ଏହା ମଧ୍ୟ ଥିଲା କର୍ମେ ମୋର ?
ପିତା ! ପୁତ୍ର ନୁହେଁ ମୁହିଁ—ଶତ୍ରୁ ।
ପୂର୍ବକୃତ ପାପଫଳେ
ଉପବାସେ ରଖିଲି ତୁମ୍ଭଙ୍କୁ ।
ଅହୋ ! ଏହି ପାପେ ପୁଣି,
ହାୟ, ହାୟ, ନ ଜାଣେ ମୋ କର୍ମେ
କି ଘୋର ନରକେ ଅଛି ବାସ ? (ଅଶ୍ରୁମୋଚନ)

ମୁନି-ପତ୍ନୀ—ବାବା, ପାଇ ନାହୁଁ ଫଳ ?
ଏଥିଲାଗି ବିକଳ କାହିଁକି ?
ଅଞ୍ଚଳର ନିଧି !
ତୁ ତ ମୋର ଆସିଛୁ ରେ ଘୁରେ ।
ଏଇ ତ ଯଥେଷ୍ଟ ।
ମିଶିଅଛି ତୋ ବଚନେ
ଅମୃତ ମଧୁର ।
ବନଫଳ ଲାଗିବ କି
ପାଖେ ତା'ର ?

ସିନ୍ଧୁ—(କାନ୍ଦି-କାନ୍ଦି) ମା ଗୋ !
ସ୍ନେହେ ଗଢ଼ା ହୃଦ ।
ସ୍ନେହମୟ ପିତା ମୋର ।
ଅଗାଧ ସେନେହେ
ବାନ୍ଧିଛ ଅଧମେ ।
ସେହିହେତୁ କହୁଛ ଏସନ ।
କିନ୍ତୁ ମା'ଗୋ,
ଉପବାସୀ ତୁମ୍ଭେଦୁହେଁ,
ନ ସହେ ମୋ ହିୟା ।
ମା ! ମା'ଗୋ । କି କରିବି ?
ଅଦ୍ୟାପି ରଜନୀ ନୁହେଁ ଶେଷ ।
ଅନେକ ସମୟ ଅଛି ।

ମୁନି-ପତ୍ନୀ—ଥାଉ ବତ୍ସ ବାବା ।
ଶୋଇଗଲେ ପାହିଯିବ ।
ପଲକପରି ଲାଗିବ,
ଜଣାଯିବ ନାହିଁ ।
ଉଦିଲେ ତପନ,
ପ୍ରଭାତ ହୋଇଲେ, ଯିବୁ ଫଳଆଣି ।
ଅଧୀର କାହିଁକି ?

ସିନ୍ଧୁ—ମା ! ବାରଣ ନ କର ।
ଯାଏଁ ଆଉ ଥରେ ।
ଦେଖେଁ ଚେଷ୍ଟା କରି
ଭାଗ୍ୟେ ଯଦି ମିଳେ କିଛି ଫଳ ।

ମୁନି-ପତ୍ନୀ—ତେଜ ଏ ଭାବନା,
ଅସ ବାବା, କୁଟୀରେ ତୁ ଆସ ।
ନୟନ-ସଙ୍ଖାଳି,
ଅଞ୍ଚଳେ ଧୋଡାଇ ତୋତେ ଅଞ୍ଚଳନିଧିରେ
ଭୁଲିଯିବ ଉପବାସ ବାଧା ।
ଚିନ୍ତା ନାହିଁ, ଆସ, ଆସ ବାବା ।
(ହାତ ବଢ଼ାଇଲେ । ହସ୍ତ ଧରି ସିନ୍ଧୁ ଦୁହିଁଙ୍କୁ
ନେଲେ ! ତିନି ଜଣଯାକ ଉଠିଲେ । )

ମୁନି—( ଯାଉଁ-ଯାଉଁ ) ସିନ୍ଧୁରେ,
ଗଳା-ମାଳା ତୁ ଆମ୍ଭର,
ଦରିଦ୍ରର ଧନ ।
ରଙ୍କନିଧି ! ପାଶେ ଥିଲେ ତୁହି
କିବା ଘୁଚର ଖେଦ-ଶୋଷଜ୍ୱାଳା ?
ଭୁଲିଯିବୁଁ କାହିଁ ।
ଚାଲ ବାବା,
କୁଟୀରେ ତୁ ଆସ । (କୁଟୀରଭିତରକୁ ଗଲେ)

---

## ଦ୍ୱିତୀୟ ଦୃଶ୍ୟ

(ବନପଥ ନିକଟ । ବନବାସିନୀଗଣ । ମେଘରାତ୍ରି—
ଅଳ୍ପ ଅନ୍ଧକାର ।)

(ଗୀତ)

(ଏ) ଅତିରେ ଗୁମ୍ଭି ଗୁମ୍ଭି ଘନ ଗରଜେ,
ଛନ-ଛନ ଘନେ ବିଦ୍ୟୁ ସରଜେ, ଯରଜେ ।
ଘନ ଗମ୍ଭୀରେ ଗାଏ; ଜୀବ ଯାଏ ।
ଶଙ୍କିତ ଘନ-ଘନ-କମ୍ପିତ ଗିରି ବନ;
ଗୁମ୍ଭି ଶ୍ୱାସ ଖର ବରଜେ; ବରଜେ ।
( ନାଚି ନାଚି ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

( ଅରଣ୍ୟ—ରାତ୍ରୀ )

ବିଦୂଷକ—(ଭୀତ ହୋଇ ଅଣ୍ଡାଳ-ଅଣ୍ଡାଳ ପ୍ରବେଶି) ମ···ମ, ମହାରାଜ ! ରକ୍ଷା କର । ଧର୍ମ ! ହେ ଧର୍ମ; ତିନି-ସନ୍ଧ୍ୟାରେ ତୁମ ମୁହଁରେ ପାଣିଦେବି । ରଖ, ହେ ଧର୍ମ, ମାନମୟୀ ବ୍ରାହ୍ମଣୀର ଏକମାତ୍ର ସନ୍ତକ, ଏକମାତ୍ର ଅକ୍ଷି, ଦ୍ୱିତୀୟ ନାସ୍ତି । ରକ୍ଷା କର ମୋତେ ଧର୍ମ ! ମହାରାଜ, ହେ ମ, ମ, ମ···

ଦଶରଥ—(ବ୍ୟସ୍ତଭାବେ ପ୍ରବେଶ ହୋଇ ) ଓଃ, କାହିଁକି ଏତେ ପାଟିକରୁଛ ? ଏମିତି ପାଟିକଲେ ଯେ ଜନ୍ତୁ ପଳାଇବେ । ତୁନି ହୁଅ, ତୁନି ହୁଅ ।

ବିଦୂଷକ—ଓଃ, ମୁଁ କି ଖୁସିରେ ପାଟିକରୁଛି ? ପାଟି ତ ଘୁଏଁ-ଘୁଏଁ ହୋଇଯାଏ; ହାତ ତ ଥର-ଉଠୁଛି । ଦେଖ, ଛାତିରେ ହାତ ମାର । ଦେଖ, ମୁଁ ଯାଏଁ; ସଖା, ମୁଁ ଯାଏଁ । ଏଠୁ ପଳେଇଲେ ବଞ୍ଚେ ।

ଦଶରଥ—ଏତେ ଭୟ କାହିଁକି ସଖା ! ଧୈର୍ଯ୍ୟ ଧର; ମୁଁ ତ ଧନୁଶର ଧରି ତୁମ ପାଖେ-ପାଖେ ଅଛି, କିଛି ଭୟ ନାହିଁ ।

ବିଦୂଷକ—ନାହିଁ ବୋଲି କହିଲେ କି ଚଳେ ? ତୁମେ ଯେତେ କହ ଭୟ ନାହିଁ, ମୋର ତ ମନଟା ମାନୁ ନାହିଁ ।

ଦଶରଥ—କେମିତି ମାନୁ ନାହିଁ ?

ବିଦୂଷକ—କେମିତି ଆଉ ଫେର୍ କଅଣ ? ଏଠି କେମିତି ବୋଲି କହିଲେ, ତମ ମହାରଜାର ହୁକୁମ ଆଉ ଚଳିବ ନାହିଁ । ଛାତିଥରାକୁ ଆଉ ଉପାୟ କ'ଣ ? ଛାଡ଼ ଛାଡ଼, ମୁଁ ଯାଏଁ ।

ଦଶରଥ—ଫେର୍ ସେଇ କଥା ?

ବିଦୂଷକ—ହଁ, ଆଉ କଅଣ ଏଠି ବେଦଚର୍ଚ୍ଚା କରନ୍ତି ? ଯାହାର ବ୍ୟଥା, ତା ମନ ଜାଣେ । ଯାହାର ଯେଉଁଠି ବ୍ୟଥା, ସେ ସେହି ଠାଣି ଘୋଡ଼େଇରଖେ, ଜାଣ ?

ଦଶରଥ—ହଁ, ଜାଣେ । ବାକି ତୁମେ ତ କାହିଁ ପେଟଟି ଘୋଡ଼େଇ ନାହଁ ସଖା ? ପେଟଉପରେ ତ ହାତ ଦେଇ ନାହଁ ?

ବିଦୂଷକ—ଆରେ ପେଟ ? ପେଟ କି ଆଉ ଅଛି ? ତା'ର କୋଉଠି କୋଉ କୋଣରେ ପଡ଼ିଛି । ଏ ବ୍ୟଥା ଯେ ଜୀବନରେ ଲାଗୁଛି । ଜୀବନରେ ବଞ୍ଚିଥିଲେ ତ ପେଟ ? (ଉଚ୍ଚେ) ଓ···ସାରଥି !

ଦଶରଥ—( ବିଦୂଷକ-ପାଟିରେ ହାତଦେଇ ) ଓଃ, ଫେର୍ ଚିତ୍କାର ?

ବିଦୂଷକ—ଆଉ କି କରିବି ସଖା ? ତୁମେ ଚାଲେ ମୋ ସାଙ୍ଗରେ ଚାଲ, ନୋହିଲେ ନିଷ୍ଟ ବ୍ରହ୍ମହତ୍ୟା

ହେବ । (କାନ୍ଦଣାପରି) ଏ ଟେ ଗୋ, ବ୍ରାହ୍ମଣୀର ତ ଆଉ କେହି ନାହିଁ ଗୋ, ମୁଁ ବୋଲି ଗୋଟିଏ ! ମହାରାଜ ! ଏଁ, କ ହେବ? ତାର କ ହେବ ? ମୁଁ ଯାଏଁ—ପଳାଏଁ ।

ଦଶରଥ—ଆରେ ଆଜ୍ଞା ତ ? କୁଆଡ଼େ ଯିବ ? ଆଉ କେମିତି' ବା ଯିବ ? ମୁଁ ତ ପାଖେ-ପାଖେ ଅଛି; ତେବେବି ଡରୁଛ, ଏକୁଟିଆ ପଳେଇବ କମିତି ?

ବିଦୂଷକ—(ଆଶ୍ଚର୍ଯ୍ୟ ହୋଇ) ଏଁ, ହଁ ତ, ସତ ତ, କେମିତି ଯିବ ? ଯାଇପାରୁ ନାହିଁ କ ରହିପାରୁ ନାହିଁ । (କାନ୍ଦି-କାନ୍ଦି) ଓ ହୋ ! ମୁଁ କାହିଁକି ଆସିଲି ? ଆସିବା ଆଗରୁ ଜୀବନଟା ଯାଇଥିଲେ ଭଲ ହୋଇଥାନ୍ତା ।

ଦଶରଥ—(ହସି) ବେଶ୍ ତ ! ସେଇ ଜୀବନଟେଇଭରେ ପଳେଇଯିବାକୁ ବସୁଛ । ଫେର୍ ସେଇ ଜୀବନ ଯିବା କଥା କହୁଛ ? କାହିଁକି ତେବେ ଆସିଲ ?

ବିଦୂଷକ—ପୋଡ଼ା ପେଟର ଦାଉରେ; ନୋହିଲେ କ ସଖା । ସାଦକରି ଆସିଥିଲି ? ଦେଖିବ ନାହିଁ କ ଯଦି ଏଇଥର ବଞ୍ଚେ, ରାଜଧାନୀକି ଗଲେ ଏ ପେଟରେ ଏକାବେଳେ ହୁତାଶନ ଲଗାଇ ଜଳେଇଦେବି । (ନେପଥ୍ୟେ ପଦଶବ୍ଦ ଶୁଣି, ଥରି) ଏ ବାବା, ଆଇଲା ଆଇଲା, ଏଇ ଆଇଲା, ଧଇଲା, ହାତ ବଢ଼େଇଛି (ଦଶରଥଙ୍କୁ କୁଣ୍ଢାଇ) ସଖା, ଦେଖ ଦେଖ, କେଡ଼େ ବଡ଼ ହାତ ? ଦେଖୁଛ ନା ? ଏଁ···ମୁଁ ମଲି ।

ଦଶରଥ—( ବିରକ୍ତ ହୋଇ ) କହୁଛି ତୁମ୍ଭ ଚୁପ ହୁଅ ବୋଲି···

ବିଦୂଷକ—ମୁଁ କ ଚେଷ୍ଟା କରୁ ନାହିଁ ? ବାକ ହେଲେ ତ, (ଭୟରେ) ସଖା, ଦେଖ, କେଡ଼େ-କେଡ଼େ ଆଖି ! ଏଇ ଧଇଲା, ରଖ, ରଖ, ସଖା, ଚାଲ, ମୋତେ ରଥରେ ଗୁଡ଼ିଦେଇଆସ ।

ଦଶରଥ—ଓଃ, ତୁମକୁ ଗୁଡ଼ିଆସିଲେ ରକ୍ଷା ।

ବିଦୂଷକ—ଧର୍ମ, ରକ୍ଷା କର ଏତେବେଳେ ଗୁହାରି ଶୁଣିଲ । ହଁ ସଖା, ଚାଲ । ଟିକିଏ ଧରି ଧରି ନିଅ ମୋତେ । ମୁଁ ସେଇ ରଥଉପରେ ବସି ଆଖି ମୁଦି ଶିକାର ଦେଖୁଥିବି । (ପୁଣି ପଦଶବ୍ଦ) ସଖା, ସଖା ! ଧର-ଧର, ଏଇ ମୂର୍ଚ୍ଛା ଗଲି ମୂର୍ଚ୍ଛା ଗଲି ।

ଦଶରଥ—ଓଃ, ଆଉ ବ୍ୟସ୍ତ କରନା । ଚାଲ ଚାଲ, ଗୋଟିଏ ଗଳଗ୍ରହ ତୁମେ ।

ବିଦୂଷକ—ହଁ ସଖା; ଠିକ୍ ଠିକ୍ ( ହାତବଢ଼ାଇ ଦଶରଥଙ୍କୁ କୁଣ୍ଢାଇ ଥରି-ଥରି ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ରାତ୍ରି—ଅରଣ୍ୟ । ଗୀତ ଗାଉ-ଗାଉ କୁମ୍ଭହସ୍ତେ ସିନ୍ଧୁ ପ୍ରବେଶ । )

ଗୀତ

ବନବାସୀ ଫଳଆଶୀ
ଭାସିଲି ମୁଁ ଦୁଃଖ ନୀରେ ।
ତରୁ, ଲତା, ବନ, ଗିରି
ତଳେ ଦୟା ନାହିଁ କ ରେ ?
ଅନ୍ଧ ପିତାମାତା-ନେତ୍ରୁ
ଧାରା, ହାଏ, ନୀର ଝରେ ।
ହରି, ହରି ଦୀନବନ୍ଧୁ ନାମେ
କଳାଙ୍କ ଲାଗିଲା ।
ଦାତା ହୋଇ କୃପଣ ହେଲ
ଏ ଦୁଃଖ କହିବି କାହାରେ ?
(ଅଶ୍ରୁ ମୋଚନ କଲେ)

ଫଳ ନାହିଁ ।
ଅନାହାରେ ଜଳପାନ !
ଲଭେ କ ଜଠରଜ୍ୱାଳା—
ଖାଲି ଜଳପାନେ ?
ତେବେ କିପାଁ ଉଦନ୍ତା ଭାବନା ?
ଧିକ୍ ମୋତେ,
ମୋହୋ ହେତୁ ପିତାମାତା
ଲଭିଲେ ଏ ଦୁଃଖ !
କ କରିବ ? ଉପାୟ ବିହୀନ ।
ଯାଏଁ; ଆଣେ ଯାଇ
ସରଯୂର ବାରି । (ଅଳ୍ପ ଅଗ୍ରସର ହୋଇ)

(ଅଳ୍ପ ନୀରବ ରହି ତାଚ୍ଛଲ୍ୟ ହାସ୍ୟସହିତ)
ହୁଁ ! ସଳିଳେ କି ଯାଏ କ୍ଷୁଧା ?—
ବରଂ ବଢ଼େ ।
ହାୟ ! ହାୟ ! ବଧ୍-ବଡ଼ମ୍ବନା ।
ଦୟାମୟ ବିଧାତା ରେ !
ଭଲ୍ ଦୟା ଦେଖାଇଲୁ ଆଜ ।
ନାମେ ତୁ ଦୟାଳୁ ; ମାତ୍ର କର୍ମେ ବିପରୀତ ।
ଶୁଣିଛୁ ମୁଁ ପିତୃ-ମୁଖେ—
ତୁମ୍ଭେ ପରା ଜଗତର ପିତା ?
ଜୀବର ବ୍ୟଥାରେ ପାଅ ବ୍ୟଥା ?
ସେହି ତୁମେ ?
ତୁମେ ପ୍ରଭୁ ଜୀବ-ଅନ୍ନଦାତା ?
ଦୟାମୟ ତୁମେ ?
ଜୀବର ଜୀବନକର୍ତ୍ତା ?
ଏହି ତା'ର ପ୍ରମାଣ କି ପ୍ରଭୁ ?
କ୍ଷୁଧାରେ ପୀଡ଼ିତ ପିତାମାତା,
ରହିବ କି ନ ରହିବ ଜୀବ ।
ଦୟାମୟନାମେ କିପାଁ
ଲଗାଅ କଳଙ୍କ ?
କି କଠିନ ହୃଦୟ ତୁମ୍ଭର ?
(ଅଳ୍ପ ନୀରବ ରହି)
ନା ନା, ମିଛେ କିପାଁ ଦୋଷିବି ମୁଁ ବଧ୍ !
ହତଭାଗ୍ୟ ଏ ଜଗତେ ମୁହିଁ !
କାର୍ଯ୍ୟ ନାହିଁ ଆଉ ଗୁର୍ ପ୍ରାଣେ ।
ପିତାମାତା-ପ୍ରାଣ ଯିବାପୂର୍ବେ
ବିସର୍ଜ୍ଜିବ ଦେବ ପ୍ରାଣ
ସରଯୂ-ସଳିଳେ । (ଅଗ୍ରସର)
ସରଯୂର ଢଳ-ଢଳ ନୀଳଜଳରାଶି,
କଳକଳ ଆବାହନ-ଗୀତିଗାନେ,
ଲହରୀସହିତ ନେଇ ମଥା,
ଆଦରେ ଡାକଇ ମୋତେ କରିବାକୁ କୋଳ ।
ଯିବି, ମିଳିଯିବି ଅଙ୍ଗେ ।
ମରିବାଆଗରୁ ମୋର ବୃଦ୍ଧ ପିତା-ମାତା
ତେଜିବେ ଜୀବନ । (ପୁନଃ ଅଗ୍ରସର ହେଲେ)
(ଭାବି) କି କହିଲି ?
ନା ନା, ନ ପାରେ ତ ମରି ।
କିପରି ମରିବି ?
ମରିଲେ ମୁଁ,
ଅନ୍ଧ ପିତାମାତା ମୋର ନିଶ୍ଚୟ ମରିବେ ।
ନା ନା, ହେବ ନାହିଁ ଆତ୍ମଘାତୀ ।
ଥାଉ-ଥାଉ ପ୍ରାଣ,
କିପରି ମୁଁ ଦେବି ରେ ଭସାଇ—
ଅନ୍ଧ ଜନନୀ-ଜନକେ,
କାଳସ୍ରୋତ ଜାହ୍ନବୀ-ଗରଭେ ?
ଦେଖେଁ, ବିଧାତାର କୃଷ୍ଣ ।
ଚେଷ୍ଟାକରେଁ ଆଉ ଥରେ ।
ପାଇବି' ବା ଫଳମୂଳ କିଛି ।
ନାହିଁକି କେ ଦୟାଳୁ ଏ ଭବେ ?
ଯାଏଁ । (ଅଗ୍ରସର ହୋଇ)
ରଜନୀ ଗୋ ! ଜାଗିଉଠ ।
ଦେ' ମା ଡାକ ପ୍ରଭାତ ତପନେ ।
ବୃଦ୍ଧ ପିତା-ମାତା ମୋର କ୍ଷୁଧାରେ ଆକୁଳ,
କୂଳ ଦେ' ମା ଅକୂଳ ସାଗରେ ।
ଅହୋ ! କଠୋର ବିଧର ବିଧ୍,
ନ ପାରିବୁ ଏଡ଼ି ?
ଭୟେ କି ତେଣୁ ଅସମୟେ
ନ ପାରୁଛୁ ଗୁହିଁ ?
କିବା ଭୟ ଜନନୀ ଗୋ ?
ସେ ବିଧି ନିଜକୁ ମାନ
କାଳେ ଯେ ଲଙ୍ଘିଲି ।
କିବା ଭୟ ସେ କାଳକୁ ତୋ'ର ?
କ୍ଷୁଧାନଳେ ହୁଏ ଜୀବହତ୍ୟା—
ତାହା ସବୁ ସହେ ବିଧି ପ୍ରାଣେ
ତା ବିଧାନ କେ ଶୁଣିବ, କହ ?
ଜାଗ ମା, ଆନନ୍ଦମୟୀ
ଗଗନର ଯାମିନୀ,

ଉଠ ମା, ଉଠ ମା,
ନାହିଁ କି ମା, ତୋ ଅନ୍ତରେ ସ୍ନେହ
ମୋ ଜନନୀସମ ?
ଯେ ସେନେହବତ୍ସଳ ନନ୍ଦନ ଉପବାସୀ
ମାତା-ନୟନରୁ, ଦୂରେ ଥାଉ ଝରିବାର
ତପ୍ତଲୁହ-ଧାର;
ତନୟେ ନିରେଖି ତା'ର
ଆସେ ଶତ ସିଂହୀ-ତେଜ ।
ଫୁଟିଉଠେ ବିଷାଦ କାଳିମା-ସରେ
ପଦ୍ମ-ଶତଦଳ,
ଆଶ୍ୱାସଇ କୋମଳ ବଚନେ ।
ନାହିଁ କି ଗୋ ସେ ସ୍ନେହ ମା,
ଅନ୍ତରେ ତୋହର ?
ନା ନା, ମିଥ୍ୟା !
ଅଛି, ଅଛି, ନୋହିଲେ କିପାଇଁ
ଅସଂଖ୍ୟ ସନ୍ତାନ ମା ଗୋ !
ବକ୍ଷେରେ ପଡ଼ନ୍ତି ଶୋଇ
ସ୍ନିଗ୍ଧ କୋଳେ ତୋର ?
(ହସ୍ତପ୍ରସାର)
କଣାମାତ୍ର ସେହି ସ୍ନେହ ଢାଳିଦେ' ଜନନୀ !
ଭୁଲିଯାଅ, ଯାଅ ଭୁଲି ।
ଉଠୁ ରବି ପୂର୍ବରଙ୍ଗ ମେଘେ ।
ଫୁଟୁ ତେଜ ଆଲୋକର ରେଖା,
ଦେଖାଦେଉ ଅରଣ୍ୟର ଗୁରୁ ଗନ୍ତାଘର ।
ଖୋଜ ଗୃହଦଗେ ମା'ଗୋ, ଆଣେ ଫଳମୂଳ ।
ଦୟା କର ଜନନୀ ଗୋ,
ଶାନ୍ତ-ବିଧାୟିନୀ ନିଶିଥିନୀ !
(ପୁନଃ ଅଗ୍ରସର ହେଲେ)
(ଅଳ୍ପ ନୀରବ ରହି)—କାହିଁ, କାହିଁ ?
ରଜନୀ ଗୋ, ମା'ମୋର କାହିଁ ?
ଉଠିଲୁ ତ ନାହିଁ ?
ତେବେ ବୁଝିଲି ମା !
ଦରିଦ୍ରର ବନ୍ଧୁ କେହି ନାହିଁ ।
ନାହିଁ କେହି ଏ ଜଗତେ —
ନୟନର ପ୍ରାନ୍ତେ ଯା'ର
ଦୀନ-ଦୁଃଖେ ଝରେ ବାରିଧାର !
ଜାଣିଥିଲି ମୁହିଁ,
ସ୍ୱାର୍ଥପରତାର ସ୍ରୋତ ବହେ ଲୋକାଳୟେ ।
ଅନାଚାର, ଅବିଚାର, କ୍ରୂର ନିଷ୍ଠୁରତା
ଖାଲି ଲୋକାଳୟେ ଚଳେ !
ନିର୍ମଳ ନିର୍ଝର ଯହିଁ
ଝରଝରେ ବହି
ସ୍ୱର୍ଗ-ସୁଧା ଦିଏ ଢାଳି ଲତିକାପତ୍ରଗଣେ,
ଫୁଟେ ଫୁଲ, ଛୁଟେ ବାସ
ପବନେ-ପବନେ, ଜନହୀନ ସେ ବିଜନ ବନେ—
ଦେବତାର ନନ୍ଦନ-କାନନେ ।
ନାହିଁ ସେ ସକଳ, ନାହିଁ ହିଂସା, ନାହିଁ ଦ୍ୱେଷ—
ଜଗତର କଦର୍ଯ୍ୟ ବିଚାର;
କିନ୍ତୁ ଆଜ ?
ହୋଇଛି ସେ ଭ୍ରମ ମୋର ଦୂର ।
ବୁଝିଲି ମୁଁ
ଦରିଦ୍ରର ସକଳ ସମାନ ।
ଦରିଦ୍ରର ଲାଗି
ଲୋକାଳୟ, ଅରଣ୍ୟର ନାହିଁ କିଛି ଭେଦ ।
ସମାନ ସରବ ।
ଓହୋ, ନିର୍ମମ ବିଧାତା-ରାଜ୍ୟ କି ନା,
ସର୍ବସ୍ୱ ତ ଅଧିକାର ତା'ର
କିବା ଲୋକାଳୟେ, କିବା ବନେ ।
ମିଛେ କିପାଁ ଦୋଷ ଦେବ କାହାକୁ ଜଗତେ ?
(ଚମକି) ଏଁ, କିସ ? ଏ କି ହେଲା ?
ବାମଚକ୍ଷୁ ସ୍ଫୁରେ କିପାଁ ମୋର ?
(ବାମଚକ୍ଷୁ ଚପିଧରି)
ନ ଜାଣେ ଏଥିରୁ ବଳି—
ଅଛି କିବା ଦୁଃଖ ।
ନ ମିଳିବ କି ନେର ଜଳ ?
ଦେଖେଁ,
ବିଧାତାର ଛଳ ।
ଅସମ୍ଭବ ନୁହେଁ କିଛି, । (ପ୍ରସ୍ଥାନ)

ଦଶରଥ—(ପ୍ରବେଶି) କ୍ରମଶଃ ବଢ଼ଇ ନିଶି ।
କାହିଁ, କିଛୁ ପାଇଲି ତ ନାହିଁ !
ବନ୍ୟହସ୍ତୀ, ବରାହ, ଭଲ୍ଲୁକ--
ସକଳେ କି ତେଜିଲେଣି ବନ ?
ଥକିଲିଣି ଭ୍ରମି-ଭ୍ରମି ବନେ ।
ଯାଏଁ, ଦେଖେଁ ।
ଅପେକ୍ଷା କରିବି ଏହି ବୃକ୍ଷ-ଅନ୍ତରାଳେ ।
ଯାଏଁ, ଯଦି କିଛୁ ...
ସରଯୂନିକଟ,
ଜଳପାନ କରିବାକୁ
ଆସିପାରେ ଜନ୍ତୁ ଅବା କେହି ।
(ନେପଥ୍ୟେ କୁମ୍ଭରେ ଜଳପ୍ରବେଶ ଶବ୍ଦ)
(ହଠାତ୍ କାନଡେରି) ହିଁ ?
ବନ୍ୟହସ୍ତୀ ହେବ ।
(ପୁନଃ ଶବ୍ଦ ଓ ଦଶରଥ ଶୁଣିଲେ )
ହିଁ, ହେବ, ହେବ ସେହି ଶବ୍ଦ !
ବନ୍ୟହସ୍ତୀ ଆସିଅଛି ଜଳପାନେ,
ସରଯୂପୁଲିନେ । (ମୁଖରୁ ଆନନ୍ଦର ଆଭାସ)
ସ୍ତବ୍ଧ ସ୍ଥିର ହଗ,
ଅନ୍ଧକାର ପୁଣି ।
ଦେଖାଯାଉ ନାହିଁ କିଛି ।
କୃଷ୍ଣକାୟ କରି ଅଙ୍ଗ
ଶୁଭେ ମାତ୍ର ଜଳପାନ-ଶବ୍ଦ ।
ଉତ୍ତମ !
ଶବ୍ଦ ଲକ୍ଷ୍ୟ କରି,
ଶବ୍ଦଭେଦୀ ଛାଡ଼ିବି ଏଥର ।
ପରୀକ୍ଷା କରିବି ଆଜି ଶର-ବଳାବଳ !
(ଶରସଂଯୋଗ ଓ ଶରତ୍ୟାଗ)
ନେପଥ୍ୟେ—ଓଃ ! (ବିକଳ ଚିତ୍କାର)
କେ' ରେ ନିର୍ମମ ?
କେ ହାଣିଲା ଶର ମୋ ଉରସେ ?
କେ ବଧିଲା ?
ହାୟ ! ହାୟ !
କି ହୋଇବ ଅନ୍ଧ ପିତା-ମାତାଦଶା ?
ଓ ହୋ !

ଦଶରଥ—(ଚମକି) ଏଁ, ଏ କିସ ? ସର୍ବନାଶ !
କି କଲେ ?
ପଶୁଭ୍ରମେ ବିନ୍ଧିଲି ମାନବେ ।
କି କଲି ମୁଁ ?
ଯାଏଁ, ଯାଏଁ, ଦେଖେଁ ବେଗେ । (ଶୀଘ୍ରପ୍ରସ୍ଥାନ)

ମାୟା—(ଗାଇ-ଗାଇ ପ୍ରବେଶ)
ଭରିବାଦଲ, କମ୍ପେ ସାଗର, ବରଷେ ବାରିଧାର
ଏକାକୀ ସେ ଗୋ, ଅନ୍ଧକାରେ, ନୟନ-ଶାନ୍ତିତାର
ଏକାକୀ ସେ ଗୋ କୋଟି ଆଲୋକ,
ଅନ୍ଧନୟନ - କିରଣ ଝଲକ
ଥିଲା ତ ସେ ଗୋ, କାନନଧାମେ
କଲକଣ୍ଠ ଗିର
ହା'ରେ କଠୋର-ହୃଦୟ ନିଠୁର
କରିଲୁ ଜ୍ୟୋତିହାରା ।
ମାୟା-ଛଳନା, କେ' କରେ କଳନା ?
ବିଧିର ବିଶ୍ୱସାର ।

(ପଟ୍ଟପତନ)

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ସରଯୂ-କୂଳ । ଜଳନିକଟରେ ସିନ୍ଧୁ—ଶରବିଦ୍ଧ ।
ଦଶରଥପ୍ରବେଶି ସିନ୍ଧୁକୁ ଦେଖି ଚମକି)
ଓଃ, ଏ କି କଲି ?
(ପୁନଃ ନିକଟକୁ ଯାଇ)
ବଧିଲି ମାନବେ ?
ଆହା ! ଅହା !
ବ୍ରାହ୍ମଣ ବାଳକେ
ବିନ୍ଧିଲି ସୁତୀକ୍ଷ୍ଣ ଶର
କରିଭ୍ରମେ ମୁହିଁ !
ଏ କି କଲି ?

ସୁକୁମାର କୁସମ ଅଙ୍ଗରେ
କଠୋର କୃପାଣ !
ହାୟ ! ହାୟ ! କି କଲି ମୁଁ ?

ସିନ୍ଧୁ—(ବିକଳ ହୋଇ) କିଏ ତୁମେ ଅସ୍ତ୍ରଧାରି ?
କିଏ ତୁମେ ବଧିଲ ହେ ମୋତେ ?
କିଏ ତୁମେ ?

ଦଶରଥ—(ସ୍ୱଗତ ଚମକି) ହିଁ, କି ବୋଲିବି !
କି ବୋଲି ମୁଁ ଦେବି ରେ ଉତ୍ତର ?
କି କହିବି, କିଏ ମୁହିଁ ?

ସିନ୍ଧୁ—(ପୂର୍ବବତ୍) କିଏ ତୁମେ ?
ଓଃ, କିଏ ତୁମେ ?

ଦଶରଥ—(ଅଳ୍ପ ଅଗ୍ରସର ହୋଇ)
ଓହୋ, ପୁଣି ସେହି ସ୍ୱର !
ସେହି ପ୍ରଶ୍ନ ! କି ଉତ୍ତର ଦେବି ?
ମୃତ ନା ଜୀବିତ ମୁହିଁ !

ସିନ୍ଧୁ—ଉତ୍ତର ନ ଦିଅ କିପାଁ ଅସ୍ତ୍ରଧାରୀ ତୁମ୍ଭେ ?
ଦଶରଥ—କିଏ, କିଏ ? ବ୍ରହ୍ମଘାତୀ କ୍ଷତ୍ରୀ କୁଳାଙ୍ଗାର,
ନାରକୀୟ କୀଟ, ଅପଦାର୍ଥ !
ଘୋର ଅପଦାର୍ଥ !

ସିନ୍ଧୁ—କିଏ ତୁମ୍ଭେ ? ଆତ୍ମନିନ୍ଦା କର କିପାଁ ମିଛେ ?
କିଏ ତୁମ୍ଭେ ଅସ୍ତ୍ରଧାରି ? ପରିଚୟ ଦିଅ ।
ଦଶରଥ—ପରିଚୟ ! ଶୁଣିଲହିଁ ହୀନମତି
ପାପୀ ଦଶରଥ !

ସିନ୍ଧୁ—କିଏ ? ଅଯୋଧ୍ୟାର ରାଜା !
ଦଶରଥ— ସୁକୁମାର ବ୍ରାହ୍ମଣ ତନୟ !
ଆଉ ରାଜା କିପାଁ ?
ରାଜା ନୁହେଁ, ବ୍ରହ୍ମଘାତୀ—ନୀଚ, ନୀଚ !
ନୀଚାଦପି ନୀଚ !
କ୍ରୂରମତି କଠୋର ନିର୍ମମ !

ସିନ୍ଧୁ— ମହାରାଜ, ଦରିଦ୍ର ତାପସ ପୁତ୍ର ମୁହିଁ,
ଅନ୍ଧ ପିତା-ମାତା ମୋର,
ସାରାଦିନ ଉପବାସୀ ।
ନ ମିଳିଲା କାହିଁ ଫଳମୂଳ
କ୍ଷୁଧା-ନିବାରଣଲାଗି ।
ଆସିଥିଲି ନେବାକୁ ମୁଁ
ସରଯୂର ବାରି ।
ଅନ୍ଧ କ୍ଷୁଧାତୁର,
ଅନ୍ଧ ତୃଷାତୁର ।
ରହିବେ କି ଜୀବ ଯିବ ।
ଏ କାଳ-ରଜନୀକାଳେ
ଅନ୍ଧକୋଳ ଶୂନ୍ୟ କରି
ଆସିଥିଲି ଏଥି ।
ହେଇ, ପଡ଼ିଛି ଏ ଘଟ ଦେଖ,
ଆଣିଥିଲି ନେବାକୁ ମୁଁ ଜଳ ।
ଚିର ବନବାସୀ ମୁହିଁ,
ବନଫଳେ ଗଢ଼ା
ଜୀବନ ମୋହର ।
କରି ନାହିଁ ଅପକାର
ଜୀବନେ କାହାର ।
ଚିରକାଳ କଷାୟ ବସନ
ଅବା ବଲ୍କଳ ପ୍ରହରି
ନିଏ ଦିନ ହରି ।
ଲୋକାଳୟେ ରାଜତ୍ୱ ରାଜାର ।
କରି ନାହିଁ ରାଜଦ୍ରୋହ କେବେ,
ତୁମ୍ଭେ ଦୋଷେ ଦୋଷୀ,
କିପାଁ ତେବେ ମହାରାଜ !
ବିନା ଦୋଷେ
ହାଣିଲେ ଏ ଶର ?
ମରିବି ମୁଁ, କ୍ଷତି ନାହିଁ କିଛି,
ଜନମ ହୋଇଲେ ଧ୍ରୁବ ମରଣ ଜଗତେ;
କିନ୍ତୁ ହାୟ !
ଅନ୍ଧ ମୋର ଜନନୀ ଜନକ ଦୁହେଁ;
ଜୀବନ-ଆଲୋକ ଏକା ମୁହିଁ ।
ନ ଜାଣେ କି ଅଛି ଭାଗ୍ୟେ,

ଅନ୍ଧରନ୍ଧ ପୁତ୍ର-ଶୋକେ ଦଗ୍ଧ ପଳେ-ପଳେ,
ଲୁଟିବେ ଧରଣୀ,
ମରିବେ ନିଶ୍ଚୟ ।
ଥିଲି ମୁହିଁ—
ଗ୍ରୀଷ୍ମ ମରୁ-ଜଳକୁଣ୍ଡସମ
ଅନ୍ଧ-ନୟନର ତାରା,
ଜୀବନ-ଆଲୋକ—
ଅନ୍ଧର ଲଉଡ଼ି
ଥିଲି ମୁହିଁ ।
ଏକମାତ୍ର ପୁତ୍ର ମୁହିଁ
ନାହିଁ ଆନ କେହି ତାହାଙ୍କର ।
ମହାରାଜ ! କି କହିବି ?
କି ହୋଇବ, କି ହୋଇବ ତାଙ୍କ ଦଶା ?
ମହାରାଜ !
ମାରି ମୋତେ,
ବଧି ନାହିଁ ଗୋଟିକର ଜୀବ ।
ଏକବାଣେ,
କରିଛ ଶୀକାର ତିନି ଜଣେ ।
ବିନା ଦୋଷେ ତିନି ପକ୍ଷୀ
ତେଜିବେ ଜୀବନ ତବ ଶରେ ।
ଆହା ! ହା !

ଦଶରଥ—ଛି ଛି, ଧିକ୍ ଧିକ୍, କ୍ଷତ୍ରୀ କୁଳାଙ୍ଗାର
ଦଶରଥ !
କି ଦୁଷ୍କାର୍ଯ୍ୟ କରିଲୁ ସାଧନ ?
ଏତେ ଦିନେ କଲୁ ବ୍ରହ୍ମହତ୍ୟା !
ହାୟ, ହାୟ ! କି ହେବ ରେ ଦଶା !

ସିନ୍ଧୁ—ହାୟ ପିତା ! ହାୟ ମାତା !
ଗୃହିଁରହିଥିବ ପଥେ ଆକୁଳ ନୟନେ,
କ୍ଷୁଧାରେ ବିକଳ ।
ତୃଷାରେ ତ ଦଶ ଦିଗ ମଣୁଥିବ ଶୂନ୍ୟ !
ଅହୋ, କେଡ଼େ ନିଷ୍ଠୁର ମୁଁ !
ମହାପାପୀ ! ମହାପାପୀ !
ମରଣାନ୍ତେ
ନରକେ କି ନାହିଁ ସ୍ଥାନ ମୋର ?
ନ ପାରିଲି ଦୂର କରି
ପିତା-ମାତା ଦାରୁଣ ଯାତନା ।
ଓହୋ ! ନ ପାରିଲି ଦେଇ ସେଦୁହିଁଙ୍କୁ
ଏକବିନ୍ଦୁ ଜଳ ପିପାସାର କାଳେ ।
ହାୟ, ହାୟ !
ଅନ୍ତିମ ନିକଟେ
ପୂଜି ନ ପାରିଲି ବାରେ ସେ ରଙ୍ଗଚରଣ !
ପିତା ! ମା' ଗୋ !
ଓଃ, ବଡ଼ ବିଷମ ଯାତନା !
ବଡ଼ କଷ୍ଟ !

ଦଶରଥ— ମୁନିପୁତ୍ର ! କରିବ କି ଜଳପାନ ?

ସିନ୍ଧୁ— ଜଳପାନ !
ଓଃ !
ପିପାସାରେ ପିତା-ମାତା ଅତ୍ୟନ୍ତ ଆକୁଳ,
ତହିଁପରେ ଜଠର-ଯାତନା—
ଉପବାସ-ଦୁଃଖ !
ନ ପାରିଲି ଶାନ୍ତ କରି ସେଦୁହିଁଙ୍କ ଜ୍ୱାଳା ।
କି ସାଧେ ପିଇବି ଜଳ ?
ନା ନା,
ଶୁଷ୍କକଣ୍ଠେ ଯାଉ ପ୍ରାଣ ।
ମହାରାଜ !
ଅତ୍ୟନ୍ତ ଯାତନା, କେଡ଼େ ଜ୍ୱାଳା ।
ଗୃହିଁଥିବେ ପିତା-ମାତା,
ବାରିବିନ୍ଦୁ ଲାଗି,
କିଏ ଦେବ ଜଳ ?
ହେ ପିପାସା !
ଦୟା କର ଘନଜନେ,
ଅନ୍ତିମ ଶୟନେ ମାଗେ କରଯୋଡ଼ି ଶିଶୁ ।
ମା' ଗୋ !
ଅଜୀବ ଆଦରେ
କରିଥିଲୁ କୋଳ,
ଅତି କଷ୍ଟେ ପାଳିଥିଲୁ ମୋତେ

ହେବ ବୋଲି ଅନ୍ଧନୟନର ଯଷ୍ଟି ।
ନା ନା, କ୍ଷମା କର ଦୋଷ,
ଅକର୍ମଣ୍ୟ ଅଧମ ମୁଁ ।
କେତାନ୍ତ ଦୁର୍ଭାଗ୍ୟ !
ଜନନୀ ଗୋ !
ନ ପାରିଲି କରି ସେବା ।
ମହାରାଜ !
ଏତେ କି ନିଷ୍ଠୁର ତୁମେ ?
ନ ଜାଣ କି ଜନନୀର ମାୟା ?
ରାଜା ବୋଲି
ନ ବୁଝ କି ଜନନୀର ସ୍ନେହ ?
ରାଜସୁତ ଶିଶୁ
ପଲଙ୍କ ଆସନେ
ଲଭେ ଯେଉଁ ସୁଖ,
ନାହିଁ କି ହେ ସେ ଆନନ୍ଦ
ଦୀନ-ଦୁଃଖୀ ଜନନୀର
ଜୀର୍ଣ୍ଣ ଛିନ୍ନ ପଣତକାନରେ ?
ଦରିଦ୍ର କି ନ ଜାଣଇ,
ସନ୍ତାନ-ଆଦର ?
ଦରିଦ୍ର-ଜନନୀ କି ହେ
ନ କରେ ଚୁମ୍ବନ ଶିଶୁମୁଖେ
ଢାଳି ଶୁଭାଶିଷ
ନୟନର ବାରି ?

ଦଶରଥ—(ଅଧୀରେ) ଓଃ, ଓହୋ, ସ୍ତବ୍ଧ ହୁଅ କର୍ଣ୍ଣ,
ବିଦୀର୍ଣ୍ଣ ହୁଅ ରେ ବକ୍ଷ !
ବିଷମ ଯନ୍ତ୍ରଣା !

ସିନ୍ଧୁ—ବଢ଼ଇ ଯାତନା କ୍ରମେ ।
ମହାରାଜ !
ତୁମ ତୀକ୍ଷ୍ଣ ଶରଠାରୁ
ଏ ଯାତନା ଅତ୍ୟନ୍ତ ଭୀଷଣ ।
ଘୋର ନିଶା,
ଦିଶେ ମୋତେ, ଆହୁରି ଅନ୍ଧାରମିଶା

ଓଃ, କି କରିବି ?
ଫାଟିଯାଏ ବୁକୁ,
ସହି ନ ପାରଇ ଆଉ
ତୀକ୍ଷ୍ଣ ଶରଜ୍ୱାଳା !

ଦଶରଥ—(ସ୍ୱଗତ) କି କରିବି ?
କ୍ରମେ-କ୍ରମେ ହେଲା ଅବସାନ,
ଶ୍ୱାସ କ୍ରମେ ଲାଗେ କ୍ଷୀଣୁ କ୍ଷୀଣ ।
କରେଁ କି ଉପାୟ ?
ହେ ବିଧାତା,
ଏହି ଥିଲା ଶେଷେ ?—
ବ୍ରହ୍ମହତ୍ୟା, ଶିଶୁହତ୍ୟା, ନରହତ୍ୟା ?
ଧିଅ ବୁଦ୍ଧି ହରି !
ଯାଉ ଜୀବ ବ୍ରାହ୍ମଣ-ସନ୍ତାନ ।

ସିନ୍ଧୁ—ମହାରାଜ !
ତୀକ୍ଷ୍ଣ ଶର
ମର୍ମସ୍ଥାନ କରନ୍ତି କର୍ତ୍ତନ ।
ବଡେ ଭ୍ରମ ଜାଲା,
ନାହିଁ ପରିତ୍ରାଣ ।
ବଡ଼ କଷ୍ଟ !
ଓଃ, ମୁକ୍ତ କର ଶର,
ରକ୍ଷା କର,
ଯାତନାରେ ଯାଏ ପ୍ରାଣ ।
ଓଃ, ପିତା, ମାତା,
ମା'ଗୋ···

ଦଶରଥ—(ସ୍ୱଗତ) ଖୋଲିବି କପରି ଶର ?
ନାହିଁ ନାହିଁ ହୁଏ ଅବା
ବ୍ରହ୍ମହତ୍ୟା ଶେଷେ ।
କେ ଜାଣି କି ହେବ,
ଲାଗେ ଭୟ ।

ସିନ୍ଧୁ—(ଅତି ବିକଳେ) ମହାରାଜ !
ହେବ ନାହିଁ ବ୍ରହ୍ମହତ୍ୟା,
ନୁହେଁ ମୁଁ ବ୍ରାହ୍ମଣ ।

ବୈଶ୍ୟର ଔରସେ
ଆଉ ଶୂଦ୍ରାଣୀ ଉଦରେ
ଜନମ ମୋହର ।
ନ କର ଭାବନା ।
କି କରିବ ?
ବିଧିଲିପି କେ କରିବ ଆନ ?
ତୋଳ ଶର, ବଢ଼ଇ ଯାତନା କ୍ରମେ ।
ଓଃ, ଦାରୁଣ ଯାତନା !

ଦଶରଥ—(ସଖେଦେ) ଧିକ୍, ଧିକ୍ ! (ଧନୁଫିଙ୍ଗି)
ଦୂର ହୁଅ ଧନୁବାଣ !
କି କରିଲି ?
ବିନାଶିଲି ନିରୀହ ବାଳକେ ?
ଅନ୍ଧ ବୃଦ୍ଧ ଦୁଇଟି ପ୍ରାଣୀଙ୍କୁ
ଦେଲି ସନ୍ତାନର ପୀଡ଼ା !
ପାପ ଅସ୍ତ୍ର ନ ଧରିବ ଆଉ ।
ଧିକ୍ ଧିକ୍ !

ସିନ୍ଧୁ—ମହାରାଜ !
ଦୈବଲିପି କେ' କରେ ଖଣ୍ଡନ ?
ତବ ଶରେ ମୃତ୍ୟୁ ମୋର ବିଧାତାର ଇଚ୍ଛା—
ହୋଇଅଛୁ ପୂରଣ ଏବେ ।
ଅଜ୍ଞାନେ କରିଛ ପାପ,
କିପାଁ ତେବେ ହେଉଛ କାତର ?
କର୍ମଫଳ ଅବଶ୍ୟ ଭୁଞ୍ଜିବ ।
କର୍ମଫଳୁଁ କେହି ନୁହେଁ ଭିନ୍ନ ।
ଭାଗ୍ୟେ ମୋର ଅକାଳ ମରଣ ଲେଖା ।
ତୁମ୍ଭେ କି କରିବ ?
ତୋଳିଦିଅ ଶର ଏବେ
ମର୍ମସ୍ଥାନୁ ମୋର,
ଚାଲ ନେଇ ମୋତେ
ମୋର ପିତା-ମାତାପାଶେ ।
ଏହି ବନ-ପଥ ଦେଶେ,
ଚାଲ ସେହି ପଥେ ।
ଥିବ ସାବଧାନ ।
ପ୍ରଥମେ ପ୍ରସନ୍ନ କରି ଜନନୀ-ଜନକେ,
କୌଶଳ ଆଚରି
ଜଣାଇବ ମୋର ମୃତ୍ୟୁକଥା,
ନଚେତ୍ ଘଟିଇ ପାରେ
ବିଷମ ବିପଦ ।
ଦେବେ କାଳେ ଅଭିଶାପ ପିତା ।
ଚାଲ ରାଜା,
ବିଳମ୍ବ ନ କର ।
ଘଟିବଟି ବିଳମ୍ବେ ବିପଦ !

ଦଶରଥ— ହା ବିଧାତା !
ରକ୍ଷା କର, ରକ୍ଷା କର,
ରକ୍ଷା କର ବାଳକ-ଜୀବନ ।
( ଆକ୍ଷିମୁଦ୍ଦ ଶର କାଢ଼ିଲେ )
ଓଃ, ହରି !

ସିନ୍ଧୁ—(ଚମକି) ଉହୁଁ-ହୁ ! ଅତ୍ୟନ୍ତ ଯାତନା !
ଗଲା ପ୍ରାଣ, ଯାଏଁ ରାଜା !
ପିତା-ମାତା ମୋର,
ଆହା !
ମୃତ୍ୟୁକାଳେ ଥରେ ଯାହା ନ ଦେଖିଲି ପଦ,
(କର ଯୋଡ଼ିଲେ)
କ୍ଷମ ଅପରାଧ ମୋର ।
ଅଧମ ସନ୍ତାନ !
(କ୍ଷୀଣସ୍ୱରେ) ସ୍ନେହମୟୀ ଜନନୀ ଗୋ ମୋର,
ଓଃ, ଓଃ, ହରି, ନାରାୟଣ, ଓଃ... ( ମୃତ୍ୟୁ )

ଦଶରଥ—(ଚମକି) ଏଇ,
ସ୍ପନ୍ଦହୀନ ହେଲା ତ ଶରୀର ।
ଶେଷ ହେଲା ।
ବଢ଼ିଲା କାଳରଜନୀ ।
କ୍ଷତମୁଖୁଁ ବହେ ରକ୍ତଧାର ।
ଓଲଟିପଡ଼ିଲା ଶିଶୁ-ନୟନର ତାରା ।
ହାୟ, ହାୟ, ଗଲା ଉଡ଼ି ପ୍ରାଣ-ପକ୍ଷୀ ଏବେ ।
ଫୁଟିଆସୁଥିଲା କଳି,

ନିମନ୍ତ୍ରେ କଠୋର ଦଶରଥ, କଲ୍ଲି ଦଂଶନ ?
ନ ଜାଣେ ଏ ପାପେ
କି ନରକେ ବାସ ହେବ ମୋର ?
ପାତକର ଶାସ୍ତି ଭୋଗ ହୋଇବ ନିଶ୍ଚୟ;
କିନ୍ତୁ ଦୁଃଖ—
ଅନ୍ଧ ତାପସ-ଦମ୍ପତି ହେଲେ ପୁତ୍ରହରା ।
ବଞ୍ଚିବେ କି ସତେ
ସହି ସନ୍ତାନର ଶୋକ ?
ବୃହିଁରହିଥିବେ ପଥେ ଜଳ-ଆଶେ,
ପାଞ୍ଚୁଥିବେ ମନେ, ଯାଇଛି ତ ପୁତ୍ର
ଆଣିବାକୁ ଜଳ ।
ଶୁଣିଲେ ସେ ମୋ ମୁଖରୁ
ଏ ବିଷମ ମୃତ୍ୟୁ,
ମହାବଜ୍ର ପଡ଼ିବ ମସ୍ତକେ ।
ଭୀମ ଲେଲିହାନ କାଢ଼ି
କୋଳାହଳ, ଦାବାନଳ
ଉଠିବ ଏ ଅରଣ୍ୟମଧ୍ୟରେ ।
କରେଁ କି ଉପାୟ ଏବେ ?
କାଳବ୍ରତ ହେଲା ମୋର କାଳ ।
ନ ଶୁଣିଲ କୌଶଲ୍ୟାର କଥା ।
କି ମୁଖରେ ଫେରିବି ମୁଁ ସତେ
ଅଯୋଧ୍ୟା ନଗରେ ?
କି ବୋଲିବେ ପୁରବାସୀ ?
ଯାଇଥିଲି ମୃଗୟାକାରଣେ,
ଫେରିଲି ମୁଁ କରି ଏକ
ତାପସ-ତନୟ ହତ୍ୟା !
ନା ନା; ବରଂ ମୃତ୍ୟୁ···,
ବରଂ ସରଯୂର ବାରି···
ଆତ୍ମହତ୍ୟା ! ମନ୍ଦ ନୁହେଁ,
ପାପକର୍ମ ପରିଣାମ ଏହି । ଯାଏଁ ।
( ଅଗ୍ରସର ହେଲେ)
(ଥକ୍କା ହୋଇ ରହି ) ଯିବି ? କାହିଁ ଯିବି ?
ରଖି ଏଥି ମୃତଋଷିପୁତ୍ରେ
କପରି ବା କରିବି ମୁଁ ପାପ ଆତ୍ମହତ୍ୟା ?
ବଢ଼ିବ ଅଧିକ ପାପ ସିନା ! ନା ନା, ଯାଏଁ ।
ଅନ୍ତିମ ବଚନ ଋଷି-କୁମାରର
ପାଳିବି ମୁଁ ନିଶ୍ଚେ ।
ଯାଏଁ, ଅନ୍ଧ-ଦମ୍ପତିନିକଟ,
ଜଣାଇବି ଧରି ପଦଯୁଗ ।
ଦେଖେଁ, ଯଦି ପାଇପାରେଁ କ୍ଷମା ।
ତହିଁପରେ ପାପପ୍ରାଣ ଦେବି ବଳି
ସରଯୂ-ସଲିଳେ ।
ପାପଫଳ ମିଶିବ ପାପରେ ।

(ସିନ୍ଧୁର ମୃତଦେହ ଧରି ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

(ବନପଥ)

ମାୟା —(ହସି-ହସି ଗାଇ-ଗାଇ ପ୍ରବେଶ ହେଲେ) ।

(ଗୀତ)

ପାଷାଣଭେଦି, କି କରୁଣ କଣ୍ଠ,
କଠୋର ପ୍ରାଣେ ବାଜେ ॥ ୦ ॥

ସେ ତାନେ କମ୍ପେ ଗଗନ ଅଙ୍ଗ,
ବଜ୍ରିଲା ବଜ୍ର ଦେଖାଏ ରଙ୍ଗ,
ଶିହରେ ପବି, ପାଦପସଙ୍ଗ,
ଅଚଳ ଶୃଙ୍ଗ ଭଜେ ॥ ୧ ॥

କରୁଣ କଣ୍ଠ କେଡ଼େ ସେ ଧୀର,
ମରମ - ଜ୍ୱଳନେ କେଡ଼େ ପ୍ରଖର,
କମ୍ପେ ଭୁବନ, ହସେ ମୋ ମନନ,
ହୃଦେ ଆନନ୍ଦ ରାଜେ ॥ ୨ ॥

ଗାଇ ଗାଇ ମାୟା ପ୍ରସ୍ଥାନ

---

## ତୃତୀୟ ଦୃଶ୍ୟ

(କୁଟୀର ନିକଟ । ଅନ୍ଧ ମୁନି ଓ ମୁନିପତ୍ନୀ)

ମୁନି—ତପସ୍ୱିନି !
ବିଳମ୍ବ ହୋଇଲା କପାଁ ?
କାହିଁ ଗଲା ସିନ୍ଧୁ ?
କେତେ ଦୂର ଗଲା ?
ନ ମିଳିଲା ଫଳ,
ସେହିପରି ମିଳିବ କି ନାହିଁ ଜଳ ଆଜ ?
କେଜାଣି କି ଅଛି କର୍ମେ ?

ମୁନି-ପତ୍ନୀ—ବାରଣ ତ କରୁଥିଲି ମୁହିଁ ।
କାର୍ଯ୍ୟ ନାହିଁ ଜଳପାନେ ।
ଯେ ଜଠର ସହିପାରେ
ଅନାହାର-ବାଧା,
କି ବେଶୀ 'ବା କଷ୍ଟ ତା'ର ଜଳର ଅଭାବେ ?
କହୁଛି ମୁଁ ଏତେବେଳୁଁ—
ଶୋଇଗଲେ ଯାଉଥା'ନ୍ତା ରାତି ।
ମନରେ ସନ୍ଦେହ ଲାଗେ ।
ସରଯୂ ତ ବହୁ ଦୂର ନୁହେଁ,
ବିଳମ୍ବ କାହିଁକି ଏତେବେ ?

ମୁନି—ବାରଣ କି କର ନାହିଁ ମୁହିଁ ?
ନ ଶୁଣିଲା, ନ ମାନିଲା କଥା ।
କାହିଁକି ବିଳମ୍ବ ଏତେ ?
ଅନ୍ଧକାରେ ହୋଇଲା କି ପଥଭ୍ରମ ତା'ର ?

ମୁନି-ପତ୍ନୀ—ତୂଷ୍ଣୀ ହୁଅ; ଶୁଣ, ଶୁଭେ ପଦଶବ୍ଦ ।
(କାନେଇଁ)
ଆସେ ପରା ଧନ ମୋର ଫେରି ।
ଏଇ ଶୁଣ, ନିକଟରେ ଶୁଭଇ ଶବଦ ।
ଆସ ବାବା, ଆସ ଧନ କୋଳେ ।
(ଦଶରଥ ଆସି ସିନ୍ଧୁର ଶବ ଭୂତଳେ ରଖି
ନିକଟରେ ଅନାଇରହିଲେ )

ମୁନି—ବାବା ! କପାଇଁ ବିଳମ୍ବ ଏତେ ?
କାହିଁ ଥିଲୁ ଏତେବେଳଯାଏ ?
ତୁ ତ ଏକା ଧନ ଆମ୍ଭ ନୟନର ମଣି ।
କାହିଁ ଥିଲୁ ଭୁଲି ଅନ୍ଧ ଜନନୀ-ଜନକେ ?
ଆସ ବାବା, ଦିଅ ଜଳ,
ଲାଗେ ବଡ଼ ତୃଷା ।
ତୋ ବିଳମ୍ବ ଦେଖି,
କେତେ ଦୁର୍ଭାବନା ଆସୁଥିଲା,
ବ୍ୟାକୁଳିତ ହେଉଥିଲେ ଜନନୀ ତୋହର
ଡାକି-ଡାକି ସିନ୍ଧୁ ସିନ୍ଧୁ ବୋଲି ।

ମୁନିପତ୍ନୀ—ଆସ ବାବା ! ଚୁମ୍ବି ଚନ୍ଦ୍ରମୁଖ ତୋର
ହରେ ସବୁ ଦୁଃଖ ।
କୋଳେ ଆସ ପରାଣ-ରତନ ।
( ହାତ ବଢ଼ାଇଲେ )

ମୁନି—ବତ୍ସ ! ମଉନେ କାହିଁକି ରହୁ ?
ଓଃ, ଧିକ୍ ମୋତେ !
ବାଧିଥିବ ପୁତ୍ରକୁ ମୋହର,
ଲଭିଥିବ ବଡ଼ କଷ୍ଟ ।
ନାହିଁ ଧନ,
ଆଉ ତୋତେ ଦେବୁଁ ନାହିଁ କଷ୍ଟ ।
ଆଉ ତୁ ନ ଯିବୁ କାହିଁ—
ଛାଡ଼ି ତୋ'ର ବୃଦ୍ଧ ପିତା-ମାତାକୋଳ ।
ଆସ ବାବା, କଥା କହ, ଆସ ।
(ହାତ ବଢ଼ାଇଲେ)

ଦଶରଥ—( ବିକଳ ହୋଇ ସ୍ୱଗତ ) ହାୟ !
କି ଦେବି ଉତ୍ତର ?
ଅନ୍ଧ ବୃଦ୍ଧ ତାପସ-ଦମ୍ପତି
କପରି ଧରିବେ ଧୈର୍ଯ୍ୟ ?
ଶୁଣିଲେ ମୋ କଣ୍ଠସ୍ୱର,
ନ ଜାଣେ କି ବଜ୍ର ଆସି
ପଡ଼ିଯିବ ମସ୍ତକେ ତାଙ୍କର ।
କର୍ମେ ହୁଦ ।

କାଳନିଶା ଦ୍ୱିଗୁଣ ଅନ୍ଧାର ବିକଶ ।
ବଡ଼ ଭୟ ।
କରେ କି ଉପାୟ ?

ମୁନିପତ୍ନୀ—କହିଁ ବାବା କେଉଁଠାରେ ?
ଜଳ ପାଇ ନାହୁଁ ବୋଲି
ଲଜ୍ଜାଭରରେ କି କହୁନାହୁଁ କଥା ?
ନାହିଁ ବାବା, ଲୋଡ଼ା ନାହିଁ ଜଳ—
ମେଣ୍ଟିଲା ପିପାସା ।
ଆସ ବାବା, କୋଳେ ଆସ ।

ଦଶରଥ— (ବିକଳେ) ଓଃ, ତପୋଧନ, ତପୋ···
(କହୁ-କହୁ ନୀରବ ହେଲେ)

ମୁନି—(ଆଶ୍ଚର୍ଯ୍ୟେ) ଏଁ, ଏ ତ ସେ ନୁହେଁ ।
ଏ ତ ନୁହେଁ ତା'ର କଣ୍ଠସ୍ୱର ।
କହିଁ ରେ ଛଳନା ଧନ ?

ଦଶରଥ—ନାହିଁ ମୁନି ! ସତ୍ୟ କଥା ।
ନୁହେଁ ମୁହିଁ ତବ ସୁତ ।
କ୍ଷତ୍ରିୟବଂଶଜ ମୁହିଁ
ଦଶରଥ ମୋର ନାମ ।

ମୁନି—କିଏ ?

ଦଶରଥ—ଅଯୋଧ୍ୟାନିବାସୀ ତବ ଦାସ,
ଦଶରଥ ମୁହିଁ ।

ମୁନି—ଅଯୋଧ୍ୟାର ରାଜା ?

ଦଶରଥ—ହଁ, ମୁନେ !
ସେହି ଦାସ ତବ ।

ମୁନି—ମହାରାଜ ! ଦେଖିଛ କି ମୋହର ସନ୍ତାନେ ?

ଦଶରଥ—(ସ୍ୱଗତ) ହଁ, କି କହିବି ?
(ବ୍ୟସ୍ତଭାବ)
ଦ୍ୱିଖଣ୍ଡିତ ହୁଅ ପାପଜିହ୍ୱା ।

ମୁନି—ଶୁଣିଲି ନାହିଁ ?
ଦେଖି ନାହଁ ସିନ୍ଧୁକୁ ମୋହର ?
ତାପସ ବାଳକଟିଏ,
ତାପସ-ସ୍ୱଭାବ ବେଶ ।
ସରଳ ମତି ସେ—
କରେ ଥିବ କୁମ୍ଭ;
ଜାଣେ ନାହିଁ ଶୂନ୍ୟ ଅବା ପୂର୍ଣ୍ଣ ।
ଯାଇଥିଲା ଜଳଲାଗି
ସରଯୂ-ପୁଳିନେ—
ଦେଖିଛ କି ?

ଦଶରଥ—ତପୋଧନ, କି କହିବି ?
କହିବାପାଇଁ ଭୟଙ୍କର ପାପୀ ଦଶରଥେ ।

ମୁନି—କାହିଁକି ବିକଳ ନୃପ ?
କହ, କହ,
କର ମୋର ସନ୍ଦେହ ମୋଚନ ।

ଦଶରଥ—କି ଶୁଣିବେ ଏ ମ୍ଳାନପାଣ, ଭୟଙ୍କର ମୋତେ।
(ଅଳ୍ପ ନୀରବ ରହି )
ଆସିଥିଲି କୈଣ ମୃଗୟାର ଆଶେ
ସରଯୂ-ପୁଳିନେ ।
ଘୋର ଅନ୍ଧକାର;
ଦୂର ଶବ୍ଦ ଶୁଣି
କରି-ଭ୍ରମେ କଲି ଲକ୍ଷ୍ୟ ଶବ୍ଦଭେଦୀ ବାଣ ।
ପରକ୍ଷଣେ,
କି କହିବି ? ଓହୋ ! କି କହିବି ?
ଆକାଶ-ପାତାଳେ
ଉଦ୍ଦେ ଉଠିଲା କି କରୁଣ କାତର ରବ !
ତରୁଲତା ଉଠିଲେ ବିଳପି ।
ଚମକି ଉଠିଲା ପ୍ରାଣ ମୋର,
ଚଳିଲି ମୁଁ ଧ୍ୱନି-ଅନୁସରି ।
ଦେଖିଲି ମୁଁ,
ସୁକୁମାର ତାପସ-କୁମାର ଏକ
ଶରଘାତେ କରଇ ଚିତ୍କାର ।
ବୁଝିଲି ମୁଁ ତାହାଠାରୁ
ତୁମ୍ଭର ନନ୍ଦନ ସେହି ।
ମୁନେ, ମୁନେ···

ଆଉ ନୁହେଁ···
ନା ନା,
ଭସ୍ମ କର ମୋତେ ।
ନ ପାରିବ ଆଉ କିଛି କହି ।
ମୁନି-ପତ୍ନୀ—କି କହିଲ ରାଜା ? ହଁ···(ଉଠିପଡ଼ିଲେ)
ମୁନି—କି କହିଲ ? କି କହୁଛ ରାଜା ?
(ଉତ୍କଣ୍ଠିତ ଭାବରେ ଅର୍ଦ୍ଧ ଉଥାନ୍ତିନ)
ବୁଝି ତ ପାରିଲି ନାହିଁ ।
ଦଶରଥ—ପାପଶର-ଘାତେ
ନାହିଁ ଆଉ ସେ ସର୍ବସ୍ୱ ଧନ—
ତୁମ୍ଭ ହୃଦୟ-ରତନ ।
ମୁନି-ପତ୍ନୀ—ଏଁ ? କସ ?
ନାହିଁ ନିଧି ମୋର ?
ସିନ୍ଧୁରେ ! ଏ କି ହେଲା ?
ବାପ ରେ ! କାହିଁ ଗଲୁ ? ସିନ୍ଧୁ ରେ !
ସିନ୍ଧୁ ରେ, କାହିଁ ଗଲୁ ବାପ ? (ମୂର୍ଚ୍ଛା)
ଦଶରଥ—(ସ୍ୱଗତ) କହିଥିଲ ସିନ୍ଧୁ ଯାହା,
ଘଟିବ କି ପ୍ରକୃତରେ ତାହା ?
ଏକ ବାଣେ ତିନି ପକ୍ଷୀ !
ହାୟ, ହାୟ ପାପ ଦଶରଥ !
(ମୁନିପତ୍ନୀଙ୍କୁ ତାଳପତ୍ରରେ ବିଞ୍ଚିଲେ)
ମୁନି—ଏ କି କଲ ରାଜା !
କାଡ଼ିନେଲ ଅନ୍ଧର ନୟନ ?
କେତେ ଯତ୍ନେ ଗଢ଼ିଥିଲି
ପିଞ୍ଜରି ମୁଁ ଏକ ।
ଶୂନ୍ୟ କଲ ?
ସିନ୍ଧୁ ରେ, ବାପ ରେ, କାହିଁଗଲୁ ଛାଡ଼ି ?
ଆସ ବାବା !
ଚନ୍ଦ୍ରମୁଖେ
ଡାକ ଆଉ ବାରେ ପିତା ବୋଲି ।
ରାଜା, ସତ୍ୟ କହ
ନ କର କପଟ ।
କାହିଁ ମୋର ସିନ୍ଧୁ ?
କହ ସତ୍ୟ ।
ଦଶରଥ— ବଡ଼ ଭୟ ମନେ ।
କ୍ଷମା କର ଦୋଷ
କିମ୍ବା କର ଭସ୍ମ ମୋତେ ।
ଆଣିଛି ମୁଁ ସ୍କନ୍ଧେ ବହି
ପ୍ରାଣହୀନ ତନୟେ ତୁମ୍ଭର ।
ହାୟ ! କି କରିବ ?
ମୁନି—ହା ! ହା ! ବଧାତାରେ !
ଅନ୍ଧଭାଗ୍ୟେ ଥିଲା ପୁଣି
ଏତେ ବିଡ଼ମ୍ବନା ?
ବୃଦ୍ଧକାଳେ ଏ ଘୋର ଯାତନା ?
ସିନ୍ଧୁ ରେ, ବତ୍ସ ରେ, ବାବୁ ରେ !
(ସହସା ପତନ)
ମୁନି-ପତ୍ନୀ—(ଚେତା ପାଇ) କହ, କହ ତରୁଲତା,
ବନଗିରି, କେ ଜାଣିଛ କହ ।
କାହିଁ ମୋର ରଙ୍କନିଧି ?
ଦିଅ;
ଚୁମ୍ବି ଚନ୍ଦ୍ରମୁଖ ତା'ର
ଭୁଲେ ସବୁ ବାଧା ।
ଦିଅ ଆଣି କୋଳେ ଥରେ ।
ଦଶରଥ— ଜନନି ଗୋ,
ଆଣିଛି ମୁଁ ତନୟ ତୁମ୍ଭର ।
ମୁନି-ପତ୍ନୀ—କାହିଁ ? କାହିଁ ?
(ଅଣ୍ଡାଳି ସିନ୍ଧୁଙ୍କୁ ଧରି)
ଦିଅ, କୋଳେ ଦିଅ ।
(ଚମକି) ଏଁ, ଏ କସ ନୋ ?
ଶୀତଳ ତ ଦେହ ।
ନାହିଁ ଚଳନ-ଶକତି ।
ନିଧି ମୋର !
ଡାକ ବାରେ,
ଡାକ ବାରେ ଚନ୍ଦ୍ରମୁଖେ ମାଆ-ମାଆ ବୋଲି ।

ଏ କି ହେଲା ମୋର ଧନ ?
କାହିଁ ମୋର ଅଞ୍ଚଳର ନିଧି !
କାହିଁ ମୋର ଅନ୍ଧ ଶ୍ରୀ-ନୟନ ?
କାହିଁ ଗଲୁ ପରାଣର ପ୍ରାଣ ?
କାହିଁ ବାବା !
ଯାଇଥିଲୁ ପାଣି ଜଳ ଆଣି ?
ବିଧାତା !
ଜୀବନର ଯାବତ ତପସ୍ୟା ବଦଳରେ
ଦିଅ ଭଲ ଦୟା କରି
ନୟନରେ ଶକତି ଏକାଳେ,
ଦେଖିଥାଏଁ ଥରେ
ମୋର ଚନ୍ଦ୍ରମୁଖ-ଛବି ।
ବାବା ରେ ! ବାବା ରେ ! (ମୁଖଚୁମ୍ବନ)

ମୁନି—(ସଚେତ ହୋଇ) ଓଃ !
ବଡ଼ ଜ୍ୱାଳା, ବାବା ରେ !
କାହିଁ ଗୁଡ଼ଗଲୁ ରଙ୍କନିଧି !
ନ ନେଲୁ ସଙ୍ଗରେ ?
ଅକାଳେ କେ ଶିରେ ତୋ'ର
ହାଣିଲା ରେ ବଜ୍ର ?
ଫୁଟି ଆସୁଥିଲା ଫୁଲ
ପଡ଼ିଲା ଝାଡ଼ିଲ
କେଉଁ କୀଟ-ଦଂଶନରେ ?
କରିଛୁ କି କୋପ ବାବା,
ମୋତେ ତୁହି ଭୁଲିଲେ ?
ବାବା !
ପଡ଼ି ବାରେ ସେହି ମଧୁକଣ୍ଠେ ବେଦ ।
ବେଦ-ସୁଧା ଢାଳିବେ ପରାଣେ ।
ଅନ୍ଧର ସମ୍ବଳ !
କିଏ ଆଉ ଚଲାଇବ ପଥ ?
କେ' ଦେବ ଆହାର ମୁଖେ ?—
କରିବ ଆଦର ?
ଦେଖିଲେ ମୋ ଶୁଷ୍କମୁଖ
କିଏ ଆଉ ଅଞ୍ଚଳ-ପଣନ୍ତେ
ମୋଛିବ ରେ ଝାଳ ?
ବାବା, ବାବା,
ଶତ ଅପରାଧେ ତୋହଠାରେ
ଅପରାଧୀ ଏ ଅନ୍ଧ-ଅନ୍ଧ ଶ୍ରୀ ।
ଆସ ବାବା, କୋଳେ ଆସ,
ଭୁଲିଯାଅ ମୋର ଅପରାଧ ।

ପତ୍ନୀ—ଓଃ, ଓଃ,
ବସ ରେ !
ଯା'ନା ଛାଡ଼ି ବାବା ମୋର
ଦିଷ୍ଟୁର ଅନ୍ତରେ !
ସଙ୍ଗେ ନିଅ ।
ଆସ ଆସ,
ଆସ ଫେରି ଅଞ୍ଚଳ-ରତନ ! (ହଲାଇ)
ଏଁ ! ବଞ୍ଚି ନାହିଁ ଧନ ମୋର ?
ନାହିଁ ତ ବଞ୍ଚିବା ଚିହ୍ନ !
ମହାରାଜ !
କାର୍ଯ୍ୟ ନାହିଁ ଏ ଜୀବନେ ଆଉ ।
ଯେ ଶରେ ଉଡ଼ିଛି ମୋର
ରଙ୍କନିଧି-ପ୍ରାଣ-ବିହଙ୍ଗମ,
ହାଣ ସେହି ଶରେ ଦୟା କରି
ଏହି ଦୁଇ ଜଣେ ।
ତିନି ଜଣେ ଏକଠାବେ ଲଭିବା ମରଣ ।
କାର୍ଯ୍ୟ ନାହିଁ
ପୁତହରା ଏ ବେନି ପରାଣେ ।

ଦଶରଥ—ଶାନ୍ତ ହୁଅ ଜନନି ଗୋ !
ଦୈବ-ଦୁର୍ବିପାକେ
ହୋଇଅଛି ପୁତହରା ସତ୍ୟ ।
ଏବେ ଧେନ ମୋ ବଚନ,
ଜନକ-ଜନନୀସମ ବେନିଜନେ ମଣି,
ଅହରହ ପଦପ୍ରାନ୍ତେ ଆଇ
ପୂଜିବ ଚରଣଯୁଗ ।
ନ ଫେରିବ ଆଉ ଅଯୋଧ୍ୟାକୁ,
ଆଣିଦେବ ବନଫଳ କ୍ଷୁଧାକାଳେ ତବ,

ତୃଷା ହେଲେ ଜଳ ।
ଅରଣ୍ୟର ସୁକୋମଳ ପତ୍ରଲତା ସେଜ
ପାତିବ ଆସନ ।
ତୁମ୍ଭେ ମୋର ମାତା, ପିତା ମୋର—
ଅନ୍ଧ ବୃଦ୍ଧ ମୁନି;
ପୁତ୍ରସମ **ମଣ** ମୋତେ,
କ୍ଷମା କର ଦାସ ଅପରାଧ ।

ମୁନି—(ଅଶ୍ରୁ ପୋଛି) ମହାରାଜ !
ନ ହୁଅଇ ଭଙ୍ଗା ପ୍ରାଣ ଯୋଡ଼ ।
ନାହିଁ ଜୀବେ ପ୍ରୟୋଜନ—
ଏକ ସିନ୍ଧୁ ବିନେ ।
ତୁମ୍ଭେ କି ବୁଝିବ ଦଶରଥ !
ପୁତ୍ର-ଶୋକ-ବାଧା ?
ତୁମେ କି ବୁଝିବ ?—
କପରି ଜଳୁଛି ଏହି ବେନି ହୃଦ ଆଜି
ସିନ୍ଧୁ ବିହୁନରେ ?
ତୁମ୍ଭେ ଏକା ଏ ଦୁଃଖର କର୍ତ୍ତା ।
ରାଜା !
କି ବୁଝିବ ତୁମ୍ଭେ ?
ଶୁଣ ରାଜା !
ଦେଲି ଅଭିଶାପ ।

ଦଶରଥ—(ଚମକି ସ୍ୱଗତ)—ଓଃ, ଫଳିଲା କି
ସିନ୍ଧୁ-ବାକ୍ୟ ଶେଷେ ?

ମୁନି—ଶୁଣ ରାଜା !
ବାକ୍ୟ ମୋର ନ ହେବ ଖଣ୍ଡନ ।
ଯେ ଦାରୁଣ ଶୋକାନଳେ
ଦହୁଅଛି ମୋତେ,
ପୁତ୍ରଶୋକ ଦେଇଅଛ ରାଜା,
ସେହି ଶୋକ ଲଭିବ ଆପଣେ ।
ସତ୍ୟ, ସତ୍ୟ, ସତ୍ୟ ।
ବୁଝିବ ଏ ଭୀଷଣ ଯାତନା ତେବେ ।
ଏକା ତୁମ୍ଭେ ନୁହଁ,
ଜାଣିବ ଜଗତ ।
ତେବେ ଆଉ
କାହାରିକୁ କେହି
ଏ ଜଗତେ
ଦେବ ନାହିଁ ପୁତ୍ରଶୋକ—
ଅନନ୍ତ ଯନ୍ତ୍ରଣା ! (ଅଶ୍ରୁମୋଚନ)

ଦଶରଥ —(କର ଯୋଡ଼ି) ହେ ତାପସ !
ପୁତ୍ରହୀନ ଦଶରଥ ।
କିପାଁ ତେବେ ପୁତ୍ର-ଶୋକ-ଶାପ ଦେଲେ ତାକୁ ?
କର ଭସ୍ମ,
ଏ ପାପଶରୀରେ ।
ନାହିଁ ମୋର ପ୍ରୟୋଜନ ।
ପାପତ୍ରାଣ ହେଉ ପ୍ରାୟଶ୍ଚିତ୍ତ ।

ମୁନି—କହିଥା'ନ୍ତ ତାହା ।
ଦୂର ନୁହେଁ;
କିନ୍ତୁ ରାଜା !
ତେବେ ବୁଝିବ କପରି
ପୁତ୍ରଶୋକ-ଦୁଃଖ ?
ନା ନା,
ହେବ ପୁତ୍ର,
ସୁସନ୍ତାନ—ସିନ୍ଧୁସମ ମୋର;
ମାତ୍ର ଅକାଳେ ଲଭିବ ତୁମ୍ଭେ
ପୁତ୍ରଶୋକ-ଦୁଃଖ
ମୋହସମ ।
ତେବେ ଯାଇ ବୁଝିବ ଯାତନା !
ତେତେଦିନ,
ଆକାଂକ୍ଷିତ ନନ୍ଦନ-ନରତ
ପ୍ରେତଆତ୍ମା ମୋର
ଗୁହିଁଥିବ—
ଆକାଶର ନୀଳ ଘନପଟଳେ ।
'କାନ୍ଦୁଛି, କାନ୍ଦୁଛି, କାନ୍ଦିଲି ବହୁତ ।
ବଡ଼ ବାଧା ରାଜା, ବଡ଼ ବାଧା !
ଏ ବାଧା ହୋଇବ ଶାନ୍ତ
ତେତେ ଦିନେ ମୋ'ର,
ଦେଖି ତୁମ୍ଭ ପୁତ୍ରଶୋକ-ଦୁଃଖ ।

ଦଶରଥ—(ଚମକି) ଓଃ,
ବିଧି-ଲୀଳା !
ଲଭିଲି ମୁଁ ଶାପେ ବର,
ବିଚିତ୍ର ଏ ମାୟା !

ମୁନି—ରାଜା !
ବିଳମ୍ବ ନ କର ଆଉ,
ଚାଲ ଶୀଘ୍ର
ସରଯୂର କୂଳେ
ଯହିଁ ବିଧିଛ ସିନ୍ଧୁକୁ,
ଜାଳ ତହିଁ ମନ୍ଦାଗିରୀ ।
ପୁତ୍ର-ଶବସଙ୍ଗେ
ପିତା-ମାତା ତେଜିବୁଁ ଜୀବନ ।
ଦିଅ ରାଜା !
ଦିଅ ମୋ ସିନ୍ଧୁକୁ
କୋଳେ ମୋର,
ଚାଲ ଶୀଘ୍ର ।

( ହସ୍ତ-ପ୍ରସାରଣ )

ଦଶରଥ—ମୁନେ ! ଗୁରୋ !

ମୁନି—ଦ୍ୱିରୁକ୍ତି ନ କର, ଚାଲ,
ଏକକାଳେ ସ୍ୱର୍ଗ-ମର୍ତ୍ତ୍ୟ
ହୋଇବ ପ୍ରଳୟ ।
ବଡ଼େ ପୁତ୍ର-ଶୋକ !
ବିଳମ୍ବ ନ କର ।
ଆସ ତପସ୍ୱିନି,
ଦୁଃଖରଜନୀ ହେଉ ଅବସାନ ।
(ମୁନି-ପତ୍ନୀ କର ବଢ଼ାଇଲେ ଓ ଲୁହ ପୋଛିଲେ)

ଦଶରଥ—(ବିକଳେ ) ଓହୋ !
କି ଭୀଷଣ ଦୃଶ୍ୟ !
( ସିନ୍ଧୁର ମୃତ-ଦେହ ମୁନିଙ୍କୁ ଦେଲେ ଓ
ମୁନି ସିନ୍ଧୁର ମୃତ ଦେହ ଧରି ସମସ୍ତଙ୍କ
ସହିତ ପ୍ରସ୍ଥାନ କଲେ । )

---

## ଚତୁର୍ଥ ଦୃଶ୍ୟ

(ବନସ୍ଥଳୀ--ପଥ)

ମାୟା—(ଗୀତ ଗାଇ ଆସୁଥିଲେ)
ଏ ଭବ ରଙ୍ଗନାଟ
ମାୟାର ଖେଳାଘର ॥
କାନ୍ଦୁଥିଲେ ଜଣେ, ମୁହିଁ
ଦିଏ ଯାତନା ବଢ଼ାଇ
ଦୁଃଖୀ-ନୟନ-ନୀରେ
ଆସଇ ହସ ମୋର
କଡ଼ିଫୁଲ ଛୁଣ୍ଡାଇ
ହସେ ମୁଁ ଦର-ଦର ॥

ନାରଦ—(ପ୍ରବେଶି ପ୍ରଣାମ କରି) ଜନନୀ ଗୋ !
ସନ୍ତାନ ତୋହର,
କି ଦେଇ ପୂଜିବ ପଦକଞ୍ଜ ?
କୃତଜ୍ଞତା-ମାନସ-ପ୍ରସୂନ
ଭେଟିଦେଇ ଶ୍ରୀଚରଣେ
କରେ ନିବେଦନ ।
ଅନୁଗ୍ରହେ ତବ
ସର୍ବଦେବ
ଅତ୍ୟନ୍ତ କୃତଜ୍ଞ ।
ପେଶିଛନ୍ତି ମୋତେ
ତବ ପାଶେ ।
ଏତେ ଦିନପରେ
ଦୂର ଦିଗ୍‌ବଳୟପାରେ
ଦିଶେ ଏକ କ୍ଷୀଣ ଆଶା-ରେଖା ।
କେତେକାଳୁ ଗୁହୁଥିଲୁଁ
ଦୁର୍ଦ୍ଦାନ୍ତ ମରଣ ।
ଆସ ମା ଜନନି !
ଗୃହିଁଛନ୍ତି ଦେବେ ତବ ଆଗମନ-ପଥ ।

ମାୟା—ବତ୍ସ !
ପ୍ରୀତ ହେଲି ଅତି ।
ଆୟୁତ୍ତ କାହାର ନାହିଁ

ଲଙ୍ଘିବ କସ୍ତୁତ ।
ଯାହା କାର୍ଯ୍ୟ, କରିବ ସେ ।
ନମିତ୍ତ ସକଳେ ଆଜ୍ଞ ।
ଚଳ ବତ୍ସ !
କାହିଁ ଛନ୍ତି ଦେବେ ?
ନାରଦ— ଆସନ୍ତୁ ଜନକ !
( ପଥ ଦେଖାଇ ଘେନିଗଲେ )

---

## ପଞ୍ଚମ ଦୃଶ୍ୟ

(ସରଯୂତୀର ଅରଣ୍ୟ । ଅନ୍ଧ ପତି-ପତ୍ନୀ ବସିଥିଲେ, ଦଶରଥ ଦଣ୍ଡାୟମାନ ଓ ପାର୍ଶ୍ୱେ ସିନ୍ଧୁର ଶବ ।)

ମୁନି—ତାପସି,
ଯେତେବେଳଯାଏ ଥିବ
ସ୍ଥିର ପିଣ୍ଡେ ପ୍ରାଣ
ବଢ଼ିବ ଏ ଶୋକ ।
ଆସ ! ଆସ ପତ୍ନି !
ଜାଳ ମହା ଅଗ୍ନି,
ଜ୍ୱଳନ୍ତ ଅନଳେ,
ମହାଶୋକ କରିବା ନର୍ବାଣ;
ନାହିଁ ଆଉ ଅନ୍ୟ ପରିତ୍ରାଣ ।
(ଅଙ୍କ ବଢ଼ାଇ) ! ସିନ୍ଧୁ, ହାୟ ବତ୍ସ !
ନ ଭାବିଲୁ ଥରେ
କ ହୋଇବ
ତୋ'ର ବୃଦ୍ଧ ପିତା-ମାତା-ଦଶା !
ହାୟ ! ହାୟ ! (ଅଶ୍ରୁମୋଚନ)
ମୁନି-ପତ୍ନୀ—(ଦୀର୍ଘଶ୍ୱାସସହ) ଆଉ ନାହିଁ,
କାନ୍ଦିବାକୁ ହେବ ନାହିଁ ଆଉ ।
ପାଷାଣେ ପ୍ରାଣର କଷ୍ଟ
ପ୍ରାଣସଙ୍ଗେ ଯିବ ।
ପାପ ପୃଥିବୀର ପ୍ରାଣ
ଯନ୍ତ୍ରଣା କେବଳ ।
ଖାଲି ଶୋକ-ଦୁଃଖେ ଭରା ।

ଥିଲେ ପ୍ରାଣ,
ଥିବ ପୁତ୍ର-ଶୋକ ।
ଆସ ମୁନି,
ଛାଡ଼ ପ୍ରାଣ ଭୁଲିଯିବା ଶୋକ ।
ପୃଥିବୀରେ ଏ ପୃଥିବୀ-ଜୀବ—
ପୁତ୍ରଶୋକ ଶାନ୍ତ ନ ହୋଇବ,
ନାହିଁ ତା'ର ସ୍ଥାନ ।
ପାଷାଣେ ପାଷାଣେ,
ଦାରୁଣ ଘର୍ଷଣେ ବର୍ଷେ ଅଗ୍ନି,
ଜୀବମାନେ
ହୁଏ ଶୋକପ୍ରପୀଡ଼ିତ ।
ତା'ର ଫଳ—
ଏହି ପୁତ୍ରଶୋକ-ଦୁଃଖ ।
ଯିବ ପୁତ୍ର-ଶୋକ,
ଲଭିଯିବ
ସର୍ବଗ୍ରାସୀ ଚିତା-ଅଗ୍ନି—
ଲହ-ଲହ କରାଳ ତାଣ୍ଡବେ ।
ଅନନ୍ତ ଯନ୍ତ୍ରଣା, ଅନ୍ତର-ବେଦନା
ପୃଥିବୀର ଅଣୁରେ ମିଶିବ ।
ପାଶିବ ଏ ଶୋକ
ରହିଯିବ ପୃଥିବୀରେ ।
ଯିବା ଶାନ୍ତିଧାମେ,
ନାହିଁ ଯହିଁ ଦୁଃଖ-ଶୋକଜ୍ୱାଳା ।
ଗୃହିଁ ବସିଥିବ ଧନ
ଆମ୍ଭ ଯିବାପଥେ ।
କେତେ ସ୍ନେହ କରିଥିଲେ,
କରଣ କ କରିଦେବା ତାଙ୍କୁ ?
ନା ନା,
ଚାଲ ଛୋଟା,
ବିଳମ୍ବ ନ ସହେ ।
(ଅଙ୍କ ଉପରକୁ ଚାହିଁ) ତହ ଧନ !
ଶାନ୍ତି-ସୁଧାମଖା ତୋ'ର ଚନ୍ଦ୍ରମା ବଦନେ,
ଚୁମ୍ବିବୁ ଏ ଅନ୍ଧ ପିତା-ମାତା—

ନବ ଜୀବ ଉଠିବ ପୁଲକ !
ରତ୍ନ ଧନ !
ମୁନି !
ଦେଖ, ଦେଖ,
ଫିଟିଛୁ ହେ ଏତେ ବଦନ
ଅଧର ପଟଳ ।
ପ୍ରତ୍ୟକ୍ଷ ଦିଶଇ ମୋତେ,
ଡାକେ ସିନ୍ଧୁ 'ମାଆ' ବୋଲି
ବିକଳ କାତରେ ।
ଶୁଖିଛି ଚନ୍ଦ୍ରମା ମୁଖ,
ଝାଉଁଳିଛି ନବ,
ମଳିନ ଅତ୍ୟନ୍ତ ।
ଶ୍ରାନ୍ତ-କ୍ଳାନ୍ତ ମୁଖୁଁ ବହେ ଝାଳ ।
ଧର ଧୈର୍ଯ୍ୟ ଧନ !
ନାହିଁ ରେ ବିଳମ୍ବ ।
ଯିବ, ଯିବ ବାବା !
ଏକା ନୁହେଁ,
ଯୋଗଯିବ ସଙ୍ଗେ ତୋ ଜନକେ ।
ପୋଛୁ କରଧାର—
ନିରବଧି ବସି-ବସି ସେହି ଶାନ୍ତିଧାମେ
ଚୁମ୍ବିବ ତୋ ମୁଖସୁଧା,
ପୁଲକଉଠିବ ପାପପ୍ରାଣ ।
ଦଶରଥ—ଓଃ,
ପୁତ୍ର-ଶୋକ !
(ମୁଖରେ ବସନ ଦେଲେ)
ମୁନି-ପତ୍ନୀ—ତାପସ,
କାହିଁ, କାହିଁ ଅଗ୍ନି ?
କାହିଁ ଅଗ୍ନି ?
ଅଛି କି ହେ ପ୍ରାଣର ମମତା ?
ରଖିଛ କି ପାପପ୍ରାଣେ ସ୍ନେହ ?
ଛୁଟି ନାହିଁ ? ଭୁଲି ନାହିଁ ?
ଛୁଡ଼ ନାହିଁ ପାପ-ଧରା-ମାୟା ?
ଭୁଲିଲ ସିନ୍ଧୁକୁ ?—
ଅଞ୍ଚଳେ ପୂରାଇ ଯା'କୁ
ତ୍ରିଜଗତ ମଣୁଥିଲି ଶୂନ୍ୟ !
ଯାଏ ଚେତେବ ଏକାକିନୀ, (ଉଠିଲେ)
ଥାଅ ଯେନ ପ୍ରାଣ ଭ୍ରମେ;
ଏହି କି ହେ ତୁମ୍ଭ ପୁତ୍ର-ଶୋକ ?
କଠୋର ପୁରୁଷ ! (ପ୍ରସ୍ଥାନୋଦ୍ୟତକାଳେ ମୂର୍ଚ୍ଛା)
ମୁନି—ପତ୍ନି ! କାହିଁଯିବ ଛାଡ଼ି
ମୃତପ୍ରାଣେ ?
ମନେ କର ଅଛି ବୋଲି
ପ୍ରାଣର ମମତା ?
ନା ନା,
ଘନ ଘୋର କୃଷ୍ଣମେଘେ
କ୍ଷଣିକ ବିଜୁଳିରେଖା—
ବଢ଼ାଇବ ଅନ୍ଧକାର ସିନା !
ଦଶରଥ, ମହାରାଜ !
ବିଳମ୍ବ ନ ସହେ;
ଜାଳ ଶୀଘ୍ର ଚିତା,
କର ପ୍ରତିକାର, କର ଉପକାର ।
ରାଜା !
ଶେଷ ଉପକାର,
ଶେଷ ଭିକ୍ଷା,
କୋଳେ ଦେଇ ସିନ୍ଧୁକୁ ମୋହର
ପଶିବୁ ଚିତାରେ,
କର ଉପକାର ରାଜା !
ଦଶରଥ—(ସବିନୟେ) ମୁନି,
ରଖ ଏ ଦାସର ଅନୁରୋଧ ।
କର କୃପା ।
ଆତ୍ମନାଶ ନ କର ତାପସ ।
ଦୈବ-ଦୁର୍ବିପାକେ
ହେବାର ଯା ହେଲା,
ନ ଯିବ ଅଯୋଧ୍ୟା,
କଲି ସତ୍ୟ ।
ଆଜ୍ଞା ତବ ଶିରେ ଦେଇ,

ବୃଲ ବନେ-ବନେ
ଅହରହ କରୁଥିବ ସେବା ।
ଦୟା କର ।
(ପଦ-ଧାରଣ)

ମୁନ—(ଉଠାଇ) ମହାରାଜ !
ବୃଥା ତବ ଅନୁରୋଧ ।
ପୁତ୍ର ଯଥା, ପିତା ତଥା ।
ପୁତ୍ରହର ପ୍ରାଣେ କବା ପ୍ରୟୋଜନ ?
ନ ପାରିବ ଦଣ୍ଡେ ତିଷ୍ଠି
ପାପ ପୃଥିବୀରେ ।
ନାହିଁ ରାଜା !
ଶୁଣ ମୋ ବଚନ—
ଜାଳ ଚିତା,
କର ଉପକାର ।
ଅନ୍ୟ କଥା ନ ଶୁଣିବ ଆଉ ।
ଯାଅ, ଆଣ କାଷ୍ଠ ।
କର ଉପକାର, କର ଉପକାର ।
ଯାଅ ରାଜା !
ମୋର ଏ ପ୍ରାର୍ଥନା ।
ଯାଅ ରାଜା ! ଯାଅ ।

ଦଶରଥ—ଓଃ, ଧିକ୍ ପୁତ୍ରସ୍ନେହ !
(ପ୍ରସ୍ଥାନ)

ମୁନ-ପତ୍ନୀ—(ସ୍ୱପ୍ନୋତ୍ଥିତାପ୍ରାୟ) ଏଁ, କାହିଁ ?
କାହିଁ ଗଲ ମୁନ ?
ମୋତେ ଛାଡ଼ିଦେଇ ଗଲ ?
ଛାଡ଼ ମୋତେ ପଶିଲ ଅନଳେ ?
ଯିବ, କାହିଁ ଅଛ ସରଯୂର ତୀର ?
କାହିଁ ? ନାହିଁ ଦୃଷ୍ଟିଶକ୍ତି ।
ହେ ବିଧାତା !
କହିଦିଅ,
କାହିଁ ସେହି ଚିତାନଳ,
ଯାହା ମରଣ-ଉପାୟ ମୋର ।

ମୁନ—ପତ୍ନି ! ମୂର୍ଚ୍ଛାରେ କି ନ ହେଲା ମରଣ ?
ବେଶ୍ ! ଉତ୍ତମ !
ସଙ୍ଗ ହୋଇ ଯିବା ।
ନାହିଁ ଭୟ,
ପତି-ପତ୍ନୀ ଲଭିବା ନିସ୍ତାର ।
କାହିଁ ଦଶରଥ ? କାହିଁ ?
ବିଳମ୍ବ ହୁଅଇ କପାଁ ?
ରାଜା ! ରାଜା !
(ଦଶରଥଙ୍କ ପ୍ରବେଶ ଓ ଚିତାପ୍ରସ୍ତୁତକରଣ)

ଦଶରଥ—(କାନ୍ଦି-କାନ୍ଦି) କହ ପ୍ରଭୋ !

ମୁନ-ପତ୍ନୀ—କାହିଁ ?
ଏପର୍ଯ୍ୟନ୍ତ ନ ଦିଶିଲ ଚିତା
ଅନ୍ଧନେତ୍ର-ଆଚ୍ଛାଦନୀ ଭେଦି ।
ଲହ-ଲହ ଚିତାନଳ-ଆଭା
କାହିଁ, ନ ଦିଶିଲ୍ ଏତେବେଳଯାଏ ?
ଜାଳ ତ୍ୱରା । ଜାଳ, ଜାଳ ।
(ଚିତାଜ୍ୱଳନ)
ଏଇ ଯେ ଜଳଇ ଚିତା
ଚକ୍ଷୁ-ଚର୍ମ-ଆବରଣୀ ଭେଦି
ହେଲ୍ ଦେଖା ଆଲୋକର ରେଖା ।
ମୁନ ! ବିଳମ୍ବ କପାଇଁ ଆଉ ?

ମୁନ—ଦିଶେ ମୋତେ ଅନ୍ଧନେତ୍ରେ
ଚିତାନଳ-ଆଭା ।
ଆହା, କେଡେ ଶାନ୍ତ !
କେତେ ସେ ଉଜ୍ଜ୍ୱଳ !
ଜଳ ଚିତା
ସର୍ବଗ୍ରାସୀ ତେଜ ।
ମାୟା-ସ୍ନେହ-ମମତାସହିତେ
ଗ୍ରାସ କର ଏ ସାଂସାରିକ ।
ଜଳ, ଆହୁରି ତେଜରେ ଜଳ ।

ମୁନ-ପତ୍ନୀ—ମହାରାଜ, ମହାରାଜ !
କାହିଁ ମୈନ୍ତ୍ର ?

ଦିଅ, ଦିଅ ।
କର କୋଳ
ପଶିବି ଅନଳେ ।
ଦିଅ, ଦିଅ (ହାତ ବଢ଼ାଇଲେ)
ଚୁମ୍ବିଥାଏ ସୁଧା-ମୁଖ ଥରେ ।
ଆସ ନାଥ, ଆସ ପତି,
ଆସ ଦେବ !
ପାର୍ଥିବ ବନ୍ଧନ ଛାଡ଼ି
ଯିବା ଶାନ୍ତି-ଧାମେ ।

ମୁନି—ମହାରାଜ !
ଆଣ ମୋ ସିନ୍ଧୁକୁ,
ଦିଅ କୋଳେ ।

ଦଶରଥ—(କାନ୍ଦି) ତପୋଧନ !···

ମୁନି—ନା, ନୁହେଁ ଝାଳ ଅନ୍ଧ ।
ଥିଲି ଅନ୍ଧ,
ବଧିର ଏକ୍ଷଣି ।
ନ ଶୁଭଇ କିଛି,
ନ ଶୁଣିବି କିଛି ।
ଦିଅ ରାଜା !
ଆଣ ମୋ ସିନ୍ଧୁକୁ ।
ଦିଅ ନାହିଁ ମରଣରେ ବାଧା ।

ମୁନି-ପତ୍ନୀ—(ହାତ ବଢ଼ାଇଲେ)
କାହିଁ ରାଜା ! ଆଣ,
ଆଣ, ଦିଅ ମୋତେ
ତନୟେ ମୋହର ।

ଦଶରଥ—(ମୃତପୁତ୍ରକୁ ନେଇ କୋଳରେ ଦେଲେ)
ହା ପିଶାଚ ଦଶରଥ !
କି କରିଲୁ ?
ଏକବାଣେ କଲୁ ସଂହାର ତିନି ପ୍ରାଣୀ ?
ଏ ପାପ ତୋ ନ ହେବ କ୍ଷାଳିତ,
ଅନନ୍ତ ନରକେ ନାହିଁ ବାସ ।

ମୁନି—ଧର ଧୈର୍ଯ୍ୟ ରାଜା !
ପୃଥିବୀରେ ନାହିଁ ତୁମ୍ଭ ସୁଖ,
ସତ୍ୟ;
ମାତ୍ର ନ ହେବ ନରକଗାମୀ ।
ଭଗବାନ୍ ହରି
ପୁତ୍ରରୂପେ, ରାମରୂପେ ତବ ଗୃହେ
ହୋଇ ଅବତାର,
ପିତା ବୋଲି ଡାକିବେ ତୁମ୍ଭଙ୍କୁ ।
ବୈକୁଣ୍ଠେ ଲଭିବ ସ୍ଥାନ ।
ଯାଅ ରାଜା !
ଧର ଧୈର୍ଯ୍ୟ ।
କହ ରାଜା ! ଶେଷକାଳେ—
"ହରିନାମ", "ରାମନାମ" କର ଉଚ୍ଚାରଣ ।

ଦଶରଥ—(କାନ୍ଦି) ହରେ ରାମ ହରେ ରାମ,
ରାମ ରାମ ହରେ ହରେ ।

ମୁନି—ହରେ ରାମ ହରେ ରାମ,
ରାମ ରାମ ହରେ ହରେ ।

ମୁନି-ପତ୍ନୀ—ପତି ! ଦେବ !
ଧର ହାତ ମୋର,
ଶୋକବହ୍ନି ପ୍ରଜ୍ୱଳିତ ହୋଇଲା ।
ହା ସିନ୍ଧୁ, ସିନ୍ଧୁ ରେ ! (କ୍ରନ୍ଦନ)
(ସିନ୍ଧୁକୁ କୋଳରେ ନେଇ ଦୁହେଁ ଚିତାରେ
ପ୍ରବେଶ କଲେ । )

ଦଶରଥ—ଓଃ ! ଓଃ ! (ମୁଖରେ ଅଞ୍ଚଳପ୍ରଦାନ)
କି କଲି ମୁଁ ଆଜି ?
ସର୍ବନାଶ !
ଶୂନ୍ୟ ଏ ଭୁବନ !

ମୁନି ଓ ମୁନି-ପତ୍ନୀ—(ଚିତାମଧ୍ୟରୁ) ଯାଅ ରାଜା !
କର ହରିନାମ,
ରାମ ! ରାମ ! ରାମ ! ରାମ !

ଦଶରଥ—(ଅତି ବିକଳରେ) ରାମ ! ରାମ !
ରାମ ! ରାମ !
(ମୂର୍ଚ୍ଛା ।)

(ପଟକ୍ଷେପଣ)

---

## ଉପସଂହାର

(ବନପଥ—ଗାଇ-ଗାଇ ନିୟତି ପ୍ରବେଶ)

ଦୁନିଆଁର ସବୁ ଖେଳ
ନିୟତିର ଛଳନା
ନରଜନମରେ କିଏ
କରିବ ତା' କଳନା ॥ ୦ ॥

ଅଭିଶାପ ହେଲା ବର
କଳପନା ମାନେ ହାର
ରାମ ରମଣୀୟ ଠାମ
ନାହିଁ ଯାର ତୁଳନା
ରାଜା ଦଶରଥ-କୋଳ
ମଣ୍ଡିଲେ ସେହି ଧିନା ॥ ୧ ॥

କୁସୁମରେ ବାସ ସାର
କାହୁଁ କେ କଲା ପ୍ରସାର
ସବୁ ତ ନିୟତି ଖେଳ
ହାରଇ କଳପନା
ନିୟତି-କରରେ ଏକା
ଏ ଜଗତ ଖେଳନା ॥ ୨ ॥

(ଗାଇ-ଗାଇ ପ୍ରସ୍ଥାନ କଲେ ନିୟତି)

(ଯବନିକା ପତନ)



# ସାମାନ୍ୟକଥନ

'ଶକୁନ୍ତଳା' ନାଟକଟି ବାରିପଦାରେ ଲେଖା । ସେତେବେଳେ ସେଠାରେ ସଂଗଠିତ ହୁଏ ଗୋଟିଏ ନାଟ୍ୟସଂସ୍ଥା, ତତ୍କାଳୀନ ଷ୍ଟେଟରାଯ୍ସାହେବ ସ୍ୱର୍ଗତ ପ୍ରତାପଚନ୍ଦ୍ର ଭଞ୍ଜ ଦେଓଙ୍କ ସଂପୂର୍ଣ୍ଣ ପ୍ରେରଣା ଓ ସାହାଯ୍ୟରେ । ଏ ହେଲା ୧୯୨୨।୨୩ ସାଲର କଥା । ବାରିପଦାର କେତେକ ଛାତ୍ରଙ୍କୁ ତାଲିମ ଦେଇ ଏ ନାଟକଟି ରାଜବାଟୀ ଅଙ୍ଗନରେ ଏକ ଅସ୍ଥାୟୀ ମଞ୍ଚ ନିର୍ମାଣ କରାଯାଇ ଅଭିନୀତ ହୋଇଥିଲା । ତତ୍କାଳୀନ ମହାରାଜା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓ ନାଟକର ଅଭିନୟ-ସନ୍ଦର୍ଶନରେ ଅତ୍ୟନ୍ତ ପ୍ରୀତ ହୋଇ କେତେକଅଭିନେତାଙ୍କୁ ଉଚ୍ଚ ପ୍ରଶଂସା କରିଥିଲେ । ନାଟକଟି ପ୍ରଥମେ ମୁଦ୍ରିତହୋଇଥିଲା ପୁରୀର 'ଶକ୍ତି' ଛାପାଖାନାରେ ୧୯୨୫ ସାଲରେ ।

ଦୋଷ-ଗୁଣ ସମସ୍ତଙ୍କର ଅଛି—ଥାଏ । ମୁଁ ଗୁଣ-ଗ୍ରାହକମାନଙ୍କୁ ମୋର ଦୋଷାଦୋଷ ମାର୍ଜ୍ଜନା କରିବାକୁ ଅନୁରୋଧ ଜଣାଉଅଛି ।

ବିନୀତ

ଲେଖକ

# ପାତ୍ର-ପରିଚୟ

**ପୁରୁଷବର୍ଗ:**

ରାଜା ଦୁଷ୍ମନ୍ତ, ବିଦୂଷକ, କଞ୍ଚୁକୀ, ସାରଥି, ମୁନି କଣ୍ୱ, ମୁନିକୁମାରଗଣ, ଧୀବର, ସର୍ବଦମନ, ଦୁଇ ଜଣ ପାଇକ, କଟୁଆଳ ଇତ୍ୟାଦି

**ସ୍ତ୍ରୀବର୍ଗ:**

ଶକୁନ୍ତଳା (ମୁନି କଣ୍ୱଙ୍କ ପାଳିତାକନ୍ୟା), କଣ୍ୱଙ୍କ ଭଗ୍ନୀ ଗୌତମୀ, ଭାଗ୍ୟ, ଅନସୂୟା ଓ ପ୍ରିୟମ୍ବଦା ପ୍ରଭୃତି ଋଷିକୁମାରୀଗଣ



# ଶକୁନ୍ତଳା

## ପ୍ରସ୍ତାବନା

(କଣ୍ୱମୁନିଙ୍କ ତପୋବନ ନିକଟସ୍ଥ ଉପବନ । କେତେକ ଋଷିକୁମାରୀ ହାତରେ ଫୁଲ-ଡାଲାଧରି ଗାଇ-ଗାଇ ପ୍ରବେଶ କଲେ)

(ଗୀତ)

ଆସ ବସନ୍ତ ମନଚୋର
କୋଇଲି ଡାକୁଆ କୁହୁକୁହୁ ଡାକେ
ଉଛୁଳାଇ ବନଭୂମି ସାରା ॥
ମଳୟ ସମୀର ଓଲାଉଛି ପଥ
ବଉଳର ଭୁଲେ ହସେ ମନମଥ
ମଙ୍ଗଳ ଶଙ୍ଖ ଫୁଙ୍କଇ ମୁଦେ
ଫୁଲ-ମଧୁପିଆ ଭ୍ରମର ॥

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

( ତପୋବନ । ତରୁତଳେ ଉପରକୁ ଗୁହାଁ ଅନସୂୟା ହସି-ହସି ପ୍ରିୟମ୍ବଦାକୁ ଡାକୁଥିଲେ )

ପ୍ରିୟମ୍ବଦା—(ନେପଥ୍ୟ) କଅଣ ?

ଅନସୂୟା—ହଁ ଗୋ ! ସତ ।

ପ୍ରିୟମ୍ବଦା—(ନେପଥ୍ୟ) ଧୂର୍, ମିଛେଇଣ୍ଠା

(କହି-କହି ପ୍ରବେଶ)

ଅନସୂୟା—ମଲ୍, ଆଖି ଥିଲେ ସତ-ମିଛ ଦେଖିପକା । ଦେଖ୍, ମାଧବୀ ଗଛଟୋକିକ ସାକ ନୂଆ କଢ଼ି ଧରିଛି । ମୁଁ ସେଦିନ ପିତା କଣ୍ୱଙ୍କଠାରୁ ଶୁଣିଛି, ସେ କହୁଥିଲେ ପରା, ଏ ଗଛରେ କଢ଼ି ଧରିଲେ ଶକୁନ୍ତଳାର ବରଘର ହେବ ।

ପ୍ରିୟମ୍ବଦା—ତେବେ ସଖି, ଶକୁନ୍ତଳାକୁ ଡାକି ଦେଖାଇବା ? ମୁଁ ଡାକିଆଣୁଛି । ସେ ମାଳତୀ-ମୂଳରେ ପାଣି ଦେଉଥିଲା—ତାକୁଁ ।

ଅନସୂୟା—ମୁଁ ବି ଯାଉଛି, ଚାଲ୍ ।

ପ୍ରିୟମ୍ବଦା—ଆ ତେବେ । (ଦୁହେଁ ପ୍ରସ୍ଥାନ)

(ଦୁଷ୍ମନ୍ତ ଓ ସାରଥି ପ୍ରବେଶ)

**ଦୁଷ୍ମନ୍ତ**—ନା ସାରଥି, ମୁନିମାନେ ବାଧା ନ ଦେଇ-ଥିଲେ ଆଉ ଦଣ୍ଡକରେ ହରିଣ-ଛୁଆଟି ମରିଯାଇଥା'ନ୍ତା ।

ସାରଥି—ହଁ ମହାପ୍ରଭୁ, ତୁମ୍ଭେ ତ ଶର ଧରିସାରିଥିଲେ, ଅତି ପାଖରେ ପହଞ୍ଚିଯାଇଥିଲେ ।

ରାଜା—ବାସ୍ତବିକ, ଭଗବାନ୍ ବଡ଼ ବିପତ୍ତିରୁ ରଖିଲେ । ଆଶ୍ରମ ମୃଗ ମାରିଥିଲେ ବଡ଼ ଆପଦ ଘଟିଥା'ନ୍ତା । ଦେଖ ସାରଥି, ତପୋବନର କି ସୁନ୍ଦର ଦୃଶ୍ୟ ! କେହି କହିବାକୁ ନାହିଁ । ହୀରା, ମୋତି ନିଜ-ନିଜର ଜ୍ୟୋତି ଫୁଟାଇଦେବାପରି ଗୁଏଁ-ଗୁଏଁ ଯେମିତି କଏ ଏଇଟି ତପୋବନ ବୋଲି କହିଦେଉଛି । ବଡ଼ କ୍ଳାନ୍ତ ହୋଇପଡ଼ୁଛି । ତୁମେ ଯାଅ, ରଥ ଓ ଅଶ୍ୱମାନଙ୍କୁ ଦେଖ । ଆଉ ଶିକାର-ସଙ୍ଗୀମାନଙ୍କୁ ଶିକାରରୁ ନିବୃତ୍ତ କର । ମୁଁ ଏଠି ଅଳ୍ପ କ୍ଷଣ ବିଶ୍ରାମ କରେଁ...ଅ ।

ସାରଥି—ମହାରାଜଙ୍କର ଯେମନ୍ତ ଇଚ୍ଛା···

(ଯିବାକୁ ବସିଲେ)

ରାଜା—ଆଉ ଶୁଣ; ଦେଖିବ, ଯେପରି ଆଶ୍ରମରେ କିଛି ଗୋଳମାଳ ନ ହୁଏ, ଋଷିମାନଙ୍କର ତପସ୍ୟାରେ ବାଧା ନ ପଡ଼େ—ଯାଅ ।

ସାରଥି—ଯଥାଆଜ୍ଞା ! (ଅଗ୍ରସର)

ରାଜା—ଆଉ ମୋର ଏ ଧନୁ-ଶର ମଧ୍ୟ ନେଇଯାଅ । ତପୋବନରେ ଘୃଣ୍ୟ ସଂହାର ମୂର୍ତ୍ତି କାହିଁକି ? ନିଅ ।

(ଧନୁଶର ଦେଲେ ଓ ସାରଥି ଚାଲିଗଲେ)

ରାଜା—(ଖଣ୍ଡେ ଶିଳାଉପରେ ବସିବାକୁ ଯାଉ-ଯାଉ ଦକ୍ଷିଣ ବାହୁ ଟପି ଉଠନ୍ତେ ହସି) ଆରେ, (ଦକ୍ଷିଣ ଚକ୍ଷୁ ଟପେ ) ଆରେ, ଦକ୍ଷିଣ ଅଙ୍ଗ କାହିଁକି ଡେଇଁଉଠିଲା ? ତପୋବନରେ ମୋର କିଛି ଶୁଭ ଆଶା ଅଛି କି ? ଆଶ୍ଚର୍ଯ୍ୟ କଥା ! ଭବିଷ୍ୟତ କଥା କିଏ ଜାଣେ ? ଭାଗ୍ୟରେ କିଛି ଥାଇପାରେ···

ନେପଥ୍ୟ— (ଗୀତ)

ତେବେ, କିଶ୍ୱେ କପାଇଁ ଭାଗ୍ୟ ଖେଳେ,
ନାନା ବେଶେ ଅଜଣା-ଅଶୁଣାଭାବେ,
ଶୁପ୍ତ, ଲୁପ୍ତ, ଗୁପ୍ତ ଛଳେ
ବହୁଛି ମଧୁ ପବନ, ଉଇଁଛି ନବ ତପନ
ଭାଗ୍ୟ-ନନ୍ଦନ, ନବ ସୋହାଗେ
ଦେବ ଫଳ ଅନୁରାଗେ ।

ରାଜା—କିଏ ସେ ନାରୀ ? ପରିଚୟ ପାଇପାରିଲି ନାହିଁ । ଆଶ୍ଚର୍ଯ୍ୟ ଦେଶ ! ଆଶ୍ଚର୍ଯ୍ୟ ସଙ୍ଗୀତ ! ଏ କି ଋଷି-କନ୍ୟା ?

ନେପଥ୍ୟ—ଏଣେ, ଏଣେ । ଏ ପାଖକୁ ଆ, ଏ ପାଖକୁ ।

ରାଜା—( ପୁଣି ଆଶ୍ଚର୍ଯ୍ୟ ହୋଇ ) ଏ ପୁଣି କିଏ ? ନାରୀ-କଣ୍ଠପରି ଶୁଭୁଛି । ଦେଖେଁ ।

(କିଛିଏ ଦୂରକୁ ଯାଇ ଲୁଚି ଦଣ୍ଡାୟମାନ)

(ଜଳକୁମ୍ଭହସ୍ତେ ଶକୁନ୍ତଳା, ଅନସୂୟା ଓ ପ୍ରିୟମ୍ବଦା ପ୍ରବେଶ)

ଅନସୂୟା—ଦେଖ, ମୁଁ ମିଛ କହୁଥିଲି ପରା ? ଦେଖ ଶକୁନ୍ତଳେ ! ଆଖି ଫିଟେଇ ଦେଖ ।

ଶକୁନ୍ତଳା—ଛି ଛି, ଏମିତି ପରିହାସ କଲେ ଆଉ ସହି ହେବ ନାହିଁ ।

ପ୍ରିୟମ୍ବଦା—ସହି, ପିତା ତ ଏଇଆ କହିଥିଲେ । ଆମର ଶୁଣିବା କଥା କିନା ! ସତ କହୁଛି, ତୋ'ର ବିଭାଘର ପାଖ ହୋଇଆସିଲା ।

ଶକୁନ୍ତଳା—ଛାଡ଼ ସେ କଥା । ଦେଖିଲୁ ଏ ମାଳତୀକୁ, କେମିତି ସହକାରରେ ଜଡ଼ାଇହୋଇ ଫୁଲ ଫୁଟାଇ ହସିଉଠିଛି । ଫୁଲର ଜୀବନ ଏକା ଅତି ସୁଖମୟ !

ପ୍ରିୟମ୍ବଦା—ଠିକ କହିଛୁ ସଖି ! ତୋର ବି ସେହି ସମୟ ଆସିଲାଣି । ଅଳ୍ପ ଦିନରେ ତୁ ବି ଏଇ ଲତା-ପରିପରି କାହାର ଆଶ୍ରୟ ନେବୁ । ଚିନ୍ତା କର ନାହିଁ । ସହି ମ, ସେତେବେଳେ ବାଳ କିଛିଏ ଆମମାନଙ୍କ କଥା ମନେ କରୁଥିବୁ ।

ଅନସୂୟା—ଏକାବେଳେ ଭୁଲିଯିବୁ ନାହିଁ । ମୁଁ ତୋ'ଲାଗି ନଈରୁ କେତେ ପାଣି ଆଣି ଦେଇଛି । ମାଧବୀଗଛମୂଳରେ ବେଗେ କରି ଧରିବାକୁ କେତେ ପାଣି ଢାଳିଛି । ଭୁଲିଯିବୁ ନାହିଁ, ଏଁ ?

(ଶକୁନ୍ତଳାକୁ କିଛିଏ ଦୂରକୁ ଟାଣିନେଲେ)

ଦୁଷ୍ମନ୍ତ—(ସ୍ୱଗତ) ଏଁ, ଏ ତ ଆହୁରି ଆଶ୍ଚର୍ଯ୍ୟ ! କାନନରେ ଦେବ-ଉପବନର ଫୁଲ ଫୁଟିବାର ଜାଣି ନ ଥିଲି । ଋଷିକୁମାରୀଙ୍କମଧ୍ୟରେ ଏ ମୂର୍ତ୍ତିଟି କାହାର ? ଦେଖିଲେ ତ ମନ ଯେ ଦୁର୍ବଳ ହୁଏ । (ପୁଣି ଲୁଚିଗଲେ)

ଶକୁନ୍ତଳା—ଛି ଛି, ତମ କଥା ଶୁଣି-ଶୁଣି ମୁଁ ବ୍ୟସ୍ତ ହୋଇପଡ଼ିଲିଣି । (ମୁହଁ ଘୁରାଇ) ଓହୋ, ରକ୍ଷା କର ସଖି ! ଏ ଭଅଁର ମୋତେ ବଡ଼ ହଇରାଣ କରିପକାଇଲାଣି । ଓଃ, ଓଃ !

ପ୍ରିୟମ୍ବଦା—ମ ମ, ତତେ ହଇରାଣ କରିବ କଅଣ ? ନିଜେ ଭଅଁରଟା ଭାରି ହଇରାଣରେ ପଡ଼ିଛି । ବିଚରା ତୋ ଢଳଢଳ ମୁହଁଟିକୁ ଫୁଟାପଦ୍ମ ବୋଲି ମନେ କରି ମଧୁ ଚାଖିବାକୁ ବସିଲାଣି ସତେ ! ବାକି ଆମେ କ'ଣ କରିବୁଁ ? ଆମର ବଳ କାହିଁ ? ରାଜ୍ୟର ରାଜା ଦୁଷ୍ମନ୍ତ । ତାଙ୍କୁ ଡାକ୍, ଏ ବିପଦରୁ ଉଦ୍ଧାର କରିବେ ।

ଶକୁନ୍ତଳା—ଓଃ, ଏ ତ ମୋତେ ଆଉ ରଖେଇଦେଲା ନାହିଁ । ମୁଁ ଏଠୁଁ ଯାଏଁ । ଓଃ, ରକ୍ଷା କର ।

(ହାତ ଛୁଟି ଭଅଁରକୁ ଉଡ଼ାଇଦେବାକୁ ଚେଷ୍ଟା କଲେ)

ରାଜା—(ସ୍ୱଗତ) ଯାଏଁ, ଏ ସୁଯୋଗ ଛାଡ଼ିବାର ନୁହେଁ । ଏତିକବେଳେ ପାଖରେ ପହଞ୍ଚିଯାଏଁ । (ପ୍ରକାଶ୍ୟେ) କି ହାର ସାହାସ, ଋଷିକୁମାରୀଙ୍କର ବିପଦ ଘଟାଇବ ? କିଏ ସେ ଦୁଷ୍ଟ ?

(ପ୍ରବେଶ ହେଲେ)

ଅନସୂୟା—( ପରସ୍ପରକୁ ଚାହିଁ ) ନା ମହାଶୟ ! ଗୋଟିଏ ଭଅଁର ଆସି ଆମ ସଖୀକି ବଡ଼ ବ୍ୟସ୍ତ କରିପକାଉଥିଲା । ଆପଣ ଅନ୍ୟ କିଛି ଭାବନ୍ତୁ ନାହିଁ । ସାମାନ୍ୟ କାର୍ଯ୍ୟପାଇଁ ଆପଣଙ୍କୁ ଏତେ କଷ୍ଟ ଦେଲୁ, କ୍ଷମା ଦେବେ ।

ରାଜା—(ହସି) କଷ୍ଟ ତ ନୁହେଁ, ବିପଦାପନ୍ନକୁ ରକ୍ଷା କରିବା କ୍ଷତ୍ରିୟର ଧର୍ମ ।

ଶକୁନ୍ତଳା—(ସ୍ୱଗତ) ଆରେ, ମନ କାହିଁକି ଚମକି-ଉଠୁଛି ? ତପୋବନର ବିରୁଦ୍ଧଭାବ ମନକୁ ଆସୁଛି । ଏ କିଏ ?

ଅନସୂୟା—(ରାଜାଙ୍କପ୍ରତି ) ମହତ୍ ଲୋକଙ୍କ ବ୍ୟବହାର ଏଇମିତି ମହାଭାଗ ! (ପ୍ରିୟମ୍ବଦାପ୍ରତି) ଯାଅ ସଖି, ଆଗେ ଅତିଥିଙ୍କ ସତ୍କାର କର । ଶକୁନ୍ତଳା, ଜଳ ଢାଅ ।

ଶକୁନ୍ତଳା—( ଲଜ୍ଜାରେ ଅଧୋମୁଖୀ ହୋଇ ଠିଆ-ହେଲେ । )

ରାଜା—(ହସି) ତୃଷାର୍ତ୍ତଙ୍କୁ ଜଳଦାନ କ'ଣ ଅତିଥି-ସତ୍କାର ନୁହେଁ ? ତୁମ୍ଭମାନଙ୍କର ମଧୁର ସମ୍ଭାଷଣରେ ପରମ ତୃପ୍ତ ହେଲି । ଅଧିକ କଷ୍ଟ ଦେବାକୁ ମୁଁ ଇଚ୍ଛା କରୁ ନାହିଁ ।

ପ୍ରିୟମ୍ବଦା—(ଅନସୂୟା-କାନରେ) ସଖି ! କଥାବାର୍ତ୍ତା ଶୁଣି ମନେ ହୁଏ, ଏ ଉଚ୍ଚ ବଂଶରେ ଜନ୍ମ । ପରିଚୟ ପଚାରିବି ?

ଅନସୂୟା—ମୁଁ ବି ସେଇ କଥା ଭାବୁଛି । ପଚାରେଁ । (ରାଜାଙ୍କପ୍ରତି) ଭଦ୍ର ! ଅପରିଚିତଭାବେ ଆପଣଙ୍କ ମଧୁର ବ୍ୟବହାରରେ ସାହସୀ ହୋଇ କିଛି ପଚାରିବାକୁ ଇଚ୍ଛା କରୁଛୁଁ ।

ରାଜା—ସଙ୍କୋଚ କର ନାହିଁ । ପଚାରିପାର ।

ଅନସୂୟା—ଅନୁମାନ ହୁଏ, ଆପଣ ଅତି ଶ୍ରେଷ୍ଠ ବଂଶଧର । କେଉଁ ରାଜର୍ଷିଙ୍କର କୁଳ ମଣ୍ଡନ କରିଛନ୍ତି ଆପଣ ?

ଶକୁନ୍ତଳା—(ସ୍ୱଗତ) ସ୍ଥିର ହୁଅ ଚିତ୍ତ ।

ରାଜା—(ସ୍ୱଗତ) କିପରି ଆତ୍ମପରିଚୟ ଦେବି ? ନା, (ପ୍ରକାଶ୍ୟେ) ମୁଁ ଏହି ରାଜ୍ୟର ଧର୍ମରକ୍ଷକ । ପୁଣ୍ୟ ତପୋବନ ଦେଖିବା ପ୍ରୟାସ ନେଇ ଆସିଥିଲି ।

ପ୍ରିୟମ୍ବଦା—(ଶକୁନ୍ତଳାପ୍ରତି) ସଖି, ଆଜି ଯଦି ପିତା କଣ୍ୱ ଏଠି ଉପସ୍ଥିତ ଥା'ନ୍ତେ, ତେବେ ତାଙ୍କର ଏହି ସୁନାଫୁଲର ହାରଟି ଉପହାର ଦେଇ ଅତିଥିଙ୍କୁ ସୁଖି କରାଇଥା'ନ୍ତେ, ନୁହେଁ ?

ଶକୁନ୍ତଳା—(ଛଳକୋପେ) ଛି !

ଅନସୂୟା—ମହାଭାଗ ! ତେବେ ଆଜି ତପସ୍ୱିନୀମାନଙ୍କ ପରମ ସୌଭାଗ୍ୟ, ଆପଣଙ୍କପରି ଅତିଥି ପାଇ ସେମାନେ ସୁଖିନୀ ହୋଇଛନ୍ତି ।

ରାଜା—ତାହା ମୋର ଭାଗ୍ୟ । ଋଷିକୁମାରୀ ! (ସଙ୍କୋଚଭାବେ) ଗୋଟିଏ ସନ୍ଦେହ ଆସେ—ମନରେ ଯଦି କିଛି ନ ଭାବ, ତେବେ ମୁଁ ତୁମ୍ଭ ସଖୀଙ୍କ ବିଷୟରେ···

ପ୍ରିୟମ୍ବଦା—( କଥାରେ ବାଧା ଦେଇ ) ଏଇଟା ଆପଣଙ୍କ ଅନୁଗ୍ରହ ସିନା !

ରାଜା—ମହର୍ଷି କଣ୍ୱ ଆଜନ୍ମ ବ୍ରହ୍ମଚାରୀ ବୋଲି ମୁଁ ଶୁଣିଛି । ତୁମ୍ଭେମାନେ ତପସ୍ୱିନୀ ସତ; କିନ୍ତୁ ତୁମର ଏ ସଖୀଙ୍କୁ ଦେଖି ମନେ ହୁଏ···

ଅନସୂୟା—ଆପଣଙ୍କ ଅନୁମାନ ସତ୍ୟ ମହାଭାଗ ! ପିତା କଣ୍ୱ ଆମ ସଖୀଙ୍କ ପାଳିତ ପିତା । ତାଙ୍କଠାରୁ ଶୁଣିଛୁଁ, ଥରେ ବିଶ୍ୱାମିତ୍ର ଗୋମତୀ-ତୀରରେ ତପସ୍ୟାରତ ଥିଲେ । ତାଙ୍କର କଠୋର ତପସ୍ୟାରେ ଦେବତାମାନେ ଭୟ ପାଇ ବିଘ୍ନ ଘଟାଇବା ଉଦ୍ଦେଶ୍ୟରେ ମେନକାଙ୍କୁ ପଠାଇଲେ । ତା'ର ଛଳନାରେ ବିଶ୍ୱାମିତ୍ରଙ୍କ ଯୋଗ ଭଙ୍ଗ ହେଲା । ବିଶ୍ୱାମିତ୍ର ଓ ମେନକା ଆମ ସଖୀଙ୍କ ପିତା-ମାତା । ଜନ୍ମପରେ ମେନକା ଆମ ସଖୀଙ୍କି ବଣରେ ଛାଡ଼ିଦେଇ ଚାଲିଗଲେ । ତାଙ୍କୁ ସେଠାରେ ଗୋଟିଏ ଶକୁନ ପକ୍ଷୀ ଆଦର କରି ପକ୍ଷ ଘୋଡ଼ାଇବସିଥିଲା । ଦୈବଯୋଗକୁ ପିତା କଣ୍ୱ ସ୍ନାନନିମିତ୍ତ ସେହି ପଥରେ ଯାଉ-ଯାଉ ଶିଶୁଟିପ୍ରତି ଦୟାପରବଶ ହୋଇ ଆଣି ପାଳିଲେ । ଶକୁନ ପକ୍ଷୀ ପାଳିଥିଲା ବୋଲି ନାଆଁ ଦେଲେ 'ଶକୁନ୍ତଳା' । ସେହିକାଳରୁ ସଖୀ ଆମର ତପୋବନରେ ଅଛନ୍ତି ।

ରାଜା—ସତ୍ୟ, ନୋହିଲେ ମର୍ତ୍ତ୍ୟରେ ପାରିଜାତର ସମ୍ଭବ ହୁଅନ୍ତା କପରି ?

ପ୍ରିୟମ୍ବଦା—ଆପଣଙ୍କ ଭାବଭଙ୍ଗୀରୁ ଜଣାପଡ଼େ, ଯେପରି ଆପଣ ଆଉ କିଛି ପଚାରିବାକୁ ଚାହାନ୍ତି ।

ରାଜା—ଠିକ୍ କହିଛ । ଆଉ କିଛି···

ପ୍ରିୟମ୍ବଦା—ପଚାରିବା ହୁଅନ୍ତୁ ।

ଅନସୂୟା—କିଛି ବାଧା ନାହିଁ ।

ରାଜା—(ସଙ୍କୁଚିତ ହୋଇ) ତେବେ ତୁମ ସଖୀଙ୍କର ଏ ଦେବଦୁର୍ଲ୍ଲଭ ରୂପ ନେଇ ଏପରି ତପସ୍ୱିନୀ-ଭାବେ ରହିବା ···

ଅନସୂୟା—ନା, ପିତା କଣ୍ୱ ସ୍ଥିର କରିଛନ୍ତି, ଉପଯୁକ୍ତ ପାତ୍ର ଦେଖି ତାଙ୍କର ହାତରେ ଦେଇ ସୁଖୀ ହେବେ ।

ରାଜା—(ସ୍ୱଗତ) ଆଶ୍ୱସ୍ତ ହୁଅ ମନ । ଏ ଅଗ୍ନି, ଶୀତଳ ଜଳକଣା ।

ପ୍ରିୟମ୍ବଦା—(ଶକୁନ୍ତଳାଙ୍କୁ ଦୂରେଇନେଇ କାନରେ) ସହି, ତୋ ମନକଥାଟା ମୁଁ ବେଶ୍ ବୁଝିପାରୁଛି ମ । ଏତେ ଉଚ୍ଛନ୍ନ ହେଲେ ଚଳିବ ?

ଶକୁନ୍ତଳା—(ଛଳ କରି) ଛି ସଖି, ମୁଁ ଆଉ ଏଠି ରହିପାରିବି ନାହିଁ । ତୁମେମାନେ ପଛରେ ଆସୁଥାଅ, ମୁଁ ଯାଉଛି । (ଅଗ୍ରସର ହେଲେ)

ଅନସୂୟା—ଉଁ, ସେ କଥା କେମିତି ହବ ? ତୁ ଯେ ଆମଠାରୁ ଧାରିଛୁ । ମୁଁ ତୋପାଇଁ କେତେ ପାଣି ଆଣି ମାଳତୀମୂଳରେ ଢାଳିଛି, ଶୁଝି-ଦେଇ ଯା ।

ରାଜା—ଋଷିକୁମାରୀ ! ତୁମ୍ଭ ସଖୀ ବଡ଼ କ୍ଳାନ୍ତ ଥିଲାପରି ଜଣାପଡ଼ୁଛନ୍ତି । ମୁଁ ତାଙ୍କପାଇଁ ତୁମ୍ଭର ଋଣ ପରିଶୋଧ କରିଦେଉଛି । (ହାତରୁ ମୁଦି କାଢ଼ି) ଏଇ ନିଅ, ଏଇ ମୁଦିଟି ନେଇ ତାଙ୍କୁ ଋଣରୁ ମୁକ୍ତ କର । (ପ୍ରିୟମ୍ବଦାକୁ ମୁଦି ଦେଲେ)

ପ୍ରିୟମ୍ବଦା—(ମୁଦିରେ ନାମ ଦେଖି ଅନସୂୟାଙ୍କୁ ଦେଖାଇଲେ) ତେବେ ଏ ମୁଦି ତ···

ରାଜା—(ଚମକି) ଆରେ ରେ, ମୁଦିରେ ତ ନାମ ଲେଖାଅଛି । (ପ୍ରକାଶ୍ୟେ) ନା, ରାଜ-ଅନୁଗ୍ରହରୁ ମୁଁ ସେ ମୁଦି ପାଇଥିଲି; ମାତ୍ର ମୁଁ ସେ ନାମର ଅଧିକାରୀ ନୁହେଁ ।

ଅନସୂୟା—ଋଷିକୁମାରୀମାନେ ସରଳା ହେଲେ ବି ତାଙ୍କର ଚତୁରତା ଅଛି । ବଣଫୁଲରେ ବାସନାର ଅଭାବ ନ ଥାଏ ।

ପ୍ରିୟମ୍ବଦା—ଆମେମାନେ ଆଉ ପରିଚୟ ମାଗୁ ନାହୁଁ । (ଶକୁନ୍ତଳାପ୍ରତି) ସଖି, ଏଥର ଯେବେ ମନ ହେଉଛି, ତେବେ ଯା । ଋଣରୁ ତ ମୁକୁଳିଲୁ, ଆଉ ଡର କ'ଣ ?

ଶକୁନ୍ତଳା—ଯାଏଁ ନ ଯାଏଁ, ସେ ମୋ ଇଚ୍ଛା; ତୁମର ଏତେ କଥା କହି କି ଲାଭ ?

ପ୍ରିୟମ୍ବଦା—(ହସିଲେଇ) ନାହିଁ ଗୋ ସଖି, ତୁମ ମନ ବୁଝିଥିଲୁଁ ନା । କ୍ଷମା କର । (ମୁଦି ଦେଖାଇ) ରାଗ ନାହିଁ । ସେ···

ନେପଥ୍ୟେ—ଋଷିମାନେ ! ସାବଧାନ ଥିବ । ମହାରାଜ ଦୁଷ୍ମନ୍ତ ବନବିହାର କରି ଆସିଛନ୍ତି । ଭୟରେ ଗୋଟିଏ ବଣୁଆ ହାତୀ ଏଣେତେଣେ ବୁଲୁଛି । ଆଶ୍ରମଭିତରେ ଆଶ୍ରୟ ନିଅ ।

(ରାଜା ଓ ଅନ୍ୟମାନେ ଚକିତ ହୋଇ ଚାହିଁବା)

ଅନସୂୟା—ମହାରାଜ, ଆମେମାନେ ଆପଣଙ୍କୁ ଆଜି ଏ କୁଟୀରରେ ଅତିଥି ହେବାକୁ ପ୍ରାର୍ଥନା କରୁଛୁଁ ।

ପ୍ରିୟମ୍ବଦା—ବଣହାତୀର ନାଁ ଶୁଣି ବଡ଼ ଭୟ ଲାଗୁଛି । ଅନୁମତି ହେଲେ ଆଶ୍ରମକୁ ଯିବୁଁ ।

ଶକୁନ୍ତଳା—( ସ୍ୱଗତ ) ଓଃ, ବିଧିର କି କଠୋର ବିଚାର ! ଆଉ ଦଣ୍ଡେ ହେଲେ···

ରାଜା—ମୁଁ ମଧ୍ୟ ବର୍ତ୍ତମାନ ଯାଉଛି । ଅନ୍ୟ ସମୟରେ ଦେଖାଦେବି । ସୈନ୍ୟମାନଙ୍କୁ ସାବଧାନ ରଖୁଛି । କିଛି ଭୟ କର ନାହିଁ ।

ପ୍ରିୟମ୍ବଦା—ତେବେ ସଖି ଶକୁନ୍ତଳା ! ତୁମର ଉପକାରୀ ଋଣମୁକ୍ତକାରୀଙ୍କଠାରୁ ବିଦାୟ ନିଅ । ଆସ ।

ଅନସୂୟା—(ଶକୁନ୍ତଳାଙ୍କ ମୁଖ ଅଳ୍ପ ଉପରକୁ ଟେକି ଧରି) ମହାରାଜ ! ସଖି ଆମର ବଡ଼ ଲାଜ କରୁଛି । ତା'ଲାଗି ମୁଁ ବିଦାୟ ମାଗିନେଉଛି ।

ଶକୁନ୍ତଳା—( ଛଳ ବିରକ୍ତିରେ ) ଓଃ, ତୁମେମାନେ ଭାରି ଦୁଷ୍ଟ ।

ଅନସୂୟା—ମନକୁ ପଚାରି ବୁଝ, କିଏ ଦୁଷ୍ଟ ?

ପ୍ରିୟମ୍ବଦା—ତେବେ ଆମେମାନେ ଆସୁଛୁଁ । ଚାଲ ସଖି । ବଣୁଆ ହାତୀଟା ଏକା ବଡ଼ କଷ୍ଟ ଦେଲା । ନା, ଶକୁନ୍ତଳା ?

ଶକୁନ୍ତଳା—ଆରେ ?

ପ୍ରିୟମ୍ବଦା—ଆରେ···(ହସି ଅଗ୍ରସର ହେଲା)

ରାଜା—(ସ୍ୱଗତ) ମନ ! ଥୟ ଧର । ଦୁଷ୍ମନ୍ତଙ୍କୁ ପଥହରା କର ନାହିଁ ।

ଶକୁନ୍ତଳା—(ଯାଉ-ଯାଉ ନିଜ ଗୋଡ଼ତଳପା ଧରି) ଓଃ, ସଖୀ ! ଏ କୁଶ-କଣ୍ଟାଟା ମୋ ତଳପାରେ ଫୁଟିଗଲା, ରହ-ରହ···

ପ୍ରିୟମ୍ବଦା—ହୃଦୟରେ ଫୁଟି ନାହିଁ ତ ସଖୀ ?

ଅନସୂୟା—ଟିକିଏ ଭଲ କରି ଦେଖ ।

ଶକୁନ୍ତଳା—ହିଁ, କେଡ଼େ ନିର୍ଲ୍ଲଜୀ ! (ଅଗ୍ରସର ହେଲେ)

ରାଜା—(ଚାହିଁ) ହୁଁ, ପ୍ରେମର ଗତି କେଡ଼େ କଠିନ ?

ପ୍ରିୟମ୍ବଦା—ଏଥର ଯାଇପାରିବ ତ ?

ଶକୁନ୍ତଳା—(କାନି ଛାଟିବାବେଳେ କଣ୍ଟାରେ ଲାଗିଲା) ଦେଖ୍, ପୁଣି ଏଥର କୁରୁବକ କଣ୍ଟାରେ କାନିଟା ଲାଗିଲାଣି । ଛଡ଼ାଇଦିଏଁ, ଟିକିଏ ରହ । (ଫେରି ରଜାଙ୍କୁ ଚାହିଁଲେ)

ଅନସୂୟା—ଦୁଷ୍ମନ୍ତଙ୍କୁ ଡାକଦେବୁ କି ? ଏ ବିପଦରୁ ପୁଣି ଉଦ୍ଧାର କରିବେ ?

ଶକୁନ୍ତଳା—ଏତେ ପରିହାସ କାହିଁକି ମ ସଖୀ ? (ଟିକିଏ ରାଗ କଲାପରି)

ପ୍ରିୟମ୍ବଦା—ପରିହାସ ତ ନୁହେଁ, ସତ କଥା । ଆମେମାନେ ତୋର ସେ କଣ୍ଟା ଛଡ଼ାଇଦେବୁଁ ମ । ଭାବନା କର ନା, ଆ ।

(ଚାଲିଗଲେ । ଶକୁନ୍ତଳା ଫେରି-ଫେରି ଚାହିଁ-ଚାହିଁ ଗଲେ )

ରାଜା—(ସେମାନଙ୍କ ଯିବାପଥକୁ ଆଖି ଫେରାଇ) ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ ନିୟତିର ବିଧି ! ବଣର ଋଷିକନ୍ୟା ଶକୁନ୍ତଳାର ମନ ମଧ୍ୟ ମୋରିପରି ଅବାଧ । ଯେତେ ବୁଝାଇଲେ ବି ମନ ମନା ମାନେ ନା, ଉତ୍କଣ୍ଠିତ ପଦାର୍ଥର ପ୍ରାପ୍ତି-ଆଶାରେ ମନ ଏହିପରି ଚଞ୍ଚଳ ହୁଏ ସିନା !

ଭାଗ୍ୟ—( ଧୀରେ-ଧୀରେ ପ୍ରବେଶ କରିକରି ) କ'ଣ ଭାବୁଛ ରାଜା ?

ରାଜା—(ଚମକି ପଡ଼ି ) କିଏ ତୁମେ ? ନାଁ ତ, କିଛି ଭାବୁ ନାହିଁ । ତପୋବନର ରକ୍ଷାନିମିତ୍ତ ଚିନ୍ତା କରୁଥିଲି ।

ଭାଗ୍ୟ—ଠିକ୍ କହିଛ । ମୁଁ ମଧ୍ୟ ସେହି କଥା ଭାବୁଥିଲି ଆଉ ଦେଖୁଥିଲି ପ୍ରେମର ଗନ୍ଧ···

ରାଜା—ଏଁ, ପ୍ରେମର ଗନ୍ଧ ? (ଚମକି)

ଭାଗ୍ୟ—ହିଁ ।

ରାଜା—କ'ଣ କହୁଛ ତୁମେ ? କି ପ୍ରେମର ଗନ୍ଧ ?

ଭାଗ୍ୟ—ତପୋବନର ରକ୍ଷା···

ରାଜା—ତୁମେ କ'ଣ କହୁଛ, ମୁଁ କିଛି ବୁଝିପାରୁ ନାହିଁ ।

ଭାଗ୍ୟ—ବେଶ୍, ନ ବୁଝ । (ହସିଲେ)

ରାଜା—(ସ୍ୱଗତ) କିଏ ମୋର ମନର କଥା ବୁଝିବା-ପରି ଆସି କହେ ପ୍ରେମର ଗନ୍ଧ···

ଭାଗ୍ୟ—(ହସି) ପୁଣି କଣ ଭାବୁଛ ରାଜା ?

ରାଜା—ଭାବୁଛି, ତୁମେ କିଏ ?

ଭାଗ୍ୟ—ଆଉ ପ୍ରେମର ଗନ୍ଧ ବି···

ରାଜା—ମୁଁ ତ ତୁମ କଥାର ମର୍ମ କିଛି ବୁଝିପାରୁ ନାହିଁ ।

ଭାଗ୍ୟ—ବେଶ୍ ବୁଝୁଛ ତ ।

ରାଜା—କିପରି ?

ଭାଗ୍ୟ—ଅଚ୍ଛା ରାଜା, ଫୁଲ କାହିଁକି ଫୁଟେ ?

ରାଜା—ଏ ପ୍ରଶ୍ନ କାହିଁକି ?

ଭାଗ୍ୟ—ତୁମେ ଆଗେ ଉତ୍ତର ଦିଅ, କାହିଁକି ଫୁଟେ ?

ରାଜା—ଜଗତର ଶୋଭା ବଢ଼ାଇବାକୁ ।

ଭାଗ୍ୟ—ଆଉ ?

ରାଜା—ଗଛ ସୁନ୍ଦର ଦିଶିବାକୁ ।

ଭାଗ୍ୟ—ଆଉ ?

ରାଜା—ମଳୟରେ ବାସ ମିଶାଇବାକୁ ।

ଭାଗ୍ୟ—ଆଉ ?

ରାଜା—ବଡ଼ ଆଶ୍ଚର୍ଯ୍ୟ ପ୍ରଶ୍ନ ତ !

ଭାଗ୍ୟ—ହିଁ, ବଡ଼ ଆଶ୍ଚର୍ଯ୍ୟ ପ୍ରଶ୍ନ । ଏମିତି ପ୍ରଶ୍ନ ଆଗରୁ କେହି ତମକୁ ପଚାରି ନ ଥିବ, ନା ? କୁହ ତ ରାଜା, ଆଉ କାହିଁକି ଫୁଟେ ?

ରାଜା—କହିପାରିବି ନାହିଁ ।

ଭାଗ୍ୟ—ପ୍ରେମିକ ହୃଦୟକୁ ଦହିବାକୁ । ନୁହେଁ ? କହ ।

ରାଜା—ଏଁ ?

ଭାଗ୍ୟ—ମନର ଗୋପନ କଥାକୁ କହିଦେଲି ପରା ? ତୁମେ ଯାହାକୁ ଲୁଚାଇରଖିବାକୁ ଚେଷ୍ଟା କରିଥିଲ···

ରାଜା—(ଆଶ୍ଚର୍ଯ୍ୟ ହୋଇ) ଏଁ, କିଏ ତୁମେ ? ଆଉ ଥରେ ଏହିପରି ଗାଇ-ଗାଇ ଯାଇଥିଲ ତୁମେ । କିଏ ତୁମେ ?

ଭାଗ୍ୟ—ମୁଁ ଋଷିକୁମାରୀ ।

ରାଜା—(ସ୍ୱଗତ) କିନ୍ତୁ ବେଶଭୂଷାରୁ··· (ଚାହିଁଲେ)

ଭାଗ୍ୟ—କ'ଣ ଦେଖୁଛ ରାଜା ?

ରାଜା—ତୁମର ଆଶ୍ଚର୍ଯ୍ୟ ଗନ୍ଧ ଦେଖୁଛି ।

ଭାଗ୍ୟ—ଆଶ୍ଚର୍ଯ୍ୟ ଗନ୍ଧ ?

ରାଜା—ହିଁ ।

ଭାଗ୍ୟ—କ'ଣ ପ୍ରେମର ଗନ୍ଧଠାରୁ ଆଶ୍ଚର୍ଯ୍ୟ ?

ରାଜା—ଆରେ···

ଭାଗ୍ୟ—ଆରେ କ'ଣ ?

ରାଜା—କିଏ ତୁମେ, ପରିଚୟ ନ ଦେଇ···

ଭାଗ୍ୟ—ମୋ ନାଆଁ ଶକୁନ୍ତଳା ।

ରାଜା—କି ଆଶ୍ଚର୍ଯ୍ୟ !

ଭାଗ୍ୟ—ଆଶ୍ଚର୍ଯ୍ୟ ?

ରାଜା— ତୁମେ କେଉଁଠି ଥାଅ ?

ଭାଗ୍ୟ—ଭ୍ରମ ସନଙ୍ଗ-ସଙ୍ଗେ, ଭ୍ରମ ପଚ୍ଛେ-ପଚ୍ଛେ ।

( ଗୀତ )

ସାଗରେ, ନଗରେ, ବଧୂ ଲି ଅଧରେ
ଚଞ୍ଚଳଚାଞ୍ଚଲେ ଜଣେ ଗୋ ମୁହିଁ ।୦।

ପ୍ରକୃତି ସୁନ୍ଦରୀ ହସଇ ମୋ ହସେ
ଅଳକାରେ ଫୁଲ କହେ ପ୍ରୀତିରସେ
ହରଷେ, ସରସେ, ବରଷେ, ସୁରସେ
ଅମିୟ୍ରର ଧାର ଥିଲେ ମୁଁ ସହି ।୧।

ଅନ୍ଧାର, ଆଲୋକ, ମାୟା-ଜାଲ ଘୋର,
ହସାଏଁ କନ୍ଦାଏଁ ମନସୁଖେ ମୋର
ଝରଇ ମୁକୁତା ଗଜମୋତିହାର,
ଆଉନୟନରେ ହସିଲେ ଗୃହିଁ ।୨।

ଭାଗ୍ୟ—(ଯାଉ-ଯାଉ) ବୁଝିଲ ତ ରାଜା ?

ରାଜା—(ଭାବ-ଭାବ) ଉଁ···

ନେପଥ୍ୟେ—ଉଁ ନୁହେଁ ହୁଁ ?

ନେପଥ୍ୟେ—ଋଷିମାନେ ! ସାବଧାନ ହୁଅ । ବନହସ୍ତୀ ଏଇଆଡ଼େ ଆସୁଛି । ସାବଧାନ !

ରାଜା—ଓଃ, ମୋହରେ ଅନ୍ଧ ହୋଇ ଭୁଲିଯାଇଥିଲି ମୋର କର୍ତ୍ତବ୍ୟ । ଯାଏଁ, ଦେଖେଁ । ଆଗେ ବନରକ୍ଷା, ପରେ···କିନ୍ତୁ କିଏ ସେ ମାୟାବିନୀ ? ଚିହ୍ନି ତ ପାରିଲି ନାହିଁ ? ଆଚ୍ଛା··· (ଅଗ୍ରସର)

ଭାଗ୍ୟ—(ନେପଥ୍ୟେ)—"ବଧିର ବଧି ।"

ରାଜା—(ଫେରି) ଆରେ, ପୁଣି କିଏ ମୋ କଥାର ଉତ୍ତର ଦିଏ ?

ଭାଗ୍ୟ—(ନେପଥ୍ୟେ) ପ୍ରେମର ଗତି ।

ରାଜା—(ଚମକି) କିଏ ?

ଭାଗ୍ୟ—ଶକୁନ୍ତଳା ।

ରାଜା—(ଯାଉ-ଯାଉ) ଓଃ !

ଭାଗ୍ୟ—ଭୟ କର ନାହିଁ ରାଜା ।

ରାଜା—ଯାଏଁ, ଦେଖେଁ···(ପ୍ରସ୍ଥାନ)

(ନେପଥ୍ୟରୁ ହସ)

---

## ଦ୍ୱିତୀୟ ଦୃଶ୍ୟ

(ବନପଥ—ଶାରଙ୍ଗରବ ଓ ଅନ୍ୟ ଜଣେ ସଖା ପ୍ରବେଶ)

୧ମ ଶାରଙ୍ଗ—ପିତା କଣ୍ୱ କେବେ ସୋମତୀର୍ଥରୁ ଫେରିବେ ? ଯିବାର କାରଣ କ'ଣ ?

୨ୟ ଶାରଙ୍ଗ—ଶୁଣି ନାହିଁ ? ଶକୁନ୍ତଳାଙ୍କର ଭାଗ୍ୟରେ ନିକଟରେ କୌଣସି ଦୈବଦୁର୍ବିପାକ ଥିଲା । ତାହାଁର ଶାନ୍ତିନିମିତ୍ତ ପିତା ସୋମତୀର୍ଥକୁ ଯାଇଛନ୍ତି ।

୧ମ ଶାରଙ୍ଗ—ଭୟ କ'ଣ ? ନିଜେ ମହାରାଜ ଦୁଷ୍ମନ୍ତ ଯାଗ ରକ୍ଷା କରୁଛନ୍ତି ।

୨ୟ ଶାରଙ୍ଗ—ବୋଧ ହୁଏ ପିତାଙ୍କ ଫେରିବାପର୍ଯ୍ୟନ୍ତ ଦୁଷ୍ମନ୍ତ ରହିବେ ।

୧ମ ଶାରଙ୍ଗ—ତାଙ୍କୁ ସେଥିଲାଗି ଅନୁରୋଧ କରି-ଯାଇଛି ।

୨ୟ ଶାରଙ୍ଗ—ତଥାପି, ରାଜକାର୍ଯ୍ୟ ତ । ଅନ୍ୟ କିଛି ଗୁରୁ ନିଯୋଗ ନ ଥିଲେ ଯାଗଶେଷଯାଏ ରହିପାରନ୍ତି ।

ନେପଥ୍ୟେ—ଶାରଙ୍ଗରବ ! ଏଣେ ଆସ । ଯଜ୍ଞ ଶେଷ ହେବ ।

୧ମ ଶାରଙ୍ଗ—ଶାରଙ୍ଗ ! ଚାଲ । ମାଆ ଗୌତମୀ ଡାକିଲେଣି ।

୨ୟ ଶାରଙ୍ଗ—ହଁ, ଚାଲ । (ଉଭୟେ ପ୍ରସ୍ଥାନ)

(ପ୍ରିୟମ୍ବଦା ଓ ଅନସୂୟା ପ୍ରବେଶ)

ପ୍ରିୟମ୍ବଦା—ନାଇଁ ସହି, ମୁଁ ଯାହା କହୁଛି, ସେଇଆ । ତାଙ୍କର ଚିନ୍ତାରେ ଶକୁନ୍ତଳାର ଏ ରୋଗ ।

ଅନସୂୟା—ହଁ, ଦୁହିଁଙ୍କି ଦୁହେଁ ସୁଖ ପାଉଛନ୍ତି । କେହି କାହାକୁ ଊଣା ନୁହନ୍ତି ।

ପ୍ରିୟମ୍ବଦା—ବାସ୍ତାଣୀ ହେଲୁ ? ପଦ୍ମ କି କେବେ ବାସନା ଛାଡ଼ି ରହିବ ?

ଅନସୂୟା—ହଁ, ଚନ୍ଦ୍ର ଲାଗି ତ ରୋହିଣୀ; ନୋହିଲେ ମିଳନ କେମିତି ସମ୍ଭବ ?

ପ୍ରିୟମ୍ବଦା—ଦୁଷ୍ମନ୍ତ ତ ଅନେକ ଦିନ ରହିଗଲେ ?

ଅନସୂୟା—ରହି ନାହାନ୍ତି ଗୋ, ରହିବେ । ମନ୍ଦ ଛାଡ଼ି ଭଅଁରର ଗତି କାହିଁ ?

ପ୍ରିୟମ୍ବଦା—ସତ ସହି ! ଦୁଷ୍ମନ୍ତଙ୍କ ଢଳଢଳ ଆଖିରେ କି ମୋହିନୀ ଶକ୍ତି ଅଛି କେଜାଣି !

ଅନସୂୟା—ନୋହିଲେ ଆଜନ୍ମ ତପସ୍ୱିନୀ ଶକୁନ୍ତଳା ଭୁଲନ୍ତା କାହିଁକି ?

ପ୍ରିୟମ୍ବଦା—ଏବେ ଶକୁନ୍ତଳା ଦେହରେ ହାଡ଼ ଦି'ଖଣ୍ଡ ଯାହା ସାର । ବଡ଼ ଭୋଗିଲା; କାହିଁକି ଯେ ଏମିତି ହେଲା, କିଛି ବୁଝିହେଉ ନାହିଁ ।

ଅନସୂୟା—କାମଦେବଙ୍କର ଲୀଳା ସେଇଟା ସହି ! ଏଇଟିକ ଜଗତରେ ବଡ଼ କଥା ଏକା !

ପ୍ରିୟମ୍ବଦା—ଗୌତମୀ କଅଣ କହୁଛନ୍ତି ?

ଅନସୂୟା—ସେ ଜାଣନ୍ତି ଜ୍ୱର ।

ପ୍ରିୟମ୍ବଦା—ପିତା କଣ୍ୱ ଫେରିଲେ ଜାଣିବେ ନାହିଁ ?

ଅନସୂୟା—ଜାଣିବେ ନାହିଁ କେମିତି ? ଏ କଥା କି ଲୁଚେ ?

ପ୍ରିୟମ୍ବଦା—ତପୋବନରେ ତ ଏ କଥା ଆଉ କେହି ଜାଣି ନାହାନ୍ତି ?

ଅନସୂୟା—ମାଆ ଗୌତମୀ ସୁଦ୍ଧା ଜାଣି ନାହାନ୍ତି । କିଏ ଜାଣିବ ବା କେମିତି ? କିଏ କହିବ ? ଆଉ କିଏ ବା ଜାଣେ ?

ପ୍ରିୟମ୍ବଦା—ହଁ, ଏ କଥା ତୁ ଜାଣୁ କି ମୁଁ ଜାଣେଁ ।

(ଭାଗ୍ୟ ପ୍ରବେଶ)

ଭାଗ୍ୟ—(ହସି-ହସି) ଆଉ ଏ କଥା ମୁଁ ଜାଣେ ।

ପ୍ରିୟମ୍ବଦା—(ଚମକି) ଏଁ, ତୁମେ ?

ଭାଗ୍ୟ—ହଁ, ମୁଁ ।

ଅନସୂୟା—ଏ କିଏ ସହି ?

ପ୍ରିୟମ୍ବଦା—କେଜାଣି, ଏ କିଏ । (ଭାଗ୍ୟପ୍ରତି) ତୁମେ କିଏ ?

ଭାଗ୍ୟ—ମୁଁ ତମରିପରି ଶକୁନ୍ତଳାର ଜଣେ ସହଚରୀ ।

ପ୍ରିୟମ୍ବଦା—କେମିତି ? ଶକୁନ୍ତଳାର ତ ଆମେ ଦୁହେଁ ସହଚରୀ । ପିଲାଦିନରୁ ଆମେ ବଢ଼ିଆସିଛୁ ? କାହିଁ, ଦିନେ ତ ତମକୁ ଦେଖି ନାହୁଁ । ତୁମେ କିଏ ?

ଭାଗ୍ୟ—ମୁଁ ତା ଆଗରୁ ତା'ର ସହଚରୀ ଥିଲି । ତା'ର ଜନ୍ମ ସଙ୍ଗେ-ସଙ୍ଗେ ମୋର ଜନ୍ମ ।

ଅନସୂୟା—କେଉଁଠି ଥିଲ ?

ଭାଗ୍ୟ—ଶକୁନ୍ତଳାର ପାଖରେ ।

ପ୍ରିୟମ୍ବଦା—ଆଉ ଜାଣିଛ କ'ଣ ?

ଭାଗ୍ୟ—କ'ଣ ?

ଅନସୂୟା—କହୁଥିଲ ଯେ, ତୁମେ ଜାଣ···

ଭାଗ୍ୟ—ହଁ ତ ।

ଅନସୂୟା—ତେବେ ?

ଭାଗ୍ୟ—କିଛି ନାହିଁ, ସେତିକି ।

ପ୍ରିୟମ୍ବଦା—ବାଃ, ଭଲ କଥା କହିଲ ତ ।

ଭାଗ୍ୟ—ହଁ ତ ।

ଅନସୂୟା—ତୁମେ ସବୁ ସବୁ ଜାଣ ?

ଭାଗ୍ୟ—ହଁ ତ ।

ପ୍ରିୟମ୍ବଦା—ତେବେ କହୁନ ?

ଭାଗ୍ୟ—କହୁଛି ତ ।

ଅନସୂୟା—କ'ଣ, କ'ଣ କହୁଛ ?

ଭାଗ୍ୟ—କଥା ।

ପ୍ରିୟମ୍ବଦା—ଆରେ !

ଭାଗ୍ୟ—ଆରେ ?

ଅନସୂୟା—ଜାଣ ପରା ?

ଭାଗ୍ୟ—ହଁ ତ ।

ପ୍ରିୟମ୍ବଦା—ତେବେ କହୁନ ।

ଭାଗ୍ୟ—କ'ଣ ?

ଅନସୂୟା—ଯାହା ଜାଣ ।

ଭାଗ୍ୟ—ସବୁ ଜାଣେ ।

ଅନସୂୟା—ତେବେ କହିଲ ଦେଖି ।

ଭାଗ୍ୟ—ତୁମେ କହିଲ ଦେଖି ।

ଅନସୂୟା—ପଳା-ପଳା, ବାୟାଣୀଟା ।

ଭାଗ୍ୟ—ତେବେ, ତୁମେ ବାୟାଣୀ ହୋଇଥା'ନ୍ତ ।

ଅନସୂୟା—କାହିଁକି ?

ଭାଗ୍ୟ—ସେ କଥାଟି କହିବ ନାହିଁ ।

ପ୍ରିୟମ୍ବଦା—ନ କହିଲେ ନାହିଁ । କ'ଣ ଜାଣ, କହ ।

ଭାଗ୍ୟ—ସବୁ ।

ପ୍ରିୟମ୍ବଦା—ସବୁ କ'ଣ ?

ଭାଗ୍ୟ—ତୁମ ମନକଥା । ଯାହା କହୁଥିଲ, ଯାହା ଲୁଚଉଥିଲ ।

ଅନସୂୟା—କ'ଣ କହୁଥିଲୁଁ ?

ପ୍ରିୟମ୍ବଦା—କ'ଣ ଲୁଚଉଥିଲୁଁ ?

ଭାଗ୍ୟ—ସେଇ କଥା । କହିବ ?

ଅନସୂୟା—କହିଲ ଦେଖି ।

ଭାଗ୍ୟ—ଆଚ୍ଛା, ତୁମେ କହିଲ ଦେଖି, ଫୁଟାଫୁଲରେ ଭଅଁର ବସିଛି କି ନାହିଁ ?

(ଦୁହେଁ ଦୁହିଁଙ୍କ ଗୁହିଁଲେ)

ଅନସୂୟା—ଆରେ !

ଭାଗ୍ୟ—ଆରେ ?

ପ୍ରିୟମ୍ବଦା—ହିଁ, କଅଣ ହେଲା ?

ଭାଗ୍ୟ—ସବୁ ହେଲା, ହେଲାଣି, ହଉଛି, ହବ ।

ଅନସୂୟା—ଆଉ ହବ କ'ଣ ?

ଭାଗ୍ୟ—ସବୁ ହବ । ହସ ହବ, ଖୁସି ହବ । ଖେଳ ହେବ, କାନ୍ଦ ହବ । କାନ୍ଦଛ ଯେତକ, ହସିବ ସେତକ । ରାତ ହୋଇଥିଲା, ଦିନ ହେବ, ଫେର୍ ରାତ ହବ । ହସିବ ଯେମିତି, କାନ୍ଦିବ ସେମିତି ।

ପ୍ରିୟମ୍ବଦା—କିଏ ?

ଭାଗ୍ୟ—କେହି ନାହିଁ ।

ଅନସୂୟା—କିଏ ହସୁଛି ମ ?

ଭାଗ୍ୟ—କେଜାଣି ।

ପ୍ରିୟମ୍ବଦା—ଆଉ କାନ୍ଦିବ କିଏ ମ ?

ଭାଗ୍ୟ—ତୁମେ, ମୁଁ, ସେ ।

ଅନସୂୟା—ମଲା !

ଭାଗ୍ୟ—ମଲା···

ପ୍ରିୟମ୍ବଦା—ଯା ଯା, କିଜେ ତ ବାୟାଣୀ । ଆଉ ସମସ୍ତିଙ୍କି ବାୟାଣୀ କରିବ ।

ଭାଗ୍ୟ—ତେବେ ମୁଁ ଯାଉଛି ?

ଅନସୂୟା—ତୁମ କଥା ଆମେ କିଛି ବୁଝୁ ନାହୁଁ ।

ଭାଗ୍ୟ—ଦିନେ ବୁଝିବ ।

ଅନସୂୟା—ତୁମେ କିଏ ? କେଉଁଠୁ ଆସିଛ । କେଉଁଠାକୁ ଆସିଛ, କହିଲ ନାହିଁ ? ଲୁଚଉଛ କାହିଁକି ?

ଭାଗ୍ୟ—ସବୁ କହିଲି ତ । ଆଉ ଲୁଚେଇଲି କ'ଣ ?

ଅନସୂୟା—ତୁମେ ଗୋଟାଏ କପଟ ବାୟାଣୀ !

ଭାଗ୍ୟ—ତେବେ ମୁଁ ଯାଉଛି ତମ ସଖୀ ପାଖକୁ । ମନେ ରଖିଥିବ, ଗାଳି ଦେଉଥିବ । ଥା ।

(ପ୍ରସ୍ଥାନୋଦ୍ୟତ)

ଅନସୂୟା—ଏ ଏ, ଶୁଣି ଯା ।

ପ୍ରିୟମ୍ବଦା—କେଉଁଠିକି ଯିବ ?

ଭାଗ୍ୟ—ତମ ସଖୀ ପାଖକୁ । (ପ୍ରସ୍ଥାନ)

ଅନସୂୟା—ଚାଲ ଚାଲ, ଆମେ ବି ଯିବୁ ।
(ପ୍ରସ୍ଥାନୋଦ୍ୟତ)

ନେପଥ୍ୟ—ପଛରେ ଆସୁଥା ।

ଉଭୟେ—ଆଚ୍ଛା ! (ପ୍ରସ୍ଥାନ)

ନେପଥ୍ୟ—ଆରେ ?

(ରାଜା ଓ ବିଦୂଷକ ପ୍ରବେଶ)

ରାଜା—ନାହିଁ ସଖା, ମୁଁ କହିବି, ତୁମର ଆଜି ଥିବା ନ ଥିବା ସମାନ ।

ବିଦୂଷକ—କାହିଁକି ?

ରାଜା—କାହିଁକି ? ଯାହା ଦେଖିବାର ଜିନିଷ, ତାହା ଦେଖି ନାହିଁ ।

ବିଦୂଷକ—କପଟ ?

ରାଜା—କପଟ ଆଉ ପୁଣି କ'ଣ ? କହିଲି ପରା, ଯାହା ଦେଖିଲେ ଆଖିର ଆଖିପଦ ସାର୍ଥକ ହୁଅନ୍ତା, ସେପରିକି ଦେଖି ନାହିଁ ।

ବିଦୂଷକ—ଏ କପଟ ହେବ ମହାରାଜ ! ଦେଖି ନାହିଁ କପଟ ? ଆପଣ ତ ମୋର ଆଖି ଆଗରେ । ଆଉ ଏହାଠୁଁ ଅଧିକ କି ପଦାର୍ଥ ଏ ଆଖି ଦେଖି-ଥାଆନ୍ତା ?

ରାଜା—ନାନା, ଏ ଆଶ୍ରମରେ ଯାହା ଦେଖିବାର କଥା ।

ବିଦୂଷକ—କ'ଣ ?

(ବିଦୂଷକ କାନରେ ଶକୁନ୍ତଳା କଥା କହିଲେ ଓ ବିଦୂଷକ ଚମକିଉଠିଲେ)

ବିଦୂଷକ—ରାମ, ରାମ ! ତପସ୍ୱିନୀ କନ୍ୟାରେ ଲୋଭ ! ଅଧର୍ମ, ଅଧର୍ମ !

ରାଜା—ଜାଣି ନାହଁ ସଖା ! ଶକୁନ୍ତଳା ଋଷିକନ୍ୟା ନୁହେଁ । ମେନକାଙ୍କ ଗର୍ଭରୁ ଓ ବିଶ୍ୱାମିତ୍ରଙ୍କ ଔରସରୁ ଜନ୍ମ ।

ବିଦୂଷକ—ତେବେ ସଖା ! 'ପ୍ରାପ୍ତିମାତ୍ରେଣ ଭୋକ୍ତବ୍ୟଂ', ସେ-କନ୍ୟା ଭାଗ୍ୟରେ ଥିଲେ ମିଳେ । ଆସିଥିଲେ ପଥଶ୍ରମ କରି ଶିକାରକୁ । କିଛି ବାଟଖର୍ଚ୍ଚ ବି ମିଳିଯିବ । ବେଶ୍ ବେଶ୍ !

ରାଜା—ସଖା ! ବାକି ଅନେକ ଅସୁବିଧା ଅଛି ।

ବିଦୂଷକ—କିଛି ନାହିଁ, କିଛି ନାହିଁ । ତୁମେ ରାଜା । ଛଳେ, ବଳେ, କଉଶଳେ—ଯେମିତି ହେଉ କାର୍ଯ୍ୟ ସିଦ୍ଧ କର । ନୋହିଲେ ମୋତେ ମଧ୍ୟସ୍ଥ କରି-ପକାଅ ।

ରାଜା—ନା ସଖା ! ସେ ପରାଧୀନା । ପୁଣି ମହର୍ଷି କଣ୍ୱ ଅନୁପସ୍ଥିତ । ତେଣୁ ମୁଁ ଭାବୁଛି, କିଛି ଦିନ ଅପେକ୍ଷା କରିବାକୁ ହେବ ।

ବିଦୂଷକ—ବେଶ୍ ହେଲା । ଏଇଠି ଆମର ନଅର ତିଆରିକରାଇବା ।

ରାଜା—ତା' ନୁହେଁ ସଖା ! ତେଣେ ଯେ ମହାରାଣୀଙ୍କର ଆଜି ବ୍ରତ ଶେଷ; ତେଣୁ ଯିବାକୁ ଆଦେଶ ।

ବିଦୂଷକ—ତେବେ ତ ବୁଦ୍ଧି ଶେଷ ଏଇଠି, ଆଉ ବୁଦ୍ଧି ଚଳୁ ନାହିଁ ।

ରାଜା—ଆଉ ମଧ୍ୟ ଏଠାରେ ରହିବାର ସେପରି କି ବିଶେଷ କାରଣ ଦେଖାଇବି ?

(ଦୁଇ ଜଣ ଋଷିକୁମାରଙ୍କ ପ୍ରବେଶ)

ଉଭୟେ—ମହାରାଜାଙ୍କର ଜୟ ହେଉ । ଆମ୍ଭେମାନେ ଆପଣଙ୍କୁ ଅନେକ ଖୋଜି-ଖୋଜି ଆସିଲୁଣି ।

ରାଜା—ତପୋବନର ସମସ୍ତ କୁଶଳ ତ ?

୧ମ—କୁଳପତି କଣ୍ୱ ଆଶ୍ରମରେ ନ ଥିବାର ସୁଯୋଗ ନେଇ ରାକ୍ଷସମାନେ ଯଜ୍ଞକାର୍ଯ୍ୟରେ ବିଘ୍ନ ଘଟାଇବାର ଆଶଙ୍କା ରହିଛି । ତେଣୁ ମୁନିମାନେ ଆପଣଙ୍କ ସାହାଯ୍ୟପାଇଁ ଅନୁରୋଧ କରି ପଠାଇଛନ୍ତି ।

ରାଜା—ମୁନିମାନେ କି ଆଦେଶ କରିଛନ୍ତି, କୁହନ୍ତୁ; ଦାସ ସର୍ବଦା ପ୍ରସ୍ତୁତ ଅଛି ।

୨ୟ—ଆପଣ କିଛି କାଳ ଅନୁଗ୍ରହ କରି ଏଠାରେ ରହି ଯାଗ ରକ୍ଷା କରିବେ ।

ବିଦୂଷକ—(ରାଜାଙ୍କ କାନ ପାଖରେ) ମହାରାଜ ! ଏ ଅନୁରୋଧକୁ ଆପଣଙ୍କର ଶୁଭସଙ୍କେତ ବୋଲି ମନେ କରିବେ ।

ରାଜା—(ହସି) ପ୍ରସ୍ତୁତ ଅଛି । ନିର୍ଭୟରେ ଯଜ୍ଞକାର୍ଯ୍ୟ ଚଳାନ୍ତୁ ।

୧ମ ଓ ୨ୟ—ପୁରୁବଂଶର ଉପଯୁକ୍ତ ରାଜା । ମହାରାଜଙ୍କର ଜୟ ହେଉ । (ପ୍ରସ୍ଥାନ)

ବିଦୂଷକ—ମହାରାଜ ! ସୁଯୋଗ ଯେତେବେଳେ ଆସେ, ଅନ୍ଧାର ରାତି ବି ମଶାଲ ଜଳାଇଲା ପରି ଦିଶେ । ଭାବୁଥିଲେ ପରା କିପରି ରହିବ ? ଏବେ ସବୁ ଠିକ୍ ହୋଇଗଲା ତ ? ପଣାକାଠି କଟେ ବା'ର ! ଖାଲି ଗଡ଼ିଲେ ହେଲା । ସଖା, ଏ ସୁଯୋଗ ଛାଡ଼ିବାର ନୁହେଁ । ଅବିଳମ୍ବେ ପ୍ରସ୍ତୁତ ହୁଅନ୍ତୁ ।

ରାଜା—ବାକି ସଖା, ତମକୁ ମୋପାଇଁ ଗୋଟାଏ କାମ କରିବାକୁ ହେବ ।

ବିଦୂଷକ—(ହସି) ହଁ ହଁ, ଆମେ ବୁଝିଲୁଣି ।

ରାଜା—କିପରି ?

ବିଦୂଷକ—କିପରି ? ଅନୁମାନ କର ।

ରାଜା—କ'ଣ ଅନୁମାନ କଲ ?

ବିଦୂଷକ—ଗୋଟାଏ ଚଉକିଡିଆ ଭୋଜନଟାଏ ହୋଇଥିବ ତ ?

ରାଜା—(ହସି) ନା, ସେ କଥା ନୁହେଁ । ତୁମେ ତ ଆମ୍ଭ ଜନନୀମାନଙ୍କର ଧର୍ମପୁତ୍ର । ତୁମ୍ଭେ ଯାଇ ସେମାନଙ୍କୁ ସହାୟ ହୁଅ । ଆଜି ରାଜଧାନୀ-ଅଭିମୁଖେ ବାହାରିଯାଅ ।

ବିଦୂଷକ—କିନ୍ତୁ ଆପଣ ଯେପରି ଆମ୍ଭେ ଅସୁର-ଭୟରେ ପଳାଇଗଲୁ ବୋଲି ନ ବୁଝନ୍ତି ।

ରାଜା—(ହସି) ନାହିଁ ନାହିଁ । ତୁମ୍ଭେ କି ଭୟାଳୁ ? ଆଜି ଜଗତରେ ମହାବୀର କିଏ ?

ବିଦୂଷକ—ନିଶ୍ଚୟ ନିଶ୍ଚୟ । ତେବେ ମହାରାଜ, ମୋର ଯିବାର ଆୟୋଜନ କରିଦିଅନ୍ତୁ ।

ରାଜା—ହଁ ।

ବିଦୂଷକ—ହଁ ମନେ ରଖିଥିବେ, ମୁଁ ରାଜପୁତ୍ରରୂପେ ରାଜଧାନୀକୁ ଫେରୁଛି ! ସେହିପରି ସୈନ୍ୟସାମନ୍ତ ସଙ୍ଗରେ ନ ଥିଲେ ଅସମ୍ମାନ ହେବ । ତେଣୁ କିଛି ସୈନ୍ୟ ଦିଅନ୍ତୁ ।

ରାଜା—ବେଶ୍ କହିଛ ସଖା ! ସୈନ୍ୟମାନେ ବି ଏଠାରେ ରହିଲେ ମୁନି-ଋଷିଙ୍କ ତପସ୍ୟାରେ ବାଧା ଘଟିପାରେ ସେମାନଙ୍କ କୋଳାହଳରେ । ସେମାନେ ମଧ୍ୟ ତୁମ ସଙ୍ଗରେ ଯିବେ ।

ବିଦୂଷକ—(ହସି) ତେବେ ଆମ୍ଭେ ସମ୍ପୂର୍ଣ୍ଣ ରାଜକୁମାର ।

ରାଜା—(ସ୍ୱଗତ) ଏ ଯେପରି ବାଚାଳ, ଶକୁନ୍ତଳା-କଥା ରାଜ୍ୟରେ କହିଦେବା ଅସମ୍ଭବ ନୁହେଁ; ଏଣେ ବାରଣ ମଧ୍ୟ କରିହେଉ ନାହିଁ ।

ବିଦୂଷକ—ଆଉ କ'ଣ ଭାବୁଛନ୍ତି ମହାରାଜ ? ଆପଣଙ୍କ ଭାଗ୍ୟ ଫିଟିଛି, ମୋ ଭାଗ୍ୟ ବି ଫିଟିଲା । ଚାଲନ୍ତୁ, ଯିବାର ଆୟୋଜନ କରିବା ।

ରାଜା—ହଁ ସଖା, ଚାଲ । (ହସି) ମୁଁ ଯେ ଶକୁନ୍ତଳା-କଥା କହିଲି, ସେସବୁ ମିଛ କଥା । ଋଷିକନ୍ୟାକୁ କିପରି ଆଶି ହେବ ? ତୁମ୍ଭ ମନ ପରୀକ୍ଷା କରିବାକୁ କହୁଥିଲି । ନା ଏସବୁ ସତ ମଣିବ ନାହିଁ । ତୁମ୍ଭସହିତ ପରିହାସ କରୁଥିଲି ସିନା···

ବିଦୂଷକ—ହଁ, ତା' ନୁହେଁ କ'ଣ ? ମୁଁ ତ ଆଗରୁ ସେଇ କଥା ଭାବୁଛି ।

ରାଜା—ଚାଲ ତେବେ । ତୁମ୍ଭ ଯିବାର ଆୟୋଜନ କରିଦେବି ।

ବିଦୂଷକ—ହଁ ସଖା । (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ମାଳତୀ-ଘରରେ ବିରହିଣୀ ଶକୁନ୍ତଳା ଶୋଇ-ଥିଲେ । ଅନସୂୟା ଓ ପ୍ରିୟମ୍ବଦା ପାଖରେ ବସିଥିଲେ । ଅଦୂରେ ଅନ୍ୟ ଲତା-ଅନ୍ତରାଳରୁ ଧୀରେ ଦୁଷ୍ମନ୍ତ ପ୍ରବେଶ ହେଲେ)

ପ୍ରିୟମ୍ବଦା—ସଖି, ସତ କହ । ଆପଣା ଲୋକ ପାଖରେ ମନର ଦୁଃଖ କହିଲେ, ଦୁଃଖ କମିଯାଏ । ତୁ କିଛି ଲୁଚା ନା ।

ରାଜା—(ଅଦୂରେ ସ୍ୱଗତ) ତେବେ ଏହି ଥର ବୁଝାଯିବ । ସ୍ଥିର ହୁଅ ଅସ୍ଥିର ମନ ।

ଅନସୂୟା—କହ ସଖି, ଆମ ପାଖରେ କପଟ କରୁଛୁ କାହିଁକି ?

ଶକୁନ୍ତଳା—(ଦୀର୍ଘନିଃଶ୍ୱାସ ପକାଇ) ନାହିଁ ସଖି, ଛନ୍ଦ କ କପଟ କିଛି କରୁ ନାହିଁ । ସେଦିନଠାରୁ ମୁଁ ସେ ରାଜାଙ୍କୁ ଦେଖିଛି···

(ଲଜ୍ଜାରେ ମୁଣ୍ଡ ତଳକୁ ନୁଆଁଇଲେ)

ରାଜା—(ଚମକି) ଓଃ, ଚନ୍ଦ୍ରକିରଣ ଶୀତଳ ହେବା ତ ସ୍ୱାଭାବିକ !

ପ୍ରିୟମ୍ବଦା—ହଉ ବୁଝିଲି, ଏଥିଲାଗି ଏତେ କାତର କାହିଁକି ? ବିନା ସାଗର ଆଶ୍ରାରେ ନଦୀର ସ୍ଥାନ କେଉଁଠି ? (ଅନସୂୟାପ୍ରତି) ସଖି, ସଙ୍ଗେ-ସଙ୍ଗେ ତ କିଛି ଉପାୟ ଦିଶୁ ନାହିଁ ? କଣ କରିବା ?

ଅନସୂୟା—ଗୋପନରେ ସାକ୍ଷାତ କଥା ତ ?

ପ୍ରିୟମ୍ବଦା—ହଁ, ସେଇ କଥା । ବେଶୀ ବିଳମ୍ବ ହେଲେ··· ଦେଖିଲୁ ତ ସଖୀର ଅବସ୍ଥା ? ଦିନ କେଇଟାରେ କେତେ ପରିବର୍ତ୍ତନ ହୋଇଗଲା ?

ଅନସୂୟା—ତେବେ ସଖି, ଗୋଟାଏ କଥା କରିବା । ଶକୁନ୍ତଳା ପଦ୍ମପତ୍ରରେ ଖଣ୍ଡିଏ ଚିଠି ଲେଖୁ । ଫୁଲସାଙ୍ଗରେ ମୁଁ ନେଇ ତାଙ୍କୁ ଦେଇଦେବି ।

ରାଜା—(ସ୍ୱଗତ) ପ୍ରକୃତ ସଖୀ ଏମାନେ । ମନର ବେଦନା ବୁଝିବାକୁ ଏମିତି ସଖୀ ଆବଶ୍ୟକ ।

ପ୍ରିୟମ୍ବଦା—ହଁ, ଏ କଥା ମନକୁ ପାଉଛି । ସେ'ଠାରୁ ଆଉ ସହଜ ଉପାୟ କ'ଣ ଅଛି ? ଶକୁନ୍ତଳା, କ'ଣ କହୁଛୁ ?

ଶକୁନ୍ତଳା—ସଖି, ତୁମେମାନେ ଯାହା କହିବ, ମୁଁ ସେଥିରେ ଏକମତ ।

ଅନସୂୟା—ତେବେ ତୋ ମନ-କଥା କବିତା-ଆକାରରେ ପଦ୍ମପତ୍ରରେ ଲେଖିପକା ।

ଶକୁନ୍ତଳା—କିନ୍ତୁ ସଖି, ଲେଖିବାବେଳକୁ ହାତ ଥରୁଛି, ଗାତ୍ର ଥରୁଛି । ସେ ହସ୍ତିନାର ମହାରାଜା, ମୁଁ କାହିଁ ବଣଘର ଋଷିକନ୍ୟା । କ୍ଷୁଦ୍ର କୀଟ ହୋଇ ଉତ୍ତପ୍ତ ଅଗ୍ନିଶିଖାକୁ ଆଲିଙ୍ଗନ କରିବା କ'ଣ ସମ୍ଭବ ? ଯଦି ସେ ମୋ ଚିଠିକୁ ଅଣହେଳା କରି ଫିଙ୍ଗିଦିଅନ୍ତି ? ( ମୁଖରେ ଲୁଗାଦେବା )

ରାଜା—(ସ୍ୱଗତ) ଭୀରୁ ନାରୀ ! ତୃଷାର୍ତ୍ତ ବାରି-ବିନ୍ଦୁର କେବେ ଅଣହେଳା କରିପାରେ ? ଏ କି ସମ୍ଭବ ? ଅମୂଲ୍ୟ ରତ୍ନ କାହାର ଅନାଦରର ପଦାର୍ଥ ହୋଇପାରେ ?

ଅନସୂୟା—ସଖି, ପ୍ରଣୟର ମହାନ ପରଶ ଏଇମିତି ମନରେ କେତେ ସନ୍ଦେହ ଆଣିଦିଏ । ତୁ ନିଜକୁ ଛୋଟ ବୋଲି ମନେ କରୁଛୁ । ଚନ୍ଦ୍ର-କିରଣର ଆଦର କିଏ ନ କରେ ?

(ଗୀତ)

ମନମ ରେ, ଅଭିମାନିନୀ ଲୋ ଗଜଗାମିନୀ,
ନ ବସ ବିରସେ ରେ,
ଝଲକିଲେ ତୁ ଧନ, ଫୁଟେ କୁମୁଦିନୀ
ହସିଲେ ତୁ ସୁଧା ବରଷେ ରେ ।୦।
ନଭ ତାରା ଶଶୀ, ତୋହ ଲାଗି ହସି
ଗଗନେ ବିହରେ ସରସେ ।
ବନଫୁଲ ଝର କେତକୀ-ପାଖୁଡ଼ା
ଫୁଲଇ ପବନେ ହରଷେ ରେ ।୧।

ସଲାଜ ମାଳତୀ, ନୀଳ ଜଳବେଣୀ
ନରେଖି ତୋ ଗୁରୁ ସୁକେଶେ ରେ,
ଧରଣୀ ସବାରେ ହସଇ ପରା ତୁ
ଆଉଜଲେ ଥରେ ଅବଶେ ରେ ।୨।

ପ୍ରିୟମ୍ବଦା—(ଶବୁକ ଧରି) ସଖି ! ତୁ ଚିନ୍ତା କର ନା, ଭାବ କରି ଲେଖ । ମନ ଥୟ କର ।

ଶକୁନ୍ତଳା—ଲେଖିବି ତେବେ ? (ଲେଖିବସିଲେ)

ଶଶୀ ବିନେ ଚକୋରର
ଆନ ଗତି ନାହିଁ ।
ଜଳ ବିନେ ଜୀଇବ କି
ସତେ ମୀନ କାହିଁ ?
ଥିଲେ ଥାଉ ପିଣ୍ଡ, ଯେବେ
ପରାଣ-ବିହୀନ
ମୃତପିଣ୍ଡ ସିନା ତାହା
ମୃତ୍ତିକାରୁ ହୀନ

ଶକୁନ୍ତଳା—ଶୁଣିଲ ତ ସଖି ! ତମ ମନକୁ ଯଦି ଆସିବ···

ରାଜା—(ଅଧୀରଭାବେ) ନା, ଆଉ ସ୍ଥିର ହୋଇ ରହିବା ସମ୍ଭବ ନୁହେଁ । (ପାଖକୁ ଯାଇ) ସୁନ୍ଦରି ! ମନର କଥା ଚିଠିରେ ଲେଖି ଯାହାଙ୍କ ପାଖକୁ ଜଣାଇବ,ସେ ସ୍ୱୟଂ ଉପସ୍ଥିତ ତୁମ ସମ୍ମୁଖରେ । ପ୍ରେମର ନିବେଦନ ଆଉ ଆବଶ୍ୟକ ନାହିଁ । ମୁଁ ମଧ୍ୟ ତୁମଭଳି···

(ଅନସୂୟା ଓ ପ୍ରିୟମ୍ବଦା ହସି ହସି ଠିଆହେଲେ)

ପ୍ରିୟମ୍ବଦା—ଖୋଜିଲି ଧନ ଏତେ ଚଞ୍ଚଳ ପାଇବୁ ବୋଲି···

ଅନସୂୟା—ଏହି ଶିଳାଉପରେ ବସିବା ହୁଅନ୍ତୁ ମହାରାଜ !

(ଶକୁନ୍ତଳା । ଲଜ୍ଜାରେ ମୁଖ ତଳକୁ କଲେ, ଅଳ୍ପ ହସି)

ରାଜା—ଆବଶ୍ୟକ ନାହିଁ । ଏଇ ସ୍ନେହ ମୋର ଯଥେଷ୍ଟ ।

ଶକୁନ୍ତଳା—(ସ୍ୱଗତ) ହୃଦୟ ! ମୁହୂର୍ତ୍ତକ ଆଗରୁ ଯାହାର ଦର୍ଶନଲାଗି ଆତୁର ହୋଇଉଠୁଥିଲୁ, ସମ୍ମୁଖରେ ତାଙ୍କୁ ପାଇ ଥରେ ଆଖି ଫେରାଇ-ଆଣିବାକୁ ଏତେ କୁଣ୍ଠିତ କାହିଁକି ?

ରାଜା—(ଅନସୂୟା ପ୍ରତି) ଋଷିକୁମାରୀ ! ମନେ ହୁଏ ତୁମ ସଖୀ ଅସୁସ୍ଥା ପରା···

ଅନସୂୟା—ହଁ ଥିଲେ; କିନ୍ତୁ ଔଷଧ ମିଳିଗଲାଣି । ଏଥର···(ହସିଲେ)

ପ୍ରିୟମ୍ବଦା—ମହାରାଜ, କ୍ଷମା ଦେବେ । ଯେମିତି ବୁଝୁଛି ଦୁହେଁ ଯାକ ରୋଗରେ ବଡ଼ କଷ୍ଟ ପାଉଛନ୍ତି । ଗୋଟିଏ କଥା କହନ୍ତି···

ରାଜା—ନିର୍ଭୟରେ କହିପାର । ମୋ'ଠାରେ ସଙ୍କୋଚର କାରଣ ନାହିଁ ।

ପ୍ରିୟମ୍ବଦା—ଆଶ୍ରମରକ୍ଷା ରଜାଙ୍କ ଧର୍ମ୍ମ ତ ?

ରାଜା—ନିଶ୍ଚୟ ।

ପ୍ରିୟମ୍ବଦା—ତେବେ ଆମ ସଖୀର ଦୁଃଖ ହରଣ ନ କଲେ ରାଜ ଧର୍ମ୍ମରେ ହାନି ହେବ ନିଶ୍ଚୟ ?

ରାଜା—ଋଷିକୁମାରୀ, ଏ ତୁମର ଅନୁରୋଧ ନା ଆଦେଶ ?

ଶକୁନ୍ତଳା—ଛି, ତୁମ୍ଭମାନଙ୍କୁ ଏତେ କଥା କହିବାକୁ କିଏ କହିଲା ?

ପ୍ରିୟମ୍ବଦା—କେହି ନୁହେଁ । ରୋଗୀ ନିଜେ ।

ଅନସୂୟା—ମହାରାଜ ! ଶୁଣିଛୁ, ରାଜାମାନଙ୍କର ଅନେକ ରାଣୀ ଥାଆନ୍ତି—ସଖି ଆମର ପଛରେ ଯେପରି ଦଶା ନ ଭୋଗନ୍ତି । ଏଥିପ୍ରତି ଟିକିଏ ଦୃଷ୍ଟି ରଖିଥିବେ ।

ରାଜା—ଅନେକ ରାଣୀ ଥା'ନ୍ତି ସତ । ବହୁ ପୁଷ୍ପ ତ ଅଛି, ତେବେ ପଦ୍ମର ଏତେ ଆଦର କାହିଁକି ?

ଅନସୂୟା—ମହତ ଲୋକଙ୍କ ବାକ୍ୟ କେବେ ଅନ୍ୟଥା ହୁଏ ନାହିଁ । ଆପଣଙ୍କ କଥାକୁ ମୁଁ ବିଶ୍ୱାସ କରୁଛୁ ମହାରାଜ ।

ଶକୁନ୍ତଳା—(ଛଳ କରି) ମହାରାଜଙ୍କ ଅନୁପସ୍ଥିତିରେ ତାଙ୍କୁ କେତେ ଅମର୍ଯ୍ୟାଦା କଥା କହୁଛ । ଆଗେ କ୍ଷମା ମାଗ । ଜାଣ ତ ସେ ହସ୍ତିନାର ମହାରାଜା ?

ପ୍ରିୟମ୍ବଦା—ଗରଜ ପଡ଼ୁଛି ! ଯେ କହୁଛି, ସେ କ୍ଷମା ମାଗୁ । ଆମେ କାହିଁକି······

ଶକୁନ୍ତଳା—(ଲଜ୍ଜାରେ) ମହାରାଜ ! ପଛରେ ଅନେକ କଥା ଲୋକେ କହନ୍ତି । ତେଣୁ କ୍ଷମା ଦେବେ ।

ରାଜା—କେବଳ କଥାରେ କ୍ଷମାପାଇବା ଅସମ୍ଭବ । ରାଜା-ସମ୍ମାନର ଅବମାନନା କରିଛ । ମୁଁ ତୁମକୁ ବନ୍ଦିନୀ କଲି ।

ଅନସୂୟା—(ଭୀତ ହୋଇ) ମହାରାଜ !

ଶକୁନ୍ତଳା—(ରାଗ ହେବାପରି) ଚୁପ୍ ହୁଅ । ମୋର ଏ ଅବସ୍ଥା ଦେଖି ତୋତେ ଦୁଃଖ ଲାଗୁନି ? (ରାଜାଙ୍କ ପ୍ରତି) ଯାହା ପାରନ୍ତି, ଦଣ୍ଡ ଦିଅନ୍ତୁ ମହାରାଜ !

ଅନସୂୟା—(ହସି ବାହାରକୁ ଚାହିଁ) ଆରେ, ଆଶ୍ରମର ହରିଣଛୁଆଟି କାହିଁକି ଏଣେ ତେଣେ ଚାହିଁରହିଛି ? ତା ମାଆକୁ ଖୋଜୁଛି ପରା ? ସଖି ଶକୁନ୍ତଳା ! ଏଇଠି ଥାଅ, ମୁଁ ଟିକିଏ ତାକୁ ତା' ମାଆ ପାଖରେ ଛାଡ଼ିଦେଇଆସେଁ । (ଆଗେଇଲେ)

ପ୍ରିୟମ୍ବଦା—ନା ନା, ବଡ଼ ଚଞ୍ଚଳ ସେ । ତୁ ଏକା ପାରିବୁ ନାହିଁ; ମୁଁ ଯିବି ।

ଶକୁନ୍ତଳା—ତା'ହେଲେ ତୁମେ ଦୁଇ ଜଣଯାକ ଏକା-ବେଳକେ ବାହାରିଯିବ ? ମୁଁ ଏକୁଟିଆ···

ଅନସୂୟା—ଏକୁଟିଆ କାହିଁକି ? ପାଖରେ ତ ମହାରାଜା ଅଛନ୍ତି । ଆଉ ଡର କାହିଁକି ? (ଦୁହିଁଙ୍କର ପ୍ରସ୍ଥାନ)

ଶକୁନ୍ତଳା—(ଉଠି) ଆରେ ଆରେ, କ'ଣ ସତରେ ଚାଲିଗଲ ?

ରାଜା—(ବାଧା ଦେଇ) ଅଭିମାନିନୀ ! ଏତେ ଅଧୀର କାହିଁକି ? ତୁମେ ଯେ ଅସୁସ୍ଥା । ବିଶ୍ରାମ କର । ମୁଁ ପାଖରେ ଉପସ୍ଥିତ ଅଛି ।

ଶକୁନ୍ତଳା—(ଲଜ୍ଜାରେ) ଛି ଛି, ଆପଣ ମହାରାଜା । ରାଜ୍ୟର ଦେବତା । ଏ ଅଭାଗିନୀକୁ ଆଉ ଏତେ ଲଜ୍ଜା ଦିଅନ୍ତୁ ନାହିଁ ।

(ଶକୁନ୍ତଳା ଉଠି ଯିବାକୁ ଉଦ୍ୟତ ହେଲେ ଓ ରାଜା କାନି ଟାଣିଧରିଲେ)

ରାଜା—ପ୍ରିୟେ !···

ଶକୁନ୍ତଳା—ମହାରାଜ ! ମୋ ଉପରେ ମୋର ଅଧିକାର ନାହିଁ । ମୁଁ ଯେ ପରାଧୀନା ।

ରାଜା—(ଶକୁନ୍ତଳାଙ୍କୁ ଛାଡ଼ିଦେଇ ଦୀର୍ଘଶ୍ୱାସ ପକାଇଲେ)

ଶକୁନ୍ତଳା—(ଫେରିଚାହିଁ) ମହାରାଜ ! ଦୁଃଖିତ ହେବେ ନାହିଁ । ଏଇଟା ଆପଣଙ୍କ ଦୋଷ ନୁହେଁ । ଦୈବର ଦୋଷ ।

ରାଜା —ଦୈବର ଅପରାଧ ନୁହେଁ ଶକୁନ୍ତଳା ! ତା' ହୋଇଥିଲେ ଆମର ମିଳନ ସମ୍ଭବ ହୋଇ ନ ଥାନ୍ତା ।

ଶକୁନ୍ତଳା—କିନ୍ତୁ ମୁଁ ଦୈବକୁ ଦୋଷ ଦେବି । ନାରୀ-ଜନ୍ମ ଦେଇ ପରାଧୀନା କରି ପୁରୁଷ ଗୁଣରେ ଭୁଲାଏ କାହିଁକି ?

ରାଜା—ସୁନ୍ଦରି ! ଗୁରୁଜନଙ୍କ ଭୟରେ ତୁମେ ଏପରି କହୁଛ ବୋଲି ଅନୁମାନ ହୁଏ । ଶୁଣିଥିବ, ଶାସ୍ତ୍ରମତେ ଗାନ୍ଧର୍ବ ବିବାହର ପ୍ରଚଳନ ରହିଛି ଏବଂ ଗୁରୁଜନ ମଧ୍ୟ ସେଥିରେ ସମ୍ମତ ହୁଅନ୍ତି । ଏଥିପାଇଁ ଏତେ ଚିନ୍ତା କାହିଁକି ?

ଶକୁନ୍ତଳା—(ପଛଘୁଞ୍ଚା ଦେଲେ) କ୍ଷମା ଦେବେ ପ୍ରିୟତମ ! ଏଠାରେ ରହିବା ଆଉ ସମ୍ଭବ ନୁହେଁ । ମନେ ରଖିଥିବେ, ସେପରି ଏହି ବନର ମିଳନକୁ ଭୁଲି ନ ଯାଆନ୍ତି—ଏତିକି ଭିକ୍ଷା । (ଦ୍ରୁତ ବାହାରିଗଲେ । ରାଜା ଚକିତ ହୋଇ ବସିପଡ଼ିଲେ)

ରାଜା—ବିଧାତାର କି ନିର୍ମମ ବିଚାର ! କ୍ଷଣକରେ ସାକ୍ଷାତ ଜୀବନରେ ଟାଣିଦେଇଛି ଅଭୁଲା ଗାର । (ଶକୁନ୍ତଳାର ବଳୟ ତଳେ ପଡ଼ିଥିବା ଦେଖି ଆଣି

ହୃଦୟରେ ଲଗାଇ ) ବଳୟ ! ପ୍ରିୟାର କରଭୂଷଣ ! ସ୍ପର୍ଶରେ ତୋର ହୃଦୟ ମୋର ହୁଏ ବିଦୀର୍ଣ୍ଣ; କିନ୍ତୁ···

ଶକୁନ୍ତଳା—(ସହସା ପ୍ରବେଶି) ମହାରାଜ ! ଅଜଣାରେ କେଉଁଠି ହାତରୁ ମୋ ବଳୟଟି ଖସିପଡ଼ିଛି । ଅଧବାଟରେ ଜାଣି ଫେରିଆସିଲି ।

ରାଜା—ଏ ତୁମର ବଳୟ ନା ?

ଶକୁନ୍ତଳା—ହଁ ହଁ, ଦିଅନ୍ତୁ, ପିନ୍ଧିଦିଅନ୍ତୁ ।

ରାଜା—(ଉଠି) କାହିଁକି ? ନିଜେ ପିନ୍ଧାଇଦେଲେ ଆପତ୍ତି ଅଛି କି ?

ଶକୁନ୍ତଳା—( ଅଧୋମୁଖ ହୋଇ ) ନାଁ, ଯେମିତି ଇଚ୍ଛା··· (ହାତବଢ଼ାଇଲେ)

ରାଜା—(ପିନ୍ଧାଇଦେଇ) ତୁମର ଏ ରୂପକୁ ବଳୟଟି ବଡ଼ ସୁନ୍ଦର ମାନୁଛି ସତେ !

ଶକୁନ୍ତଳା—(ଆଖି ମୁନ୍ଦିଧରି) ମୋତେ କିଛି ଦିଶୁ ନାହିଁ । ଏ ଫୁଲର ରେଣୁଗୁଡ଼ିକ ଉଡ଼ି ଆଖିରେ ପଡ଼ିଯାଇଛି ।

ରାଜା—(ହସି) ତେବେ ମୁଁ ଫୁଙ୍କିଦିଏଁ । ଅନୁମତି ଦିଅ ।

ଶକୁନ୍ତଳା—ଅନୁମତି କାହିଁ, ସେ ଆପଣଙ୍କ ଅନୁଗ୍ରହ; କିନ୍ତୁ ଆପଣଙ୍କୁ ବିଶ୍ୱାସ ହେଉ ନାହିଁ ।

ରାଜା—ଅବିଶ୍ୱାସର କାରଣ ? ନୂଆ ନିଯୋଗ କେବେ ଅଶିଷ୍ଟ ବ୍ୟବହାର କରିପାରେ ? (ଫୁଙ୍କିଦେଲେ)

ଶକୁନ୍ତଳା—କିନ୍ତୁ ଅତି ଭକ୍ତ· ·ଥାଉ ଥାଉ, ଏଥର ମୋତେ ଦିଶିଲାଣି ।

ରାଜା—ସତ ! ତୁମ ମୁଖକମଳର ମଧୁର ସୁବାସରେ ମୁଁ ବିମୁଗ୍ଧ ହୋଇପଡ଼ିଛି; କିନ୍ତୁ ଭ୍ରମର କେବେ କ'ଣ ଖାଲି ପଦ୍ମର ଗନ୍ଧରେ ସନ୍ତୁଷ୍ଟ ହୁଏ ?

ଶକୁନ୍ତଳା—ଆଉ ?

ରାଜା—ପଦ୍ମର ଗନ୍ଧ ତାକୁ ଆକର୍ଷିତ କରେ, ଯାହା-ଫଳରେ···

ଶକୁନ୍ତଳା—କ'ଣ ହୁଏ ?

ରାଜା—(ହାତ ଧରି) କହିଦେବି ?

ଶକୁନ୍ତଳା—ଓଃ, ଥାଉ ଥାଉ; ବୁଝିଲିଣି ମୁଁ···
(ଛୁଟିହୋଇଯିବା ।)

ନେପଥ୍ୟେ—ସନ୍ଧ୍ୟା ହେଲା । ଚକ୍ରବାକବଧୂ ! ପ୍ରିୟ-ସଙ୍ଗରେ ମଧୁର ଅଳାପ ଶେଷ କରି ନୀଡ଼କୁ ବାହୁଡ଼ ।

ଶକୁନ୍ତଳା—(ଚମକି) ମହାରାଜ ! ଏଠାରୁ ଚାଲିଯା'ନ୍ତୁ ଆପଣ । ବୋଧ ହୁଏ ମା ଗୌତମୀ ଆସୁଛନ୍ତି । ସେଥିଯୋଗୁଁ ସଖୀମାନେ ସାବଧାନ କରାଇ-ଦେଲେ । ଆପଣ ଲତାପତ୍ର ଉହାଡ଼ରେ ଲୁଚିଯାଆନ୍ତୁ । (ରାଜା ତରତରହୋଇ ଲୁଚିଗଲେ)

ଗୌତମୀ—(ପ୍ରବେଶ ହେଲେ ଶକୁନ୍ତଳା ଶୋଇଥା'ନ୍ତି) ବତ୍ସେ, ତୁମର ଦେହ ବେଶୀ ଅସୁସ୍ଥ ଥିବାର ଶୁଣି ଶାନ୍ତ୍ୟୁଦକ ଆଣିଛି । ଉଠ, ଏକୁଟିଆ ଏଠାରେ ଅଛ କାହିଁକି ?

ଶକୁନ୍ତଳା—ନା, ଏହିକ୍ଷଣି ସଖୀମାନେ ମାଳିନୀନଦୀ-କୂଳକୁ ଯାଇଛନ୍ତି ।

ଗୌତମୀ—(ଶାନ୍ତ୍ୟୁଦକ ସିଞ୍ଚି) ଦେହ ଟିକିଏ ଭଲ ଲାଗୁଛି ?

ଶକୁନ୍ତଳା—ହଁ, ଉଣା ଅଛି ।

ଗୌତମୀ—ତେବେ ଉଠ । ସଞ୍ଜ ହେଲାଣି, କୁଟୀରକୁ ଆସ ।

ଶକୁନ୍ତଳା—(ଏଣେତେଣେ ଚାହିଁ ଉଠି) ଚାଲନ୍ତୁ ।
(ଗୌତମୀ ଅଗ୍ରସର ହେଲେ)

ଶକୁନ୍ତଳା—(ମନେ ମନେ) ବିଧାତାର ବିଚାର ! ସହି ହେଉ ନାହିଁ ଆଉ ।

ଗୌତମୀ—(ଅନ୍ତରାଳରୁ) ଆସ ଶକୁନ୍ତଳା ।

ଶକୁନ୍ତଳା—ଯାଉଛି ମା ! ଥାଅ ତରୁଲତା, ପୁଣି କାଲି । ବିଦାୟ ।
(କହି କହି ଚାଲିଗଲେ)

ରାଜା—(ଲତାଉହାଡ଼ରୁ ବାହାରି) ଏ କ'ଣ ? ଚତୁର୍ଦ୍ଦିଗରୁ ଶୁଭୁଯାଏ ମୋତେ ବିଦାୟର କରୁଣ ବାଣୀ । ଉତ୍ତର ଦେବାକୁ ଅବସର ମିଳିଲା ନାହିଁ । ନିଷ୍ଠୁର ବିଧି ! ଶୂନ୍ୟ ! ଜଣାଯାଏ ଲତାମଣ୍ଡପ ସବୁ ସେପରି ଶୂନ୍ୟ ! ଆକୁଳ ନୟନରେ ଚାହିଁଛନ୍ତି ମୋତେ ବୃକ୍ଷଲତା । ଓଃ (ମୁଣ୍ଡ ଚିପିଧରି, କ୍ଷଣକ ପରେ)ଯାଏଁ, ଋଷିମାନଙ୍କର ଯାଗ ଶେଷ ହେବ । ଶୁଣ ଲତା ମଣ୍ଡପ, କହିପାରିଲି ନାହିଁ କିଛି ମନର କଥା । ଦେଖିଲେ ପ୍ରିୟାକୁ ମୋର, ବୁଝାଇ କହିବ ମନଦୁଃଖରେ ଦୁଷ୍ମନ୍ତ ବିଦାୟ ନେଉଛି ଆଜଲାଗି ।

ଅଦୂର ନେପଥ୍ୟ—ବିଦାୟ, ବିଦାୟ !

ରାଜା—(ଫେରିଚାହିଁ) କିଏ ?

ଭାଗ୍ୟ—(ହସି ହସି ପ୍ରବେଶ) ମୁଁ ।

ରାଜା—ତୁମେ ?

ଭାଗ୍ୟ—ହିଁ, ମୁଁ ।

ରାଜା—କିଏ ତୁମେ ? ସେଦିନ ମଧ୍ୟ ଦେଖାଦେଇଥିଲ, ପୁଣି ଆଜି ? କିଏ ତୁମେ, ପରିଚୟ ଦେଲ ନାହିଁ ?

ଭାଗ୍ୟ—ଏଇ ଯେଉଁ ଫୁଲଟି ଦୋଳୁଛି ରାଜା, ଦେଖୁଛ ନା ?

ରାଜା—ଦେଖୁଛି ।

ଭାଗ୍ୟ—ସେମିତି କେତେ ଫୁଲ ଦୋଳୁଛି, ଦେଖୁଛ ତ ?

ରାଜା—ହିଁ, ଦେଖୁଛି ।

ଭାଗ୍ୟ—ସବୁ ଫୁଲରେ କ'ଣ ଭଅଁର ବସେ ?

ରାଜା—ନା ।

ଭାଗ୍ୟ—ତେବେ ?

ରାଜା—ଯାହାର ଭାଗ୍ୟରେ ଥାଏ···

ଭାଗ୍ୟ—ଠିକ୍ କହିଛ ରାଜା ।

ରାଜା—କ'ଣ ହେଲା ?

ଭାଗ୍ୟ—ବେଶ୍ ହେଲା ।

ରାଜା—ଆଚ୍ଛା, ପରିଚୟ ପାଇପାରିଲି ନାହିଁ ତ ?

ଭାଗ୍ୟ—ହେଲା ତ ।

ରାଜା—ତୁମେ ପାଗଳମିପରି କଥା କହୁଛ । ତୁମେ କ'ଣ ପାଗଳୀ ?

ଭାଗ୍ୟ—ଯାହା ଭାବୁଛ ।

ରାଜା—ନା, ମୋ ସଙ୍ଗେ ତୁମେ ପରିହାସ କରୁଛ ?

ଭାଗ୍ୟ—ପ୍ରାୟ ।

ରାଜା—ଏଇଟା କଣ ତୁମର ଅଭ୍ୟାସ ?

ଭାଗ୍ୟ—ପ୍ରାୟ । (ଶୀଘ୍ର ଚାଲିଗଲେ, ରାଜା ଚାହିଁ ରହିଲେ ।)

(ପଟକ୍ଷେପ)

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ତପୋବନନିକଟସ୍ଥ କୁଞ୍ଜରେ ଶକୁନ୍ତଳା ଶୋଇଥିଲେ । ଅଦୂରେ ଫୁଲ ଗୁଚ୍ଛ )

(କଣ୍ୱ ଓ ଗୌତମୀଙ୍କ ପ୍ରବେଶ)

କଣ୍ୱ—ହିଁ ଗୌତମୀ ! ଏତେଦିନେ ଗୋଟିଏ ଗୁରୁ-ଭାରରୁ ମୁକ୍ତ ହେଲି । ବାକି ଶକୁନ୍ତଳାକୁ ରାଜବାଟୀକୁ ପଠାଇଦେଲେ ମୁଁ ନିଶ୍ଚିନ୍ତ ହେବି ।

ଗୌତମୀ—ମହାରାଜ ଦୁଷ୍ମନ୍ତ ତପୋବନରୁ ତିନି-ଚାରି ଦିନ ହେବ ଗଲେ । ଆଉ କିଛି ଦିନ ଅପେକ୍ଷା କରନ୍ତୁ । ତାଙ୍କଠାରୁ ସମ୍ବାଦ ଆସିଲେ ଛାଡ଼ିଦେଇ ଆସିବା । ଶକୁନ୍ତଳା ତ ଅପାଳତରେ ପ୍ରାଣ ଛାଡ଼ି ଦେଇ ନାହିଁ ? ଚିନ୍ତା କାହିଁକି ?

କଣ୍ୱ—ନା, ସେ ଚିନ୍ତା ନୁହେଁ । ପରର ପଦାର୍ଥ ଯେତେ ଶୀଘ୍ର ବିଦାକରିଦେଲେ ମଙ୍ଗଳ । ତା'ର ଯିବାର ଆୟୋଜନ କର । ତୁମେ ଦୁଇ ଜଣ ଋଷି-ବାଳକଙ୍କୁ ସଙ୍ଗରେ ନେଇ ଛାଡ଼ିଦେଇଆସ, ଆଉ ବିଳମ୍ବ କର ନାହିଁ । (ଉଭୟେ ପ୍ରସ୍ଥାନ)

(ଅନସୂୟା ଓ ପ୍ରିୟମ୍ବଦା ପ୍ରବେଶ)

ଅନସୂୟା—ଶୁଣିଲୁ ତ ?

ପ୍ରିୟମ୍ବଦା—ହଁ, ଶୁଣିଲି । କାଲି ତେବେ ସହି ଚାଲିଯିବ ?

ଅନସୂୟା—ଆଉ ଭାବି କି ଲାଭ ? ଚାଲ ସହି, ତାକୁ ଥରେ ମନ ବୋଧକରି ଦେଖିନେଇଥିବା । ନାରୀ ଜନ୍ମଟା ସହି ଅକାରଣ ସିନା !

ପ୍ରିୟମ୍ବଦା—ଗଛଲତା ସେମିତି ତା'ଲାଗି ଝୁରୁଛନ୍ତି । ସେ ହରିଣଛୁଆଟି ମଧ୍ୟ ତା'ଆଡ଼କୁ ଅନାଇ ରହିଛି । ଆଖିଦିଓଟି ଲୁହଛଳ-ଛଳ କଲାପରି ଦେଖାଯାଉଛି ।

ଅନସୂୟା—ଶକୁନ୍ତଳା କାହିଁ ? ଆଉ ସେ ରାଜା କ'ଣ ଭୁଲିଗଲେ ? ହଁ, ହୋଇଥିବ ! ରାଜା ଲୋକ ତ । ରାଣୀମାନଙ୍କ ଛଳନାରେ ପଡ଼ି ଭୁଲିଯାଇଥିବେ ଅବା ।

ପ୍ରିୟମ୍ବଦା—ଏଡ଼େ ମହତ ପୁରୁଷଙ୍କ ପାଖେ ସେ ଅସମ୍ଭବ ଆଶା କରିବୁ ନାହିଁ ସହି । ଚାଲ, ଶକୁନ୍ତଳା ପାଖକୁ ଯିବା । ଆଜି ତା'ଲାଗି ଗଛମାନଙ୍କରେ ମୁଁ ପାଣି ଦେଇଦେବି । (ଦୁହେଁ ଚାଲିଗଲେ । ଶକୁନ୍ତଳା କୁଟୀରୁ ଉଠି ଆଖିମଳି ଫୁଲ ଗୁନ୍ଥିବାରେ ଲାଗିଲେ ଅନ୍ୟମନସ୍କ-ଭାବେ—ଏହି ସମୟରେ ଦୁର୍ବାସା କମଣ୍ଡଳୁହସ୍ତରେ ଉପସ୍ଥିତ ହୋଇ ଶକୁନ୍ତଳାକୁ ଲକ୍ଷ୍ୟ କରି ଡାକିଲେ)

ଦୁର୍ବାସା—ତପସ୍ୱୀ ଉପସ୍ଥିତ ।

ଶକୁନ୍ତଳା—(ନିରୁତ୍ତର)

ଦୁର୍ବାସା—ଅତିଥି ଉପସ୍ଥିତ ।

ଶକୁନ୍ତଳା—(ନୀରବ)

ଦୁର୍ବାସା—ଏ କ'ଣ, କେହି ଶୁଣୁ ନାହାନ୍ତି ? ଦ୍ୱାରଦେଶରେ ଅତିଥି, ଅଥଚ ସମସ୍ତେ ନୀରବ ? (ଜୋର୍‌ରେ କହିଲେ) ଦ୍ୱାରରେ ଅତିଥି ଦଣ୍ଡାୟମାନ ।

ଶକୁନ୍ତଳା—(ନୀରବରେ ଫୁଲହାରଟି ଧରି କ'ଣ ଭାବୁଥିଲେ)

ଦୁର୍ବାସା—(କ୍ରୋଧରେ) ଆରେ ପାପିୟସୀ ରମଣୀ ! ପାପଚିନ୍ତାରେ ନିମଗ୍ନ ରହି ଅତିଥି-ଅଭ୍ୟର୍ଥନା ଭୁଲିଗଲୁ ? ଦୁର୍ବାସାର ଅପମାନ ? ତେବେ ଶୁଣ ମୋର ଅଭିଶାପ—ଯାହାର ଚିନ୍ତାରେ ତୁ ମଗ୍ନ ହୋଇଅଛୁ, ପରିଚୟ ଦେଲେ ମଧ୍ୟ ସେ ଚିହ୍ନିବ ନାହିଁ ତୋତେ ।

(ଦ୍ରୁତଗତିରେ ପ୍ରସ୍ଥାନ)

(ଅନସୂୟା ଓ ପ୍ରିୟମ୍ବଦା ପ୍ରବେଶ କଲେ)

ଅନସୂୟା—ସର୍ବନାଶ ହେଲା ସଖି ! ମହର୍ଷି ଦୁର୍ବାସା ଆସିଥିଲେ । ଶକୁନ୍ତଳା ଚିନ୍ତାମଗ୍ନ ରହି ତାଙ୍କର ଅଭ୍ୟର୍ଥନା କରିପାରି ନାହିଁ, ଅଭିଶାପ ଦେଇଗଲେ

ପ୍ରିୟମ୍ବଦା—ସରିଗଲା ସବୁ ! କି ଉପାୟ ସଖୀ ? ସହିର ଭାବନାରେ ଜ୍ଞାନ ଅଛି କି ନାହିଁ । ସେ ତ ଆମ୍ଭମାନଙ୍କୁ ଲକ୍ଷ୍ୟ କରୁ ନାହିଁ ଆଉ ଦୁର୍ବାସାଙ୍କୁ ଚିହ୍ନନ୍ତା ଅବା କିପରି ?

ଅନସୂୟା—ଚାଲ ସହି ! ଆଉ କଥା କହିବାକୁ ବେଳ ନାହିଁ । ତୁ ସେପାଖେ ଯା, ମୁଁ ଏପାଖେ ଯାଉଛି । ଦେଖିବା, ପାଦ ଧରି ଯଦି ତାଙ୍କୁ ସନ୍ତୁଷ୍ଟ କରିହୁଏ । ଶକୁନ୍ତଳାକୁ ଆଉ ଡା'କ ନା ।

(ଦୁହେଁ ଦୁଇ ପଥରେ ଗଲେ)

(ଦୁଇ ଜଣ ଶିଷ୍ୟ କଥାବାର୍ତ୍ତା ହୋଇ ପ୍ରବେଶ ହେଲେ)

୧ମ—ନା ନା ।

୨ୟ—(ବିରକ୍ତ ହୋଇ) ନା ନା ତ, ଆଉ କେତେ-ବେଳେ ? ଦିନ ଆସୁଛି ତୁମକୁ ? ସକାଳକୁ ତରତର ହେଉଥିବ ? ଶକୁନ୍ତଳା ଯିବାବେଳକୁ ତ ଏସବୁ ସଂଗ୍ରହ କରିଥିବା ଦରକାର । ମହର୍ଷି ଯାହା କହିଛନ୍ତି, ସେଥିରେ ଆଉ ତ୍ରୁଟି କଲେ ଚଳିବ ନାହିଁ । ତୁମେ ଯାଇ ନିଜେ କୁଶ, ଦୁବ ଆଣି ରଖ, ମୁଁ କେଶର ଆଣିବାକୁ ଯାଉଛି ।

୧ମ—ମହର୍ଷି ସବୁ ଏତେ ସୁନା-ରୁପା ଅଳଙ୍କାର କେଉଁଠୁ ଆଣିଲେ ?

୨ୟ—ନା, ତାଙ୍କୁ ଅପ୍ରାପ୍ତ କ'ଣ ? ଯାହା ମନ କରିବେ, ତା' ହେବ ।

୧ମ—ପିତାଙ୍କର ଘର ପ୍ରଭାବ ତ ?

୨ୟ—ସେ କଥା ପରେ ବୁଝିବା । ମହର୍ଷି ତେଣେ ଅସନ୍ତୁଷ୍ଟ ହେବେଣି । ଚାଲ, ନିଜ କାମ ଦେଖ । ମୁଁ ନଦୀକୂଳକୁ ଯିବି ।

୧ମ—ହଉ ତେବେ, ଯାଅ ।

୨ୟ—(ଅନ୍ୟ ଦିଗରେ ଯାଉ-ଯାଉ) ହଁ, ଆଉ ପାଇବ ଯଦି, କିଛି ପଦ୍ମପରାଗ ଆଣିଥିବ, ମୁଁ କୁଙ୍କୁମ ଦେଖିବ ।

୧ମ—(ଯାଉ-ଯାଉ) ହଉ । (ପ୍ରସ୍ଥାନ)

୨ୟ—ଦେଖ, ମନେ ରଖି ସବୁ ଯେମିତି ଆଣିବ । (ପ୍ରସ୍ଥାନ)

(ଅନସୂୟା ଓ ପ୍ରିୟମ୍ବଦା ପ୍ରବେଶ)

ଅନସୂୟା—ମଲା ଯା, ମୁଁ କି ସେ କଥା କହିବାକୁ ଭୁଲିଛି ?

ପ୍ରିୟମ୍ବଦା—ଫେରିଲେ ନାହିଁ ?

ଅନସୂୟା—ନା । ତାଙ୍କର ତ ବହୁପାକ ରାଗ । ଯେତେ କହିଲି, ସେ ପିଲାଲୋକ, ତା'ର ସବୁ ଅପରାଧ । ସେ କି ଶୁଣିବା ଲୋକ ?

ପ୍ରିୟମ୍ବଦା—ସେଇଠୁ ?

ଅନସୂୟା—ଦୟାମା କହିଲେ, ତାଙ୍କ କଥା ତ ଆଉ ଫେରିବ ନାହିଁ. ତେବେ ଶକୁନ୍ତଳା ଯଦି ତା'ର ପ୍ରିୟଙ୍କର କିଛି ପରିଚୟ ସଙ୍କେତ ଦେଖାଇପାରିବ, ତେବେ ସେ ଚିହ୍ନିପାରିବେ ।

ପ୍ରିୟମ୍ବଦା—ତେବେ ବଳ ଅଛି । ମହାରାଜା ଯେଉଁ ମୁଦିଟି ଦେଇଥିଲେ, ସେଇଟି ତ କାମକୁ ଆସିବ ।

ଅନସୂୟା—ତୁ ଆଉ ସଖୀକି ସେ କଥା ଶୁଣା ନା । ମୁଁ ଖାଲି ତା ହାତର ମୁଦିଟି ଦେଖି ସାବଧାନ କରାଇଦେଇଆସୁଛି । ତୁ ଯା, ଫୁଲ ତୋଳି ଆଣି ଦେବପୂଜାପାଇଁ ଠିକଣା କର । ମୁଁ ଶକୁନ୍ତଳା ପାଖକୁ ଯାଉଛି ।

ପ୍ରିୟମ୍ବଦା—ହଁ, କାହାର ସତ ବଳବ ମ, ମାଳତୀ-ଫୁଲରେ ଉଷୁମ ପାଣି ଛିଞ୍ଚିବ ?

ଅନସୂୟା—ତେବେ ତୁ ଯା ।

ପ୍ରିୟମ୍ବଦା—ହଉ, ତୁ ଆସୁଥା' । (ଶକୁନ୍ତଳାକୁ ଚାହିଁ) ସହି, ଦେଖିଲୁ ! ଆଗେ ତା'ର ଜ୍ଞାନ ଅଛି ? ଆମେ ଏଇଠି ଏତେ କଥାବାର୍ତ୍ତା ହେଉଚେଁ, ସେ କିଛି ଜାଣିବାକୁ ନାହିଁ ? କଥା କହିବା ତ ଦୂରେ ଥାଉ, ଅନାଉଁ ନାହିଁ ସୁଦ୍ଧା । ଆଚ୍ଛା, ସେ ତା'ଯିବାକଥା ଶୁଣିଲାଣି ନା ?

ଅନସୂୟା—କେଜାଣି ? ଶୁଣି ନ ଥିବ କି କ'ଣ ? ମୁଁ କହିବି ଯେ, ତୁ ଯା । ବେଗେ କାମ ସାର ।

ପ୍ରିୟମ୍ବଦା—ହଉ । (ପ୍ରସ୍ଥାନ)

ଅନସୂୟା—(ସ୍ୱଗତ) ସରଳା ମନ-ପ୍ରାଣ ସବୁ ଢାଳି ଅନାଇଁରହିଛି କାହା ପଥ ? ସଂସାର ସହିତ ଯେପରି ତା'ର କୌଣସି ସମ୍ପର୍କ ନାହିଁ ! ଯେମିତି ସଂସାରର ସେ ଜୀବ ନୁହେଁ !

(ଗୀତ)

ଆଖିପତେ କା'ର ମୋହନ ମୂରତି,
ନାଚଇ ନବୀନା ରେ,
ଦୂର ମଧୁର ବଇଁଶୀ ତୋ' ମନେ
ବାଜଇ ଅଜଣାରେ ॥ ୦ ॥
ନୀରବ ଗୁହାରି, ମରମ କାହାଣୀ
ନୀର ଛଳ-ଛଳ ନୟନର ଠାଣି
ପ୍ରୀତି-ଜାଲେ ଧରାପଡ଼ିଲୁ ସରଳା ,
ଭୁଲିଲୁ ସୁମନା ରେ ॥ ୧ ॥

ଶକୁନ୍ତଳା—(ଲୁହ ପୋଛି ଫେରିଚାହିଁ) କିଏ ସହି ! ଆସିଛୁ ? କି ଗୀତ ଗାଉଥିଲୁ ସହି ? ଆଉ ପଦେ ଗା' । ବଡ଼ ସୁଖ ଲାଗିଲା ।

ଅନସୂୟା—ହଁ ଗାଇବି, ତୁ ଏଠି ଏକା ବସି କ'ଣ କରୁଛୁ ? କେତେବେଳୁ ତ ବସିଛୁ !

ଶକୁନ୍ତଳା—କେଜାଣି ସଖି, ଗୋଟିଏ କି ସ୍ୱପ୍ନ ଦେଖିଲି। କିଏ ଜଣେ ଋଷି ଆସି ରାଗରେ କ'ଣ କହିଗଲେ, କିଛି ଭଲ କରି ମନେ ହେଉ ନାହିଁ। ତା'ପରେ ତୋ ଗୀତ ଶୁଣି ଚମକିଉଠିଲି, ଯେମିତି ସ୍ୱପ୍ନଟା ଭାଙ୍ଗିଗଲା।

ଅନସୂୟା—ତା'ପରେ ? (ସ୍ୱଗତ) ତା'ହେଲେ ସଖୀ କିଛି ଜାଣିପାରି ନାହିଁ। ଭଲ ହୋଇଛି।

ଶକୁନ୍ତଳା—ତା'ପରେ ତ ଆଉ କିଛି ନାହିଁ।

ଅନସୂୟା—ଶୁଣିଛୁ ଗୋଟିଏ କଥା ?

ଶକୁନ୍ତଳା—କି କଥା ?

ଅନସୂୟା—ସୁଖର, ପୁଣି ଦୁଃଖର। ତୋ'ର ସୁଖ ଆଉ ଆମର ଦୁଃଖ।

ଶକୁନ୍ତଳା—କହ, ଶୁଣେଁ ଥରେ।

ଅନସୂୟା—ପିତା ତୋର ବିବାହ କଥା ଜାଣି-ପାରିଛନ୍ତି।

ଶକୁନ୍ତଳା—ଏଁ ! ( ଚମକିଉଠି ଠିଆହେବାବେଳେ ଅନସୂୟା ଧରି ବସାଇଲେ)

ଅନସୂୟା—ତୁ ଥୟ ଧର। ପିତା ଶୁଣି ଖୁବ୍ ଆନନ୍ଦିତ ହେଲେ।

ଶକୁନ୍ତଳା—କିଏ କହିଲା ତାଙ୍କୁ ?

ଅନସୂୟା—ତୀର୍ଥରୁ ଫେରିଆସି ଯଜ୍ଞ ପୂର୍ଣ୍ଣାହୁତି ଦେବାବେଳେ ଶୂନ୍ୟବାଣୀ ହେଲା ଯେ, ରାଜ୍ୟର ମଙ୍ଗଳଲାଗି ଶକୁନ୍ତଳାଙ୍କ ଗର୍ଭରେ ଦୁଷ୍ମନ୍ତଙ୍କ ତେଜ ନିହିତ। ପିତା ତୋତେ କାଲି ରାଜବାଟୀକୁ ପଠାଇବେ। ସାଙ୍ଗରେ ମାଆ ଗୌତମୀ ଆଉ ଶାରଙ୍ଗ ପ୍ରଭୃତି ଯାଇ ଛାଡ଼ିଆସିବେ। ସଖି, ରାଜରାଣୀ ହୋଇ ଆମକୁ ଆଉ ପାଶୋରିଦେ ନାହିଁ ତ ?

ଶକୁନ୍ତଳା—(ଲୁହ ପୋଛି) ସଖି, ଶକୁନ୍ତଳା ବଡ଼ ଅଭାଗିନୀ।

ଅନସୂୟା—ଛି ସଖି, ଶୁଭବେଳାରେ ଲୁହ ଝରା ନା। (ଲୁହ ପୋଛିଦେବା)

ଶକୁନ୍ତଳା—ସଖି, ଜନ୍ମରେ ତ ରାଜପୁରୀ ଦେଖି ନାହିଁ। ଯେମିତି ମନେ ହେଉଛି, ତପୋବନର ଏ ଅପୂର୍ବ ଶୋଭା ସେଠି ମିଳିବ ନାହିଁ। ତରୁଲତାର ମିଳନ-ମାଧୁରୀ, ଫୁଲର ମଧୁର ହାସ—କିଛି ନ ଥିବ, ଆଉ ତୁମେମାନେ ବି ନ ଥିବ। ବିପଦବେଳେ କିଏ ବୁଦ୍ଧି ଦେବ ?

ଅନସୂୟା—ସଖି, ସବୁ ବିଧାତାର ଲୀଳା। ଦେଖିଲୁ, ପିଲାଟି ଜନ୍ମ ହେବା ସଙ୍ଗେ ସଙ୍ଗେ ମା' ସ୍ତନ-ଖୁଆଇବା କିଏ ଶିଖାଏ ? ସବୁ ସେହିପରି। ତୁ ଭାବନା କର ନା।

ନେପଥ୍ୟେ—ଅନସୂୟା ! ମାତା ଗୌତମୀ ଡାକୁଛନ୍ତି। ଶୀଘ୍ର ଆସ।

ଅନସୂୟା—(ଟିକିଏ ବଡ଼ ପାଟିରେ) ହଁ ଗଲି। (ଶକୁନ୍ତଳାକୁ) ସଖି ! ଆଉ ଗୋଟିଏ କଥା, ତୋ'ର ମନେ ଥିବ ଏ ମୁଦି-କଥା ?

ଶକୁନ୍ତଳା—(ମୁହଁ ପୋତି) ହଁ।

ଅନସୂୟା—ଏଇଟି ଯତ୍ନ କରି ରଖିଥା', କାଳେ ଅବା ମହାରାଜା ତୋତେ ଚିହ୍ନି ନ ପାରିବେ। ଏ ମୁଦିଟି ଦେଖାଇଲେ ତାଙ୍କର ସବୁ ମନେ ପଡ଼ିଯିବ।

ଶକୁନ୍ତଳା—(ଚମକି ଯାଇ) ଏ କଥା କାହିଁକି କହିଲୁ ସଖି ? ମୋର ମନ ଚମକିଉଠୁଛି।

ଅନସୂୟା—(ହସି, ପିଠିରେ ହାତମାରି) ନାଇଁ ମ କ'ଣ ହବ ? ତୋ'ର ପଦାର୍ଥ ତୋ'ର ପାଖରେ ଥାଉ। ମନେ ପକାଇଦେଲି ନା—ସେ ରାଜା ଲୋକ ତ, କାଳେ କିଛି ଥାଏ। ସେଇଥିଲାଗି ଚେତେଇଦେଲି।

ନେପଥ୍ୟେ—ଅନସୂୟା ! ବେଗେ ଆସ।

ଅନସୂୟା—ହଁ, ମୁଁ ଶୁଣିଆସେଁ···

ଶକୁନ୍ତଳା—କେଜାଣି ସଖି, ମୋର କାହିଁକି···

ଅନସୂୟା—ଫେର୍ କ'ଣ ? ତୁ କ'ଣ ତାଙ୍କର ବ୍ୟବହାର ଦେଖିନୁ ? ପୁଣି ସନ୍ଦେହ କାହିଁକି ? ଆଚ୍ଛା, ତୁ ଥା'। ମୁଁ ଶୁଣି ଆସେଁ । (ପ୍ରସ୍ଥାନ)

ଶକୁନ୍ତଳା—ଦେଖିଛି, ଜାଣିଛି, ସବୁ କରିଛି; କିନ୍ତୁ ଏ କଥା ଚେତାଇ ମୁଦିଟି ଦେଲାବେଳେ କାହିଁକି ମୋତେ ଦଣ୍ଡିକ ଅନ୍ଧାର ଦିଶିଲା; ପୃଥିବୀ ଘୂରିଗଲା, ପ୍ରାଣ କାନ୍ଦିଉଠିଲା । ଆରେ, ଏ କ'ଣ ? ଡାହାଣ ଆଖି ତେଲିଉଠୁଛି କାହିଁକି ? ହୃଦୟ କମ୍ପିଉଠୁଛି କାହିଁକି ?

ଭାଗ୍ୟ—(ପ୍ରବେଶି) କମ୍ପି ନାହିଁ ଶକୁନ୍ତଳା !
କମ୍ପିବ, କମ୍ପିବ ।
ଖାଲି ତୋ ହୃଦୟ ନୁହେଁ,
କମ୍ପିବ ଧରଣୀର ବକ୍ଷ,
କମ୍ପିବ ସାଗର ।
ଭୀମ ତରଙ୍ଗ ସଙ୍ଘାତେ
ଫେନ ଭାଣି ଯେନ,
ଗ୍ରହ, ତାରା, ନକ୍ଷତ୍ର ସଙ୍ଘାତ
ମେରୁଶିର ହେବ ଅକ୍ଷଚ୍ୟୁତ ।
କମ୍ପିଯିବ ମେଦିନୀର
ଗୁରୁ ମେରୁଦଣ୍ଡ,
ସ୍ଥାଣୁ ହୋଇବ ଗିରିବନ ।
ଶକୁନ୍ତଳା !
କମ୍ପି ନାହିଁ ଅବଳାର ହିଆ,
ଭାଗ୍ୟପରେ ତୋର
ବାଜିବ ଯୋଡ଼ନାଗରା ।
ଯାହା ଲେଖା ଥିଲେ,
ଖଣ୍ଡିବ କେ ତାହା ?
ମୋହଜାଲେ ଅନ୍ଧ ହୋଇ
କାନ୍ଦିବେ ସରବେ ।
କାନ୍ଦ ନାହିଁ, କାନ୍ଦିବ, କାନ୍ଦିବ । (ଶୀଘ୍ର ପ୍ରସ୍ଥାନ)

ଶକୁନ୍ତଳା—(ସ୍ତମ୍ଭୀଭୂତ ହୋଇ ପଛେ ପଛେ ଯାଉ ଯାଉ) କିଏ ତୁମେ ? କି ସମ୍ବାଦ ଆଣି ଦେଲ ? ସତ୍ୟ ନା ଛଳନା ? ଏ ସ୍ୱପ୍ନ ନା ମାୟା ? ଓଃ, ମୁଣ୍ଡ ମୋର ଘୂରି-ଯାଉଛି, ଚାରିଆଡ଼ ଶୂନ୍ୟ ଲାଗୁଛି । କେଉଁଆଡ଼େ ଗଲ ସଖୀ ଅନସୂୟା ! ରକ୍ଷା କର, ରକ୍ଷା କର । (ପଡ଼ିଗଲେ)

ପ୍ରିୟମ୍ବଦା—(ଦୌଡ଼ି ଆସି) କ'ଣ ହେଲା ସଖୀ ?

ଅନସୂୟା—(ଦୌଡ଼ିଆସି) ଏଁ, ଏ କଣ ? ସଂଜ୍ଞା ନାହିଁ । ପାଣି ନେଇଆ ପ୍ରିୟମ୍ବଦା, ଶୀଘ୍ର ଯା ।

ପ୍ରିୟମ୍ବଦା—(ଶୀଘ୍ର ପ୍ରସ୍ଥାନ)

ଅନସୂୟା—( ଶକୁନ୍ତଳାକୁ ହଲାଇ ) ସଖି, ସଖି ! ଆରେ, ଏ କ'ଣ ହେଲା ?

ପ୍ରିୟମ୍ବଦା—(ଜଳ ନେଇ ପ୍ରବେଶ)

ଅନସୂୟା—ସଖି, ପଦରେ ବାଞ୍ଛିଦେ; ମୁଖରେ ପାଣିଦେ ।

ପ୍ରିୟମ୍ବଦା—(ପାଣି ସିଞ୍ଚିବା)

ଶକୁନ୍ତଳା—(କିଛି କ୍ଷଣପରେ ଦୀର୍ଘଶ୍ୱାସ ପକାଇ) କିଏ, ସଖି ?

ଅନସୂୟା—ହଁ, କ'ଣ ହେଲା ସଖି ?

ଶକୁନ୍ତଳା—କେଜାଣି ? କିଛି ମନେ ହେଉ ନାହିଁ । କିଏ ଜଣେ ଆସି କ'ଣ ଗୁଡ଼ାଏ କହିଗଲା···

ପ୍ରିୟମ୍ବଦା—କ'ଣ କହିଲା ?

ଶକୁନ୍ତଳା—(ଭାବି) ନାଇଁ ତ । କିଛି ମନେ ପଡ଼ୁ ନାହିଁ ।

ଅନସୂୟା—ତୋର ମତି ଭ୍ରମ ଘଟିଲାଣି ସଖି !

ପ୍ରିୟମ୍ବଦା—ଚାଲ, ଉଠ । ପିତା ଡାକୁଛନ୍ତି । ତୋତେ ବିଦାୟ ଦେବାକୁ କ'ଣ କହିବେ ।

ଶକୁନ୍ତଳା—(ନୀରବ)

ଅନସୂୟା—(ଶକୁନ୍ତଳାକୁ ହଲାଇ)କ'ଣ ଏତେ ଭାବୁଚୁ ? ସ୍ୱପ୍ନ କଣ କେବେ ସତ୍ୟ ହୁଏ ?

ଶକୁନ୍ତଳା—କେଜାଣି ? ଏତେ ଭୟଙ୍କର ସ୍ୱପ୍ନ କେବେ ଦେଖି ନ ଥିଲି । ମୋତେ ସତପରି ଲାଗୁଛି ।

ଅନସୂୟା—କ'ଣ ଦେଖିଲୁ ?

ପ୍ରିୟମ୍ବଦା—କ'ଣ ମିଳିବ ସେଥିରୁ । ଚାଲ, ସପନାଟା ମିଛ । (ଧୀରେ ଉଠାଇବା)

ଶକୁନ୍ତଳା—ନା ସଖି ! ସ୍ୱପ୍ନ ଦେଖିଲି···

ଅନସୂୟା—କହନ୍ତୁ, କ'ଣ ଦେଖିଲୁ ?

ଶକୁନ୍ତଳା—କେଜାଣି, କ'ଣ ଦେଖିଲି; କିନ୍ତୁ ମୋ ହୃଦୟ କାହିଁକି ଥରଉଠୁଛି ?

ଅନସୂୟା—ସେ କିଛି ନୁହେଁ । ଅତି ଦୁର୍ବଳ ହୋଇପଡ଼ୁଛୁ । ପ୍ରିୟ ମିଳନପୂର୍ବରୁ ସେମିତି ହୁଏ ।

(ଶକୁନ୍ତଳାକୁ କହୁ କହୁ ଘେନି ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

(ହସ୍ତୀନା ରାଜଦରବାର । ବୈତାଳିକ ପ୍ରବେଶ କରି ରାଜଜୟ ଗୀତ ଆରମ୍ଭ କଲେ)

( ଗୀତ )

ଜୟ ଜୟ ପୁରୁବଂଶ ନରବର ଜୟ ହେ ।।୦।।
ତବ ଯଶ ଗାଉଛୁ କୋଟିକଣ୍ଠ ଆଜ
ଭୁବନଶୋଭିତ ତବ କୀର୍ତ୍ତି ସୁମନରାଜ
ଶିଷ୍ଟ ପାଳନ ଦୁଷ୍ଟ ଦଳନ
ଜୟ ଜୟ ନ୍ୟାୟ ଦଣ୍ଡଧର ଜୟ ହେ ।୧।
ପ୍ରଜା ରଞ୍ଜକ ହେ ଈଶ୍ୱରର ନାୟକ
ଧନଜନ ପାଳକ ନ୍ୟାୟବିଧାୟକ
ଜୟ ନରେନ୍ଦ୍ର—ଜଗତ ବନ୍ଦ୍ୟ
ତବ ଜୟ ଘୋଷେ ଚରାଚର-ଜୟ ହେ ।୨।

(ରାଜା ଓ ବିଦୂଷକ ପ୍ରବେଶ)

ରାଜା—ସଖା, କେତେ ଦିନ ହେବ ମୋର କାହିଁକି ଅଳସ ସ୍ୱଭାବ ଆସିଥିଲା । ଆଜି ବୈତାଳିକମାନଙ୍କର ଜୟଗୀତଗାନରେ ମୁଁ ଯେପରି ନବବଳ ଫେରିପାଇଲାପରି ମନେ ହେଉଛି ।

ବିଦୂଷକ—ସେ ସଂଗୀତର ସେହିପରି ପ୍ରଭାବ, ନୋହିଲେ ରାଜାମାନେ ପୂର୍ବରୁ ବୈତାଳିକମାନଙ୍କୁ ରଖିଥା'ନ୍ତେ କାହିଁକି ? କୌଣସି ଲୋକ ନିଜର ପ୍ରଶଂସା ଅନ୍ୟଠାରୁ ଶୁଣିଲେ ତା'ର ଉତ୍ସାହ ଦୁଇ ଗୁଣ ବଢ଼ିଯାଏ । ଆଉ ବାସ୍ତବିକ ମହାରାଜ ! ଆପଣଙ୍କ କୀର୍ତ୍ତି, ଯଶ କୌଣସିଥିରେ ତ ସୁନାମର ଅଭାବ ନାହିଁ । ପୁରୁବଂଶରେ ଆପଣ ତ ନକ୍ଷତ୍ରଙ୍କ ଚନ୍ଦ୍ର ।

ରାଜା—ଶୁଣ ମିତ୍ର ! କିଏ ଜଣେ ଅଦୂରେ ଗୀତ ଗାଉଛି ।

(କଞ୍ଚୁକୀର ପ୍ରବେଶ—ରାଜାଙ୍କର ଅନ୍ୟମନସ୍କତା ଦେଖି ଧୀରେ ଏକ ପାର୍ଶ୍ୱରେ ଛିଡ଼ାହୋଇରହିଲେ)

କଞ୍ଚୁକୀ—(କିଛି ସମୟପରେ) ମହାରାଜ !

ବିଦୂଷକ—(ଉଠି କାନେଇ) ହଁ, ଶୁଭୁଛି, ଶୁଭୁଛି । ଆରମ୍ଭ ହେଲା ସବୁ ! ମହାରାଜାଙ୍କର ବଡ ପତଳା କାନ ନା, ସେଥିପାଇଁ ଏତେ ଶୀଘ୍ର ଶୁଣିପାରିଲେ ।

ରାଜା—(ହାତ ହଲାଇ) ଶୁଣ, ଶୁଣ ।

(ନେପଥ୍ୟେ ଗୀତ)

ନଗରେ ବନେ ଦିନ ରାତି
ଏ ଗଗନେ ଭରା ହତାସ-ବତାସ
ଏ ଜୀବନସାରା ହାହା ହତଶ୍ୱାସ,
ନାହିଁ ଚାରା ନାହିଁ ଶରୀର ବିକାଶ
ଅଧୀର ନରତ ଗୀତ ।।
ଖୋଜି ବୁଲେ କାହିଁ ସଖା କାହିଁ କାହିଁ
ନୟନେ ଆଲୋକ ତୃଷା ନାହିଁ ନାହିଁ
ଆଖିକୋଣେ ନୀର ମରେ ଝୁହିଁ ଝୁହିଁ
ଦୂର ତ ପରାଣ ସାଥୀ ।।

ରାଜା—କି ମଧୁର ସଙ୍ଗୀତର ମୂର୍ଚ୍ଛନା !

ବିଦୂଷକ—ଏ ଗୀତରୁ ବନ୍ଦନାପର୍ବ କିଛି ଭଲ ବୁଝିପାରିଲେ ?

ରାଜା—(ହସି) ତୁମେ କିଛି ବୁଝିଲ ନାହିଁ ?

ବିଦୂଷକ—ନାଁ ।

ରାଜା—ବୋଧ ହୁଏ ହଂସବତୀଙ୍କ ମନ୍ଦିରରୁ ଶୁଭୁଛି—ଆମ୍ଭଙ୍କୁ ଲକ୍ଷ୍ୟ କରି ଗାଉଛନ୍ତି । କେତେ ଦିନ

ହେବ ତାଙ୍କ ସହିତ ସାକ୍ଷାତ ନ କରିବାର ଫଳ ଇଏ ।

ବିଦୂଷକ—ସଖା, ନିଜର ତ୍ରୁଟି ପରକୁ ଦେଇ ଏ ଅବସ୍ଥା କିନା ! ନୋହିଲେ ସ୍ତ୍ରୀମାନଙ୍କର କି ସାଧ ଯେ ସେମାନେ ପୁରୁଷର ମର୍ମ ଜାଣନ୍ତେ ?

ରାଜା—(ହସି) ସଖା, ତୁମେ ଟିକିଏ ଯାଅ । ନିଜ ବୁଦ୍ଧିବଳରେ ତାଙ୍କୁ ପ୍ରବୋଧ ଦେଇ କହିବ, ମୁଁ ଏଥିଲାଗି ବଡ଼ ଲଜ୍ଜିତ । ଶୀଘ୍ର ସାକ୍ଷାତର ବ୍ୟବସ୍ଥା କରୁଛି ।

ବିଦୂଷକ—(ଉଠି) ଆଜି କି ଗତି ? (ଯାଉଁ-ଯାଉଁ) ସ୍ତ୍ରୀ-ପଦ ନ ଧରି ତ ଆମର ଗତି ନାହିଁ । ରାଜ-ସେବା କରିବାକୁ ହେଲେ ଗୋଟାକେତେ ମତ୍ତ-ମୂତ୍ରଦାର, ଗୋବରଗଣେଶ, ବେଶ୍ୟା ଧାଁଟ, ଅକାଳକୁଷ୍ମାଣ୍ଡ, ଖଣ୍ଡିଆମୁଣ୍ଡି ବଜାରଖାଉଙ୍କୁ ମଧ୍ୟ ଅନୁସରଣ କରିବାକୁ ହେବ । ପେଟ ଗୃଖଣ୍ଡକ ତ ଭଗାରି । ତା'ରପାଇଁ ଏ ନାଟ । ହଉ ··· (ପ୍ରସ୍ଥାନ)

ରାଜା—(ସ୍ୱଗତ) ଏ ଗୀତ ଶୁଣି ମୋ'ର କାହିଁକି କୌଣସି ପ୍ରିୟଜନର ବିରହ ମନେ ହୁଏ; କିନ୍ତୁ ଠିକ୍ ମନେ ପଡ଼ୁ ନାହିଁ କିଛି । ଯେପରି ଜଣାଯାଏ କେହି ବିରହିଣୀର ଉଷ୍ଣଶ୍ୱାସରେ ବୃନ୍ଦାଗ ଭରି-ଉଠେ । କିଏ ଯେପରି ଗିରିଗହ୍ୱରଭିତରେ ନୀରବ ବଂଶୀଅରେ ମନଦୁଃଖରେ ଗାଇ-ଗାଇ ଚାଲିଛି । (ଭାବି) କାହିଁ, କିଛି ତ ମନେ ପଡ଼ୁ ନାହିଁ, ତେବେ ମନ ଏତେ ଆକୁଳ କାହିଁକି ?

(କଞ୍ଚୁକୀର ପ୍ରବେଶ)

କଞ୍ଚୁକୀ—(ରାଜାଙ୍କୁ ପ୍ରଣାମ କରି) ମହାରାଜ ! ହିମାଳୟ ଅରଣ୍ୟବାସୀ ମହର୍ଷି କଣ୍ୱଙ୍କ ତପୋବନରୁ କେତେ ଜଣ ଋଷି ଓ ଋଷିକୁମାରୀ ଆସି ତୁମ୍ଭଙ୍କ ଦର୍ଶନ ଇଚ୍ଛା କରୁଛନ୍ତି ।

ରାଜା—ପୁରୋହିତେ କାହାନ୍ତି ?

କଞ୍ଚୁକୀ—ଚଣ୍ଡୀମଣ୍ଡପରେ ।

ରାଜା—ତେବେ ଋଷିମାନଙ୍କୁ ଯଥାବିଧି ସତ୍କାର କରି ଡାକି ଆଣ; ଆଉ ପୁରୋହିତଙ୍କୁ ଖବର ଦିଅ । ଶୀଘ୍ର ଯାଅ ।

କଞ୍ଚୁକୀ—ଯଥା ଆଜ୍ଞା ଦେବ ! (ପ୍ରଣାମ କରି ଚାଲିଗଲେ)

ରାଜା—କାହିଁକି ? ଋଷିମାନଙ୍କର ଆସିବାର ଅଭିପ୍ରାୟ ? ନାନା ସନ୍ଦେହ ଆସୁଛି । କେହି କ'ଣ ତାଙ୍କର ତପରେ ବିଘ୍ନ ଘଟାଇଛି ବା ଅନ୍ୟ କିଛି କାରଣ ଅଛି ? କିଛି ବୁଝିହେଉ ନାହିଁ । ତେବେ ମନ କାହିଁକି ଚଞ୍ଚଳ ହୋଇଉଠୁଛି । (କଞ୍ଚୁକୀ, ପୁରୋହିତ, ଶାରଙ୍ଗ, ଗୌତମୀ ଓ ଶକୁନ୍ତଳାଙ୍କର ପ୍ରବେଶ । ଋଷିମାନେ ଜୟଧ୍ୱନି କଲେ—ରାଜା ଆସନରୁ ଉଠି ପ୍ରଣାମ କଲେ) ।

ମୁନିଦୁହେଁ—ଜୟୋସ୍ତୁ ମହାରାଜ ।

ପୁରୋହିତ—ଆପଣମାନେ ଏହି ଆସନରେ ବସନ୍ତୁ । (ଆସନ ଦେଖାଇବା)

ଶକୁନ୍ତଳା—(ଦକ୍ଷିଣ ଚକ୍ଷୁ ଧରି ସ୍ୱଗତ) ଆରେ, ଏଠି ପୁଣି କାହିଁକି ଅମଙ୍ଗଳର ସୂଚକ !

ରାଜା—(ଋଷିମାନଙ୍କପ୍ରତି) ଆଶ୍ରମର ସମସ୍ତ କୁଶଳ ତ ?

ଶାରଙ୍ଗ—ମହାରାଜାଙ୍କ ପ୍ରତାପରୁ କୌଣସି ବିଘ୍ନ ନାହିଁ । ନିର୍ବିଘ୍ନରେ ଯାଗଯଜ୍ଞ ଚାଲିଆସୁଛି । ମହର୍ଷି କଣ୍ୱ ଆପଣଙ୍କୁ ଆଶୀର୍ବାଦ ଜଣାଇଛନ୍ତି ।

ରାଜା—ମହର୍ଷିଙ୍କ ଆଜ୍ଞା ଶିରୋଧାର୍ଯ୍ୟ । କି ଆଦେଶ କରିଛନ୍ତି ?

ଶାରଙ୍ଗ—ଆପଣ ମହର୍ଷି କଣ୍ୱଙ୍କର ପାଳିତା କନ୍ୟା ଶକୁନ୍ତଳାଙ୍କୁ ଗାନ୍ଧର୍ବ ବିଧାନରେ ବିବାହ କରି-ଥିବା ଶୁଣି ସେ ଖୁସି ହୋଇ ଆଶୀର୍ବାଦ କରିଛନ୍ତି । ଆପଣ ଶକୁନ୍ତଳାଙ୍କର ଯୋଗ୍ୟ ପାତ୍ର । ଭଗବାନ୍ ସମାନ ଗୁଣରେ ଦୁହିଁଙ୍କୁ ଗଢ଼ି ପୁଣି ମିଳାଇ-ଦେଇ ତାଙ୍କୁ ଭାରମୁକ୍ତ କରିଛନ୍ତି । ବର୍ତ୍ତମାନ ଆପଣଙ୍କ ସ୍ତ୍ରୀ ଅନ୍ତଃସତ୍ତ୍ୱା । ତେଣୁ ସେ ଆପଣଙ୍କ ପାଖକୁ ପଠାଇଦେଇଛନ୍ତି ।

ରାଜା—ଋଷିକୁମାର ! ମହର୍ଷି କଣ୍ୱ ମୋ ନିକଟକୁ ଏ ସମ୍ବାଦ ଦେଇଛନ୍ତି ?

ଶାରଙ୍ଗ—ହଁ, ମହାରାଜାଙ୍କ ନିକଟକୁ ।

ଗୌତମୀ—ଭଦ୍ର, ମୁଁ ମଧ୍ୟ ଏ ବିଷୟରେ କିଛି କହିବି ।

ରାଜା—କୁହନ୍ତୁ ।

ଗୌତମୀ—ଶକୁନ୍ତଳା ଯୌବନର ଚପଳ ବୁଦ୍ଧିରେ ଗୁରୁଜନମାନଙ୍କ ଅନୁମତିକୁ ଅପେକ୍ଷା ନ କରି ଆପଣଙ୍କୁ ପତିରୂପେ ବରଣ କରିଛି । ଏଥିରେ ପିତା-ମାତା କ୍ଷୁଣ୍ଣ ହେବାର କଥା ; କିନ୍ତୁ ପାତ୍ର ଯୋଗ୍ୟ ହୋଇଥିବାରୁ ମହର୍ଷି ଆନନ୍ଦରେ ସମ୍ମତି ଦେଇଛନ୍ତି ।

ରାଜା—କିନ୍ତୁ ମୋର କାହିଁକି ସନ୍ଦେହ ହୁଏ···

ଗୌତମୀ—ଆପଣ ରାଜା—ଆମେ ଅରଣ୍ୟବାସୀ । ଆମଠାରୁ ବିଚାର ଶକ୍ତି ଆପଣଙ୍କର ଯଥେଷ୍ଟ ଅଛି । ବିବାହିତ ଯୁବତୀକୁ ପିତାଘରେ ରଖିବା ସମୀଚୀନ ନୁହେଁ । ତେଣୁ ସ୍ୱାମୀର ପଦତଳେ ସମର୍ପଣ କରିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନାହିଁ । ସେଇଥିପାଇଁ ସେ ଆପଣଙ୍କ ନିକଟକୁ ପଠାଇଛନ୍ତି ।

ରାଜା—ଏ ଅସତ୍ୟ ଗଳ୍ପଟି ପ୍ରସ୍ତୁତ କରିବା ଲୋକର ବୁଦ୍ଧିକୁ ଧନ୍ୟବାଦ ! କିନ୍ତୁ ମୁଁ ଏ ଅଧର୍ମ କରିପାରିବି ନାହିଁ ।

ଶାରଙ୍ଗ—ମହାରାଜ । ଧର୍ମ ଅଧର୍ମ ବିଚାରିବା ଶକ୍ତି ଭଗବାନ୍ ଆପଣଙ୍କୁ ଦେଇଛନ୍ତି । ନିଜେ ରାଜା ଯଦି ଅଧର୍ମ କରନ୍ତି···

ରାଜା—ମୁଁ ଏସବୁର କିଛି ଅର୍ଥ ବୁଝିପାରୁ ନାହିଁ । ଆପଣମାନେ ଅକାରଣେ କାହିଁକି ମୋର ଅମଙ୍ଗଳ ଚିନ୍ତା କରୁଛନ୍ତି ?

ଶାରଦ୍—ମହାରାଜ ! ଏହା ଆପଣମାନଙ୍କର ଦୋଷ ନୁହେଁ । ଧନବାନ୍ ଲୋକମାନେ ଏହିପରି ଧନଗର୍ବରେ ନ୍ୟାୟନୀତି ଭୁଲିଯାଆନ୍ତି ।

ଶାରଙ୍ଗ—ତଥାପି ମହାରାଜ ! ସ୍ମରଣ ରଖିଥିବେ, ଧର୍ମର ଦୋହାଇ ଦେଇ ଆପଣ ଯେପରି ବିବାହିତା ପତ୍ନୀକୁ ଅସ୍ୱୀକାର କରୁଛନ୍ତି, ଏହାର ପରିଣାମ ଆପଣଙ୍କୁ ଦିନେ ଭୋଗିବାକୁ ପଡ଼ିବ ।

ରାଜା—ଋଷିକୁମାର ! ଶାନ୍ତ ହୁଅ । ବୃଥାରେ ମୋତେ ଦୋଷ ଦେଇ ରାଜସମ୍ମାନର ଅବମାନନା କର ନାହିଁ ।

ଗୌତମୀ—ବତ୍ସେ ! ଶକୁନ୍ତଳେ ! ଲାଜ ଛାଡ଼ ମା' । ଓଢ଼ଣା ଖୋଲି ତୁମର ମୁଖ ସ୍ୱାମୀଙ୍କୁ ଦେଖାଅ । ନିଜ ପରିଚୟ ନିଜେ ଦିଅ ।

(ଶକୁନ୍ତଳା ମୁଣ୍ଡରୁ ଓଢ଼ଣା ଖୋଲିଲେ)

ରାଜା—(ଆଶ୍ଚର୍ଯ୍ୟ ହୋଇ ସ୍ୱଗତ) ଅସମ୍ଭବ ରୂପ ଆଜି ଦେଖୁଛି ପ୍ରଥମ । ମର୍ତ୍ତ୍ୟରେ କି ସମ୍ଭବ ଏପରି ରମଣୀ ? ଉପଭୋଗ କଲିପରି ତ ମନେହେଉ ନାହିଁ । ମୁଁ ଜାଗ୍ରତ ନା ନିଦ୍ରିତ ?

ଶାରଙ୍ଗ—କ'ଣ ଭାବୁଛନ୍ତି ରାଜା ? ତୂନି ହୋଇଗଲେ ଯେ ?

ରାଜା—ଋଷିକୁମାର ! ଯେତେ ଭାବିଲେ ବି ମନେ ପଡ଼ୁନାହିଁ କିଛି । କିପରି ଅବା ଗର୍ଭବତୀ ରମଣୀକୁ ଗ୍ରହଣ କରିବି ? ମୁଁ ତ ତାଙ୍କୁ ବିବାହ କରି ନାହିଁ ?

ଶକୁନ୍ତଳା—(ସ୍ୱଗତ) ହାୟରେ ନିଷ୍ଠୁର ବିଧାତା ! ନିଜ ବିବାହରେ ମଧ୍ୟ ସନ୍ଦେହ ? ଆଶା ଦୂରେ ରହ; ଆସ ମରଣ ।

ଶାରଙ୍ଗ—ପ୍ରକୃତରେ ମହାରାଜ, ଆପଣଙ୍କର ଦୋଷ ନୁହେଁ ଏ । ଚୋରର ଚୋରି ଧରା ନ ପଡ଼ିବା ପର୍ଯ୍ୟନ୍ତ ସେ ଜଗତରେ ସାଧୁରୂପେ ପରିଚିତ ଥାଏ । ତେଣୁ ମହର୍ଷି କଣ୍ୱ ଆପଣଙ୍କୁ ଅଭିଶାପ ନ ଦେଇ ଯାହା ଆଶୀର୍ବାଦ କଲେ, ସେଥିପାଇଁ ନିଜେ ଅପମାନ ଭୋଗ କରିବେ ନାହିଁ ତ ଆଉ କିଏ କରିବ ?

ଶାରଦ୍ୱତ—ତୁମ୍ଭେ ହୁଅ ଶାରଙ୍ଗ । ( ରାଜାଙ୍କପ୍ରତି ) ପୁରୁବଂଶର ସୁଯୋଗ୍ୟ ମହାରାଜ ! ବନବାସୀ ସନ୍ନ୍ୟାସୀ ଆମେ ଆସିଥିଲୁଁ ଆପଣଙ୍କଠାରୁ ସୁବିଚାର ଆଶାରେ; କିନ୍ତୁ ଫେରିଯାଉଛୁ ଏକ ହତାଶ ମନ ନେଇ । ତଥାପି ଆମେ ଅଭିଶାପ ଦେଇ-ପାରନ୍ତୁ କେବଳ ଶକୁନ୍ତଳାପାଇଁ । (ଶକୁନ୍ତଳାକୁ ଚାହିଁ) ଶକୁନ୍ତଳା ! ଶୁଣିଲ ତ ସବୁ ? ତୁମେ ଯେବେ ପାର, ଉପଯୁକ୍ତ ଉତ୍ତର ଦେଇ ବିଶ୍ୱାସ କରାଅ ।

ଶକୁନ୍ତଳା—ମହାରାଜ ! ଥରେ ଆଶ୍ରମ କଥା ମନେ ପକାନ୍ତୁ ତ ? ଗୋଟିଏ ସରଳା କନ୍ୟାର ରୂପରେ ମୁଗ୍ଧ ହୋଇ ଗଛ ପତ୍ର, ଲତା କୁଞ୍ଜକୁ ସାକ୍ଷି ରଖି ଆପଣ ମୋତେ ବିବାହ କରି ନାହାନ୍ତି ? ନିଜେ ରାଜ୍ୟର ରାଜା ହୋଇ ଏମିତି ପ୍ରବଞ୍ଚନା ଉଚିତ ହେଉଛି କି ?

ରାଜା—ଉଚିତ ଅନୁଚିତ ବିଚାର ଭାର ମୋ ଉପରେ । ନିଜେ କଳଙ୍କିତା ହୋଇ ଅନ୍ୟକୁ ଜଡ଼ାଇବାର ବୃଥା ଚେଷ୍ଟା କର ନାହିଁ ।

ଶକୁନ୍ତଳା—ସତ୍ୟ ମିଥ୍ୟାର ସାକ୍ଷୀ ଧର୍ମ । ତଥାପି ମହାରାଜ ! ଆପଣ ମୋତେ ପର ସ୍ତ୍ରୀ ବୋଲି କହି ଠେଲିଦିଅନ୍ତୁ ନାହିଁ । ଯଦି ଆପଣଙ୍କର ଦେଇଥିବା କୌଣସି ସଙ୍କେତର ପ୍ରମାଣ ଦିଏଁ, ତେବେ ଚିହ୍ନି ପାରିବେ ତ ?

ରାଜା—ବେଶ୍, ଅତି ଉତ୍ତମ କଥା ! ଦେଖାଅ ।

ଶକୁନ୍ତଳା—( ହାତ ଦେଖି, ଏଣେ-ତେଣେ ଚାହିଁ ଖୋଜି) ଆରେ, ମୋ ମୁଦି ? ମୁଦି କ'ଣ ହେଲା ? (ଗୌତମୀଙ୍କୁ ଚାହିଁଲେ)

ଗୌତମୀ—ବତ୍ସେ ! ଇନ୍ଦ୍ରଘାଟ ଶଚୀ-ତୀର୍ଥରେ ସ୍ନାନ କରୁଥିବାବେଳେ ହାତରୁ ମୁଦି ଖସିପଡ଼ି ନାହିଁ ତ ? ହା ଦୁର୍ଭାଗ୍ୟ !

ରାଜା—(ହସି) ଅସତ୍ୟକୁ ସତ୍ୟରେ ପରିଣତ କରିବା ଏତେ ସହଜ ନୁହେଁ ।

ଶକୁନ୍ତଳା—ମହାରାଜ ! ଦୈବ ବିପକ୍ଷରୁ ମୁଦିଟି ହଜିଯାଇ-ଯାଇଛି; ତଥାପି ଅନ୍ୟ ସଙ୍କେତ ଦେଉଛି ।

ରାଜା—ଦେଇପାର ।

ଶକୁନ୍ତଳା—ତପୋବନରେ ବେତସ-ଲତାତଳେ ଆପଣ ଗୋଟିଏ ପଦ୍ମପତ୍ର ଠୋଲା କରି ପାଣି ପିଇବାକୁ ବସିଥିଲେ···

ରାଜା—କାହିଁ ? ମନେ ପଡ଼ୁନାହିଁ ତ ।

ଶକୁନ୍ତଳା—ଶୁଣନ୍ତୁ । ସେତିକିବେଳେ ଗୋଟିଏ ମୃଗ-ଶିଶୁ ଆସି ଆମ୍ଭଦୁହିଁଙ୍କ ପାଖରେ ପହଞ୍ଚିଲା । ଆପଣ ତାକୁ ପାଣି ବଢ଼ାଇଦେଲେ; କିନ୍ତୁ ସେ ଅଚିହ୍ନା ଭାବି ପିଇଲା ନାହିଁ । ମୁଁ ଦେବାରୁ ପିଇଲା । ଆପଣ ହସି-ହସି କହିଲେ, ତୁମେଦୁହେଁ ବନବାସୀ ହୋଇଥିବାରୁ ଶିଶୁଟି ପାଣି ପିଇଲା । କଥା କ'ଣ ଭୁଲିଗଲେଣି ?

ରାଜା—(ହସି) ମନେ ହେବା ଦୂରେ ଥାଉ, ଏପରି କେବେ ଘଟିଛି ବୋଲି ମୋର ଆଦୌ ବିଶ୍ୱାସ ମଧ୍ୟ ହୁଏ ନାହିଁ ।

ଶକୁନ୍ତଳା—(ଉପରକୁ ଚାହିଁ) ଧର୍ମ ! ତୁମେ ରକ୍ଷା କର

ରାଜା—(ହସି) ଉପାୟହୀନ ହୋଇ ଧର୍ମକୁ ସାକ୍ଷୀ ଦିଅ ନାହିଁ । ସ୍ତ୍ରୀ-ଲୋକମାନେ ଚରିତ୍ରହୀନା ହେଲେ କୌଣସି ବିଶିଷ୍ଟ ଲୋକଉପରେ ସମସ୍ତ ଦୋଷ ଦେଇ ମୁକ୍ତ ହେବାକୁ ଚେଷ୍ଟା କରନ୍ତି; କିନ୍ତୁ ମନେରଖ ଋଷିକୁମାରି ! ପୁରୁବଂଶରେ ଆଜି-ପର୍ଯ୍ୟନ୍ତ ଚରିତ୍ରହୀନ ଜନ୍ମ ହୋଇ ନାହାନ୍ତି ।

ଗୌତମୀ—ମହାରାଜ ! ବଣରେ ବଢ଼ିବା ଲୋକ ସୁଚରିତ୍ର-କୁଚରିତ୍ର କଅଣ ସେକଥା ଶିଖି ନାହିଁ । ଅଧିକ କହି ବୃଥା ଅପମାନ ଦିଅନ୍ତୁ ନାହିଁ ।

ରାଜା—ତପସ୍ୱିନି ! ନ ଶିଖିଲେ ମଧ୍ୟ ଚରିତ୍ରହୀନତା ବ୍ୟବହାରରୁ ଜଣାପଡ଼େ । ଦେଖିଲ, କୋଇଲି ନିଜ ଛୁଆକୁ କାଉ ପାଖେ ପାଳନେଉଛି । ସେ ତ ପକ୍ଷୀ ମାତ୍ର । ସେ ପୁଣି ଶିଖିଲା କେଉଁଠୁ ?

ଶକୁନ୍ତଳା—(ରାଗରେ) ମହାରାଜ ! ନିଜପରି ଜଗତକୁ ବିଚାର କରିବେ ନାହିଁ । ଗଭୀର କୂପର ମୁଖକୁ ଘାସ ଘୋଡ଼ାଇ କୂପର ମୁଖକୁ ବନ୍ଦ କଲା-ଭଳି ଆପଣ ଧର୍ମର ଆବରଣ ପିନ୍ଧି ପାପର ଜ୍ୱଳନ୍ତ ନରକପଥରେ ଆଗେଇଯାଉଛନ୍ତି । ଆପଣଙ୍କପରି ସଂସାରକୁ ଭାବୁଛନ୍ତି କାହିଁକି ?

ରାଜା—ଅବଳା, ତେଣୁ ରାଜୋଚିତ ଦଣ୍ଡରୁ ତୁମେ କ୍ଷମଣୀୟା । ଯାହା ଇଚ୍ଛା କହିଯାଅ, ତଥାପି ପୁରୁବଂଶରେ କେହି ଗର୍ଭବତୀ, ପୁଣି ପର-ସ୍ତ୍ରୀ ହରଣ କରି ନାହିଁ, ଏପରି କି ତାର ପ୍ରଜାମାନେ ମଧ୍ୟ । ଏ ଅବୈଧ କାର୍ଯ୍ୟ ଧର୍ମ ନିଷିଦ୍ଧ ।

ଶକୁନ୍ତଳା—ବିଧି-ଅବିଧି ଆପଣ ବୁଝନ୍ତି । ବନବାସିନୀ ଋଷିକନ୍ୟା କ'ଣ ବୁଝିବ ସେଥିରୁ ? ତେବେ ଆପଣ କ'ଣ ମନେ କରନ୍ତି, ଜଣେ ବାରାଙ୍ଗନା ଆସି ଆପଣଙ୍କଠାରେ ପ୍ରଣୟ-ଭିକ୍ଷା ଲୋଡ଼ୁଛି ?

ରାଜା—ତପସ୍ୱିନୀ ! ଯୌବନର ଚପଳମତିରେ ନିଜେ ଭୁଲ କରି ଜଣେ ଧର୍ମପ୍ରାଣ ରାଜାଙ୍କୁ ସଂପୃକ୍ତ କରିବା ଉଚିତ ନୁହେଁ । ଆଗେ ନିଜର ଚରିତ୍ର ସଂଶୋଧନ କର ।

ଶକୁନ୍ତଳା—ଜଗଦୀଶ୍ୱର ! (ମୁହଁରେ ଲୁଗା ଦେଲେ)

ଶାରଦ୍ୱତ—ଶୁଣିଲ ତ ? ଅତି ଲୋଭ କରି ବଡ଼ଲୋକ ପ୍ରୀତି କଲେ ଶେଷକୁ ପରିଣାମ ଏଇଆ ହୁଏ । ନିଜ ଗରିମାକୁ ଟାଣ ରଖିବାପାଇଁ ସମାଜ ଆଖିରେ ସେମାନେ ସହଜରେ ଧୂଳି ଦେଇପାରନ୍ତି ।

ଶାରଙ୍ଗ—ନ ବୁଝି ନ ଶୁଝି କାର୍ଯ୍ୟ କଲେ ଶେଷଫଳ ଏହିପରି ହୁଏ । ଏଥର ନିଜ କର୍ମଫଳ ଭୋଗ ।

ରାଜା—ମନେ ରଖିଥିବେ ସନ୍ନ୍ୟାସୀ ! ସାମାନ୍ୟ ଜଣେ ନାରୀକୁ ଠକି ପୁରୁବଂଶ ଯଶ ବଢ଼ାଇବାକୁ ଇଚ୍ଛା କରେ ନା ।

ଶାରଙ୍ଗ—ବେଶ୍ ! ଆମ୍ଭମାନଙ୍କପ୍ରତି ଗୁରୁଙ୍କର ଯାହା ଆଜ୍ଞା ଥିଲା, ଆମ୍ଭେ ତାହା ପ୍ରତିପାଳନ କଲୁଁ । ଏ ଆପଣଙ୍କ ସ୍ତ୍ରୀ, ପୁଣି ଗର୍ଭବତୀ । ଆପଣ ଗ୍ରହଣ କରନ୍ତୁ ବା ନ କରନ୍ତୁ, ଯାହା ଉଚିତ ଭାବିବେ, ତାହା କରନ୍ତୁ । ଆମ୍ଭମାନଙ୍କର ଆଉ କିଛି କହିବାର ନାହିଁ । ଆସ ମା ! ଆସ ଶାରଦ୍ୱତ ।
(ଯିବାକୁ ବାହାରିଲେ)

ଶାରଦ୍ୱତ—ମହାରାଜ ! ରାଜକାର୍ଯ୍ୟରେ ବ୍ୟସ୍ତ ରହି ଆପଣ ତାଙ୍କୁ ଭୁଲିଯାଇଥିବେ; ତେଣୁ ସ୍ଥିର ଚିତ୍ତ, ଧୀର ମତିରେ ବିଚାର କରି ଦେଖିବେ । ଉପରେ ଧର୍ମ ଚିରକାଳ ବିରାଜିତ । ଆପଣ ତ ଧର୍ମରାଜ—ପ୍ରଜାପାଳକ । ଆପଣଙ୍କୁ ଅଧିକ ବୁଝାଇବା ଆମ ଶକ୍ତିର ବହିର୍ଭୂତ । ଆମେ ଆସୁଛୁ । (ଶକୁନ୍ତଳା'ପ୍ରତି) ଥାଅ ଶକୁନ୍ତଳା ! ନିଜ କର୍ମ-ଫଳ ଭୋଗ କର ।

ରାଜା—(କିଛି କ୍ଷଣ ତାଙ୍କ ଯିବାପଥକୁ ଚାହିଁରହି ମୁଖ ଫେରାଇ) କେବେ ବିବାହ କରିଛି, ସେପରି ତ ମୋର କିଛି ମନେ ପଡ଼ୁ ନାହିଁ ।

ଶକୁନ୍ତଳା—(ସ୍ୱଗତ) ଜଗଦୀଶ୍ୱର ! ସତ୍ୟ-ମିଥ୍ୟାର ସାକ୍ଷୀ ତୁମେ । ମା'ଗୋ ବସୁନ୍ଧରେ ! ନିରାଶ୍ରୟା ଅବଳାକୁ ତୋ ଗର୍ଭରେ ଆଶ୍ରୟ ଦିଅ ମା । ସତୀତ୍ୱ ରକ୍ଷା କର, ମାନ ରକ୍ଷା କର । ମୁଁ ଆଉ ସହି ପାରିବି ନାହିଁ—ଉଃ, କି କଷ୍ଟ ! (ଅଗ୍ରସର ହେଉଥିବାସମୟରେ ହଠାତ୍ ଗୋଟିଏ ରମଣୀର ଛାୟାମୂର୍ତ୍ତି ଦେଖାଦେଲା । ମଞ୍ଚ ଝାପ୍‌ସା ଦେଖାଗଲା—ଶକୁନ୍ତଳାଙ୍କୁ ଧରି ଉଭେଇଗଲା ଛାୟାମୂର୍ତ୍ତି—ରାଜା ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ)

ରାଜା—(ଉଠି) ଏ କ'ଣ ? କିଏ ସେ ଏ ଛାୟା ମୂର୍ତ୍ତି ? ପ୍ରହେଳିକାପରି ମନେ ହୁଏ ମୋର । ଅଦୃଷ୍ଟ ! ଏ କି ପରୀକ୍ଷା ତୋର ? କିଏ ଏ ପାଗଳିନୀ ରମଣୀ, ଦାବିକରେ ପୁଣି ଦାମ୍ପତ୍ୟର ଅଧିକାର ।
(ସଭାସ୍ଥଳ ଲୋକ ଗୋଳମାଳ କରିଉଠିଲେ ଆଶ୍ଚର୍ଯ୍ୟ ହୋଇ । ମଞ୍ଚ ପୁଣି ଆଲୋକିତ ହେଲା ।)

---

## ତୃତୀୟ ଦୃଶ୍ୟ

(ଦୁଇ ଜଣ ପାଇକ ଓ ଗୋଟିଏ ଧୀବର ପ୍ରବେଶ)

୧ମ—ସଚ କହ, ଏତେ ଲୁଚେଇ ଲାଭ କ'ଣ ? ଜାଣିଚୁ ତ ରଜାଙ୍କ କଥା ।

ଧୀବର—ଆଜ୍ଞା ! ଯାହା ଯାହା ଘଟିଥିଲା, ସତ କହୁଚୁ । ପଦେ ଲୁଚଉ ନାହିଁ ।

୨ୟ—(ପ୍ରହାର କରି) ମିଥ୍ୟାବାଦୀ, ଶ୍ୱେର । କହୁଚି ସଚ କହୁଚୁ ! ଯେମିତି ସତିଆ ଋଷି ।

ଧୀବର—ଆଜ୍ଞା ! ମାର, ଚାର, ଯାହା କର, ମୁଁ ମୋ ଜୀବିକା କରୁ କରୁ ପାଇଲି ।

୧ମ—ଜୀବିକା କ'ଣ ? ଆବେ ଶ୍ୱେର । (ପ୍ରହାର)

ଧୀବର—ଆଜ୍ଞା, କହୁଚୁ । ଆଉ ମାରନ୍ତୁ ନାହିଁ । ଜାଲ, ବନ୍ସୀ ପକାଇ ମାଛ, କଇଁଛ ମାରି ପେଟ ପୋଷେଁ । ଇନ୍ଦ୍ରଘାଟରେ ଜାଲ ପକାଉ ପକାଉ ଗୋଟିଏ ବଡ଼ ରୋହୀମାଛ ଯୋଗକୁ ପଡ଼ିଲା । ତାକୁ ଆଣି କାଟୁ-କାଟୁ ତା ପେଟରୁ ଜକଜକ ହୋଇ ଏଇଟି କ'ଣ ଦିଶିଲା । ଦେଖିଲାବେଳକୁ ଗୋଟିଏ ମୁଦି । 'ଏଇଟି ମୋର କ'ଣ ହବ ? ବିକିଦେଲେ କିଛି କଉଡ଼ି ମିଳିବ ଭାବି ଆଣୁ-ଆଣୁ ଆପଣମାନେ ଧଇଲେ । ମୋର କିଛି ଦୋଷ ନାହିଁ ଆଜ୍ଞା ।

୨ୟ—ଶ୍ୱେର, ଯେମିତି ଯେବେ ମନରେ ଥିଲା, ତେବେ ଆମକୁ ଭାଗ କଲୁ ନାହିଁ କାହିଁକି ? ଆମେ ତ ଧଳାକୁ କଳା କରିଦେଇଥାଆନ୍ତୁ । ଜାଣିନୁ ପାଇକ ଲୋକଙ୍କ କଥା । ରଜାଙ୍କ ନାମଲେଖା ମୁଦି, ତୁ ତାକୁ ହଜମ କରିବୁ ?

୧ମ—(ପ୍ରହାର କରି) ଶ୍ୱେରଟାକୁ ସେତେବେଳୁ କହିଚୁ କିଛି ଅଚ୍ଛତ ପକା । କାନକୁ ଟିକିଏ ନଅନ୍ତା ଭଲା ? ଏବେ କଟୁଆଳ ରଜାଙ୍କ ପାଖକୁ ମୁଦି ନେଇ ଯାଇଛି । ସମ୍ଭାଳ ଏଥର । ସେ ଫେରିଲେ କାଉ-ଶାଗୁଣା ଯଦି ତୋ ମାଉଁସ ନ ଖାଆନ୍ତି···

ଧୀବର—(ମନେ-ମନେ) ଏ କୁକୁର ଦାଂଟାଙ୍କଠାରୁ କାଉ-ଶାଗୁଣା ଭଲ । ଓହୋ, ଏଗୁଡ଼ାକ ମଣିଷ ନା ରାକ୍ଷସ ?

( କଟୁଆଳ ପ୍ରବେଶ )

୨ୟ—ହେଇଟି ତ ଆସିଲେଣି । ହେ ବେହେରା, ଧର୍ମକୁ ଡାକ ।

କଟୁଆଳ—ଛାଡ଼ିଦିଅ ତାକୁ । ସେ ସଚ କହିଛି । ଫିଟାଇଦିଅ ।

୧ମ—(ଆଶ୍ଚର୍ଯ୍ୟ ହୋଇ) ଆରେ ! ଏ କି ଆଶ୍ଚର୍ଯ୍ୟ କଥା !

୨ୟ—କ'ଣ ହେଲା କଟୁଆଳ ଭାଇ ?

କଟୁଆଳ—ସେ ପ୍ରକୃତରେ ମୁଦିଟି ନଦୀଘାଟରୁ ପାଇଥିବ । ମହାରାଜା ମୁଦିଟି କାହିଁକି ଦେଖୁ ଦେଖୁ ଚମକିପଡ଼ିଲେ ଯେ ମୁଁ ତ ଦେଖି ଚିହ୍ନିନାହିଁ । ମୁହଁ ଶୁଖିଗଲା । ଟିକିଏ ପରେ ଖୁସି ହୋଇ ମୋତେ ପରା···ଏଇ ଦେଖୁନା—ପୁରସ୍କାର ମିଳିଲା । କେଉଟକୁ ପୁଣି ମିଳିଚି ସୁନା ମୋହର । ନେ ।

ଧୀବର—(ପଦତଳେ ପଡ଼ି) ମୋ ପ୍ରାଣ ଆଜିଠୁଁ ତମର । ଦୟା କଲ ଜୀବନଦାତା । ତୁମେ ନ ଆସିଥିଲେ ଏଗୁଡ଼ାଙ୍କ ହାତରେ ମୋ ଜୀବନ ଯାଇଥାଆନ୍ତା । (ମୋହରନେଇ ମୁଣ୍ଡରେ ଲଗାଇଲା)

କଟୁଆଳ--ହଉ-ଯା, ଘରକୁ ଯା' । (ପ୍ରସ୍ଥାନ)

୨ୟ—(ଧୀବରପ୍ରତି)ଯା'ଯା, ଜୀବନ ରହିଗଲା । ପୁଣି···

୧ମ—ମୁଁ ପରା କଟୁଆଳକୁ ଯେମିତି କହିଥିଲି ନହେଲେ ବିଚରା ପ୍ରାଣ ଯାଇଥାନ୍ତା । ଓଃ, ଯୋଉ ଚୋରଡ଼ାହାତଧରା···

ଧୀବର—(ସ୍ୱଗତ) ଏଗୁଡ଼ାକ ଏଡ଼େ ଦୋମୁହାଁ । (ପ୍ରକାଶ୍ୟେ) ହଉ ଆଜ୍ଞା, ଆପଣଙ୍କୁ ଭଗବାନ ସେମିତି କରିଥାଆନ୍ତୁ ।

୨ୟ—ହଁ, ଆମରିଯୋଗୁ ତ ଏ ପୁରସ୍କାର ପାଇଲୁ ନୋହିଲେ ତୁ କୋଉଠି, ସୁନା ମୋହର କୋଉଠି ! ଆମେ ସିନା ଆଣିଲୁ ବୋଲି···

୧ମ—ହଉ, ଚାଲ ଚାଲ ।

(ଉଭୟଙ୍କ ପ୍ରସ୍ଥାନ)

ଧୀବର—ଓହୋ ! ଏଗୁଡ଼ାଙ୍କର କି ଅଦଉତି ! ଖାଲି ଅଣ୍ଡାଗୁଣ୍ଡା ! ରାଜାର ଦାନା ଖାଇ ପୁଣି ନିମକହାରାମି ! ଭେଳିକି ଲଗେଇ ନଉଛନ୍ତିହୋ ! ହେ ଭଗବାନ ! ଏ ପାପୀଗୁଡ଼ାଙ୍କ ଖବର ଆଗେ ବୁଝ । (ନମସ୍କାରକରି) ଯାଏଁ, ବାଘ ହାତରୁ ମଳରା ଛଡ଼େଇବାକୁ ହ'ବନି । ଓଃ !

(ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

( ପ୍ରମୋଦ ଉଦ୍ୟାନ । ଚିନ୍ତିତ ମନରେ ରାଜା ବସିଥିଲେ, ପାର୍ଶ୍ୱରେ ବିଦୂଷକ । ରାଜା ଖର ନିଃଶ୍ୱାସ ମାରି ଅନାଇଲେ । ଜଣେ ଦାସୀ ଖଣ୍ଡେ ଚିତ୍ରପଟ୍ଟ ନେଇ ପହଞ୍ଚିଲା । ରାଜାଙ୍କ ଇଙ୍ଗିତରେ ଥୋଇ ଦେଇ ପଛେଇ ପଛେଇ ଚାଲିଗଲା । ଧୀରେ ରାଜା ସେଇଟିକୁ ଉଠାଇ ନେଇ ନିରୀକ୍ଷଣ କରି ଚିତ୍ର ଅଙ୍କନକରିବାକୁ ଲାଗିଲେ)

ବିଦୂଷକ—(ଟିକିଏ ଏପାଖ ସେପାଖ ଚିତ୍ରକୁ ଅନାଇ) ସଖା, ଚିତ୍ରଟି ଲେଖିସାରିଥିଲେ ପରା ! ଆଉ କ'ଣ ବାକି ରହିଗଲା ?

ରାଜା—(ଚିତ୍ର କରୁ-କରୁ) ବେଶୀ କିଛି ନାହିଁ । ବାକି ଅଛି, ମାଳିନୀ ନଦୀ, ଆଉ ଶକୁନ୍ତଳା ବସିଥିବା କୁଞ୍ଜନିକଟରେ ଗୋଟିଏ ମୃଗ ଶିଶୁ···

ବିଦୂଷକ—(ଛବିରୁ ଚାହିଁ)ଆହା ! ଲଖାରେ ମଧ୍ୟ ଏତେ ସୁନ୍ଦର ଦେଖାଯାଉଛନ୍ତି ! ଆପଣ କିପରି ସଖା ଏପରି ଜୀବନ୍ତ ପ୍ରତିମାକୁ ଭୁଲି ପାରିଲେ ? ପୁଣି ଶେଷକୁ ପରିତ୍ୟାଗ ମଧ୍ୟ କରିଦେଲେ ? ଓହୋ ! କି ଯାତନା ପାଉ ନ ଥିବେ ସିଏ !

ରାଜା—ସଖା ! ଅତୀତକୁ ଚେତାଇଦେଇ ଆଉ ମନସ୍ତାପ ବଢ଼ାଇଦିଅ ନାହିଁ । ରାଜଧାନୀକୁ ଫେରିଆସି ରାଣୀମାନଙ୍କ ମୋହରେପଡ଼ି ସବୁ ଭୁଲି ଯାଇଥିଲି । ମନେ ପଡ଼ିଲେ ହୃଦୟ ବିଦୀର୍ଣ୍ଣ ହୋଇଯାଏ ସଖା ! ପାଷାଣ ହେଲେ ମଧ୍ୟ ତରଳି ଯାଇଥାନ୍ତା ।

ବିଦୂଷକ—କିନ୍ତୁ ଆପଣଙ୍କ ମନୁଷ୍ୟ-ହୃଦୟ କେମିତି ସମ୍ଭାଳି ରହିଲା ? ବିବାହିତା ପତ୍ନୀ, ପୁଣି ଗର୍ଭବତୀ—ବଡ଼ ଭାଗ୍ୟହୀନା ସେ । ରାଜାମାନଙ୍କର ପରା ଇଏ ଗୋଟାଏ ଲକ୍ଷଣ । ଛି, ଛି ।

ରାଜା—ସେ ନୁହନ୍ତି ସଖା, ଭାଗ୍ୟହୀନ ମୁଁ ନିଜେ । ସତୀ ନାରୀ ସେ । ତାଙ୍କର କାତର ପ୍ରାର୍ଥନା ଶୁଣି ସ୍ୱର୍ଗରୁ ଦେବତାମାନେ ମାୟାକରି ସେହିକ୍ଷଣି ଆଖିର ପଲକ ମାତ୍ରକେ କେଉଁଠାକୁ ଅଦୃଶ୍ୟ କରିନେଲେ । ମୋ ଆଖି ଝଲସି ଉଠିଲା । ସଭାସଦ୍‌ବର୍ଗ ଆଶ୍ଚର୍ଯ୍ୟହୋଇ ଅନାଇ ରହିଥାନ୍ତି ।

ବିଦୂଷକ—ଆଉ ଅଟକାଇ ପାରିଲ ନାହିଁ ? ଗୁଡ଼ାଏ ଗନ୍ଧର୍ଭଙ୍କୁ ତ ସଭାରେ ରଖିଛ । କେହିହେଲେ କହିଲେ ନାହିଁ ? ସେମାନଙ୍କୁ ଏବେ ଚିହ୍ନ । ପଦେ ରାଜା ଚାଟୁ ପ୍ରିୟ ହେଲେ ଏହିପରି ପୁଳାଏ କର୍ମକୁଡ଼ି ଆସି ଯୁଟନ୍ତି । ସବୁବେଳେ କଥାକୁ ହଁ। ହଁ। ମାରି ହିନ କଟେଇ ହିଅନ୍ତି । ସେମାନଙ୍କୁ ଏବୁଦ୍ଧି ଆସିବ କୁଆଡ଼ୁ ? ରଜା ତ ଭୋଳାନାଥ । ତାଙ୍କର ଏତେ କଥା ସ୍ମରଣ ରହିଛି କେଉଁଠୁ ?

ରାଜା—ସଖା, ପୁରୁ ବଂଶର ଏକ ଅଯୋଗ୍ୟ ସନ୍ତାନ ଦୁଷ୍ମନ୍ତ । ନାରୀପ୍ରତି ଅସମ୍ମାନକରିବା ମୋ'ର ନିତାନ୍ତ ଅନ୍ୟାୟ ହୋଇଛି । ସେ ବେଳର ଛଳ-ଛଳ ଆଖି ଆଜି ମନେପଡ଼ିଲେ ନିଜକୁ ଶତ ଧିକ୍‌କାର ଆସେ ।

ବିଦୂଷକ—ଏତେବେଳେ ମନରେ ହେଜ ପଶୁଛି କି ? ମହର୍ଷି କଣ୍ୱଙ୍କ ଭଳି ଋଷି ! ସେ କଣ ଜାଣିଶୁଣି କେଉଁଠୁ ଗୋଟାଏ ଯୁବତୀକୁ ପଠାଇଥାନ୍ତେ ?

ରାଜା—କି ଦୁର୍ବୁଦ୍ଧି ଆସି ଘୋଟିଲା ମୋତେ ! ତୁମେ ମଧ୍ୟ ପାଖରେ ନ ଥିଲ । ହଂସବତୀଙ୍କ ପାଖକୁ ଆସିଛ ।

ବିଦୂଷକ—ନ ଆସନ୍ତ କେମିତି ? ଆଦେଶ ତ । ବାନ୍ତ ଗଲେ ଲୋକେ ବାନ୍ତର ମହତ୍ତ୍ୱ ବୁଝନ୍ତି । ମୁଁ ଥିଲେ ଏତେକଥା ଘଟି ନ ଥାନ୍ତା । ତପୋବନରେ ମୋତେ ଶକୁନ୍ତଳାଙ୍କ କଥା କହି ପୁଣି ଭୁଲାଇ ଦେଲେ । ସେତେବେଳେ କଥାଟା ଜାଣିଥିଲେ ଏତେ ଅସୁବିଧା ଘଟି ନ ଥାନ୍ତା । ଏଇଥିଲାଗି ସିନା ସତ ଲୋକଙ୍କୁ ବଡ଼ମାନେ ପାଖରେ ରଖନ୍ତି ।

ରାଜା—ଏବେ କି ଉପାୟ ସଖା ?

ବିଦୂଷକ—ଆଉ କଣ ବାଟ ଅଛି ? କଣ୍ଟା ତ ବାଟରେ ପକାଇ ଦେଇଛ । ଏବେ ଚିତ୍ରପଟକୁ ଦେଖି ମନବୋଧ କର ।

(କଞ୍ଚୁକୀର ପ୍ରବେଶ ଓ ଅଭିବାଦନ)

କଞ୍ଚୁକୀ—ମହାରାଜାଙ୍କ ଆଦେଶରେ ମହାମନ୍ତ୍ରୀ କାର୍ଯ୍ୟ ଶେଷ କରିଛନ୍ତି, କିନ୍ତୁ ଗୋଟିଏ ଗୁରୁତର ଘଟଣାରେ ସ୍ୱାମୀଙ୍କଙ୍କୁ ଏଖଣ୍ଡି ଲେଖି ପଠାଇଛନ୍ତି ।

ରାଜା—( ବିଦୂଷକଙ୍କୁ ଇଙ୍ଗିତ କରି ) ସଖା, ପତ୍ରଟି ପଢ଼ି ଶୁଣାଅ ।

ବିଦୂଷକ—(ପତ୍ରଟି ନେଇ ପଢ଼ିଲେ) ଏହି ନଗରର ଜଣେ ମହାଜନ କିଛି ସମ୍ପତ୍ତିନେଇ ବୋଇତରେ ଯାଉଯାଉ ବାଟରେ ମରିଗଲେ । ସେ କୋଟୀପତି ଆଉ ନିଃସନ୍ତାନ । ତେଣୁ ତାଙ୍କର ସମ୍ପତ୍ତି ରାଜକୋଷକୁ ଆସିବା କଥା । ଏଥିପ୍ରତି ମହାଜନଙ୍କ ଆଜ୍ଞାକୁ ଅପେକ୍ଷା···

ରାଜା—(ଦୀର୍ଘଶ୍ୱାସ ମାରି) ନିଃସନ୍ତାନ ହେବା ଏକ ନିକଟ ଦୁର୍ଭାଗ୍ୟ । ସଖା, ବୁଝିବ ତାଙ୍କର ସ୍ତ୍ରୀ ଯଦି ଗର୍ଭବତୀ ଥା'ନ୍ତି, ତେବେ ସ୍ୱାମୀଙ୍କ ସମ୍ପତ୍ତି ସେ ପାଇବେ । ସନ୍ତାନବତୀ ହେବା ପର୍ଯ୍ୟନ୍ତ ରାଜକର୍ମଚାରୀ ରଖାଯାଇ ବୁଝା-ଶୁଝା କରାଯାଉ ।

କଞ୍ଚୁକୀ—ଜୟ ହେଉ । ମହାରାଜ ! ତାଙ୍କର ସ୍ତ୍ରୀ ମଧ୍ୟ ଗର୍ଭବତୀ ଅଛନ୍ତି ଏବଂ ଦିନ ନିକଟ ହୋଇଆସୁଛି ବୋଲି ସମ୍ବାଦ ମିଳିଛି ।

ରାଜା—ତେବେ ମନ୍ତ୍ରୀଙ୍କୁ ସେଇପରି ନିର୍ଦ୍ଦେଶ ଦିଅ ।

କଞ୍ଚୁକୀ—ଯଥା ଆଜ୍ଞା ।

(ପ୍ରଣାମକରି ପ୍ରସ୍ଥାନ)

ରାଜା—ସଖା, ନିଃସନ୍ତାନ ଜୀବନ କେଡ଼େ କଷ୍ଟକର । ଜାଣୁ ଜାଣୁ ମୁଁ ଗର୍ଭବତୀ ଶକୁନ୍ତଳାଙ୍କୁ ଉପେକ୍ଷା କରିଛି । ମୋ ଅପରାଧ ଅମାର୍ଜନୀୟ । ଦେଖ ସଖା, ଏ ଆମ୍ବଗଛର ବଉଳ ଯେପରି ତୀକ୍ଷ୍ଣ ମୁନା ଶରନେଇ ମୋତେ ଆକ୍ରମଣ କରିବାକୁ ଉଦ୍ୟତ । ଏବେ ବସନ୍ତ ଋତୁ ନା ? ଅପରାଧ କ୍ଷମାକର ପ୍ରିୟେ !

ବିଦୂଷକ—ସଖା ! ମୁଁ ସଂହାର କରିଦେବି (ଉଠି ବାଡ଼ିଧରି) ସବୁ ବଉଳକୁ ପାହାରେ ପାହାରେ ଦେବି । ଆଉ ଥିବ ନା ମୁଣ୍ଡ ବଢ଼ାଇବ ।

ରାଜା—(ମୁଦି ଦେଖି) ଏଇ ମୁଦି ମୋର କାଳ ହେଲା ସଖା ।

ବିଦୂଷକ—ଏ ବାଡ଼ିଟି ମଧ୍ୟ ମୋର କାଳ ହେଲା ମହାରାଜ ! କାରଣ ମୁଁ ସାଧାସିଧା ଲୋକ···

ରାଜା—ନାହିଁ ସଖା । ଏ ମୁଦି ଯଦି ତାଙ୍କ ହସ୍ତରେ ଥା'ନ୍ତା, ତେବେ ନିଶ୍ଚୟ ଚିହ୍ନି ପାରିଥାନ୍ତି ମୁଁ ।

ବିଦୂଷକ—ମହାରାଜ ! ଶକୁନ୍ତଳା ତ ପାଣିରେ ରହିବା ଲୋକ ନୁହନ୍ତି । ତେବେ ଏ ମୁଦିର କଅଣ ହାତ-ଗୋଡ଼ ଅଛି ? ରୋହୀ ପେଟକୁ ଗଲା କେମିତି ?

ରାଜା—ଇନ୍ଦ୍ର ଘାଟରେ ସ୍ନାନକରୁଥିବାବେଳେ ହାତରୁ ଖସିପଡ଼ିଛି ବୋଲି ସେ ମଧ୍ୟ କହୁଥିଲେ । ରୋହୀ ସେଇଟିକୁ ବୋଧହୁଏ ଗିଳିଦେଇଛି । ଧୀବର ଜାଲରେ ପଡ଼ିଲା ବୋଲି ସିନା ଏତେ କଥା ଜଣା ପଡ଼ିଲା ।

ବିଦୂଷକ—ହିଁ, ହିଁ, ସତ କଥା । ବଡ଼ ଲୋକଙ୍କର ସବୁ ବଡ଼ ବଡ଼ ଆଖି ନା । ତେଣୁ ଏତେ ଗଭୀରକୁ ପଶୁଛି କିଏ ? ତୁମେ ତେବେ ନାମ ଲେଖା ମୁଦିଟି ତାଙ୍କୁ ଦେଇଥିଲ, ନା ?

ରାଜା—ସେକଥା ଆଉ ଭାବିଲେ କ'ଣ ହେବ ? ଖାଲି ତ ଦେଇ ନ ଥିଲି । କହି ଆସିଥିଲି, ଏ

ମୁଦ୍ରିକାରେ ଲେଖାଥିବା ଅକ୍ଷରଗୁଡ଼ିକ ଗଣୁଥିବ ଯେଉଁ ଦିନ ଶେଷହେବ, ସେହିଦିନ ମୋ ରଥ ଆସି ତୁମକୁ ରାଜଧାନୀକୁ ନେଇଯିବ ।

ବିଦୂଷକ—ହାୟରେ ବିଧାତା ! ସ୍ୱୟଂ ରାଜାଙ୍କ ବଚନ ନା···

ରାଜା—ରାଜ୍ୟକୁ ଆସି ସବୁ ଭୁଲିଗଲି । ସ୍ୱପ୍ନପରି ଲାଗୁଛି ସବୁ । ଆଉ ମିଳନର ଆଶା ବୋଧହୁଏ ନାହିଁ ।

ବିଦୂଷକ—ସେକଥା ଭାବ ନାହିଁ ସଖା ! ମୁଦି ପୁଣି କେମିତି ମିଳିଲା ? ସେହିପରି ହୁଏତ ସେ ମଧ୍ୟ···

ରାଜା—(ମୁଦିକୁ) ଧିକ୍ ତୋତେ । ତୁ ପ୍ରିୟାର ସୁନ୍ଦର ଆଙ୍ଗୁଠି କିପରି ତ୍ୟାଗକଲୁ ?

ବିଦୂଷକ—ସଖା ତତୋଧିକ—ଶତ ଧିକ୍ ସେ ଲୋକମାନଙ୍କୁ, ଯେଉଁମାନେ ବନ୍ଧୁ ପୁଣି ପ୍ରଣୟୀକୁ ପ୍ରତାରଣା ଦିଅନ୍ତି ।

ରାଜା—ହଁ ସଖା, ମୁଁ ତ ଚେତନ ଥାଇ ଭୁଲିଗଲି । ମୁଦି ତ ଅଚେତନ ପଦାର୍ଥ । ଦୋଷ ମୋର ।

ବିଦୂଷକ—(ସ୍ୱଗତଃ) ପ୍ରେମର ବନ୍ଧନ କେଡେ ଟାଣ ସତେ ! ଏତେବେଳେ ସ୍ୱାମୀଙ୍କର ଚେତା ପଶିଛି । ମନ ବଦଳାଇ ନ ଦେଲେ ପାଗଳ ହୋଇଯିବେ । (ପୁଣି କଞ୍ଚୁକୀ ପ୍ରବେଶ)

କଞ୍ଚୁକୀ—ମହାରାଜ ! ଦେବସାରଥୀ ଆପଣଙ୍କର ଦର୍ଶନ ଅପେକ୍ଷା କରୁଛନ୍ତି ।

ବିଦୂଷକ—(ସ୍ୱଗତଃ) ଯା'ହେଉ ! ଏଥର କାର୍ଯ୍ୟ ବ୍ୟସ୍ତ ରହିବେ—ମନ ବଦଳି ଯିବ ।

ରାଜା—କିଏ, ମାତଳୀ ? କାହିଁକି ?

କଞ୍ଚୁକୀ—କୌଣସି ଗୁରୁ କାର୍ଯ୍ୟରେ ।

ରାଜା—ସଖା, ତୁମେ ନିଜେ ଯାଇ ଯଥା ବିହିତସତ୍କାର କରି ତାଙ୍କୁ ଏଠାକୁ ନେଇଆସ ।

ବିଦୂଷକ—ହଉ ମହାରାଜ !

(କଞ୍ଚୁକୀ ସହ ପ୍ରସ୍ଥାନ)

ରାଜା—ମାତଳୀ ? ଦେବରାଜ ଇନ୍ଦ୍ରଙ୍କର ସାରଥୀ ! ସେ ଏଠାକୁ ଆସିବାର ଅଭିପ୍ରାୟ କ'ଣ ? କେତେବେଳେ ଭାଗ୍ୟରେ କ'ଣ ଲେଖାଅଛି । ଭାଗ୍ୟାଧୀନ ଜଗତ । (ପୁଣି ଚିତ୍ର ଦେଖି ବସିଲେ) ମନ ! ଶତ ଧିକ୍ ତୋତେ । ଯାହାତାହା କଥାକୁ ପୁଣି ସ୍ମରଣ କରାଇଦେଉ କାହିଁକି ? ଅସହାୟା ନିରପରାଧିନୀ ଅବଳା ପ୍ରତି ମୋହାନ୍ଧ ଜଣେ ଗର୍ବିତ ରାଜାର ଅମାନୁଷିକତା ଦେଖି ପୃଥିବୀରେ ପ୍ରଳୟର ସୃଷ୍ଟି ହେଲି ନାହିଁ ? ଆକାଶ ଭାଙ୍ଗିପଡ଼ିଲା ନାହିଁ କାହିଁକି ? ରାଜା ଦୁଷ୍ମନ୍ତ ଆଜି ପ୍ରେମ-ଯୁଦ୍ଧରେ ପରାଜିତ ହୋଇଛି । ତଥାପି, ସ୍ମୃତି, ତୋର ଟିକେ ହେଲେ ଦୟା ହେଲା ନାହିଁ ? ସବୁ ବୁଝିଛି—ସବୁ ଦୈବର ଖେଳ—ଭାଗ୍ୟର କପଟ । (ବାତୁଳପରି) କ୍ଷମାକର କ୍ଷମାକର ପ୍ରିୟେ ! ରାଜା ଦୁଷ୍ମନ୍ତ ମୋହାନ୍ଧ, ଗର୍ବାନ୍ଧ । ସେ ନିଜ ପତ୍ନୀ ପ୍ରତି ଚରମ ଅବହେଳା କରିଛି—ପୁରୁବଂଶରେ କାଳିମାବୋଳି ଦେଇଛି । ସତ୍ୟ, ଭାଗ୍ୟର ଦୋଷ, ଆସ ପ୍ରିୟେ !—(ହାତ ପାତିଲେ ) (ନେପଥ୍ୟରୁ ଶୁଭିଲା—'ଆସ' )

ରାଜା—(ଚମକି) କିଏ ?

ଭାଗ୍ୟ—( ସହସା ପ୍ରବେଶ କରି ହସି ହସି ) ମୁଁ ।

ରାଜା—ଏଁ ତୁମେ ? ତୁମକୁ କେଉଁଠି ଦେଖିଲାପରି ମନେହୁଏ ।

ଭାଗ୍ୟ—ହଁ, ମୁଁ ତ ସେଇଆ ଭାବୁଛି ।

ରାଜା—କଅଣ ଭାବୁଛ ?

ଭାଗ୍ୟ—ଯାହା ତମେ ଭାବୁଛ ।

ରାଜା—ବଡ଼ ମାୟାବିନୀ ତୁମେ ?

ଭାଗ୍ୟ—କେଜାଣି ?

ରାଜା—କାହିଁକି ? କାହିଁକି ତୁମେ ଉଲ୍କାପରି ଆସି ସମୟେ ସମୟେ ମୋତେ ବିବ୍ରତ କରି ପୁଣି କୁଆଡ଼େ ଚାଲିଯାଅ । କିଏ ତୁମେ ? ସତ କହ, ନଚେତ୍··· (ଧରିବାକୁ ଉଦ୍ୟତ)

ଭାଗ୍ୟ—(ହସି ଦୂରକୁ ଯାଇ) ହଁ ହଁ, ସେଇଠି ଥାଅ, ଦୂରଦୂରର ତୁମ ସହିତ ଖେଳିବାକୁ ମୋତେ ଭାରି ସୁଖ ଲାଗେ ।

ରାଜା—କିନ୍ତୁ ତୁମର ପରିଚୟ ?

ଭାଗ୍ୟ—ପାଇନ ? ଅନେକଦିନୁ ତ ପାଇଚ ।

ରାଜା—କେବେ କେଉଁଠି ?

ଭାଗ୍ୟ—ଏଇତ, ଏଇନେ ମୋ' କଥା କହୁଥିଲ ।

ରାଜା—କାହିଁ ? କିଛି ତ କହି ନାହିଁ ।

ଭାଗ୍ୟ—ଠିକ୍ ମନେ ଅଛି ?

ରାଜା—ତୁମେ କ'ଣ ପାଗଳୀ ?

ଭାଗ୍ୟ—(ହସି) ତା'ହେଲେ ତୁମେ ପାଗଳ ।

ରାଜା—ଓଃ, କିଏ ତୁମେ ? ବାରବାର ମୋତେ ଆସି ପ୍ରତାରିତ କରୁଛ ।

ଭାଗ୍ୟ—ମୁଁ ଶକୁନ୍ତଳା । ଥାଅ ରଜା, ମୁଁ ଯାଉଛି ।

(ସାହସା ଅନ୍ତର୍ଦ୍ଧାନ ହୋଇଗଲେ)

ରାଜା—(ଫେରି ଚମକି ଚାହିଁ) ଶକୁନ୍ତଳା ? କାହିଁ ? କୁଆଡ଼େ ଗଲ ? ଏ ତ...କେହି ତ ନାହିଁ । ସଖା, ସଖା ! ଏଇ ଦେଖ, ଯାଅ ପଥରୁଦ୍ଧ କର ତା'ର । (ଠିଆହେଲେ)

(ଦୂର ନେପଥ୍ୟରୁ ଗୀତ ଭାସିଆସିଲା)

ଦୂରଗାଳ ଯବନିକା ଭେଦି-ଆ-ଆ-ଆ
ଆସ ନୟନ ତାରା, ଆ-ଆ-ଆ ॥୦॥

ମରମ ନିଃଶ୍ୱାସେ ଗଢ଼ା
ହତାଶ ବସନ ବେଢ଼ା
ନିରାଶା ପୀଡ଼ିତ ଥରେ, କରୁଣ ନୟନେ ଚାହିଁ ॥୧॥

ଆସ ଗୋ ସରଗ ଦେବୀ,
(ମୋର) ଅନୁତାପ ନେତ୍ର ନୀରେ'
ଧୋଇଦେଇ ତନ୍ ତବ
ଭୁଲିଯାଅ, ଭୁଲିଯାଅ- ଆ-ଆ-ଆ ॥୨॥

(ଗୀତର ଲହରୀ ଧୀରେ-ଧୀରେ ଉଭାଇ ଆସିଲା—
ରାଜା ସେହି ଆଡ଼କୁ ଅଗ୍ରସର ହେଲେ)

ରାଜା—କିଏ ତୁମେ ? ମୋ ଦୁଃଖରେ ଦୁଃଖୀ, ଅଥବା ମୋ'ରି ପରି ଭାଗ୍ୟହୀନା—ବିରହ ବ୍ୟଥାରେ ଜଳି, ହାହାକାର ଅତୃପ୍ତ ବାସନାନେଇ ଏଣେତେଣେ ଘୂରିବୁଲୁଛ ? କିଏ ଗାଅ ଏ ଅନ୍ତର ବେଦନା ?

(ଅନ୍ୟ ପାର୍ଶ୍ୱରୁ କଞ୍ଚୁକୀ, ମାତଳୀ ଓ ବିଦୂଷକଙ୍କପ୍ରବେଶ)

ମାତଳୀ—ମହାରାଜାଙ୍କର ଜୟହେଉ ।

ରାଜା—(ଅଶ୍ରୁ ମୁଞ୍ଚନ କରି) ଦେବ ସାରଥୀ । ଦେବାଧିଦେବ ଦେବରାଜଙ୍କର ସମସ୍ତ ମଙ୍ଗଳ ତ ?

ମାତଳୀ—ସେଇ ସମ୍ବାଦନେଇ ଆସିଛି ମହାରାଜ ! ଆପଣଙ୍କ ମିତ୍ର ଦେବରାଜ ଇନ୍ଦ୍ର ବର୍ତ୍ତମାନ ବିପଦାପନ୍ନ । କାଳନେମୀ ରାକ୍ଷସର ଦୁର୍ଜ୍ଜୟ ସନ୍ତାନମାନେ ସ୍ୱର୍ଗରେ ଅତ୍ୟାଚାର କରୁଛନ୍ତି । ଦେବତା ପ୍ରପୀଡ଼ିତ । ତେଣୁ ଆପଣଙ୍କ ଆଗମନର ଅଭିଳାଷନେଇ ମୋତେ ପଠାଇଛନ୍ତି । ଅବିଲମ୍ବେ ସ୍ୱର୍ଗରକ୍ଷା ନିମିତ୍ତ ବିଜୟ କରନ୍ତୁ । ଏଇ ଅନୁରୋଧ ।

ରାଜା—ଅନୁରୋଧ ନୁହେଁ, କହ ଆଦେଶ । ଦେବ-କାର୍ଯ୍ୟରେ ସାହାଯ୍ୟଦେବା ମୋର କର୍ତ୍ତବ୍ୟ । ସଖା, ମନ୍ତ୍ରୀଙ୍କୁ କହ, ମୁଁ ଫେରିବାପର୍ଯ୍ୟନ୍ତ ରାଜ୍ୟ ଦାୟିତ୍ୱ ତାଙ୍କଉପରେ ଅର୍ପଣ କଲି । କଞ୍ଚୁକୀ ! ଆମ୍ଭର ରଥ, ସାଜ ଓ ଧନୁଶର ଶୀଘ୍ର ନେଇଆସ । ଆସନ୍ତୁ ମାତଳୀ ।

ମାତଳୀ—ମହାରାଜଙ୍କର ଜୟ ହେଉ ।

(ସମସ୍ତଙ୍କ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

(ଅରଣ୍ୟ—ବନ ବାଳା ଗଣ ଗୀତ ଗାଇ-ଗାଇ ଯାଉଛନ୍ତି)

ଉଇଁଲେଣି ନବଭାନୁ ଦେଖ ପୂର୍ବ ଆକାଶେ,
ପାଖୁଡ଼ା ମେଲାଇ ସରେ କମଳିନୀ ବିକାଶେ ।୦।

କୁମୁଦ ମୁଦଇ ମୁଖ ଆଉ କି ଅଛି ରେ ସୁଖ
ପ୍ରିୟବନ୍ଧୁ ବିରହରେ ବିରହିଣୀ ବିରସେ ।୧।

ମହୁଆ ମଧୁପ ଅଳି ଫୁଲ ବନେ ବୁଲି-ବୁଲି
ଫୁଲବାଳା କାନେ-କାନେ ଢାଳେ ପ୍ରୀତି ସରସେ ।୨

(ଗାଇ-ଗାଇ ପ୍ରସ୍ଥାନ)

(ଚିନ୍ତିତଭାବେ ବିଦୂଷକଙ୍କ ପ୍ରବେଶ)

ବିଦୂଷକ—ଭଲ କଥା ହେଲା ! ଦିନକୁ ଦିନ ବଢିଯାଏ— କେତେ ଏବେ ଦାନ୍ତ ଚିପି ବସିବି ? ଗୁଣ୍ଡାଟି ତ ପାଟି ଭିତରେ—ତାକୁ ନ ଗେ଼ଲବାଇ ଏମିତି କେତେ ଜାକି ଧରିବି ? ଦୁନିଆଁ ଭିତରେ କିଏ ରଖିଲାଣି ନା ମୁଁ ରଖିବି ? ଆଉ ରଖି ପାରିବି ନାହିଁ । ନା, ଆଉ ହବନାଇଁ । ପେଟ ଭିଡ଼େଇଲାଣି । ଅଜଗିଲାପରି ଖାଲି ବାହାରକୁ ଆସିବାପାଇଁ ହାବୁକା ମାରୁଛି । ଆଉ ସମ୍ଭାଳିପାରିବ ନାହିଁ । ମହାରାଜଙ୍କ ଗୁପ୍ତ ପ୍ରଣୟ କଥା କଣ ସବୁଦିନେ ଏମିତିଲୁଚି ରହିଥିବ ? ଯାଏଁ, ଯୁଦ୍ଧରୁ ମହାରାଜ ବାହୁଡ଼ିବା ପୂର୍ବରୁ ଯେମିତି ହଂସବତୀଙ୍କ କାନରେ କଥାଟା ପକାଇ ଦିଏଁ । ଆମର କଣ ଅଛି ହୋ ? କିଛି ତ ପୁରସ୍କାର ମିଳିଯିବ—ବ୍ରାହ୍ମଣୀ ବିଚାରି କେତେ଼ ଖୁସିଟାଏ ନ ହେବ ? ନୋହିଲା ବେଳକୁ ଭୋଜନଟାଏ ତ ଚଉକଣିଆ ମିଳିବ ନିଶ୍ଚେ । ଯିବା,ଆଉ ମଠ କଲେ ଚଳିବ ନାହିଁ । (ପ୍ରସ୍ଥାନ)

(ହସି ଗାଇ ଗାଇ ଭାଗ୍ୟ ପ୍ରବେଶ)

ଭୁଲିବାର ଯାହା ଭୁଲାଇ ରଖେ ମୁଁ
ଫିଟିବାର ହେଲେ ଫିଟାଏଁ
ସରଗେ କାହାକୁ ବସାଏଁ, କାହାକୁ
ରସାତଳେ ପୁଣି ଲୁଟାଏ ।

ସବୁ ଖେଳଘର ମୋର
ବଳ ତ ନାହିଁ କାହାର
ଭାଙ୍ଗିବ ଯୋଡ଼ିବ
ମୋ' ବିନା କିଏ ସେ
କାହାରର କିଏ ? ପୁଛାଏ ।

(ଗାଇ ଗାଇ ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

(ଅପ୍ସରା ଭୁବନ—ଦୁଷ୍ମନ୍ତ ଓ ମାତଳୀଙ୍କ ପ୍ରବେଶ)

ମାତଳୀ—ମହାରାଜ ! ଦେବାସୁର ଯୁଦ୍ଧରେ ଆପଣ ଯେପରି ବୀରତ୍ୱର ପରିଚୟ ଦେଇଛନ୍ତି, ସେଥିରେ ଦେବରାଜ ଯେଉଁ ସମ୍ମାନ ଦେଲେ ତାହା ଆପଣଙ୍କ କାର୍ଯ୍ୟ ତୁଳନାରେ କିଛି ଅଧିକ ନୁହେଁ ।

ରାଜା—ବାସ୍ତବିକ୍ ମାତଳୀ, ଦେବରାଜ ଯେତେବେଳେ ମୋତେ ତାଙ୍କ ଆସନରେ ଏକ ସଙ୍ଗେ ବସାଇ ଶୁଭ ପୁଷ୍ପ ଦେଲେ, ମୁଁ ନିଜକୁ ଲଜ୍ଜିତ ବୋଧକଲି ।

ମାତଳୀ—ସେପରି କହନ୍ତୁ ନାହିଁ ମହାରାଜ । ସେ ଆପଣଙ୍କ ମହତ୍ତ୍ୱପଣିଆଁ ସିନା ! (ଦୂରକୁ ଦେଖାଇ) ଦେଖନ୍ତୁ, ମହର୍ଷି କଶ୍ୟପଙ୍କ ଆଶ୍ରମ । କ୍ଲାନ୍ତି, ଅବସାଦ ମେଣ୍ଟାଇବା ପାଇଁ ଉପଯୁକ୍ତ ସ୍ଥାନ ଏହା । ଆପଣ ବୁଲିବୁଲି ଅରଣ୍ୟର ଶୋଭା

ଦେଖିଥାନ୍ତୁ । ମୁଁ ରଥନକଟରେ ଅଛି । ଯଥା କାଳରେ ସ୍ୱରଣ ମାଳତୀଙ୍କ ସାକ୍ଷାତ କରିବ ।

ରାଜା—ଉତ୍ତମ ।

(ମାତଲୀଙ୍କ ପ୍ରସ୍ଥାନ)

ରାଜା—(ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି) ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ ଏହି ଅରଣ୍ୟର ମାୟା । ପଥିକର ପଥଶ୍ରାନ୍ତି, ଭାବୁକର ଭାବନା ସବୁ ଦୁଃଖ ଉପଶମ ହୁଏ ଏଇଠାରେ, ଦାସଦାସୀପୂର୍ଣ୍ଣ ରାଜପ୍ରାସାଦର ସୌଖୀନ ପରିପାଟୀଠାରୁ କେତେ ସୁଖ ଦାୟକ ଏ ଅରଣ୍ୟର ପଶୁ ପକ୍ଷୀଙ୍କ ଆନନ୍ଦ କୋଳାହଳ ସତେ । (କିଛିଏ ଭାବି) ଏମିତି ବନେ ଏହିମଳି ବନ ମଧ୍ୟରେ ମୁଁ କନକଭଳ ବିବାହ କରିଥିଲି ବନବାଳା ଶକୁନ୍ତଳାଙ୍କୁ । ବନର ତମସ୍ୱୀ କନ୍ୟା ମନୀଷିର ତାଙ୍କ ନେଇ ଯାଉଥିଲି ଦମ୍ଭୀନା ପ୍ରଶ୍ନ । ଗବାକ୍ଷ, ଅମାତ୍ୟମାନେ ରାଜା ଦୁଷ୍ମନ୍ତ ଫେରାଇ ଦେବ ସେ ପ୍ରଣୟକୁ ଅସ୍ୱୀକାର କରି । ଅଜ ଗୋଟି ଗୋଟି ହୋଇ ମନେ ପଡ଼େ ସବୁ । କାହିଁ, କାହିଁ ମୋର ପ୍ରିୟା ଶକୁନ୍ତଳା— (ଉଦ୍‌ଭ୍ରାନ୍ତ ହୋଇପଡ଼ି ପ୍ରିୟା ଅଛି ସମସ୍ତ ମରେ ଶାନ୍ତ ଭାବେ ଆଗ୍ରଗାମୀ ହେଲେ)

ନେପଥ୍ୟ—ହାଇ ମାର । ମାର୍ ହାଇ । ଆଁ କର । ମୁଁ ତୋ ଦାନ୍ତ ଗଣିବ ।

ରାଜା—(ନୀରବରେ କାନପାତିଲେ)

ନେପଥ୍ୟ—ଆରେ, ମୁଁ କହୁଛି ପରା—ଆଁ କର । ଦେଖିବୁ, ସିଂହଛୁଆ ! ମୋ କଥା ମାନିବୁ ନାହିଁ ? ମାଡ଼ ଦେବ । ହାଇ ମାର ।

ତାପସୀ ନେପଥ୍ୟ—ଆରେ ଏ ଦୁଷ୍ଟ ! ସବୁବେଳେ ତୋ'ର ଏ ଦୁଷ୍ଟ ପ୍ରକୃତି ଗଲାନାହିଁ ? କାହିଁକି ସେ ସିଂହ ଛୁଆଟାକୁ ବାଡେଇଛୁ ? ଛାଡ଼ିଦେ ତାକୁ । ଛାଡ଼ ।

ରାଜା—(ଆଶ୍ଚର୍ଯ୍ୟ ହୋଇ) କିଏ ସେ ଅଦ୍ଭୁତ ବାଳକ ? ସିଂହଛୁଆ ସହିତ ଖେଳ ? ଏ ତ ସାଧାରଣ ମାନବପକ୍ଷେ ଆଦୌ ସମ୍ଭବ ନୁହେଁ । ତେବେ ? ତେବେ କଅଣ ?···(ହୃଦୟ ସ୍ପର୍ଶିଧରି) ଧଡ଼ୁଧର ହୃଦୟ । ସହସା କମ୍ପି ଉଠୁଛି କାହିଁକି ?

ନେପଥ୍ୟେ ବାଳକ—ମୋତେ ତୁ ଛାଡ଼୍ । ମୁଁ ନିଶ୍ଚେ ତା ଦାନ୍ତ ଗଣିବ । ମୋ କଥା ମାନିବ ନାହିଁ ? ନଇଲେ ବାଡେଇ ବାଡ଼େଇ ମାରିଦେବ ତାକୁ ।

ନେପଥ୍ୟେ ତାପସୀ—ବାବା, ଛାଡ଼ ଦେ ତାକୁ । ମୁଁ ତୋ'ପାଇଁ ଗୋଟେ କଣ୍ଢେଇ ସିଂହ ଆଣି ଦଉଛି । ତା'ର ଦାନ୍ତ ଗଣିବୁ । ଚାଲ, (ଅନ୍ତରାଳରୁ ଟାଣି ଟାଣି ଆଣିଲେ)

(ରାଜା କିଛିଏ ଦୂରେଇଗଲେ)

ବାଳକ—ଦେ, କାହିଁ ? ଦେ, ଖେଳନା ଦେ, ନୋଇଲେ ମୁଁ ସିଂହଛୁଆକୁ ଛାଡ଼ିବ ନାହିଁ ।

ତାପସୀ—ତୁ ବଡ଼ ଅମାନିଆଁ ହେଲୁଣି, ଦେଖୁଛି । ଚାଲ୍ ତୋ ମା'ପାଖକୁ, କହିବ ।

ବାଳକ—କାହିଁକି ମା' ପାଖକୁ ଯିବ ? ଖେଳନା ଦେ, ନୋଇଲେ ପରା ସିଂହଛୁଆକୁ ଛାଡ଼ିବ ନାହିଁ । ମୁଁ ତା ଦାନ୍ତ ଗଣିବ ।

ତପସ୍ୱିନୀ—(ହସି) ଛାଡ଼ ଦେ ଭଲା । ସେ ତା' ମା' ପାଖକୁ ଯିବ, କ୍ଷିର ଖାଇବ । ତୁ ତୋ ମା' ପାଖକୁ ଯିବୁ ଆ । ମୋ ବାପାଟା ପରା···

ବାଳକ— ନାହିଁ ମୁଁ କଛି ଶୁଣିବ ନାହିଁ । ତୁ ଆଗ ଖେଳନା ସିଂହ ଆଣି ଦେ ।

ତାପସୀ—ସହ୍ହ, ସୁଭଦ୍ରା ! ଦେଲୁ ସେ ମାଟି ସିଂହଟାକୁ ଅଣ । ନଇଲେ ବଚ୍ଚାର ସିଂହ

ଛୁଆଟିର ଜୀବନ ନେଇଯିବ ଇଏ, ଦେଖାଗଲାଣି। ଓହୋ, କେଡ଼େ ଅଝଟିଆ ପିଲା ତୁମେ ଗୁଡ଼ !

ବାଳକ—ନା, ଆଣି ଦେଲାଯାଏଁ ଟାଣୁଥିବ ।

ରାଜା —ଆହା ! ବାଳକର ଏ ପ୍ରକୃତି ମୋତେ କାହିଁକି ବଡ଼ ସୁନ୍ଦର ଲାଗୁଛି । ଆହା ହା ! ଏ ଦବେଇଁ ମଧୁର କଥା ଯେ ପିତାମାତାର କାନ ପବିତ୍ର କରୁଥିବ, ଧନ୍ୟ ତାଙ୍କର ଜୀବନ । ଶିଶୁର ମଧୁର ସରଳ ମୁଖ ଚୁମ୍ବନ ନ ଥିଲେ ଜୀବନ ବୃଥା ପରା !

ତାପସୀ—ଆରେ, ଏଣେ ଆ ।

ବାଳକ—(ଟାଣିହୋଇ) କାହିଁ ଦେ, ଖେଳନା ଦେ ।

ତାପସୀ—(ଫେରିଆଡ଼େ ଚାହିଁ) ଭଦ୍ର ! କିଏ ଆପଣ ଜାଣେ ନାହିଁ । ଦୟାକରି ଟିକିଏ ଏ ବାଳକଠାରୁ ଏ ସିଂହ ଶିଶୁକୁ ଛଡ଼ାଇ ଦେବେ । ଇଏ ମତେ ଘାରି ହଇରାଣ କଲାଣି ।

ରାଜା—(ନିକଟକୁ ଯାଇ ବାଳକକୁ ଟାଣିଆଣି) ଋଷି କୁମାର ! ତୁମର ଏ ପ୍ରବୃତ୍ତି ହେଲା କିପରି ?

ତାପସୀ—ଏ ତ ଋଷିକୁମାର ନୁହେଁ ।

ରାଜା —ହଁ, ଆଚରଣରୁ ସେହିପରି ଅନୁମାନ କରେଁ । ମାତ୍ର ଏଠାକୁ ତ ଅନ୍ୟ କେହି ଆସିବା ଅସମ୍ଭବ । (ସ୍ୱଗତଃ) ମନ ଏଡ଼େ ଉଚ୍ଛନ୍ନ ହୁଏ କାହିଁକି ? କିଏ ଏ ବାଳକ ? ନିଜ ସନ୍ତାନପରି କାହିଁକି ହୃଦୟରେ ଆନନ୍ଦ ଆସିଲା, ଲୋମ ଟାଙ୍କୁରି ଉଠିଲା ? (ପ୍ରକାଶ୍ୟେ) ତାପସୀ, ଏ କଅଣ ଋଷି ବାଳକ ନୁହେ ?

ତାପସୀ—ଏ ତ ବଡ଼ ଅସମ୍ଭବ କଥା । ସେ ଏଡ଼େ ଦୁଷ୍ଟ ଯେ କହିହେବ ନାହିଁ । ଆପଣଙ୍କ ପାଖେ ଏମିତି ଶାନ୍ତପିଲାଟିପରି ରହିଲା କେମିତି ? (ଚାହିଁ) ଆରେ, ଆପଣଙ୍କ ରୂପ ସଙ୍ଗେ ତା'ର ରୂପ ତ···

ରାଜା—(ବାଳକର ଗାଲରେ ହାତ ମାରି) ବାଳକ ! (ତାପସୀ ପ୍ରତି) ତପସ୍ୱିନୀ, ଏ କଅଣ ଋଷି ବାଳକ ନୁହେ ?

ତାପସୀ—ନା ।

ରାଜା —ତେବେ କେଉଁ ବଂଶରେ ଜନ୍ମ ?

ତାପସୀ—ପୁରୁବଂଶରେ ।

ରାଜା—(ଆଶ୍ଚର୍ଯ୍ୟ ହୋଇ ଥରେ ତାପସୀକୁ ଥରେ ବାଳକକୁ ଚାହିଁ) ପୁରୁବଂଶରେ ? ତାପସି ! ଏହା କ'ଣ ସତ୍ୟ ?

ତାପସୀ—ହଁ ମହାଭାଗ ! ପୁରୁବଂଶରେ ବାଳକର ଜନ୍ମ ।

ରାଜା—ପୁରୁବଂଶରେ ? ପୁରୁବଂଶରେ କିଏ ତୁ ବାଳକ ! (ପୂର୍ବପରି ଆଦରକରି) କେଉଁ ପିତା ତୋର ସୁଧା ମୁଖ ଚୁମ୍ବନକରି ଜୀବନ ସାର୍ଥକ କରିଛି ? (ତାପସୀ ପ୍ରତି) ତପସ୍ୱିନୀ, ମୋର ସନ୍ଦେହ ହୁଏ···ପଚାରିବି ?

ତାପସୀ—ପଚାରନ୍ତୁ । କି ସନ୍ଦେହ ?

ରାଜା—ପୁରୁବଂଶରେ ଜନ୍ମ । ଏ ମନୁଷ୍ୟ ହୋଇ ଏଠାକୁ ଆସିଛି କିପରି ?

ତାପସୀ—ଭଦ୍ର ! ସତକଥା, ମନୁଷ ଏଠିକି ଆସି ପାରନ୍ତି ନାହିଁ । ଏହାର ମାଆ ଅପ୍‌ସରାର କନ୍ୟା । ଦେବଗୁରୁ ମାରିଚଙ୍କ ଆଶ୍ରମରେ ଏହାର ଜନ୍ମ ହୋଇଛି ।

ରାଜା—(ଚମକି ବାଳକକୁ ଚାହିଁ) ସେହି ତେବେ, ସେହି ଛବି, ସେହି ମାଧୁରୀ, ସେହି ଢଳ ଢଳ ସକରୁଣ ନୟନ, ତେବେ କିଏ ? ପୁଣି ପୁରୁ ବଂଶରେ—ଅପ୍‌ସରାର କନ୍ୟା ? ବିଧାତା ! ଏତେ ଦିନେ କି ସେ ଆଶା ପୂରିବ ? (ଚାହିଁ)ଠିକ୍ ସେହି ମୁଖର ଛଟା ତ । ଦର୍ପଣରେ ସେହି ମୁଖର ପ୍ରତିବିମ୍ବ ପରି ଦିଶେ ।

ବାଳକ—କାହିଁ ଦେ, ନୋଇଲେ ଯାଉଚ । ମୁଁ ସିଂହ ପିଲାର ଦାନ୍ତ ଗଣେଁ ।

ରାଜା—(ବାଳକକୁ ଧରି) ଭଦ୍ରେ ! ଏ ବାଳକ କେଉଁ ରାଜର୍ଷିଙ୍କ କୋଳ ମଣ୍ଡନ କରିଛି ?

ତାପସୀ—ଛି ଛି, କିଏ ସେ ପତ୍ନୀ-ତ୍ୟାଗୀର ନାମ ଧରିବ ?

ରାଜା—(ସ୍ୱଗତ) ତେବେ ଏ କି ସେହି ମଣି ? ପ୍ରକୃତରେ ଏପରି କମର୍ମ-ପତ୍ନୀ ତ୍ୟାଗ ପରି ଅଧମ ଆଚରଣ କରିବ କିଏ ? (ବାଳକକୁ ଚାହିଁ) ଠିକ୍ ସେହି ଛବି । (ପ୍ରକୃଷ୍ଟିତ ହୋଇ) ଆଖି, ତୁ ଭୁଲ୍ କରୁନାହିଁ ତ ? ଏ ସ୍ୱପ୍ନ ନା ମାୟା ?

(ସୁଭଦ୍ରାପ୍ରବେଶ)

ସୁଭଦ୍ରା—(ଖେଳନା ମୟୂର ଆଣି) ହେଇ ନେ । ଏ ଶକୁନ୍ତଟି କେଡ଼େ ସୁନ୍ଦର ଦେଖ ।

ବାଳକ—(ହଠାତ୍ ଫେରି ଚାହିଁ) କାହିଁ ? ମୋ ମଆ କାହିଁ ?

ଦୁହେଁ—(ହସିଲେ)

ତାପସୀ—ଆରେ, ତୋ ମାଆ କାହିଁ ? ଭଦ୍ର । ଏପିଲା ମା'କୋଳ ଗୁଡ଼ ଆସେ ନାହିଁ । ଶକୁନ୍ତ ନାମ ସାଙ୍ଗରେ ତା'ମା'ର ନା ମିଳୁଚି ବୋଲି ମା'କୁ ଖୋଜୁଛି ।

ସୁଭଦ୍ରା—ଆରେ, ତୋ ମାଅ ନହେ । ଏ ମୟୂର ନେ, ଖେଳ । (ବାଳକ ହାତ ପରାଇ ଦେଲା)

ରାଜା—(ସ୍ୱଗତ) ଶକୁନ୍ତ ନାମ ସଙ୍ଗେ ମା'ର ନାମ ମେଳଅଛି । ତେବେ ମଧ ସନ୍ଦେହ, ତେବେ ମଧ ପାପମନ ଡର ରହୁଚ ? (ବାଳକକୁ ପୁଣି କୋଳ ନିକଟକୁ ଅଣି) ବାଳକ ! କଥା କହ ବାଳକ !

ସୁଭଦ୍ରା—ଅରେ, ଯୁ ହାତରେ ରକ୍ଷାକାଣ୍ଡ କାହିଁ ?

ରାଜା—ଓଃ, ଏଇଠି ପଡ଼ିଛି । ମୁଁ ସିଂହ ଶିଶୁକୁ ଛଡ଼ାଇବାବେଳେ ଖସି ପଡ଼ିଯାଇଛି । (ଆଣିବାକୁ ଗଲେ ଓ ଧରିଲେ)

ତାପସୀଦୁହେଁ—ଛୁଇଁବେ ନାହିଁ, ଛୁଇଁବେ ନାହିଁ । (ରଜା କାଣ୍ଡଟି ଧରିବାର ଦେଖି) ସତ୍ୱ ! ଏ କଅଣ ? ଏମିତି କଅଣ ହେଲା ? ( ଗୁଡ଼ରେ ହାତମାରି ମୁହଁକୁ ଚାହିଁ ରହିଲେ)

ରାଜା—କାହିଁକି ? ବାଳକର କ'ଣ କିଛି କ୍ଷତି କରିଛି ମୁଁ ?

ତାପସୀ—ନା, ଶୁଣନ୍ତୁ । ଏ ରକ୍ଷାକାଣ୍ଡ ଅପରାଜିତା ସୁରମହୌଷଧି । ଭଗବାନ ମାରିଚ ଏ କାଣ୍ଡ ବାଳକର ହସ୍ତରେ ବାନ୍ଧିଦେଇ କହିଥିଲେ, ଏହାର ଆପଣାର ଲୋକ କିମ୍ବା ବାପ ମାଆଙ୍କ ଛଡ଼ା ଯେ ଛୁଇଁବ; ଏ କାଣ୍ଡ ତାକୁ ସାପପାଲଟି କାମୁଡ଼ିବ ।

ରାଜା—ଏ କଅଣ ସତ୍ୟ ?

ସୁଭଦ୍ରା—ଅନେକ ସ୍ଥାନରେ ଦେଖାଯାଇଛି । ସତ୍ୟ ।

ରାଜା—(ବାଳକକୁ ପୁଣି କୋଳକୁନେଇ ସ୍ୱଗତଃ) ତେବେ ? ତେବେ, ଜଗଦୀଶ୍ୱର ! କିଏ ଏ ବାଳକ, କହ । ଅନୁମତି ଦିଅ-କୋଳକରି ବାଳକର ମୁଖ ଚୁମ୍ବନ କରି ଧନ୍ୟ ହେବି ।

ତାପସୀ—ଆସ ଆସ । ଏ ଆଶ୍ଚର୍ଯ୍ୟ କଥା ଶକୁନ୍ତଳାକୁ କହିଦେବା । (ତରତର ହୋଇ ପ୍ରସ୍ଥାନ)

ରାଜା—(ବାର ବାର ବାଳକର ମୁଖ ଚୁମ୍ବନକଲେ)

ବାଳକ—(ହାତରୁ ମୟୂରଟି ଖସି ପଡ଼ିଲା) ନାନ, ଦେ, ମୋତେ ମୟୂରଟି ଦେ ।

ରାଜା—ବାବା, ଦରିଦ୍ରର ନିଧି । ଆ ବାବା କୋଳକୁ ଆ । ପବିତ୍ରକର—ପାପ କୋଳ ପବିତ୍ର କର ।

ବାଳକ—(ଠାଣିହୋଇ) ଛାଡ ଛାଡ଼ ମୋତେ । ମୁଁ ମୋ ମାଆପାଖକୁ ଯିବି । ଜାନମାନେ ଗଲେ ବାହାରି ।

ରାଜା—ଆଉ ଦଣ୍ଡେ ରହ ପୁତ୍ର । (ମୁଖଚୁମ୍ବନ)

ବାଳକ—ଏଁ ? ମୋତେ କାହିଁକି ପୁତ୍ର ବୋଲି କହିଲ ? ତୁମେ ମୋ ପିତା ନୁହଁ । ମୋ ପିତା ମହାରାଜା ଦୁଷ୍ମନ୍ତ ।

ରାଜା—(କାନ୍ଦି) ହଁ, ସେହି ନଷ୍ଟୁର ଦୁଷ୍ମନ୍ତ । (ଠିକ୍ ଏହି ସମୟରେ ଶକୁନ୍ତଳା ଓ ତାପସୀ ଦୁହେଁ ପ୍ରବେଶ କଲେ । ବାଳକ ରାଜାଙ୍କ କୋଳରୁ ଛଡ଼ାଇ ହୋଇ ଶକୁନ୍ତଳାଙ୍କ ପାଖକୁ ଯାଇ ତାକୁ କୁଣ୍ଢାଇ ଧରିଲା)

ବାଳକ—ମା, କିଏ ସେ ଏ ?

ରାଜା—(ଅଶ୍ରୁନୟନରେ ଆବେଗରେ ଶୀଘ୍ର ଶକୁନ୍ତଳାଙ୍କର ହାତ ଧରି) ପ୍ରିୟେ ! ହୃଦୟେଶ୍ୱରୀ, କ୍ଷମାକର ମୋତେ ।

ଶକୁନ୍ତଳା— ( ଆଣ୍ଠୁମାଡ଼ି ଦୁଷ୍ମନ୍ତଙ୍କ ପାଦଧରି ) ପତି ! ଦେବତା !!!

( ଯ ବ ନି କା ପ ତ ନ )



# ମୋ'କଥା

ବାରିପଦାରେ ଥାଏଁ—୧୯୨୨-୨୩ ସାଲ । ହରିଶ୍ଚନ୍ଦ୍ର ନାଟକ ଲେଖିବାକୁ ମନହେଲା । ସେଇଟି ଏ ନାଟକ ଲେଖା । 'ସେ ବେଳ' ଆଉ ଆଜିର 'ଏ ବେଳ' ଭିତରେ ବହୁତ ତଫାତ୍ । ନାଟକଟିର ପୁନର୍ମୁଦ୍ରଣ ହୁଏ ୧୯୬୭ ସାଲରେ । କେତେ ସ୍ଥାନରେ ଅଭିମତ ହେବାର ଦେଖି ପୁଣି ପ୍ରକାଶ କଲେ ଅରୁଣୋଦୟ ଛାପାଖାନା । ସ୍ୱର୍ଗତ ବନ୍ଧୁ ଚଉଧୁରୀ ମଧୁସୂଦନ ମହାପାତ୍ରେ ବଡ଼ ଆଗ୍ରହରେ ଛାପିଥିଲେ ବହିଟିକୁ । ଯେମିତି ଥିଲା, କିଛି ବଦଳା ବଦଳି ନ କରି ସେମିତି ଦେଉଛି ।

୧୯୬୯ ସାଲ । ନାଟ୍ୟକାର

## ପରିଚୟ

**ପୁରୁଷବର୍ଗ :**

ହରିଶ୍ଚନ୍ଦ୍ର, ବିଶ୍ୱାମିତ୍ର, ଇନ୍ଦ୍ର, ଧର୍ମ, ବୃହସ୍ପତି, ବିଦୂଷକ, ମାଙ୍ଗଲ୍ୟ, ମନ୍ତ୍ରୀ, ସେନାପତି (ମହେନ୍ଦ୍ର), ରୋହିତ, ବୃଦ୍ଧ ଭିକ୍ଷୁ, ବାଳକ, ମାଳାଦ୍ର ଭୂତଆ, ବ୍ରାହ୍ମଣ, ଇନ୍ଦ୍ର, ନମୁଁଆ, ସୂତିକ, ସାରଥି, ଲୋକା ଓ ସାମା, ଚଣ୍ଡାଳଦ୍ୱୟ, ସନ୍ନ୍ୟାସୀ, ଗାୟକଦ୍ୱୟ, ଗୋପାଳ ଓ ଋଷିକୁମାରଗଣ, ଗୋପାଳ ବାଳକ, ସୈନିକଦ୍ୱୟ, ।

**ସ୍ତ୍ରୀବର୍ଗ :**

ଶୈବ୍ୟା, ବ୍ରାହ୍ମଣୀ, ଚଣ୍ଡାଳପତ୍ନୀ, ଚପଳା, ଚଞ୍ଚଳା, କମଳା, ସରଳା, ଗୋପାଙ୍ଗନୀ, ସହଚରୀଗଣ, ବିଦ୍ୟା, କୁଚକ, ଧନମା, ରଙ୍ଗିନୀ, —ଚଣ୍ଡାଳୁଣୀଗଣ,



# ହ ରି ଶ୍ଚ ନ୍ଦ୍ର

## ପ୍ରସ୍ତାବନା

( ସ୍ୱର୍ଗପୁରୀ ଅପ୍‌ସରାଗଣ ନୃତ୍ୟସହ ପ୍ରବେଶ ।)

ଗୀତ

ଫୁଲେ ଫୁଲେ ମହକେ ବାସ,
ପରାଗ ଅଶେ, ଉଡ଼ି ମଧୁପ ଆସେ,
ରସି କୁସୁମ ପ୍ରାଣ ।୦।
ଆସେ ସଞ୍ଜ ରାଣୀ
ହସେ ଫୁଲ ମଣି
ଖସେ ଅଳି ପୁଣି
ଆକୁଳିତ ପବନ, ଛନ ଛନ ମନନ,
ପ୍ରେମେ କରେ ହରଣ କୁସୁମ ବାସ ।

---

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

( ଇନ୍ଦ୍ରସଭା । ଇନ୍ଦ୍ର, ଧର୍ମ, ବୃହସ୍ପତି ପ୍ରଭୃତି ଦେବବୃନ୍ଦ ଆସୀନ )

ଧର୍ମ—କି ନିନ୍ଦା ! କି ଲଜ୍ଜା ! ନା, ଦେବରାଜ ! ଏ ଅପମାନ ଧର୍ମର ସହ୍ୟ ନୁହେ । ସାମାନ୍ୟ ମର୍ତ୍ତ୍ୟବାସୀଦ୍ୱାରା ଏ ଘୋର ଅପମାନ ? ମାନବ-ଦ୍ୱାରା ଦେବତାର ଅପମାନ !

ଇନ୍ଦ୍ର—ଦେବଗଣ ! ଏ ଅପମାନ କେବଳ ଧର୍ମ-ରାଜାଙ୍କର ନୁହେଁ, ଏ ସ୍ୱର୍ଗବାସୀଙ୍କର ଅପମାନ ।

ଧର୍ମ—ଖାଲି ତା ନୁହେଁ, ଦେବରାଜ ! ଦର୍ପାନ୍ଧ ମୁନି ତା'ର ତପଃ ପ୍ରଭାବରେ ବିଶ୍ୱଦ୍ୟା ସାଧନ କରିବାକୁ ତତ୍ପର । ନୂତନ ସୃଷ୍ଟି, ସ୍ଥିତି ଆଉ ଲୟ କରିବାକୁ ଉଦ୍‌ଯୋଗ କରୁଛି । ଏ କି ଧର୍ମର ସହ୍ୟ ? ଏ କି ଦେବତାର ସହ୍ୟ ? ଏ କି ସ୍ୱର୍ଗର ସହ୍ୟ ?

ଦେବଗଣ—କଦାପି ନୁହେ । କଦାପି ନୁହେ ।

ଇନ୍ଦ୍ର—ତେବେ ଉପାୟ ? ଉପାୟ କଅଣ ?

ଧର୍ମ—ଉପାୟ ?—ଦେବଗୁରୁ ବୃହସ୍ପତିଙ୍କର ଆଶୀର୍ବାଦ ।

ବୃହସ୍ପତି—ଶଚୀପତି ! କାତର ହେବେ ନାହିଁ । ଏ ସମସ୍ତ ଉଦ୍ୟମ ଅକ୍ଲେଶରେ ବଜ୍ରଧର ଚୂର୍ଣ୍ଣ କରିଦେଇ ପାରନ୍ତି । ଉପାୟ ? ବିଶ୍ୱାମିତ୍ରର ତପୋଭଙ୍ଗର ବ୍ୟବସ୍ଥା । ମାନବଦ୍ୱାରା ମାନବର ତପୋଭଙ୍ଗ ।

ଇନ୍ଦ୍ର—ମାନବଦ୍ୱାରା ତପୋଭଙ୍ଗ ! କିଏ ସେ ମାନବ ? କାହାଦ୍ୱାରା ?

ବୃହସ୍ପତି—ସେ ମାନବ ହୋଇ ମଧ୍ୟ ଦେବତେଜୋଧାରୀ, ଧର୍ମର ଅବତାର, ଦାନର ଦକ୍ଷିଣ ହସ୍ତ । ପୁଣ୍ୟଶ୍ଳୋକ ମହାତ୍ମା ହରିଶ୍ଚନ୍ଦ୍ର ।

ଇନ୍ଦ୍ର—ହରିଶ୍ଚନ୍ଦ୍ର !

ଧର୍ମ—ଉତ୍ତମ ପ୍ରସ୍ତାବ ! ଉତ୍ତମ ପ୍ରସ୍ତାବ, ଗୁରୁଦେବ ! ଏକସଙ୍ଗେ ଦୁଇ କାର୍ଯ୍ୟ । ହରିଶ୍ଚନ୍ଦ୍ରଙ୍କର ଧର୍ମ ପରୀକ୍ଷା, ସତ୍ୟନିଷ୍ଠାର ପରୀକ୍ଷା ଓ ସଙ୍ଗେ ସଙ୍ଗେ ବିଶ୍ୱାମିତ୍ରର ଦର୍ପଚୂର୍ଣ୍ଣ । ବିଶ୍ୱାମିତ୍ର ! କହୁ କ'ଣ ଜଗତରେ ଧର୍ମ ନାହିଁ ? ଧର୍ମର ବଳ ପୁଣି ନାହିଁ ? ଧର୍ମର ତେଜ ନାହିଁ ? ଚଣ୍ଡାଳର ପୁରୋହିତ ! ତୋର ସେ ଚଣ୍ଡାଳର ଯାଗ ପୂର୍ଣ୍ଣ ହେଲାନାହିଁ, ତେଣୁ ଜଗତରେ ଧର୍ମ ନାହିଁ ? ଧର୍ମର ବଳ ନାହିଁ ? ସ୍ଥିର ଆତ୍ମାଭିମାନ ! ଧର୍ମ ନାହିଁତ ଚଣ୍ଡାଳର ଯଜ୍ଞ ସଫଳ ନ ହେବାର କାରଣ ?—ଧର୍ମର ବିଦ୍ୟମାନତା, ଧର୍ମର ଅସ୍ତିତ୍ୱ, ଧର୍ମର ପ୍ରଭାବ ।

ଇନ୍ଦ୍ର—ଧର୍ମଦେବ । କ୍ରୋଧ ସମ୍ବରଣ କର । ସେ କେବଳ ଆପଣଙ୍କ ଅପମାନ ନୁହେଁ ସେ ସ୍ୱୟଂ ଅନନ୍ତଶୟନକାରୀ ନାରାୟଣ, ଚତୁର୍ମୁଖ ଧାତା, ଦେବଦେବ ମହାଦେବଙ୍କୁ ଅପମାନ କରିଅଛି । ଅଚିରେ ତାହାଁର ଉପଯୁକ୍ତ ଶାସ୍ତି ଭୋଗ କରିବ । ତାହାକି ପାରିବ ଧର୍ମ ଅଛି କି ନାହିଁ । ବୁଝିବ ଯେତେଦିନ ପୂର୍ବ, ପୂର୍ବ, ଆଉ ପଶ୍ଚିମ, ପଶ୍ଚିମ,—ତେତେଦିନ ଧର୍ମ ଧର୍ମ, ଆଉ ଧର୍ମ ଧ୍ରୁବ ।

ବୃହସ୍ପତି—ଦେବରାଜ ! ବିଶ୍ୱାମିତ୍ର ଯାଗ ଆରମ୍ଭ କରି ସାରିଲେଣି । ଶୀଘ୍ର ଶୀଘ୍ର ଆୟୋଜନ କରନ୍ତୁ । ଆପଣ ନିଜେ ବରୁଣରାଜଙ୍କ ସଙ୍ଗେ ଏ ବିଷୟରେ ପରାମର୍ଶ କରି ସମସ୍ତ ସୁବ୍ୟବସ୍ଥା କରନ୍ତୁ ।

ଅଗ୍ନି—ଦେବଗୁରୁ, ତପୋଭଙ୍ଗ ପରେ ହରିଶ୍ଚନ୍ଦ୍ର ଅଭିଶପ୍ତ ହେବେ ନିଶ୍ଚୟ । ମୁଁ ତେବେ ଏହି ସମୟରୁ ଯାଏଁ । ଧାର୍ମିକର ଧର୍ମ ପରୀକ୍ଷା ଲାଗି, ମୋତେ ମଧ୍ୟ କଷ୍ଟ ସହିବାକୁ ପଡ଼ିବ । ମର୍ତ୍ତ୍ୟରେ ଧାର୍ମିକର ଧର୍ମ ରକ୍ଷା ଲାଗି, ମାନ ରକ୍ଷାଲାଗି, ଦେବତାର ଦେବତ୍ୱ ରକ୍ଷା ଲାଗି, ଅଗ୍ନି ଆଜଠାରୁ ହେବ ଚଣ୍ଡାଳ । ମୁଁ ତେବେ ପ୍ରସ୍ତୁତ ହୁଏଁ ଗୁରୁ ! (ଆସନ ତ୍ୟାଗ)

ସମସ୍ତେ—ସାଧୁ, ସାଧୁ, ଉତ୍ତମ ପ୍ରସ୍ତାବ ।

ଧର୍ମ—ଆଉ ବିଳମ୍ବ କାହିଁକି ? ମୁଁ ମଧ୍ୟ ଅଗ୍ନିଙ୍କ ସଙ୍ଗେ ମର୍ତ୍ତ୍ୟକୁ ଯାଏଁ । ମର୍ତ୍ତ୍ୟରେ ବ୍ରାହ୍ମଣରୂପେ ରହିବ । ଯେତେଦିନ ଧାର୍ମିକର ମହତ୍ତ୍ୱ, ଧର୍ମର ଅସ୍ତିତ୍ୱ ପ୍ରକାଶ ନାହିଁ—ତେତେଦିନ ଧର୍ମଦେବ ହେବ ମର୍ତ୍ତ୍ୟବାସୀ—(ଆସନତ୍ୟାଗ) ଆସନ୍ତୁ ଅଗ୍ନି ଦେବ !

ବୃହସ୍ପତି—ଏ ମନ୍ତ୍ରଣା ବାସ୍ତବ ଦେବତା-ଉପଯୁକ୍ତ । ଆସନ୍ତୁ ଧର୍ମଦେବ, ଆସନ୍ତୁ ଅଗ୍ନିଦେବ, ମୁଁ ମଧ୍ୟ ସଙ୍ଗେ ସଙ୍ଗେ ବରୁଣରାଜଙ୍କ ସଙ୍ଗରେ ପରାମର୍ଶ କରି ଆପଣମାନଙ୍କର ସାହାଯ୍ୟ ଦାନର ବ୍ୟବସ୍ଥା କରିବି ।

ଇନ୍ଦ୍ର—ଧନ୍ୟ ହେଲି, ଆସନ୍ତୁ ଦେବବୃନ୍ଦ ! ବର୍ତ୍ତମାନ ସଭା ଭଙ୍ଗ ହେଉ । ଦେବଗୁରୁଙ୍କ ଆଶୀର୍ବାଦ ଯେବେ ଆମ୍ଭମାନଙ୍କର ଉଦ୍‌ଯୋଗ ସଫଳ ହେବ ନିଶ୍ଚୟ । ଯତୋଧର୍ମସ୍ତତୋଜୟ ।

(ଇନ୍ଦ୍ର ଓ ଦେବବୃନ୍ଦଙ୍କ ଆସନତ୍ୟାଗ)

---

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ବନପଥ

ଗାଇ ଗାଇ ଜଣେ ସନ୍ନ୍ୟାସୀ ପ୍ରବେଶ—

ହରି ହେ ! ତୁମ୍ଭେ ଭରସା ।
ଜୀବନ ତେଜିବ ଯେବେ ଏ ହୀନ ରସା ।
ପାପ କରେ କଲବଲ ନ କର ଏ ଦୀନେ ଛଳ
କରୁଣା-ସଜଳ ହରି ! କର ବରଷା ।

(ପ୍ରସ୍ଥାନ)

ନେପଥ୍ୟେ—କିଏ ରେ ? ପଳା, ପଳା, ହେଁ ଭଏଁ ! ଶୁଆର ଗରୁଛି । ପଳା, ପଳା ।

ସନ୍ନ୍ୟାସୀ—ଏ କି ଶବ୍ଦ ? ବନଗୃହୀ ଚଣ୍ଡାଳମାନଙ୍କର ସ୍ୱରପରି ଶୁଣା ଯାଏ । ବରାହ ଏହି ପଥରେ ଦୌଡ଼ିବାର ଡାକୁଛି । ଦେଖେଁ, ଜୟ ଦୀନବନ୍ଧୁ ! ହରିନାମେ ଜୟ ।

(ଚଣ୍ଡାଳ ଦ୍ୱୟ ପ୍ରବେଶ)

୧ମ—ଦେଖିଲୁ ନା ? ହାରେ ବା'ପ ରେ । ଇଆଁ ବଡ଼ା ଦାଁତ ।

୨ୟ—ଆଉ ସମଳ ଯାଏ ନାହିଁ । କି କରିହେବ ? ଚଲ୍‌ତ । ଆଜକେ ରାଜାପୁଅକେ କହିବା ।

୧ମ—ସେ ଆଉ କି କରିବେ ବୋ ? ଏ ତ ହରିଚନ୍ଦର ରାଜା ପାଖେ ଗମିଛି । ଚଲ୍, ଚଲ୍ ଇଧାରକୁ ଆଇବତୋ ପରନ୍ ସରିବ ।

୨ୟ—ଶୁଣୁଚୋ ? କି ଶୁଭୁଛେଁ । ହେଁ, ଖସ୍ ଖସ୍ ।

୧ମ—ଚଲ୍, ଚଲ୍, ଚଲ୍, ଭାଗ୍ ଭାଗ୍ ।

(ଦୌଡ଼ି ଉଭୟଙ୍କର ଏକଦିଗକୁ ପ୍ରସ୍ଥାନ)

ସନ୍ନ୍ୟାସୀ ପୁନଃ ଗାଇ ଗାଇ ପ୍ରବେଶ କଲେ—

( ଗୀତ )

କଞ୍ଜ ପଦତଳେ ତବ—ଲୁଠାଏ ଜଗତ ଜୀବ ।
ଅନୁଗତେ ପଦେ ରଖି ପୂରାଅ ଆଶା ॥

( ଗାଇ ଗାଇ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

ସ୍ଥାନ—ଉପବନ ।

ସମୟ—ସାୟାହ୍ନ ।

( ରାଜା ହରିଶ୍ଚନ୍ଦ୍ର, ବିଦୂଷକ ଓ ମନ୍ତ୍ରୀ ବୁଲୁ ବୁଲୁ ପ୍ରବେଶ ।)

ହରିଶ୍ଚନ୍ଦ୍ର—( ବିଦୂଷକପ୍ରତି ) ବୟସ୍ୟ ! ତୁମ୍ଭଙ୍କୁ ମଧ୍ୟ ଯିବାକୁ ହେବ ।

ବିଦୂଷକ—ମହାରାଜ ! କେଉଁଆଡେ ଯିବାକୁ ହେବ ?

ହରିଶ୍ଚନ୍ଦ୍ର—ଆମ୍ଭ ସହିତ ମୃଗୟା ନିମିତ୍ତ ।

ବିଦୂଷକ—ମହାରାଜ ! ସେ କି ବିପଦ ? ବ୍ରାହ୍ମଣ ସନ୍ତାନ ମୁଁ ; ସେବା, ପୂଜା, ଦାନ-ଧ୍ୟାନ ସମାପନାନ୍ତେ, ଉଦରତୃପ୍ତି ଭିନ୍ନ ଅନ୍ୟ କେଉଁ ଶାସ୍ତ୍ର ପାଠ କରିଛି ? "ଉଦରେ ହସ୍ତ ଫୀରବତ୍" ଏ ଭିନ୍ନ,— ଏ ଦକ୍ଷିଣହସ୍ତର ଚାଳନା ଭିନ୍ନ, ଆଉ କେଉଁ ଅସ୍ତ୍ରର ପ୍ରୟୋଗ ତ ଜଣା ପଡୁନାହିଁ ମହାରାଜ !

ହରିଶ୍ଚନ୍ଦ୍ର—ଏ ମଧ୍ୟ ଏକପ୍ରକାର କର୍ମକାଣ୍ଡ ।

ବିଦୂଷକ—ନା ମହାରାଜ ! ସେକଥା କରିବା ବ୍ରାହ୍ମଣର ଅନ୍ୟାୟ "ଜୀବହିଂସା ନ କର୍ତ୍ତବ୍ୟମ୍" ଇତି ପିତା ।

ହରିଶ୍ଚନ୍ଦ୍ର—( ଈଷତ୍ ହାସ୍ୟପୂର୍ବକ) "ଇତି ପିତା" କଣ ମିଶି ?

ବିଦୂଷକ—କେଉଁ ଶାସ୍ତ୍ରରେ ଅଛି କହିପାରିବି ନାହିଁ, ହେଲେ ପିତା କହିଥିଲେ ।

ହରିଶ୍ଚନ୍ଦ୍ର—ତୁମ୍ଭଙ୍କୁ ଜୀବହିଂସା କରିବାକୁ ହେବ ନାହିଁ ।

ବିଦୂଷକ—( ସ୍ୱଗତଃ ) ଭଲ ଅଡୁଆ ! ସବୁଆଡ ଛାଡ ହେବେ ; ମନୁଷ୍ୟ, ଗୋହତ୍ୟା, ବ୍ରହ୍ମ···ଉହୁଁ, ହୁଁ ହୁଁ, ରାଜହତ୍ୟା ସବୁଥିର ସନ୍ଧରେ ପଡ଼ି ଏକଦମ ଲଟପଟ୍, କଲବଲ ହୋଇ ବଲବଲ ବନିଯିବ । ( ଅର୍ଦ୍ଧ ସ୍ୱଗତ ) ଅହଃ ! ସେହି କଥାଟି ତ ( କମ୍ପିତ୍ ବିକଳ କଣ୍ଠରେ ) ବ୍ରାହ୍ମଣୀ, ମାନମୟୀ, ପ୍ରେୟସୀ ! ଆଉ ନୁହେଁ; ଥାଅ ! ( ଲୋତକ ମୁଞ୍ଚନୋଦ୍ୟତ )

ହରିଶ୍ଚନ୍ଦ୍ର—ଏ କଣ ? ଏ କଣ ? ( ହାସ୍ୟ )

ବିଦୂଷକ—( ପ୍ରକୃତିସ୍ଥ ହେଲାପରି ) ନାହିଁ ମହାରାଜ ! ସେ, ସେ, ସେ, ଏଇ, ଏଇ, ଏଇ, ଯତ୍‌ସାମାନ୍ୟ ଉଦରଲାଗି କ୍ରନ୍ଦନ । ବ୍ରାହ୍ମଣୀଟାର, ଓଃ-ଓଃ ! ଭୁଲିଗଲି । ଅବମାନ ହେଲା । ଓଃ ! ଟିର, ଟିର ବ୍ରାହ୍ମଣୀଟିର କାଲି ଷଷ୍ଠୀ ଓଷା ହୋଇଥିବାରୁ କାଲିରାତିରୁ ଆମ୍ଭର ନିରାହାର । ଉଦରଟି ଛଟପଟ । ଆହା ! ପୁଣି ଆଜି ଦିନ ଗୋଟିକ ଯାକ ତ ( ଉଦାରକୁ ଠାରି ) ଏ ବିଗ୍ରହଟି କଷ୍ଟଭୋଗ କରିବାକୁ ବାଧ୍ୟ । ଜନ୍ମସପ୍ତାର ଶେଷ ଆଉ କଅଣ ? ତା'ର କୃତ୍ୟ ।

ହରିଶ୍ଚନ୍ଦ୍ର—( ହସି ହସି ) ନା, ନା, ସେକଥା କଣ ଆଉ ବୁଝାଯିବ ନାହିଁ ? ଖାଦ୍ୟଦ୍ରବ୍ୟ ପ୍ରଚୁର ପରିମାଣରେ ସାଙ୍ଗରେ ନିଆଯିବ । ଆଉ ବନରେ ମଧ୍ୟ ଫଳ ଫୁଲ ଯଥେଷ୍ଟ । ସେଥିଲାଗି ଚିନ୍ତା କ'ଣ ?

ବିଦୂଷକ—(ଆଶ୍ଚର୍ଯ୍ୟ ଓ ବିକଳଭାବେ) କ'ଣ ? କ'ଣ କହିଲେ ? ବନରେ ? ଏ ବ୍ରାହ୍ମଣକୁ ତେବେ କ'ଣ ବନକୁ ଯିବାକୁ ହେବ ?

ହରିଶ୍ଚନ୍ଦ୍ର—ଆଉ କ'ଣ ମୃଗୟା ବ୍ରାହ୍ମଣୀ ନିକଟରେ ନା ଅନ୍ତଃପୁର ମଧ୍ୟରେ ହୁଏ ?

ବିଦୂଷକ—ଧର୍ମ ! ମହାରାଜ ! ମୋର କି ଅପରାଧ ? ବୃଥାରେ କାହିଁକି ଏ ବନବାସ ଦଣ୍ଡ ?

ହରିଶ୍ଚନ୍ଦ୍ର—ନାହିଁ ହେ ! ତୁମ୍ଭଙ୍କୁ ଅପରାଧୀହୋଇ ବନବାସ କରିବାକୁ ପଡୁ ନାହିଁ । ମୁଁ ଯେ ଯିବି । ମୁଁ କ'ଣ ଅପରାଧ କରିଛି ?

ବିଦୂଷକ—ଆପଣ କ'ଣ ଯିବେ ! ଏଥର ବେଶ୍

ବୁଝିଲି । ତେବେ ମହାରାଜ ! ( ସ୍ୱଗତ ) ନା ନା, ସେତିକି ନୋହିଲେ ତ ପୂର୍ଣ୍ଣ ବନବାସ ।

ହରିଶ୍ଚନ୍ଦ୍ର—କ'ଣ ଭାବୁଛ ପୁଣି ! ଯିବାକୁ ହେବ ।

ବିଦୂଷକ—ତା-ତା-ତା-ନା-ନା ।

ହରିଶ୍ଚନ୍ଦ୍ର—( ହାସ୍ୟ କରି ) ଦେଖ ମନ୍ତ୍ରୀ ! ଏ ତା ନା ନା ନା କ'ଣ ?

ମନ୍ତ୍ରୀ—କି ମହାଶୟ ! ଏ କଣ ନୃତ୍ୟ-ଗୀତର ସମୟ ?

ହରିଶ୍ଚନ୍ଦ୍ର—ନା ନୃତ୍ୟ-ଗୀତ ବ୍ରାହ୍ମଣୀ ନିକଟରେ ହେବ । ସେ ଥାଉ ।

ବିଦୂଷକ—ନା, ତେବେ, ଗୋଟିଏ ନିବେଦନ—ବିଦାୟଗ୍ରହଣ ବ୍ରାହ୍ମଣୀ ଚରଣରୁ ।

ହରିଶ୍ଚନ୍ଦ୍ର—ତା'ତ ଅଛି ? ହେଉ, ଶୀଘ୍ର ତେବେ ସେ ଚରଣରୁ ବିଦାୟ ନେଇ ଆସ । ଆମ୍ଭେ ପ୍ରସ୍ତୁତ ହେବାକୁ ଯାଉଅଛୁଁ ।

ବିଦୂଷକ—ଆସେଁ ତେବେ । ଦେଖେଁ ମାନମୟୀର କି ଆଦେଶ ।

ହରିଶ୍ଚନ୍ଦ୍ର—ହେଉ ଆସ । (ବିଦୂଷକ ପ୍ରସ୍ଥାନ)

ହରିଶ୍ଚନ୍ଦ୍ର—(ମନ୍ତ୍ରୀପ୍ରତି) ଚାଲ ମନ୍ତ୍ରୀ ! ଶୀଘ୍ର ରଥ ପ୍ରସ୍ତୁତ ରଖିବାକୁ ଆଦେଶ ଦିଅ । ( ଉଭୟଙ୍କ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

( ରାଜଭବନର ଅଂଶ । ବିଷାଦମନେ ରାଣୀ ଶୈବ୍ୟା, ସହଚରୀ ଓ ପରିଚାରିକାଗଣ ଆସୀନା )

୧ମ ସହଚରୀ—ଦେବି ! ଏ କ'ଣ ? ଆଜି ଏପର୍ଯ୍ୟନ୍ତ କାହିଁକି ମହାରାଜ ଫେରିଲେ ନାହିଁ ?

ଶୈବ୍ୟା—( ଚିନ୍ତିତମନେ ) କହିପାରୁ ନାହିଁ ସଖି !

୨ୟ ସହଚରୀ—ପୁରୁଷଙ୍କ ମନ ତେମେ କ'ଣ ବୁଝିବ ସଖି ?

୧ମ ସହଚରୀ—ହିଁ, ବାସଙ୍ଗ ଫୁଲରେ ମଧୁ ଭ୍ରମରର ଶ୍ରଦ୍ଧା ।

୨ୟ ସହଚରୀ—ସେ କଅଣ ମହାଦେବୀଙ୍କ ଆନ୍ତରଭାବ ବୁଝିଥିବେ ?

ଶୈବ୍ୟା—ବୁଝନ୍ତୁ ନ ବୁଝନ୍ତୁ ସଖି ! କିନ୍ତୁ ତାଙ୍କଠାରେ ଦୋଷାରୋପ ମହାପାପ । ସେ ପୁଣ୍ୟଶ୍ଳୋକ । ଅନ୍ୟ କିଛି କାରଣ ହେତୁରୁ ଆସିପାରି ନ ଥିବେ ।

୧ମ ସହଚରୀ—କି କାର୍ଯ୍ୟ ? ରାଜ କାର୍ଯ୍ୟ ତ ? ତା' କଅଣ ଆଉ ଏ ସ୍ଥାନରେ ହୋଇପାରନ୍ତା ନାହିଁ ?

ଶୈବ୍ୟା—ସଖି ! ( ଚମକି ଉଠିବା ) ଏ ପୁଣି କଅଣ ? ମୋର ହୃଦୟ ଖାଲି ଥରି ଉଠୁଛି । ସେହି ଦୁଃସ୍ୱପ୍ନ ମନେ ପଡ଼ୁଛି ।

୧ମ ସହଚରୀ—ଦେବି ! ସେ ବୃଥା ଭାବନା । ସ୍ୱପ୍ନ ଯେବେ ସତ୍ୟ ହୋଇଥାଆନ୍ତା, ଧନ, ଦରିଦ୍ର, ରାଜସିଂହାସନ ଭୋଗୀ ହୋଇପଡ଼ନ୍ତା, ଆଉ ବୈଧବ୍ୟ-ଯନ୍ତ୍ରଣା-ଭାଗିନୀ ଅଭାଗିନୀ ରମଣୀର ପତିଶୋକ ରହନ୍ତା ନାହିଁ । ସେ କି କେବେ ସମ୍ଭବ ?

୨ୟ ସହଚରୀ—ମହାରାଜ ବହୁ ଦୂରଗତ । ଏ ସମୟରେ ଦେବୀଙ୍କର ଏପରି ଦୁଶ୍ଚିନ୍ତା ମନରେ ଆଣିବା ନିତାନ୍ତ ଅନୁଚିତ, ଆଉ ଭାବିବାର ନୁହେଁ ।

ଶୈବ୍ୟା—ଭାବିବାର ନୁହେଁ ସଖି ! କିନ୍ତୁ କିଏ ଯେପରି ମୋର କାନରେ ମୋତେ ସେହି ଦୁଃସ୍ୱପ୍ନ ବିବରଣ କହି ଦେଉଛି, ମନ ଛନକି ଉଠୁଛି ।

୨ୟ ସହଚରୀ—ସଖି ! ଚାଲ, ମା ସର୍ବମଙ୍ଗଳାଙ୍କ ସେବାପୂଜା କରି ଦୁଃସ୍ୱପ୍ନ ନିବାରଣ ନିମିତ୍ତ ଦାନ-ଧ୍ୟାନ କରାଇଦେବା । ମା' ସବୁ ଦୁଃଖ ଖଣ୍ଡନ କରିବେ ।

ଶୈବ୍ୟା—ସଖି ! ମୋର ବିବେକ ନାହିଁ । ଚେତନା ହଜି ଯାଇଛି । ଯାହା କରିବ କରିଯାଅ । ମୋତେ ଆଜି ବେଶୀ କିଛି କହନା ( ହୃଦୟ ଚାପିଧରି ) ଓଃ ! ଓଃ ! ଏହି ଥରିଉଠେ । ବକ୍ଷ ବିଦୀର୍ଣ୍ଣ ହୁଏ । ହେଇ ! ଓଃ ! ଓଃ ! ଦକ୍ଷିଣ ନେତ୍ର ଫୁରୁ ଉଠୁଛି । ମହାରାଜ ! (ନୟନରେ ଅଞ୍ଚଳ ଦାନ)

୧ମ ସହଚରୀ—( ୨ୟପ୍ରତି ) ଚାଲ ସଖି ! ବିଳମ୍ବ ଉଚିତ ନୁହେଁ ( ରାଣୀଙ୍କପ୍ରତି ) ଦେବୀ ! ଚାଲନ୍ତୁ ଅଧୀର ହୁଅନ୍ତୁ ନାହିଁ । ଧୈର୍ଯ୍ୟଧରନ୍ତୁ ।

ଶୈବ୍ୟା—ହେଉ । ଚାଲ, ଚାଲ ତେବେ ।

( ସମସ୍ତଙ୍କର ପ୍ରସ୍ଥାନ )

## ପଞ୍ଚମ ଦୃଶ୍ୟ

### ତପୋବନ ପଥ

( ପ୍ରବେଶ କଲେ କେତେକ ଋଷିକୁମାର )

ଆହା ! କି ସୁନ୍ଦର ଦିଶେ ଦେଖ କାନନମାଧୁରୀ !
ସୁଷମା ଅସମ ଢାଳି ହସେ ବନଗିରି ॥୦॥
ମୟୂର ଷଡ୍‌ଜ ସ୍ୱରେ
କେଳି କରେ ଡାଳେ ଡାଳେ
କୁସୁମ କୁଞ୍ଜରୁ ଅଳି ଆସେ ଉଡ଼ି ଉଡ଼ି ।

୧ମ ଋଷିକୁମାର—ଭାଇ ! ଦେଖିଲୁ ଦେଖିଲୁ, କି ମନୋହରଦୃଶ୍ୟ ! ଏ ଛୋଟ ପାହାଡ଼ଟିର ଚୂଡ଼ାରେ ମାଳତୀଲତା ଗୋଟିଏ ମାଧବୀ ଦେହରେ ଜଡ଼ି ରହିଛି । ସୁନ୍ଦର କୁସୁମଭୂଷଣରେ ହସ ହସ ହୋଇ ଲୋଟି ଲୋଟି ଦୋଳି ଖେଳୁଛି ।

୨ୟ ଋଷିକୁମାର—ସତେ ଯେପରି ବର୍ଷନ୍ତି ଘନକଳା ମେଘର ଚୂଡ଼ାରେ ପାଗଳ ପବନ ଖଣ୍ଡ ଖଣ୍ଡ ଧବଳ ମେଘମାଳ ଖଞ୍ଜି ଦେଉଛି ! ଆହା !

୧ମ ଋଷିକୁମାର—ସେ ପୁଣି ସ୍ଥିର ନୁହେଁ । ପବନର ଦୋଳନରେ କେଡ଼େ ଚଞ୍ଚଳ ।

୨ୟ ଋଷିକୁମାର—ଆକାଶର କୃଷ୍ଣ ଚୂଡ଼ାରେ ପ୍ରକୃତି ସତେ ପିନ୍ଧାଇ ଦେଉଛି କୁରୁବକ କୁସୁମ ପେନ୍ଥା ।

୧ମ ଋଷିକୁମାର—କି ସ୍ୱର୍ଗୀୟ ସୁଷମା !

( ଜଣେ ଗୋପାଳବାଳକର ପ୍ରବେଶ )

ଗୋପାଳବାଳକ—( ଋଷିକୁମାରମାନଙ୍କୁ ଦେଖି ) ବାଃରେ ! ବାଃ ! କେଡ଼େ କେଡ଼େ ଧୂଣ୍ଡା ବନଚନ୍ଦ୍ର ଲୋ ବାପ ! ଋଷି ପିଲା ହେଲେ ଖୁବ୍ ହୁମଘିଅ, ନଡ଼ିଆ ପୋଡ଼ା ମିଳନ୍ତା । ଚିନ୍ତା ନାହିଁ, ଦୁଃଖ ନାହିଁ, ସ୍ୱାଙ୍କର କ'ଣ ମା' ଅଛି ଯେ ମୋପରି ଘରକୁ କାଠ ନ ନେଇକରି ଗଲେ ଗୁଞ୍ଜୁଣିବାଡ଼ି ମାରିବ ? ଗାଡ଼ଗୁଆ କହିବ ? ନା ରଇଜଳା କହିବ ? ବାଃ ! ମଉଜରେ ଖାଇ ପିଇ କି ଧୂଣ୍ଡା ମୁଣ୍ଡା, ହୁଣ୍ଡା, ବନଚନ୍ଦ୍ର !

୧ମଋଷିକୁମାର—( ଗୋପାଳବାଳକ ପ୍ରତି ) କରେ ଟୋକା କ'ଣ ଟୁପୁ ଟୁପୁ ହଉଚୁ କି ?

ଗୋପାଳବାଳକ—ନାଇଁ, ତ ମ ର ମା ନ ଙ୍କ କଥା ହଉଥିଲି । କେଡ଼େ ସୁଖରେ ଅଛ ? ମଉଜ କରୁଛ ? ଖାଇ, ପିଇ ଖୁସିରେ ଦିନ କାଟୁଛ ?

୨ୟଋଷିକୁମାର—ତୁ ଆ ! ତପୋବନରେ ରହିବୁ ଖୁବ୍ ଖାଇବୁ, ଆମରି ପରି ମଉଜ କରିବୁ ।

ଗୋପାଳବାଳକ—ହଁ, ଭଲ ହୁଅନ୍ତା । ଏକା ମୋ ମା'ର, ଯୋଉ ରାଗରୁଷା ସେଥିରୁ ପା'ର ପାଆନ୍ତି । ହଁ, ହଁ, ଆଉ ଗୋଟିଏ କଥା, ଠିକଏ ଠିକଏ ମୋତେ ଏକା ଘିଅ ଦୁଧ ଖାଇବାକୁ ଦିବ । ତୁମେ ସବୁ ଘିଅ ଦୁଧ ଖାଅ ନା ?

୧ମଋଷିକୁମାର—ହଁ; ଖୁବ୍ ଖାଉଁ; ହୋମଘିଅ ତ ବହୁତ ମିଳେ । କେତେ ଖାଇବୁ ? ପେଟ ଫାଟିଯିବ ।

ଗୋପାଳବାଳକ—ବେଶ୍ ! ସେତିକ ହେଲେତ ହେଲା । ସେଇ ଟିକଣା ଠିକକ ନ ହେଲେ ମୋତେ ଅନ୍ନ ରୁଚେ ନାହିଁ । ମା ମୋର ଭାରି ରାଗୁଆ; ହେଲେ, ସେତିକ ଗୋରୁ-ଗାଈ ଦୁହିଁ ମୋ'ପାଇଁ ସାଇତି ରଖିଥାଏ ।

୨ୟଋଷିକୁମାର—ତୁ ତେବେ ଆ, ଆମରିପରି ବେଶ ପିନ୍ଧ । ଗେରୁଆ ଲୁଗାପିନ୍ଧି ଦେହରେ ଗେରୁ ବୋଳିହ, ଆ ।

ଗୋପାଳବାଳକ—ମୁଁ କ'ଣ ମନା କରୁଛି? ଦିଅ, ପିନ୍ଧାଇ ଦିଅ ? ବେଶ କରିଦିଅ ।

୧ମ ଋଷିକୁମାର—ଆଉ ଗୋଟିଏ କଥା । କିଛି ସମୟ ଆଗେ ଆଖିବୁଜି ବସି ରହିବାକୁ ପଡ଼ିବ ।

ଗୋପାଳବାଳକ—ସେ କ'ଣ ଆଉ ଗୋଟେ ବଡ଼ କଥା ? ବିଛଣାରେ ଯେତେବେଳେ ମୋ ମା ମୋତେ କୋଳ କରି ଶୁଆଇ ପକାଏ ମୁଁ ତ ସୁଏଁ ସୁଏଁ ଚୂପମାରି ଆଖି ମୁଦି ପଡ଼ିଯାଏଁ । ପୁଣି ମା ଶୋଇପଡ଼ିଲେ ମୁଁ ଚମକେ । ମୁଁ ତ କେତେବେଳ-ଯାଏ ଆଖି ମୁଦି ପଡ଼ିଥାଏ ।

୩ୟ ଋଷିକୁମାର—ହଉ ତେବେ ! ମୁଁ ଆମ ତପୋବନରୁ ତୋ'ଲାଗିସବୁ ଜିନିଷ ଆଣେ । (ପ୍ରସ୍ଥାନ)

୧ମ ଋଷିକୁମାର—ତୁ ଗଛ ଚଢ଼ି ଜାଣୁ ନା ? ସକାଳୁ ବାଳ ଫୁଲ ତୋଳିବାକୁ ହେବ, କୁଶ, ସମିଧ ଆଣିବାକୁ ହେବ । ଆମ୍ଭେମାନେ ଫୁଲ ତୋଳି ଆସିଛୁଁ ।

ଗୋପାଳବାଳକ—ହଁ, ଖୁବ୍ ପାରିବି । ମୁଁ ତ ନିତିକରି ବଣେ ବଣେ ନେଖାଏଁ ଗଛରେ ଚଢ଼ି ରହେ ।

୩ୟ ଋଷିକୁମାର—(କେତେକ ଗେରୁଲୁଗା ଓ ସଢ଼ାଇରେ କିଛି ଜଳ ନେଇ ପ୍ରବେଶ)

୩ୟ ଋଷିକୁମାର—(ଗୋପାଳବାଳକପ୍ରତି) ଆ ପିନ୍ଧ ।

ଗୋପାଳବାଳକ—ମୁଁ କଣ ଅମଙ୍ଗ ହଉଛି ? ଦିଅ, ମୋତେ ଟିକିଏ ସଜ କରିଦିଅ ।

୩ୟ ଋଷିକୁମାର—ଆ (ଗେରୁଆ ଲୁଗା ପିନ୍ଧାଇ ଦେବା) ।

୧ମ ଋଷିକୁମାର—(ଖଣ୍ଡେ ଗେରୁକନା ନେଇ) ଦେଖା, ଆଖି ମୁଦ, ମୁଁ ଭିଡ଼ିଦିଏ ! ଟିକିଏ ବେଳ ଗଲେ ପୁଣି ଫିଟାଇ ଦେବି ।

ଗୋପାଳବାଳକ—ଦିଅ । (ଆଖି ମୁଦି ବସିଲା) ।

୧ମ ଋଷିକୁମାର—( ଆଖିରେ କନା ଭିଡ଼ିଦେବା ) ।

୨ୟ ଋଷିକୁମାର—ହାତ ଯୋଡ଼ିକରି ମନେ ମନେ ଠାକୁରଙ୍କୁ ଡାକିବାକୁ ହେବ, କାଳେ ହାତ ଫିଟିଯିବ, ସେ ହାତ ଯୋଡ଼ୁ, ଖଣ୍ଡେ କନା ବାନ୍ଧି ଦିଅ ।

୩ୟ—ନା, ନା, ସେ ଆଗେ ଗେରୁଆ ଲୁଗା ପିନ୍ଧୁ, ଦେହରେ ମୁହଁରେ ଗେରୁ ବୋଳି ହେଉ । (ସଢ଼ାଇ ଆଣି ବଢ଼ାଇ ଦେଇ) ନେଇ ।

୧ମ—ହଁ, ନେ ! ମୁହଁରେ ଦେହରେ ବୋଳିପକା ।

ଗୋପାଳବାଳକ—କାହିଁ ଦିଅ । ବୋଳେ(୩ୟ ଋଷି-ବାଳକଠାରୁ ନେଇ ମୁହଁରେ ଓ ଦେହରେ କଳା ବୋଳି ହେବାର )

୨ୟ—ଏଥର ହାତଯୋଡ଼ୁ । ହାତ ବାନ୍ଧି ଦିଅ ।

୧ମ—ଏକା ଠାକୁରଙ୍କୁ ମନେ ମନେ ଡାକ୍ ।

ଗୋପାଳବାଳକ—ହଁ ଡାକୁ ନାହିଁକି ? ( ହାତ ଦେଖାଇଲା ଓ ହାତରେ ୨ୟ ଋ: କୁ କନାବାନ୍ଧିଲା )

ଋଷିକୁମାରଗଣ—ବାଃ ! ବାଃ ! ବେଶ ସାଜିଲୁ । ଏଥର ଯାଉ କୁଆଡ଼େ ? ଯା, ତୋ ମାଆକୁ ଦେଖାଇବୁ ( ହସି ତାଳି ମାରିଲେ )

ଗୋପାଳବାଳକ—ଏଁ ଏଁ ଏଁ, ଢେରଗୁଡ଼ାକ ମଲେ, ମୋତେ ଅନ୍ଧକଲେ । ମୁଁ କୁଆଡ଼େ ଯିବି ?

ନେପଥ୍ୟେ—ଆହେ ଋଷିକୁମାରମାନେ ! ଶୀଘ୍ର ଆସ । ବିଶ୍ୱାମିତ୍ରଙ୍କର ଯାଗରେ ଅଳ୍ପ ସମୟ ବାକିଅଛି । କୁଶ ସମିଧ ନେଇ ଆସ ।

ଋଷିକୁମାର—(ତାଳିମାରି ନୃତ୍ୟ କରୁକରୁ ପଳାୟନ) ।

ଗୋପାଳବାଳକ—ଢେର, ଠକଗୁଡ଼ାକ ଯାଉଛ ମାଆକୁ କହିବି ।

( ଦଉଣ୍ଡି ଦଉଣ୍ଡି ଯିବା )

ନେପଥ୍ୟେ—ହୋ ! ହୋ ! ହୋ ! ( ହାସ୍ୟ )

( ପ ଟ ପ ତ ନ )

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ତପୋବନ ଉପକଣ୍ଠ—ମୁ ନି କୁ ମା ର ଗ ଣ ଜଳକଳସୀ ହସ୍ତେ ପ୍ରବେଶ କଲେ ।)

ସମୟ—ସନ୍ଧ୍ୟାଗମ ।

( ଗୀତ )

କନକ କିରଣ ସାଜେ ।
ବୁଢ଼ ବୁଢ଼ ଆସେ ତପନ ଛବିଟି
କଞ୍ଜ ମଣ୍ଡଳେ ଲାଜେ ॥ ୦ ॥
ଖର ପବନରେ ଶୁଖିଲା ମୁହଁ ଗୋ-
ପୋଛି ଦେବେ ମାତା କାନ ପଣନ୍ତରେ
ମଙ୍ଗଳ ଗୀତ କେତେ ଜାତି ଛନ୍ଦେ,
ବିହଗ କଣ୍ଠେ ବାଜେ ।

କମଳା—( ବୃକ୍ଷ ମୂଳରେ ଜଳସେଚନ କରୁ କରୁ ) ସରଳା ! ଦେଖ ସଖି ! ଯେତେ ଦେଖ ତେତେ ନୂଆପରି ଦିଶୁଛି । ମୁଁ ମୋର ଏହି ସୂର୍ଯ୍ୟମୁଖୀଟିକି ଅତି ଯତ୍ନରେ ବଢ଼ାଇଛି । ଆହା ! ଝାଉଁଳି ଆସିଲାଣି । ସୂର୍ଯ୍ୟ ଆସି ପଶ୍ଚିମ ମେରୁର ତୁଙ୍ଗ ଶିଖରରେ ପହଞ୍ଚିଲେଣି । ଦେଖ ! ପତିରତା ସୂର୍ଯ୍ୟମୁଖୀ ତାଙ୍କ ସଙ୍ଗେ ମଧ୍ୟ ନଇଁ ପଡୁଛି । କି ବିଚିତ୍ର ଲୀଳା ! କୁସୁମକୁ ମଧ୍ୟ ପ୍ରେମର ଜୀବନ ଦେଇଛ ପ୍ରଭୁ ! ସେ ମଧ୍ୟ ପ୍ରେମ ବୁଝେ । ଧନ୍ୟ କଳ୍ପନା ! କିଏ ସେ କପଟ ଶାସ୍ତ୍ରର ମର୍ମ ବୁଝି ପାରିବ ?

ଚପଳା—ପୁଣି ସଖି ! ସାନ୍ଧ୍ୟ ଅନ୍ଧକାର ଆସିଗଲେ, ପ୍ରିୟତମ ପ୍ରାଣପତିଙ୍କ ଦର୍ଶନ-ସୁଖରୁ ବଞ୍ଚିତ ହେଲେ, ବିନ୍ଦୁ ବିନ୍ଦୁ କରି କେତେ ଅଶ୍ରୁ ବର୍ଜ୍ଜନ କରିବ ସେ ! ଯେପରି ପତି-ଅଦର୍ଶନରେ ସୁମୁଖୀ ଅଭିସାରିକାବେଶରେ କୁଞ୍ଜକୁଟୀରରେ ଖେଦ କରୁଛି । ରଜନୀର ଶିଶିରବିନ୍ଦୁ ସତେ ତାର ଅଶ୍ରୁପରି ।

ଚଞ୍ଚଳା—ଏଣେ ଦେଖ ମାଳତୀକି ! ଆହା ! ହତଭାଗିନୀ ! ପରରତା ! ସଂସାରର ସବୁ ଭଲ ତା’ ଜୀବନରେ ଥା’ନ୍ତା !

କମଳା—ସଖି ! ମନଗୁଣେ ଫଳ ଫଳେ । ସେ ଯେପରି ପରରତା, ଝୁରି ଝୁରି ସେହିପରି ପର ପାଦତଳେ ଝଡ଼ିଯାଏ । ପ୍ରତିଦିନ ନୂଆ-ନାଗରର ପ୍ରଣୟପଥ ଚାହିଁ ବସିଥାଏ, ଶେଷରେ ପୁଣି ପରିତ୍ୟକ୍ତା ହୁଏ । ସାନ୍ଧ୍ୟ-ସମୀରର ମଧୁର ପରଶରେ ବେଶ୍ୟାପରି ବେଶଟି ସାଜି ପ୍ରଣୟୀ ମାନସ ତୁଷ୍ଟିରେ ବ୍ୟସ୍ତଥାଏ । କ୍ଷଣିକ ଅହ୍ଲାଦ ସିନା ?

ସାରଳା—ତୁମ୍ଭେ ବୁଝିଲୁ ନା ? ହସ ଲାଗୁଛି ! ସକାଳ ହେଲାକ୍ଷଣି, ଯେତେବେଳେ ପୂର୍ବଦିଗଲେ ସିନ୍ଦୂର ଫାଟେ, ଆଉ ପଚ୍ଛରେ କିଏ ? ଆଉ କି ସେ ପ୍ରଣୟୀ ତା’ର ମନକଥା ବୁଝେ ?

ଚଞ୍ଚଳା—ବାଇ, ଭ୍ରମରକୁ ଖୁବ୍ ଚତୁର ଦେଖିଲି । ମନକିଣା ପାଠଟିକ ଯେ କାହାଠାରୁ ପଢ଼ିଛି ସେ, ପରିଶେଷରେ ନିଜେ ଅଧ୍ୟାପକ ମଧ୍ୟ ହାରିଥିବେ । କଳେ, ବଳେ, ଛଳେ, ଯେପରି ହେଉ, ସରଳା ଅବଳାର ମନ ଭୁଲାଇଦେଇ ଦିନରାତି ନିଜ ସ୍ୱାର୍ଥ ଚିନ୍ତାରେ ବ୍ୟସ୍ତ !

କମଳା—ଦେଖ ଏଣେ ! କି ବିଚିତ୍ର ଦୃଶ୍ୟ ! କି ସୁନ୍ଦର ଛବି ! ପଶ୍ଚିମଦିଗ ପୂର୍ଣ୍ଣ ସିନ୍ଦୂରିତ । ଉତ୍କଣ୍ଠିତା ସୂର୍ଯ୍ୟ-ମାତା ପୁତ୍ର ଆଗମନ ପଥ ଚାହିଁ ରହିଥିବେ । ପୁତ୍ରର କ୍ଲାନ୍ତ ମୁଖଛବି ଦେଖି, ପବନ ବିତାଡ଼ିତ ଧୂଳି ମୁଖରୁ ପୋଛିଦେଇ, ଜ୍ୟୋତ୍ସ୍ନାଲୋକିତ ପଣନ୍ତରେ ଘୋଡ଼ାଇନେଇ କେତେ ଚୁମ୍ବନ ଦେବେ । କାର୍ଯ୍ୟ ଶେଷରେ ଅବସରଲାଭର କି ମାଧୁରୀ ! ପୁଣି କନକ ବଲ୍ଲରୀପରି ଦୁଇଟି ଭୁଜଦ୍ୱାରା ଜନନୀର ସେ ଗାଢ଼ ଆଲିଙ୍ଗନ ! କି କମନୀୟ ଦୃଶ୍ୟ ! ଧନ୍ୟ ବିଧି !

ସରଳା—ଚାଲ ସଖି ! ଅନ୍ଧାର ମାଡ଼ି ଆସିଲାଣି । ତପୋବନରେ ବିଶ୍ୱାମିତ୍ରଙ୍କର ସେବାର ଆୟୋଜନ କରିବାକୁ ହେବ ।

ସମସ୍ତେ—ଚାଲ ତେବେ ।

( ଗୀତ )

ଆରେ ପହିଲି ତାରା ! ହସି ବସ ନଭ କୋଳେ ।
ଝିଲିମିଲି ଦେଖ ତୋ ମୁଖ ସୁନୀଳ-ସାଗର ଜଳେ ॥

ଦର ହାସେ ଥର-ଥର
ପ୍ରେମେ ତନୁ ଜର-ଜର
ନବ-ପୁଲକିତ ଫୁଲ,—ସୁବାସିତ ଦଳେ ଦଳେ ।
(ଗାଇ ଗାଇ ପ୍ରସ୍ଥାନ)

(ଆଗେ ସାରଥି ଓ ତତ୍‌ପଶ୍ଚାତ୍ ରାଜା ହରିଶ୍ଚନ୍ଦ୍ର ବନଭ୍ରମଣ ବେଶରେ ସୋତ୍‌ବେଗେ ପ୍ରବେଶ)

ହରିଶ୍ଚନ୍ଦ୍ର—ସୂତବର ! ବଡ଼ ଆଶ୍ଚର୍ଯ୍ୟ କଥା ! ଏଇତ ବରାହର ପଦଚିହ୍ନ ଦିଶୁଚି, ସେ ବା କାହିଁ ? ତା'ର ଚିହ୍ନମାତ୍ର ଲକ୍ଷିତ ହୁଏ ନାହିଁ । କି ଆଶ୍ଚର୍ଯ୍ୟ ! ଏ କଅଣ ସ୍ୱପ୍ନ ନା ମାୟା ? ମୁଁ ଜାଗ୍ରତ ନା ନିଦ୍ରିତ ? କେତେ ଦୂରରେ ସୈନ୍ୟ ସାମନ୍ତ, କାହିଁ ଅଛେ ? ସମ୍ମୁଖରେ ଯାମିନୀର ତମସା-ବରଣବେଡ଼ା ଗମ୍ଭୀର ମୂର୍ତ୍ତି ! ନୀଳ-ମେଘର ଏକକୋଣରେ ସାୟନ୍ତନରକ୍ତିମା ଏକାକିନୀ ତାରଟି ସାଗର-ଦର୍ପଣରେ ନିଜେ ନିଜର ପ୍ରତିବିମ୍ବ ଦେଖି ମୁଗଧା ! ବୃକ୍ଷଲତା କ୍ରମଶଃ ନୀରବ, ନିସ୍ପନ୍ଦ, ଆଉ ପଶୁପକ୍ଷୀଙ୍କର ଶବ୍ଦ ମାତ୍ର ଶୁଣାଯିବ ନାହିଁ ! କେବଳ ମଧ୍ୟେ ମଧ୍ୟେ କାଳକଣ୍ଠ ପେଚକର କର୍କଶକଣ୍ଠ ରଜନୀର ଏ ଗମ୍ଭୀର ନିସ୍ତବ୍ଧତା ଭଙ୍ଗ କରିବ ଯିନା !

ସାରଥି—ମହାରାଜ ! ଆମ୍ଭେମାନେ କୌଣସି ତପୋବନ ନିକଟରେ ପହଞ୍ଚିଅଛୁଁ (ନେପଥ୍ୟକୁ ହାତ ଠାରି) ଦେଖନ୍ତୁ—ଏହି କେତେଜଣ ମୁନିକନ୍ୟା ଆମ୍ଭମାନଙ୍କ ଆଡ଼କୁ ଆସୁଛନ୍ତି ।

ହରିଶ୍ଚନ୍ଦ୍ର—ଏହି ଆଡ଼କୁ ଆସୁଛନ୍ତି ? କାହିଁ ? (ଅଳ୍ପ ଅଗ୍ରସର ହେବା)

(କମଳା, ଚଞ୍ଚଳା, ଚପଳା ଓ ସରଳା ପ୍ରବେଶ)

ହରିଶ୍ଚନ୍ଦ୍ର—(ଋଷିକନ୍ୟାମାନଙ୍କ ପ୍ରତି) ତୁମ୍ଭେମାନେ କିଏ ?

ସରଳା—ଆମ୍ଭେମାନେ ଋଷିକନ୍ୟା, ଆଶ୍ରମର ତରୁଲତାମାନଙ୍କରେ ଜଳଦାନ କରିବାକୁ ଆସିଥିଲୁଁ । ଏ ବୃକ୍ଷମୂଳେ ଆପଣଙ୍କର ସୁଠାମ ରୂପ ଦେଖି ପରିଚୟ ଲାଭ ଆଶାରେ ଆସିଅଛୁ । ଭଦ୍ର ! ପରିଚୟ ଦାନକରି କୃତାର୍ଥ କରିବେ କି ?

ହରିଶ୍ଚନ୍ଦ୍ର—ପରିଚୟ ? ଜଣେ ପଥଶ୍ରାନ୍ତ ପଥିକ···।

କମଳା—ଅତିଥି ସର୍ବଥା ସେବ୍ୟ ! ହେ ଅତିଥି ! ଦୟାକରି ଆମ୍ଭ ଆଶ୍ରମରେ ବିଶ୍ରାମକରି ପବିତ୍ର ତପୋବନସୁଖ ଅନୁଭବକରନ୍ତୁ । ଯୋଗୀ ମୁନି-କନ୍ୟାଙ୍କର ସ୍ୱହସ୍ତ—ଆହୃତ ଫଳମୂଳରେ ତୃପ୍ତି ଲାଭକରି ଏ ତପୋବନ, ଆଉ ଆମ୍ଭମାନଙ୍କର କୁଟୀରକୁ ପବିତ୍ର କରନ୍ତୁ ।

ହରିଶ୍ଚନ୍ଦ୍ର—ଭଦ୍ରେ ! ତୁମ୍ଭର ଏ ମଧୁର ବ୍ୟବହାର ପ୍ରକୃତରେ ମୁନିକନ୍ୟାର ଉପଯୁକ୍ତ ହୋଇଅଛି । ଚାଲ ତେବେ, ଜଗତର ପ୍ରଖର ତାଡ଼ନାରେ ଅବସନ୍ନ ମାନବପକ୍ଷେ ଏ ପବିତ୍ର ତପୋବନ ସ୍ୱର୍ଗସମ । ଚାଲ ମା' ଚାଲ ।

କମଳା—(ଅଗ୍ରସର ହୋଇ) ଭଦ୍ର ! ଏହି ପଥରେ ଆସନ୍ତୁ । (ଧୀରେ ପ୍ରସ୍ଥାନ)

ହରିଶ୍ଚନ୍ଦ୍ର—( ପ୍ରସ୍ଥାନ କରୁକରୁ ) କହଦେଖି ! କହ ମନ ! କିଏ ସୁଖୀ ? ଏ ସରଳତାଲିପ୍ତ ମୁଖ-ପଦ୍ମର ଅକପଟ ବାଣୀ, ନା ସେ ରାଜକାର୍ଯ୍ୟର ବିଷମ ଜଞ୍ଜାଳ ? ଆହା ! ସୁଖ ଆଉ ଏହାଠାରୁ ଅଧିକ କଅଣ ?

( ସାରଥି ସହ ଧୀରେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

ବନପଥ ।

(ଭିକ୍ଷୁ ଦୁଇଜଣ ଖଞ୍ଜଣିଧରି ଗୀତ ଗାଉ ଗାଉ ପ୍ରବେଶ । )

ବାପ୍ପା ମନରେ ! ମନେ ନାହିଁ କି ତୋର
ପୋଷି ତୁ ରଖିଛୁ ଶୁକ ପକ୍ଷୀଟିଏ କାଟି ନେବ
କିଏ ଜୀବନ ଡୋର ॥

ଗୀତ ଥିଲାତକ ଲୋଭଥିବ ଭାଇ !
ସବୁ ବୋଲୁଥିବୁ ମୋର,
ଗୀତ ଗଲାଦିନ ଶବ ହେବୁ ଭାଇ !
ଛୁଇଁବ ନାହିଁ କେ ଶରୀର ତୋର । ୧ ।

କରିବୁ କରିବୁ କେତେ କଥା ଭାବୁ
ମିଛେ ହେଉ ନାରଖାର,
ସମ୍ପାଦିଛୁ ଯେତେ ଅମୂଲ୍ୟ ରତନ
ଦିନେ ସବୁ ମାରି ନେବଟି ଚୋର । ୨ ।

( ଦୁଇଜଣ ସୈନିକ ପ୍ରବେଶ )

୧ମ ସୈନିକ—ରହ ରେ ଏ ! ତୁ ମହାରାଜାଙ୍କୁ ଦେଖି ନାହୁଁ ?

୧ମ ଭିକ୍ଷୁ—ନାହିଁ ତ ଆଜ୍ଞା ! ସେ ଭାଗ୍ୟ ଆମ୍ଭର କାହିଁ ?

୨ୟ ଭିକ୍ଷୁ—ରଥଟିଏ ଆଶ୍ରମ ପାଖେ ଥିଲା । ସାରଥି ତ ନାହିଁ ।

୨ୟ ସୈନିକ—କେଉଁ ଆଶ୍ରମ ପାଖେ ?

୨ୟ ଭିକ୍ଷୁ—ବିଶ୍ୱାମିତ୍ରଙ୍କ ଆଶ୍ରମକୁ ଯିବାକୁ ଗୋଟିଏ ଡଗର ବାଟ ପଡ଼ିବ, ସେହି ପାଖରେ ତ···

୧ମ ସୈନିକ—ତେବେ ଆସ, ଖୋଜି ଖୋଜି ତ ଥକା ହେଲେଣି, ଦେଖାଯାଉ । ( ପ୍ରସ୍ଥାନ )

( ଭିକ୍ଷୁକଙ୍କର ଗାଇ ଗାଇ ପ୍ରସ୍ଥାନ । )

---

## ତୃତୀୟ ଦୃଶ୍ୟ

### ତପୋବନ ।

(ଧ୍ୟାନରତ ବିଶ୍ୱାମିତ୍ର—ପଶ୍ଚାତ୍‌ଦେଶରେ ବିଦ୍ୟା ।)

ବିଶ୍ୱାମିତ୍ର—ଶେଷ ହେଲା ଆସି । ଦେବ ଶେଷାହୁତି । ଆସ ଆସ ଧର୍ମ ! ଆସ ସ୍ୱର୍ଗବାସୀ ଦେବତାମଣ୍ଡଳ ଦେଖ ! ଚଣ୍ଡାଳର ପୂର୍ବେହୁତର ସାଧନାର ଫଳ ଦର୍ଶନ କର । ଦେଖ ଧର୍ମ ! ଅବଶେଷରେ କିଏ ଜେତା ?

ବିଦ୍ୟା—( ଉଚ୍ଚସ୍ୱରରେ ) ଯାଏରେ ଜୀବନ ହାୟ !
ତପ୍ତ ଅଗ୍ନିକୁଣ୍ଡେ,
ଜଗତ କି ସାରଶୂନ୍ୟ ହୋଇଲା ଏକାଳେ ?
ଅବଳାରକ୍ଷଣ କ୍ଷମ ନୋହିଲେ କି କେହି ?
ରକ୍ଷାକର, ରକ୍ଷାକର, ରକ୍ଷାକର, ଆସି ।

ହରିଶ୍ଚନ୍ଦ୍ର—( ଦୂର ନେପଥ୍ୟେ ) କି ଅଦ୍ଭୁତ ? ଅବଳାର କଣ୍ଠ, ପୁଣି କାକୁତି ! ଆଶ୍ରମରେ ଶୁଭେ ! କିଏ ରେ ନୃଶଂସ ! ରବିକୁଳ ଚକ୍ରବର୍ତ୍ତୀ ସ୍ୱୟଂ ଜୀବିତ ଓ ବର୍ତ୍ତମାନ ସ୍ଥଳେ କିଏ ଅବଳୀଳା-କ୍ରମେ ନିଜ ମୃତ୍ୟୁକୁ ବରଣ କରୁଛି ? ଅବଳାର ଅପମାନ ! କିଏ ତୁ ! ନର ନା ପିଶାଚ କିମ୍ବା ପିଶାଚର ଦାସ ?

ବିଦ୍ୟା—ନରେଶ ନୟନେ ଏହି ତପ୍ତ ଅଗ୍ନିକୁଣ୍ଡ
ନିମିଷେ ନିମିଷେ ଥରେ ହୃଦୟ ଆକୁଳେ ।
କେ ଅଛ ଏ ଧରାଧାମେ କର ଆସି ତ୍ରାହି ।
(ସୋଦ୍‌ବେଗେ ହରିଶ୍ଚନ୍ଦ୍ର ପ୍ରବେଶ)

ହରିଶ୍ଚନ୍ଦ୍ର—ଭୟ ନାହିଁ, ଭୟ ନାହିଁ ଅଛି ହରିଶ୍ଚନ୍ଦ୍ର । (ଆଶ୍ଚର୍ଯ୍ୟଭାବେ) ଏ କଣ ତପସ୍ୱୀ ? ତପସ୍ୱୀର କାର୍ଯ୍ୟ କଣ ଅବଳାର ବଳିଦାନ ? ଏ ତପସ୍ୱୀ ନା ଭଣ୍ଡ ? ଦେବ ନା ରାକ୍ଷସ ? ଋଷି ନା ପିଶାଚ ?

(ବିଶ୍ୱାମିତ୍ରଙ୍କ ପ୍ରତି ଧାଇଁ)ଭଣ୍ଡ! ପବିତ୍ରତାପସବେଶ ଧାରଣକରି ଏହି ନାରକୀରକାର୍ଯ୍ୟ ! ଆସଇନ୍ଦ୍ର ! ଆସ ବିଷ୍ଣୁ ! ଆସ ଦେବଦେବ ଶିବ ! ଦେଖ ! ଲୁପ୍ତହୁଏ ଧର୍ମର ପ୍ରଭାବ । ନିର୍ଭୀକ ବ୍ରାହ୍ମଣବେଶ-ଧାରୀ ଭଣ୍ଡ ! ଏହିକ୍ଷଣି ତୋର କାର୍ଯ୍ୟର ଉପଯୁକ୍ତ ଦଣ୍ଡ ବିଧାନକରିବି । ଏବେ ମଧ୍ୟ ସାବଧାନ ହୁଅ । ( ଶର ଯୋଜନା )

ବିଶ୍ୱାମିତ୍ର—(କ୍ରୋଧ କମ୍ପିତ କଣ୍ଠେ) କିଏ ତୁ ନାରକୀ ! କାହାର ସାଧ୍ୟ ଅଛି ବିଶ୍ୱାମିତ୍ରର ଯାଗ ନଷ୍ଟ କରିବ ?

ନିତଦ୍ୟା—(ଅନ୍ତର୍ଦ୍ଧାନ ଓ ଦୂର ନେପଥ୍ୟେ ହାସ୍ୟ କରି) ହାଃ ! ଏହି ଧର୍ମ । ଏହି ଧର୍ମର ପ୍ରଭାବ ! ମାନବହାରା ଚଣ୍ଡଭଙ୍ଗ ହେଲା ।

ହରିଶ୍ଚନ୍ଦ୍ର—ପ୍ରଭୋ !ଅନ୍ୟାୟ କରିଛି । ନ ଜାଣି ନ ଚିହ୍ନି ଆପଣଙ୍କ ଯଜ୍ଞ ଭଗ୍ନ କରିଛି । (ସ୍ୱଗତ) କି ସର୍ବନାଶ ! ଏ ଯେ ବିଶ୍ୱାମିତ୍ର !

ବିଶ୍ୱାମିତ୍ର—କି ? ପୁନର୍ବାର ଅପମାନ ? ଦର୍ପାନ୍ଧ କ୍ଷତ୍ରିୟ ! ସସାଗରା ପୃଥିବୀର ଅଧୀଶ୍ୱର ହେଲୁ ବୋଲି ବିଶ୍ୱାମିତ୍ରଙ୍କୁ ଚିହ୍ନି ପାରିନାହୁଁ ?

ରାଜା—ବ୍ରହ୍ମେ ! ରମଣୀର ଆର୍ତ୍ତନାଦରେ ବିଗଳିତ-ହୃଦୟ ହୋଇ ମୁଁ ଅପ୍ରକୃତିସ୍ଥ ହୋଇପଡ଼ିଥିଲି । ଧର୍ମ ପାଳନନିମିତ୍ତ ଏଠାକୁ ଆସି ଅନ୍ୟାୟ କରିଛି । କ୍ଷମା କରନ୍ତୁ ।

ବିଶ୍ୱାମିତ୍ର—ଧର୍ମ ! ତପସ୍ୱୀ ପ୍ରତି ଏ ଅତ୍ୟାଚାର କରିବାକୁ କଅଣ ସ୍ୱଧର୍ମ ?

ରାଜା—ତପୋଧନ !

"ଦାତବ୍ୟଂ ରକ୍ଷିତବ୍ୟଂ ଚ ଯୋଦ୍ଧବ୍ୟଂ
କ୍ଷତ୍ରିୟୈଃ ସଦା ।

ଗୁଣବାନ୍ ପାତ୍ରେ ଦାନ, ବିପନ୍ନର ରକ୍ଷଣ ଓ କ୍ଷତ୍ରିୟ ସହିତ ଯୁଦ୍ଧ ହିଁ ରାଜାର କର୍ତ୍ତବ୍ୟ ।

ବିଶ୍ୱାମିତ୍ର—ବେଶ୍ ! ଯଦି ମୁଁ ତୁମ୍ଭର ଅନୁମାନରେ ଦାନର ପାତ୍ର ବୋଲି ଅନୁମିତ ହୁଏ, ତେବେ ସାଧ୍ୟାନୁସାରେ କିଞ୍ଚିତ ଦାନକର ।

ହରି—ବ୍ରହ୍ମର୍ଷେ ! ଆପଣଙ୍କପରି ଦାନଗ୍ରହୀତା ଏ ଜୀବନରେ ପ୍ରାପ୍ତବ୍ୟ ନୁହେଁ । ସେ ମୋର ପରମ ସୌଭାଗ୍ୟ । ତେବେ ଯଦି ଦାନ ଭିକ୍ଷା କଲେ ଏ ସସାଗରା ଧରା ଆଜି ଆପଣଙ୍କ ଚରଣରେ ଅର୍ପଣ କଲି । ଗ୍ରହଣକରି କୃତାର୍ଥ କରିବା ହେଉନ୍ତୁ ।

ବିଶ୍ୱାମିତ୍ର—ଆଉ ଦକ୍ଷିଣା ? ଦକ୍ଷିଣାବିହୀନ ଦାନର କିଛି ପୁଣ୍ୟ ନାହିଁ ।

ହରିଶ୍ଚନ୍ଦ୍ର—ଦକ୍ଷିଣା ସହସ୍ର ସ୍ୱର୍ଣ୍ଣମୁଦ୍ରା । ମୁଁ ରାଜଧାନୀରେ ପ୍ରବେଶ ମାତ୍ରେ କୋଷାଧ୍ୟକ୍ଷଙ୍କୁ ଆଦେଶ ଦେଇ ଅବିଳମ୍ବେ ଆପଣଙ୍କ ନିକଟ ପ୍ରେରଣ କରିବି ।

ବିଶ୍ୱାମିତ୍ର—(ତାଚ୍ଛିଲ୍ୟ ଭାବେ ଈଷତ୍ ହସି) ରାଜଧାନୀ ? କାହାର ରାଜଧାନୀ ? ଆଉ କୋଷାଗାର ? ସେ ବା କାହାର ? ହା ମୂର୍ଖ ! ସସାଗରା ପୃଥିବୀରୁ କି ତୋର ରାଜଧାନୀ ଭିନ୍ନ ? ତୋର ଆଉ କି ଅଧିକାର ? ଦାତବ୍ୟଧନର ପୁନର୍ଗ୍ରହଣ ?

ହରିଶ୍ଚନ୍ଦ୍ର—ନା ପ୍ରଭୁ ! ଭୁଲକରିଛି ।ଆପଣଙ୍କର ଦକ୍ଷିଣା ଏକମାସ ମଧ୍ୟରେ ଦେଇଦେବି ।

ବିଶ୍ୱାମିତ୍ର—ଉତ୍ତମ ! କିନ୍ତୁ ମୋର ରାଜ୍ୟରେ ତୁମ୍ଭର ବାସ ପର୍ଯ୍ୟନ୍ତ ନିଷେଧ ।

ହରିଶ୍ଚନ୍ଦ୍ର—ଶିରୋଧାର୍ଯ୍ୟ ! ଅନୁମତି ଦିଅନ୍ତୁ ଥରେ ଅନ୍ତଃପୁରମଧ୍ୟରେ ପ୍ରବେଶଲାଭକରି ପୁତ୍ର ଓ ପତ୍ନୀଙ୍କୁ ସଙ୍ଗରେ ନେଇଯିବି ।

ବିଶ୍ୱାମିତ୍ର—ହଁ, ତା' ଅନୁମତି ଦେଲି ।

ହରିଶ୍ଚନ୍ଦ୍ର—ସୁଦିନ ! ମା ବସୁଧେ !ଆଜି ତୋର ସୁଦିନ । ଭାଗ୍ୟର ପରିବର୍ତ୍ତନ ! ଆଜିଠାରୁ ତୋତେ ଏହି ମୁନିଗୁରୁ ବିଶ୍ୱାମିତ୍ରଙ୍କ ଚରଣରେ ଅର୍ପଣ କଲି । ବିଦାୟ ନିଏ ମା ! ଗୁଣବାନ୍ ପାତ୍ରରେ ଏ ଦାନ ପ୍ରିୟଜନ ତପର ଫଳ ଭିନ୍ନ ଆଉ କ'ଣ ହୋଇପାରେ ?

ବିଶ୍ୱାମିତ୍ର—ଯାଆ ନୃପ ! କର ସତ୍ୟରକ୍ଷା । ଧର୍ମଶୀଳ ହୁଅ !

ହରିଶ୍ଚନ୍ଦ୍ର—( ପ୍ରଣାମକରଣ । ବିଶ୍ୱାମିତ୍ର ପ୍ରସ୍ଥାନ)

ହରିଶ୍ଚନ୍ଦ୍ର—କର୍ମ ଶେଷ ହୋଇଛି, ବର୍ତ୍ତମାନ କର୍ତ୍ତବ୍ୟ ? କର୍ତ୍ତବ୍ୟ—ବାସ ନିରୂପଣ । ( କିଛିକାଳ ନୀରବ ) ହଁ । କାଶୀବାସ । ସେ ତ ସସାଗରା ପୃଥିବୀରୁ ଭିନ୍ନ । ତେବେ ଆଉ ଚିନ୍ତା କଣ ? ଆସେଁ, ମା ବସୁନ୍ଧରେ ! ବିଦାୟ ନିଏଁ । ପ୍ରଣାମ ଚରଣେ ।

( ପ୍ରଣାମକରଣ ଓ ପ୍ରସ୍ଥାନ )

## ଚତୁର୍ଥ ଦୃଶ୍ୟ ।

ନଦୀକୂଳ । ଗୁଣ୍ଡୁଚୁଣୀଦଳ କଳସୀ ହସ୍ତରେ ନୃତ୍ୟ
କରୁ କରୁ ଗୀତ ଗାଇ ଗାଇ ପ୍ରବେଶ । )

( ଗୀତ )

( ଆରେ) ଭଯ୍ୟାରେ ! କହନୁନା ଏ କ ହଲ ମାଯ୍ୟା ?
ହଇଲ ସାରାଦନ ଠାନ୍ ଠାନ୍ ତେଜ୍
ଝଟ୍‌କନ ସୁରଜ ଦେବତା ଗଲେ ହେଜ୍
ଛପ୍‌କା ଧରିଲା—କେନକ ଛପ୍‌ଲା
ପୁଡ଼ ପୁଡ଼ ଗଲା ମୋର କାଯ୍ୟା ରେ
ହଇଗଲା ସାଥେ ସାଥ୍ ଛୁଯ୍ୟାରେ ॥ ୦ ॥

ରଙ୍ଗିମା—ହେ କୁଚକା ! ଆରେ ବୋସ୍‌ନା ଭଯ୍ୟା !

କୁଚକା—ବସବ୍ କବୋ ! ତୁଇ ବସ୍‌ନା
( ସମସ୍ତଙ୍କର ଉପବେଶନ )

ଧମମା—ଏ କୁଚକ ! ଇବୋ ଶୁଣୁଚୋନାଇଁ ? ଇ ଦେଖ୍‌ବୋ । ଇଠେ କେନ୍ତା କେନ୍ତା କାଠମାନ ଛନ୍ତି ବୋ ।

ରଙ୍ଗିମା—ଏ ଭଯ୍ୟା ! ଦେଖିଲୁ ନା, ଅଜକେ କ କ ହଲା !

କୁଚକା—କବୋ ! କଣା କହୁଥା ବୋ ?

ଧମମା—ଇ ରାଜା କଥାଣା କ ବୋ ।

କୁଚକା—କ ହେଲା ବୋ ?

ରଙ୍ଗିମା—ଆଇଲା କ ରଥ । ଗଲା କ ଚୁଲ୍ ଚୁଲ୍‌କେ ।

କୁଚକା—କେ' ବୋ ? ହରିଶ୍ଚନ୍ଦ୍ର ରାଜା ? ଆହା ! ଧରମକା ଶେଠ୍ । ହାୟ ! ହାୟ ! କ କଥାଣା କହୁ ବୋ ? ଚୁଲ୍ ଚୁଲକେ ଗଲା ?

ଧମମା—ରୁଷି କ କରବେ ବୋ ? ଧରମ କ ନାଇଁ କ ବୋ ?

ନେପଥ୍ୟ—ଏ କୁଚ୍‌କ ! ଇ ଧାରକୁ ମେଁଆ ବୋ ।

ରଙ୍ଗିମା—କେତା ବଡ଼ା ସାପ ! ଫଁ ଫଁ କରସି, ହେଁ ଭଯ୍ୟା ! ଡରୁଚୁ କାଇଁକ ବୋ ? ଇଧାରକୁ ଗଲା ।

କୁଚକା—ଚଲ୍ ବୋ ! ସୁରଜ ଛପ୍‌ଲନ ଦେଖ ।

( ସମସ୍ତେ ନୃତ୍ୟସହ ଗୀତ )

ଆରେ ! ଚଲ ଯାଇ ଚଲ ଘରେ ଚଲ
ବାସା କେ ଗଲନ ପକ୍ଷୀ,
ଦେଖ୍ ଦେଖ୍ ଆରେ ସଖି ?
ନଦୀ କରେ କୁଲୁ କଲ୍ କଲ୍ ।
( ଗୀତ ଗାଇ ନୃତ୍ୟ କରୁ କରୁ ପ୍ରସ୍ଥାନ )
(ପଟ୍ଟ ପରିବର୍ତ୍ତନ ।)

---

## ପଞ୍ଚମ ଦୃଶ୍ୟ ।

ରାଜପଥ ! (ଗୋଟିଏ ବାଳକ ( ସମା ) ହାତରେ ଚଉପଦୀରେ କେତେକ ନଡ଼ଆପାନ୍ତ ଧରି ଖାଉ ଖାଉ ପ୍ରବେଶ)

ପାଠ ପଢ଼ା କଥା ପଡ଼ିବ ନାହିଁ ଆଉ ଏ ଜନମରେ ।
କେତେ ଦୁଃଖ ଦାଉ ସହିଲି ସତେ ଥିଲି ମୋ କରମରେ ॥
ନିତି ସକାଳୁ ହାତରେ ଖଡ଼ି
ଆଣିଦିଏ ମାଆ ହୋଇ କାମୁଡ଼ି
ଛଟେଇ ଶୋଇଲେ ବସୁଛି ବାଡ଼, ମରୁଛି ସରମରେ ॥
ସୁନା ଦେହ ମୋର ହେଲଣି ଚୂନା
ଗୁରୁ ରଖିଲେଣି ଏଥର କୁହ୍ନା
ଠେଙ୍ଗାକୁ ଠେଙ୍ଗାଣ ବସୁଛି ନିତି, କହୁଛି ଧରମରେ ॥

( ପଶ୍ଚାଦ୍‌ଦେଶରୁ ଲେକା ନାମରେ ଆଉ ଗୋଟିଏ ବାଳକ ଧୀରେ ଧୀରେ ପ୍ରବେଶ କରି ପଛପଟୁ ଚଉପଦୀରୁ କେତେଖଣ୍ଡ ନଡ଼ଆପାନ୍ତ ଛଡ଼ାଇ ନେଇ ପଥରତଳେ ଚୁପକରି ଲେପଟିବସିଗଲା )

ଶାମା—( ଚରୁଛି ପଡ଼ ପଛପଟକୁ ଚାହିଁ କିଛି ନ ଦେଖି ପାରିବାରୁ ) କାଇଁ ? କେହି ତ ନାଇଁ ? ଶଳା ଭୂଯାଁଣା । ଆସୁ ଆଗ, ଆଉ ଥରେ ଦେଖିବା ମଉଜଟା ।

ଲେକା—( ପଥରତଳୁ ଧୀରେ ଧୀରେ ଉଠି ହସି ହସି ଚାଲିଗଲା )

ଶାମା— (ଖଣ୍ଡେ ପାନ୍ତଖାଇ ଚଉପଦୀକୁ ଅନାଇଁ ଅନାଇଁ ) ବାଃ ବାଃ ! କ ମଜା ! ସବୁଦନ

ଶଳା ଅବଧାନ ଯୁବରାଜଙ୍କୁ ଡାକିବାକୁ ଏକା ପଠାଉଥିବ କି ? ଭାରି ମଜା । ମୁଁ ତ ଏଥରକ ଅଗହୋଇ ବାହାରିବି । ହଁ, ନଇଲେ ଆଜି କହିଦେବ—ଭିତରଆଡ଼େ ମୋତେ ସବୁଦିନ ଯାଇ ଡାକି ଆଣିବାକୁ କହୁଛନ୍ତି ବୋଲି । ହୁଁ, ଏଥରକ ଶଳା ଅବଧାନ କଣ ସେ କଥା ଜାଣି ପାରିବ—ନା ଭିତରୁ ବୁଝି ପାରିବ ? ମରିଯାନ୍ତା କି ଶଳା ଅବଧାନଟା । ନାଇଁ, ନାଇଁ, ନାଇଁ, ଏଁ, ସେ ଖାଇବାରୁ ଏତିକି ମିଳୁଛି । ଥାଉ, ଥାଉ । ମାଆ ଖାଲି ମରୁ । ଘରକୁ ଗଲେ ସବୁଦିନ ସେ ଲୋକାକୁ ଡାକି ଆଣି ପାଠ ପରୀକ୍ଷା କରୁଛି । ସେ ମଲେ ମଜାଟା ଅସଲ ହୁଅନ୍ତା ।

ନେପଥ୍ୟେ ଲୋକା—ଶାମା ! ଶାମାରେ ଏଣେ ଆ ।

ଶାମା—( ବାଟଆଡ଼କୁ ଚାହିଁ ) ଅଇଲାଣି ଶଳା । ଶଳାର ଭାରି ଆଇଷ । ହଁ, ମୁଁ ଗଲେ ମୋ-ଠୋଉ ଛଡ଼େଇ କରି ସବୁତକ ଖାଇବ । ବାଃ । ଭାରି ଶିହାଣା ! ମୁଁ ଶାମା । ଅଠରପଟ ଶତ କାଟି ଦେବି । ( ଚଉପଦୀ ସହିତ ପାତିତକ ମାଡ଼ିବସି ) କିଆଁ କିରେ ଲୋକା, ତୁ ଆସୁନାଉଁ ।

ଲୋକା—(ନିକଟକୁ ଆସୁ ଆସୁ ସ୍ୱଗତଃ) ଶଳା ନୂଚେଇ ଦେଲାଣି । ହଉ ରହ, ( ପ୍ରକାଶ୍ୟେ ) ଉଠି ଆ । ଅବଧାନେ ଡାକୁଛନ୍ତି, ତୁ କିଆଁ ଆଜି ଚାଟଶାଳୀକି ଯାଇନାହୁଁ ? ଅବଧାନେ କହିଛନ୍ତି ତୋତେ ଧରିନେବ ( ପାଖକୁ ଆସି ହାତ ଧରି ଉଠାଇ ନେବାର ଉପକ୍ରମ କରିବା )

ଶାମା—ହଁ ନା, ଭାରି ବଳୁଆଟା ! ଅବଧାନଙ୍କୁ ତ ମୁଁ କହି କରି ଆସିଛି । ଶଳା ଭାରି ବଡ଼ଲୋଟ ହୋଇଛି । ମୁଁ ତ ଯାଇଥିଲି ଯୁବରାଜଙ୍କୁ ଡାକି ଯେ ସେ ଗୋଟାଏ ବଡ଼ଘୋଡ଼ା ହେଲେ ଚଢ଼ିକରି ଆସିବେ ବୋଲି ଜିଦ୍ ଧରି ବସିଥିଲେ । ପଛକୁ ଆସିବାକୁ କହିଲେ । ମୁଁ ତ ଏଇଠି ପୋଖରୀପାଣି ପିଇବ ବୋଲି ବସିଛି । ଆଉ ଏ ଶଳା ଆସିଲା ଡାକିବାକୁ ? ଯା ଅବଧାନଙ୍କୁ କହିଦିଆ । ଆମେ ତମକୁ ବଡ଼ଲୋଟ ବୋଲି ମାନମୁଁ ନାଇଁ, ଯାଃ । ମୁଁ ତ ପୋଖରୀପାଣି ପିଇବାକୁ ବସିଛି । ପଢ଼ିଲାବେଳେ ସିନା ବଡ଼ଲୋଟ ।

ଲୋକା—କି ? ପୋଖରୀପାଣି ଯାଉ ନାହିଁ ? ଯା, ତୁ ଆସିଲେ ମୁଁ ଯିବି । ( କିଅଁ ନେଇକରି ) ନାଇଁରେ ଶାମା । ଅବଧାନେ ଡାକୁନାହାନ୍ତି ରେ ଶାମା । ମୁଁ କଅଣ ଆଜି ଆଗ ପଢ଼ି ଯାଇଛି କି ? ଖେଳିବା ବୋଲି ଡାକୁଥିଲି ନା ! ମୁଁ ତ ପୋଖରୀପାଣି ଆସିଥିଲି, ତୋତେ ଦେଖିଲାକୁ ଏଠିକି ଆସିଲି । ଚାଲ ଖେଳିବା । ( ସ୍ୱଗତଃ ) ଶଳାକୁ ଫନ୍ଦି ନ ଚଢ଼େଇଲେ ଉଠେଇକରି କହିଲେ ହବ ନାହିଁ । ଦେଖେଁ ତ ।

ଶାମା—ତୁ କଣ ପୋଖରୀପାଣି ଗଲୁଣି ?

ଲୋକା—ନାଇଁ ତ ।

ଶାମା—ତେବେ ଆ' ଯା' । ଆସିଲେ ଖେଳିବା । ମୁଁ ବସିଛି ।

ଲୋକା—ତୁ ଚାଲ ସାଙ୍ଗ ହୋଇ ଯିବା ।

ଶାମା—ଉଁ, ମୁଁ କଣ ସତରେ ଯିବି କି ? ତୁ ଅବଧାନଙ୍କ କଥା କହିଲାଠୁଁ ମିଛରେ କହିଦେଲୁନା !

ଲୋକା—ମୁଁ ସେମିତି ମିଛରେ କହିଲି ମ । ମୁଁ ଖେଳିବାକୁ ଆସିଥିଲି ନା । ଆ !

ଶାମା—କଣ ଖେଳିବା ? (ସ୍ୱଗତଃ ) ଶଳା ତ ନ ଯାଏ । କରେଁ କଅଣ ?

ଲୋକା—ଗୋଟେ ନୂଆ ଖେଳ । ମୁଁ ଥୋଡ଼ାଏ ବାଲି ଆଣେ । ବାଲି ଗଦାରେ ଖେଳିବା—ନୂଆ ଖେଳଟେ ।

ଶାମା—ଆଣ ତେବେ । ତୁ ଗଦା କର ।

ଲୋକା—( ବାଲି ଆଣିବାର ) ଆ । ( ଗଦା କରି ) ଆଗୁ ଶାମା ! ତୁ ପଛକୁ ଚାହିଁବୁ ନାଇଁ, ସେଇ ପଥରରେ ବସିଥା, ମୁଁ ପଛପଟେ ତୋର କେତେଗଦା ବାଲି ରଖିବି କହି ପାରିବୁ ?

ଶାମା—ହିଁ, କହିଦେବ । ( ସ୍ୱଗତଃ ) ଗୁହିଁବ ନାହିଁ, ନା ଗୁହିଁବ ନାହିଁ ?

ଲେକା—( ପଛ ପାଖକୁ ଯାଇ ଓ ଅନାଇଁ ଚଉପଢୀ ପଦ ଦେଖି ଖୁସି ହେବାର ଅଭିନୟ କରିବାର ) ଶାମା କହିବୁ ନା ? ତୁ ସୁନ୍ଦରକୁ ଅନାଇବୁ ନାହିଁ । ( ବାଲଦୋ କରୁ କରୁ ହଠାତ୍ ଉଠି ) ଶଳା, ଏପାଖକୁ କାହିଁକି ଗୁହୁଁଛୁ ? (ଆଗିରେ ବାଲମାଗ ପେଲ ଦେବା ଓ ଚଉପଢୀ ସେନ ପ୍ରସ୍ଥାନ କରୁ କରୁ ତାଳ ମାଗ ମାଗ ) ଘୋଡ଼ା ଆଇଲା । ଘୋଡ଼ା ଆଇଲା । ଯୁବରାଜ ଆସୁଛନ୍ତି । କୁଦ, ପକାଇବ ! ପଳା । ପଳା ।

ଶମା—( କାନ୍ଦ୍ କାନ୍ଦ୍ ) ଯାଉଛି । ଶଳା ନାଁ'ରେ ଅବଧାନଙ୍କୁ କହିବ । ଶଳା ମୋର ପାତ୍ତତକ ଛଡ଼ାଇନେଲା ।

ଲେକା—ଅଇଲା ଘୋଡ଼ା ।

(ତାଳମାଗ ହସିଲା)

ଶାମା—( କାନ୍ଦ କାନ୍ଦ ପ୍ରସ୍ଥାନ )

ଲେକା—( ଅନ୍ୟ ଦିଗେ ପ୍ରସ୍ଥାନ )

( ପଟ୍ଟପରିବର୍ତ୍ତନ )

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

ରାଜଭବନର ଅଂଶ—ବିଷାଦ ଚିନ୍ତିତ ମନେ ରାଜା ହରିଶ୍ଚନ୍ଦ୍ର ଉପବେଶନ କରି:—

ହରିଶ୍ଚନ୍ଦ୍ର—କି କହିବ ?
କି କହିବ ଏହି ମୁଖେ ?
ଏହି ମୁଖେ କପରି ମୁଁ ଦେବ ଏ ବାରତା ?
ଶ୍ୟାମ ବାର୍ତ୍ତା,—
ଶତବଜ୍ର ପ୍ରହାରୁଁ କଠୋର ।
ଶୈବ୍ୟା । ଶୈବ୍ୟା ।
ରମଣୀର କାତର ପରାଣ ।
କାହୁଁ ଅବା ସହିବନ୍ତି ଏ ଖ୍ଷଣ ବାର୍ତ୍ତା !
ଆଜ ରାଣୀ,
କଙ୍କାଳମୟ କାଳ ।
ମୃଗୟା ଭ୍ରମଣୁ ଫେରି ଆସିଲାଣି ବୋଲି,
ଗୁହିଁ ବସିଥିବ ପଥେ ଆକୁଳ ନୟନେ ।
ନା, ନା, ପାଗଳନି !
ତୃପ୍ତ ଆଶା ଥାଉ ହୃଦେ ଶୁପ୍ତ ।
ଥାଉ ତୋର କରୁଣ ନୟନ ।
ଖାଲି କରୁଣ ନୟନ ନୁହେ,
ମୋରେ ଭଗ ଛଳଛଳ ନୟନର ପ୍ରାନ୍ତ ।
ବିଧାତାର ଯାହା ଇଚ୍ଛା,
ଅଛି କର୍ମେ ଯାହା,
ହେଉ ତା ପୂରଣ ।
ବିସ୍ତରେ ରୋହିତ !
ଆହା !
ଫାଟିଯାଏ ବୁକୁ ।
ଆଜ ରାଜସୁତ !
ସହସ୍ର କଙ୍କର ଯା'ର ପଦେପଦେ
ଗୁହେଁ ଆଜ୍ଞା ମାତ୍ର ଲାଗି, ହାୟ !
ବିଧିର ନିବନ୍ଧ ।
ଉଦର ଭରଣ ତା'ର
ଭିକ୍ଷାନ୍ନ କେବଳ ।

( ଅଶ୍ରୁମୁଞ୍ଚନ )

ଅଶ୍ରୁବିନ୍ଦୁ !
ସ୍ଥିର ଥାଅ ନୟନେ ନୟନେ,
ନଭୁବା ଏ ମାରଜଣା ଦୁଃଖିମାର ବକ୍ଷ ।
ହାୟ ! ହରିଶ୍ଚନ୍ଦ୍ର ।
ମରଣ କି ନୁହେଁ ଏଥୁଁ ଶ୍ରେୟଃ ?
ନେପଥ୍ୟକୁ ଚାନଡ଼େର ) କିଏ ?
(ନେପଥ୍ୟେ ପଦ ଶବ୍ଦ ଓ ଗାଉଥିବା ନୟୂତ )
ଗୀତ । ଖମ୍ବାଜ ମିଶ୍ର—ଏକତାଳ ।

ନେପଥ୍ୟେ—ହିହ ଯାହା ଲହିଥିବ କରମପଟେ
ହେବ କି ଆନ ଆକାଶ ପାତାଳ ପାଲଟେ
ବଡ଼ ହୁଏ ସାନ ।

ହରିଶ୍ଚନ୍ଦ୍ର—କିଏ ଆସେ ଅସମୟେ ।

( ବସନ୍ତ ଗାଇ ଗାଇ ପ୍ରବେଶ । )

କୁସୁମ ଫୁଟଇ, ବାସ ମହକଇ
ବସନ୍ତ ପବନେ ମଧୁରେ ଦୋଳଇ
ହରଷ ବିଷାଦ ବିଧିର ଲିଖନେ,
ମାନ ଅପମାନ ଭରା ଏ ଜୀବନ ।

( ଗାଉ ଗାଉ ପ୍ରସ୍ଥାନ )

ହରିଶ୍ଚନ୍ଦ୍ର—କିଏ ଗୀତ ଗାଇ ଅସମୟେ ଆସେ,
ପୁଣି ଅନ୍ତଃପୁର ମଧ୍ୟେ ? ଅସମ୍ଭବ କଥା !
ଅସମୟ ? କା'ର ଅସମୟ ? ଦ୍ୱାରେ ଦ୍ୱାରେ
ଲାଞ୍ଛିତ ଭିକ୍ଷୁକର ପୁଣି ବାକି ଅଛି
ସମୟାସମୟ ! ଘୋର ନିଶା, ଥରେ ଥରେ
ଚମକେ ଚପଳା ପଦେ ପଦେ ଅଶନିର
ଗମ୍ଭୀର ନିର୍ଘାତ, ଝଡ଼ସଙ୍ଗେ ବର୍ଷାବିନ୍ଦୁ
ପଡ଼ଇ ଅଙ୍ଗରେ, ଝାଙ୍କି ହୁଏ ଚକ୍ରରାଜି,
କ୍ଷୀଣ ବନପଥ—କଣ୍ଟକିତ କ୍ଷୀଣ ବନପଥେ
ଚାଲିରେ ଭିକ୍ଷୁକ, ଯେଉଁ ଝଡ଼ଠୁ ଚୋର
ଘର । ପୁତ୍ର ପତ୍ନୀ ରହିଁ ବସିଥିବେ । କହ
ରାଜା ! କହ ହରିଶ୍ଚନ୍ଦ୍ର ! କହ ଛଦ୍ମପତି !
ନା, ନା, କିସ କହେଁ ? ବାତୁଲତା । ବାତୁଲତା
ଯାଇ ନାହିଁ ଦିନେ । କହ ରେ ଭିକ୍ଷୁକ ! କହ,
କାହାମୁଖେ ଚାହିଁବ ତ ? ପୁତ୍ର ପତ୍ନୀ ମୁଖେ ?—
ଅବା—ଭିକ୍ଷୁ ଅଟେ ଚୋର ? ସେହି ଚୋର
କାର୍ଯ୍ୟ । ସେହି ଚୋର ସମୟାସମୟ । ଚକ୍ଷୁହୀନ,
( ଶତ କୋଶ ମଧ୍ୟ ମଧ୍ୟ ନାହିଁ ଲତାଟିଏ )
ମୀନହୀନ ଶ୍ୟାମ ମରୁଭୂମି, ଆଉ ଗ୍ରୀଷ୍ମ-
ଦିବା ମଧ୍ୟାହ୍ନ ସମୟ । ସର୍ଯ୍ୟଦେବ ବସି
ସେହି ଦିବ୍ୟ ସିଂହାସନେ, ତପ୍ତ ଅଗ୍ନିବିନ୍ଦୁ ବିନ୍ଦୁ
ନିକ୍ଷେପନ୍ତେ ନିତ୍ୟ । ଉତ୍ତପ୍ତ ବାଲୁକା,
ନାହିଁ ଶିରେ ଆତପତ୍ର, ଅନଶନେ କ୍ଷୁଧ୍
ତୋ ଜଠର, କଣ୍ଠ ତାଳୁ ନୀର ବିନେ ଶୁଷ୍କ,
ସମ୍ମୁଖେ ତୋ ଶ୍ୟାମ ମରୀଚିକା,—ସଂସାରର
ଅସାର ଛଳନା-ଛାୟା ଦେଖାଇ ମାନବେ
ଭୁଲାଏ ପଲକେ, ପ୍ରବେଶିଲେ ତୋ ନିକଟେ
ଦୂରେ ଦୂରେ ଅପସରେ ହସି ସେ ଚାହିଁଲେ ।
ସେହି ରେ ଭିକ୍ଷୁକ, ସେହି ତୋର କାର୍ଯ୍ୟବେଳା ।
ସମୟାସମୟ ଜ୍ଞାନ ଏକା ସେହିବେଳେ ।
ଉଷ୍ଣ ଅଶ୍ରୁବିନ୍ଦୁ, ଉଷ୍ଣ ଖରଶ୍ୱାସ,
ଉଷ୍ଣ ପ୍ରଭଞ୍ଜନେ ଭାସି ବାତଚକ୍ର ପ୍ରାୟେ
ଭ୍ରମ ଅବିରତ, ମରଣ କି ନୁହେଁ ଏଣୁ ଶ୍ରେୟଃ ।

(ଅଶ୍ରୁମୋଚନ)

(ଶୈବ୍ୟା ପ୍ରବେଶ)

ଶୈବ୍ୟା—କାହିଁ ଗଲେ (ଚମକିପଡ଼ି ସ୍ୱଗତଃ) ଏ କଣ ?
ସହସା ଏ କି ଦୃଶ୍ୟ ! ମହାରାଜ ! ମହା···

ହରିଶ୍ଚନ୍ଦ୍ର—(କଥାରେ ବାଧାଦେଇ) ଆଉ ମହାରାଜ
ନୁହେଁ ଶୈବ୍ୟା ! ଭଗବାନ୍ ସେଥିରୁ ନିଷ୍କୃତି
କଲେଣି । ଗଲା, ଯାଉ । କୁଟିଳତା କପଟତା
ଗଲା । ଯାଉ, କୁଟିଳତା କପଟତା ପୂର୍ଣ୍ଣ ରାଜନୀତି,
ରାଜଧର୍ମ, ଯାଉ । ବେଶ ! ନିଷ୍କୃତି ମୁଁ, କିନ୍ତୁ,
ତଣ କହିବ ?

ଶୈବ୍ୟା—ପ୍ରଭୁ ! ଏ କି କଥା ? କୁମାର ରୋହିତଙ୍କୁ
ରାଜ୍ୟଭାର ଦେଇ ନିଜେ ନିଷ୍କୃତି ହେବାର ଇଚ୍ଛା
କରିଅଛ ? ସେ ତ ପିତାମାତା ଯାହା ଲୋଡ଼ନ୍ତି
ତାହା ! ସେଥିରେ ଆଉ ଦୁଃଖ କଣ ? ଅକଳଙ୍କ
ଶଶିମୁଖ ପ୍ରଭାହୀନ ଦିଶିବାର କାରଣ କଣ ?
ଏ କି' ବିପରୀତ ଦୃଶ୍ୟ ?

ହରିଶ୍ଚନ୍ଦ୍ର—ନୁହେଁ ଶୈବ୍ୟା !
"ବିପରୀତ ହୁଏ ପୁଣି ସମ୍ଭବିତ ଭବେ" ।
ରୋହିତଙ୍କୁ ଯୌବରାଜ୍ୟ ଦାନର ସଙ୍କଳ୍ପ ? ଆଜ
ସେ ଆଶାଟି ବିଶ୍ୱାମିତ୍ର ମୁନିଙ୍କର ତପୋବନରେ
ଶେଷ କରିଦେଇ ଆସିଛୁ । ପ୍ରିୟେ ! ଶୈବ୍ୟା !
ବୁଝିଲ କି ? କଣ ବୁଝାଇବ ? କଣ ବୁଝାଇବ ?
ବକ୍ଷ ଫାଟି ଯାଉଛି ।

ଶୈବ୍ୟା—ଜୀବିତେଶ୍ୱର ! ଏ କି ଛଳନା ଆଜ ?
ନାଥ, ଏ ହୃଦୟ ଶତ ବଜ୍ରର ଶ୍ୟାମ ପ୍ରହାରରେ

ଶଙ୍କିତ ନୁହେ । ମସ୍ତକ ସହସ୍ର କାଳକଣ୍ଠର ବିଷ ଦଂଶନ ସହିପାରେ । ଆଉ ଏ ପରାଣ ଅକାତରେ ଶତସହସ୍ରମରଣଲାଗି ପ୍ରସ୍ତୁତ । କିନ୍ତୁ, ପ୍ରାଣେଶ୍ବରଙ୍କର ନୟନର କ୍ଷୁଦ୍ର ଅଶ୍ରୁବିନ୍ଦୁ ସହିପାରିବା ଭଳି ପ୍ରାଣ, ମସ୍ତକ ବା ହୃଦୟ ଅଭାଗିନୀର ନାହିଁ । କହ ପ୍ରିୟତମ ! ବିଶ୍ବାମିତ୍ର କଣ ଅଭିଶାପ ଦେଇଛନ୍ତି ? ଅଭାଗିନୀ ମୁନିପଦରେ ଶରଣାଗତା ହୋଇ କଣ ପୁଣି ସେହି ମଣିହାର ଗଳାରେ ଫେରିପାଇବ ନାହିଁ ?

ହରିଶ୍ଚନ୍ଦ୍ର—ନାରୀ । କୋମଳ ପ୍ରାଣ । ସରଳଭାବନା । ଜଗତର କୁଟିଳତାରେ ପ୍ରବେଶାଧିକାର ନାହିଁ ? ଦେବି ! ଶାପ ନୁହେଁ, ଅଭିନନ୍ଦିତ । ନିଜେ ନିନେ ସେ ବିଜତ ଆମନ୍ତ୍ରଣ କଲେ । ତପଃମଗ୍ନ ମୁନିଙ୍କ ନିକଟରେ ଗୋଟିଏ ରମଣୀ ମୋର ସାହାଯ୍ୟ ଭିକ୍ଷା କଲା । ମୁଁ ତା'ର ପାଶମୋଚନ କଲେ ମୁନିଙ୍କର ତପଃ ଭଗ୍ନ ହୋଇଯିବାରୁ ବିଶ୍ବାମିତ୍ର କ୍ଷିପ୍ରହୋଇଉଠିଲେ । ମୁଁ ସେତେବେଳେ ରାଜଧର୍ମ ରକ୍ଷାନିମିତ୍ତ ତତ୍ପର ଥିଲି ।

ଶୈବ୍ୟା—କଣ ? କଣ କହୁଛ ନାଥ ! ବିଶ୍ବାମିତ୍ରଙ୍କର ତପଃଭଙ୍ଗ ?

ହରିଶ୍ଚନ୍ଦ୍ର—ଅଧୀର ହୁଅନାହିଁ । ପୂର୍ବାପର ସମସ୍ତ ଘଟଣା ଶୁଣି ସାର । କ୍ରୋଧାନ୍ଧ ବିଶ୍ବାମିତ୍ରଙ୍କୁ ମୁଁ ବିନୀତ ଭାବରେ କେତେକ କଥା କହିବାରେ ଶାନ୍ତ-ହୋଇ ମୋଠାରୁ ସସାଗରା ପୃଥିବୀର ଦାନ ଭିକ୍ଷାକଲେ । ଦେଇଅଛୁ । ସହସ୍ର ସୁବର୍ଣ୍ଣମୁଦ୍ରା ଦକ୍ଷିଣା ଦାନ ନିମିତ୍ତ ସତ୍ୟକରି ଆସିଅଛୁ, କିନ୍ତୁ ତାଙ୍କ ରାଜ୍ୟମଧ୍ୟରୁ ଦେବା ଅଧର୍ମ । ଏଣୁ କାଶୀଧାମ ଯିବି, ସେଠାରୁ ଦକ୍ଷିଣାର ଆୟୋଜନ କରିବାକୁ ହେବ । ପ୍ରିୟେ ! ଆଉ ବିଳମ୍ବ ନିଷ୍ପ୍ରୟୋଜନ । ତତ୍ପର ହୁଅ । ତୁମ୍ଭେ ପୁତ୍ରସହିତ କାଲି ପିତାଳୟକୁ ଯାଅ ।

ଶୈବ୍ୟା—ପ୍ରିୟତମ । ଅବଳା ମୁଁ, ସତ୍ୟ । କିନ୍ତୁ କ୍ଷାତ୍ର ବଂଶ । ସସାଗରା ଧରାଦାନ ଆପଣଙ୍କପକ୍ଷେ ଅସମ୍ଭବ ନୁହେଁ । ଦାସୀ ସେଥିନିମନ୍ତେ ଭୃକ୍ଷେପ କରୁ ନାହିଁ । ରାଜଭୋଗ, ସେ'ତ ତୁଚ୍ଛ କଥା । ରାଜା କିଏ ? ପ୍ରଜାର କିଙ୍କର କିନା ? ପ୍ରଭେଦ, ରାଜା-ସିଂହାସନାରୂଢ଼ । ଏତିକି ମାତ୍ର । କିନ୍ତୁ ଗଳାରେ ସମ୍ପୂର୍ଣ୍ଣ ଅଧୀନତା ଫାଶ । ପ୍ରଜାର ଅନ୍ନରେ ଆଜନ୍ମ ପ୍ରତିପାଳିତ । ଲୋଡ଼ା ନାହିଁ । ଉତ୍ତମ ହୋଇଅଛି । କିନ୍ତୁ କହ ନାଥ ? କହ ଦେଖି । ଦାସୀ କି ଅପରାଧରୁ ଚରଣ ଦର୍ଶନରୁ ବଞ୍ଚିତ ହେବ ? ନା—ଏ ବିଧାତାର ବିଡ଼ମ୍ବନା । ଧରଣୀର ସବଂସହା ନାମଟି ପ୍ରକୃତ ବ୍ୟବହାର ହେଉଛି । ବିଷ, ଏ ଜୀବନରେ ଏ କଥା ଶୁଣିବା ପୂର୍ବରୁ ବଧିର୍ଣ୍ଣ ହେବାର ସୁଯୋଗ ମଧ୍ୟ ଘଟି ପାରିଲା ନାହିଁ, ପ୍ରିୟତମ ! (ସକରୁଣ ଦୃଷ୍ଟିପାତ)

ହରିଶ୍ଚନ୍ଦ୍ର—ଶୈବ୍ୟା, ଓହୋ ! ମର୍ମ ଦହିଦିଏ । ବସରେ ! ସ୍ନେହତରେ ! ଆହା । ନବନୀତ କୋମଳ ପିତୁଳି । ଶର ନାଶ, ଯେଉଁ ସ୍କନ୍ଧରେ ଧନୁ ଧରିଥିଲୁ, କାଲି ତା' ଭିକ୍ଷୁକର ଭିକ୍ଷାନ୍ନଝୁଲିଧାରଣର ସ୍ଥାନ ହେବ? ଆଜି ରାଜସୁତ କାଲି କାଙ୍ଗାଳ ସମାନ । ପ୍ରିୟେ ! କେଉଁ ମୁଖରେ ଆଉ ତୁମ୍ଭମାନଙ୍କର ସେ······ ନା ଥାଅ, ମିବାଲଗି ମୋତେ ଆଉ ବଳାଇନାହିଁ ।

ଶୈବ୍ୟା—ଜୀବନ ସର୍ବସ୍ୱ ! ତୁମ୍ଭେ ରାଜରାଜେଶ୍ବର ଆଉ ଏ ଅଧୀନା ସହକର୍ମ ମହାରାଣୀ । ତୁମ୍ଭେ ପଥର କଙ୍ଗାଳ, ଏ ଅଧୀନା କଙ୍ଗାଳର ପତ୍ନୀ କଙ୍ଗାଳିନୀ । ତୁମ୍ଭେ ଚଣ୍ଡାଳ ସମାନ, ଚଣ୍ଡାଳିଣୀ ବେଶଛଡ଼ା ଆଉ ଦାସୀର କି ଗତି ? ଗୋଲାପ ଲତା ଝାଉଁଳି ପଡ଼ିଲେ କେବେ କଳିକା କି ପ୍ରଫୁଲ୍ଲ ଥାଏ ? ପ୍ରଭୁ ! ମୋତେ ନିରାଶ କର ନାହିଁ । ନାଥ ! —(ବିକଳ ଅଶ୍ରୁପାତ)

ହରିଶ୍ଚନ୍ଦ୍ର—(ବିକଳ କଣ୍ଠରେ)—ଶୈବ୍ୟା ! ଶୈବ୍ୟା ! (ଗଳ ଦେଶରେ ହସ୍ତସ୍ଥାପନ ପୂର୍ବକ ମୁଖଲୁଷ୍ଠିଇ

କର୍ମ ଚକକଣ୍ଠେ) ଶୈବ୍ୟା ! ତୁମେ ଦେଖି ନା ମାନିବ ? ମୁଁ ଜୀବନ ନା ମୃତ ? ତୁମେ ମୋର ସେହ୍ନ ଅଭିମାନୀ, ଶୈବ୍ୟା ? ପ୍ରିୟେ ! ଶୈବ୍ୟା !

ଶୈବ୍ୟା—(ସେହ୍ନପର ପତିଙ୍କୁ କୁଣ୍ଢାଇ ଧରି) ନାଥ !

---

## ଦ୍ୱିତୀୟ ଦୃଶ୍ୟ

(ବନ ମଧ୍ୟରେ ଗୋଟିଏ ଡଗର, ଗୋଟିଏ ବାଳକ ଗାଇ ଗାଇ ଦୀପଟିଏ ଧରି ପ୍ରବେଶ ।

(ଗୀତ)

ନାହିଁ ନାହିଁ ନାହିଁ ଆଉ ନ ସହିବ ଦପତର
ମାଆ ବ୍ରତୀନନ୍ଦ ମୋତେ କଲା ବଡ ଦରବର,
ନ ଦେଲା ମୁଠେ ଆହାର, ଘରେ ପଶିଲେ ପାହାର,
ମୁହଁକୁ ଚାହିଁଲେ ମୋର ଦାଗେ ହୁଏ ଗର ଗର ।

ସବୁବେଳେ କହିଲା ଚାକର । କାହିଁ ? କେତେ ଖୋଜିଲିଣି । ନଈ ନାଳ ଖୋଜିଲି, ବଣବୁଦା ଖୋଜିଲି, ବିଲମାଳ ଖୋଜିଲି । କାହିଁ ? ମାଇଲିତ ନାହିଁ । ଚାକର ଆଉ କଣ ଗଛରେ ଫଳେ ? କ ଗଛ ? କୋଉ ଗଛରେ ଫଳେ । ଟିକିଏ ସୁବିଧା ପାଇଲେ ଏକଦମ ମୂଳ, ଡାଳ, ଫଳ, ଫୁଲ ସବୁ ସେବାରେ ଦେଇଅନ୍ତି । କେତେ ଖୁସାମଦ୍ ବରାମଦ୍ କଲି, ମା' କହିଲ ମଲକ, କୋଉଠି ତ ନାହିଁ ।

( ଋଷ୍ୟମିତ୍ରଙ୍କ ଶିଷ୍ୟ ମାଙ୍ଗଲ୍ୟର ପ୍ରବେଶ )

ମାଙ୍ଗଲ୍ୟ—କିରେ ଟୋକା, କଣ ମନେ ମନେ ହଜୁଛୁ କି ?

ବାଳକ—ନାହିଁ, କହୁ ନାହିଁ ସେ, ଏଇ ଚାକର କଥା । କୋଉଠି ଅଛି ? କୋଉଠି ଥାଏ ?

ମାଙ୍ଗଲ୍ୟ—ଦୀପଟେ ତ କଣ ଧରିଛୁ ।

ବାଳକ—ଖୋଜୁଛି । ଚାକର ଖୋଜୁଛି ।

ମାଙ୍ଗଲ୍ୟ—ତୁ କ ଜାଣୁ ? କ ଚାକର କରିବୁ ?

ବାଳକ—ଆମେ, ଆମେ ? ଅଫଲ ପାଣି ଫ୍ରରସିଆ ବାଉଳ ସବୁ କରିବ, ପାଣି କାଢ଼ିବ, ଘର ଜଗିବ, ଶୋଇବ, ଚେଇଁବ, ଚାହିଁବ, ବୁଲିବ, ସବୁ କରିପାରିବ ।

ମାଙ୍ଗଲ୍ୟ—ଟୋକାଟା ଶିହାଣୀ । ପାରିବ । ଆଗୁ କାଠପତର ଶାଉଁଟି ପାରିବୁ ? ଗୋରୁ ଜଗି-ପାରିବୁ ? ଫୁଲ ତୋଳି ପାରିବୁ ? ମୁଁ ଶୋଇଲେ ଉଠାଇ ପାରିବୁ ? ପାରିବୁ, ପାରିବୁ ? ଏଁ ?

ବାଳକ—ଏ କଣ ଛେନାମଣ୍ଡା ? ତେମେ ତ ଏକାଠେଇ ଏତେ ପଚାରିଗଲ କୋଉଟା କହିବ ?

ମାଙ୍ଗଲ୍ୟ—ଆଚ୍ଛା ରହ । କହ, କହ ।

ବାଳକ—ପାରିବ । ପାରିବ ହଁ ସେ ବାକ ଦାନା ମୁଠିକ କଥା । (ପେଟରେ ହାତ ବୁଲାଇ)

ମାଙ୍ଗଲ୍ୟ—ସେ କଥା କଣ ଆଉ ବୁଝାସିବ ନାହିଁ ? ଯେତେ ଖାଇବୁ ତେତେ ଦବା । ଆରେ, ଏଇନେ ଆଉ କଣ ସେକଥା ଅଛି ? ଏଇଟିଣିକା ରଜା ଗଜୋଡ଼ା କାରଖାନା । ଖାଇବ, ନା ଯା ଖାଇ ଯା, ଯା ଖାଇ ଯା । ଖାଉଥା । କେତେ ଖାଇବୁ ?

ବାଳକ—ବାଃ ବାଃ ! ସରୁ ଭାତ ଦବ ? ଘିଅ ଦବ ନା ?

ମାଙ୍ଗଲ୍ୟ—ହଁ ବହୁତ ।

ବାଳକ—ଏଁ ବାକ ଖଣ୍ଡେଲେଖେଁ ଲେମ୍ବୁ ଚପୁଡ଼ ଦେଉଥିବ, ଏତେବେଳେ ମୋର ଚଳିଲା ।

( ଅଙ୍ଗଭଙ୍ଗି କରି )

ମାଙ୍ଗଲ୍ୟ—ଆଚ୍ଛା, ହଉ ଦବା ।

ବାଳକ—(ହେଣ୍ଡି ମାରି) ବେଶ୍ ଖା'ଲେ ମା ! ଖା ! ଏଥରକ ଆଉ ପରଓ୍ୱା କ'ଣ ? ମୋପରି ମୁଁ । ଏଥରକ ନପବେ ଗୋଟେ କଉଡ଼ ତୋତେ ଦେଖେଇଛୁ ? କେତେ ଖୁସାମଦ କରିବୁ,

କେତେ ମାଗିବୁ । ନେଉଁଚ ଦେବୁ । ମୁଁ କହୁଥିବ (ମୁଣ୍ଡହଲାଇ ସଗର୍ବେ) ନାହିଁ । ଯା ବେ (ଗୋଡ଼ ବୁଲାଇ ବୁଲାଇ ପକାଇ ଗେଲେଇ ହୋଇ) ଗ୍ଲଲ, ଗ୍ଲଲ ।

ମାଙ୍ଗଲ୍ୟ—ବାକ ଆମ ଗ୍ରମୁରୁ ବେଳେ ବେଳେ ବଣକୁ କାଠ ଆଣି ଯାନ୍ତି । ଓଃ ଓଃ ନା-ନା (ଭୁଲିଯିବାର ଅଭିନୟ ମୁଣ୍ଡ କୁଣ୍ଡାଇ) ଭୁଲ କହୁଛି । ରଜା ଘଜୋଡ଼ା କଥା ନା ? ଟିକିଏ ଅଭ୍ୟାସ ନାହିଁ । କହୁ କହୁ ଧରାପଡ଼ି ଯାଉଛି । ହଁ, ବାକ ଆମ ଶ୍ରୀଗ୍ରମୁରୁ ବେଳେ ବେଳେ ବଣକୁ ଶିକେ କରନ୍ତି ।

ବାଳକ—କାହିଁକି ଯା ?

ମାଙ୍ଗଲ୍ୟ—ଓଃ ସେକଥା ପରେ ବୁଝିବୁ । ହଁ ଶୁଣ୍ଣୁ... ଯେ, ଶିକେକରୁ । ସେଣୁ ବାହୁଡ଼ାଶିକେ କଲ୍ବେଲକୁ ଶ୍ରୀପଦ୍ମର ଶୂଳାଇ ହୁଏ । ତୁ ଟିକିଏ ଟିକିଏ ପାଦସେବା କରି ପାରିବୁ ତ ?

ବାଳକ—ହଁ । ସେ ତ ମୋ ବୋପାର ପେଶା । ପାରିବି ନାହିଁ ?

ମାଙ୍ଗଲ୍ୟ—ଗ୍ଲଲ ତେବେ । ଗ୍ଳକରି ତ ହେଲୁ । ଆଉ ଦୀପଟେ କଣ ହେବ ? ଗ୍ଲଲ୍ (ପ୍ରସ୍ଥାନ)

ବାଳକ—ହଁ ଦୀପଟା ଲିଭାଇଦିଏଁ

(ଫୁଙ୍କିଦେଇ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ଦେବୀମନ୍ଦିର । ଶୈବ୍ୟା କରଯୋଡ଼ ଦଣ୍ଡାୟମାନା)

ଶୈବ୍ୟା—ମା ଦୁର୍ଗେ । ଦୁର୍ଗତିନାଶିନୀ ତାରା ।
କେତେ ଭକ୍ତି କରିଥିଲି ତୋ ପଦ୍ମଚରଣେ,
କୃପାମୟି ! ଏହି କି ତୋ ସୁବିଚାର ?
ଏହି ସୁବିଚାର କି ମା ! ଫଳାଇଲୁ କର୍ମେ ?
ଅପାର କରୁଣା ତୋର !
ତେଣୁ ପାଇଥିଲି ବହୁ କଷ୍ଟେ
କୁମାର ରୋହିତେ !
ରଙ୍କନିଧି ! ରୋହିତ ରେ ।
ପଦବ୍ରଜେ କାଶୀଧାମେ ଯିବୁ ?
କିଏ କହେ ନାରୀ ପ୍ରାଣେ ଅଛି କୋମଳତା ?
କାହିଁ ? କାହିଁ ଛିନ୍ନ ଭିନ୍ନ ହୋଇନାହିଁ
ଏତେବେଳ ଯାଏ ।
ମା ! ମା !
କିପରି ପାପ ନୟନେ ନିରେଖିବି କହ ?—
ଶତ ଦାସ ଦାସୀ ସେବ୍ୟ—
ଶଚୀପତି ସମ ପତି ମମ,
ସେବକର ନୀଚ କାର୍ଯ୍ୟେ ରତ ?
ଅକୂଳ ସାଗର,
ଜଗତର ଶ୍ରମ ପ୍ରଭଞ୍ଜନ,
କିପରି ବାହିବ ଦେବ,
ଏ ଜୀବନ ତରୀ ?
ମା ! ବଳ ଦିଅ ମନେ ।
ଶେଷ ଏ ବିଦାୟ ।
ଶୁଭଙ୍କରି । ଶଙ୍କରି ଗୋ !
କିଙ୍କରୀକୁ ନ ଠେଲ ଚରଣେ ।
ପତି-ପୁତ୍ର ଚିରଜୀବୀ ହୋଇଥାନ୍ତୁ ଭବେ,
ଏହି ଶେଷ ନିବେଦନ ଚରଣେ ତୋହର ।
ବିଦାୟ ନିଏଁ ମା ! ଜନନି !

(ଅଶ୍ରୁ ମୁଞ୍ଚନ ଓ ନେତ୍ର ମୁଦ୍ରିତକରି ପ୍ରଣାମ ।)

(ରୋହିତାଶ୍ୱର ପ୍ରବେଶ)

ରୋହିତ—ମା । ପିତା ବାହାରେ ବସିଛନ୍ତି । ଉଛୁର ହେଉଛି ।

ଶୈବ୍ୟା—(କୋଳକୁ ନେଇ) ବତ୍ସ ରେ । ଓଃ ହୋ ହୋ ! ଏହି ନୟନରେ ତୋର ପଥଶ୍ରାନ୍ତ ମଳିନ ମୁଖରେ କିପରି ଘର୍ମ ଦେଖିବି ବାବା ?

(ମୁଖରେ ବସନ ଦେବାର)

ରୋହିତ—(ଅଶ୍ରୁ ପୋଛି) ମା । ବିକଳ ହୁଅନାହିଁ, ମାନବ ଶରୀର ସମସ୍ତ ଅକାତରେ ସହିବାକୁ ବାଧ୍ୟ ।

( ହରିଶ୍ଚନ୍ଦ୍ର ପ୍ରବେଶ )

ହରିଶ୍ଚନ୍ଦ୍ର—ଦେବି ! ଯିବାର ସମସ୍ତ ଅଶୀତ ହୁଏ । ଆସ, ପରଗୃହବାସ ଆମ୍ଭମାନଙ୍କ ପକ୍ଷେ ଶ୍ରେୟସ୍କର ନୁହେଁ ।

ଶୈବ୍ୟା—ନାହିଁ, ବିଳମ୍ବ ନାହିଁ । ମୁଁ ଏ ବେଶ ପରିତ୍ୟାଗ କରିଛି, ଆଉ ଏ ରତ୍ନଅଳଙ୍କାର ଆମ୍ଭମାନଙ୍କର କଣ ହେବ ? ଭିକ୍ଷୁକର ଅଳଙ୍କାର କଣ ? ବିଶେଷତଃ ଏ ଅଳଙ୍କାର ଆମ୍ଭର ନୁହେଁ । ପରର ପଦାର୍ଥ ଆମ୍ଭର ଭୋଗ୍ୟ ନୁହେଁ । (କାଢ଼ି ଦେବା) ମହାରାଜ ! ଏସବୁ ଟିକିଏ ଖୋଲି ଦିଅନ୍ତୁ ।

ହରିଶ୍ଚନ୍ଦ୍ର—ପ୍ରିୟେ । କଣ କହୁଛ ? ଏହି ହସ୍ତରେ ମୁଁ ତୁମ୍ଭଙ୍କୁ ଭୂଷଣ ହୀନା କରିବି ?

( ମୁଖରେ ଲୁଗାଦେଇ । )

ଶୈବ୍ୟା—ମହାରାଜ ! କିଏ କହେ ମୁଁ ଭୂଷଣହୀନା ? ( ରାଜାଙ୍କ ହସ୍ତଦ୍ୱୟ ନିଜ ସ୍କନ୍ଧରେ ଥୋଇ ) ମୋର ଏଇ ଯେଉଁ ନବରତ୍ନହାର ରହିଛି, ଏହିଠାରୁ କଣ ସେ ଅଧିକ ମୂଲ୍ୟବାନ୍ ?

ହରିଶ୍ଚନ୍ଦ୍ର—(ବିକଳ କଣ୍ଠରେ) । ଶୈବ୍ୟା, ଶୈବ୍ୟା । ଦେବି ! ( ଅଶ୍ରୁ ମୋଚନ )

( ବିଶ୍ୱାମିତ୍ର ପ୍ରବେଶ । ଓ ରାଣୀ ପ୍ରଣାମ କରଣ )

ବିଶ୍ୱାମିତ୍ର—ରାଜନ୍ ! ଏ ସ୍ନେହ ସମ୍ଭାଷଣର ସମୟ ନୁହେଁ । ଶୀଘ୍ର ତ୍ୟାଗ ଲାଗି ପ୍ରସ୍ତୁତ ହୁଅ । ନଚେତ୍ ତୁମ୍ଭର ଦାନ ତୁମ୍ଭେ ପୁନର୍ଗ୍ରହଣ କର ।

ରାଜା—ବ୍ରହ୍ମର୍ଷେ ! ଅଧିକ ବିଳମ୍ବ ନୁହେଁ । କ୍ଷମା କରନ୍ତୁ ।

ବିଶ୍ୱାମିତ୍ର—ଏ କ୍ଷମାର ସ୍ଥାନ ନୁହେଁ ହରିଶ୍ଚନ୍ଦ୍ର ! ଶୀଘ୍ର ଯାଇ ଆମ୍ଭ ଦକ୍ଷିଣାର ଆୟୋଜନ କରନ୍ତୁ । ନଚେତ୍ ସତ୍ୟଭ୍ରଷ୍ଟ ହେବେ । ସେ ଭୟ କଣ ଏକାବେଳେ ମନରୁ ଛଡ଼ିଗଲା ?

ହରିଶ୍ଚନ୍ଦ୍ର—ଶାନ୍ତ ହୁଅନ୍ତୁ ଦେବ ! ଦାସ ଶୀଘ୍ର ତହିଁର ଆୟୋଜନ କରିଦେବ ।

ଶୈବ୍ୟା—ମହାରାଜ । ଆଉ ବେଶୀ ଏ ଅପମାନ ସହ୍ୟ ହୁଏ ନାହିଁ । ବ୍ରହ୍ମର୍ଷେ । ସୂର୍ଯ୍ୟବଂଶ ନରପତି ଜୀବିତ ଥାଉଁ ଥାଉଁ କେବେ ସତ୍ୟଭ୍ରଷ୍ଟ ହେବେ ନାହିଁ । ସତ୍ୟ—ସତ୍ୟ, ଆଉ ଧର୍ମ—ଧର୍ମ, । ଆପଣ ସେଥି ନିମିତ୍ତ ଅଧୀର ହୁଅନ୍ତୁ ନାହିଁ । ଆମ୍ଭର କାର୍ଯ୍ୟ ଆମ୍ଭେମାନେ ସମ୍ପାଦନ କରିବୁଁ ।

ବିଶ୍ୱାମିତ୍ର—ନାହିଁ, ମୁଁ ତା, କହୁ ନାହିଁ । ମୁଁ କହେଁ ଯେତେ ଶୀଘ୍ର ପରବାସ ତ୍ୟାଗକର ସେତେ ଭଲ । ସତ୍ୟକରି ଆଉ ପାଳନ ନିମିତ୍ତ ପାଣ୍ଡାଦ୍‌ପଦ ହେବା କି ହରିଶ୍ଚନ୍ଦ୍ରଙ୍କପରି ଦାନବୀରର ଉଚିତ ? ତେବେ ଶୀଘ୍ର ଶୀଘ୍ର କାର୍ଯ୍ୟ ଶେଷକର । ମୁଁ ମାଙ୍ଗଲ୍ୟକୁ କହି ଦେଇଛି ସେ ତୁମ୍ଭମାନଙ୍କୁ ନେଇ କାଶୀରେ ଛାଡ଼ିଦେଇ ଆସିବ । ଆଉ ମନେ ରଖ, ସେ ଦକ୍ଷିଣା-ବିହୀନ ଦାନ ନିଷ୍ଫଳ । (ପ୍ରସ୍ଥାନ )

ହରିଶ୍ଚନ୍ଦ୍ର—ଗୁରୋ ! ଆଉ ସେକଥା ଦୁଇବାର ଚେତାଇ ଦେବାକୁ ହେବ ନାହିଁ । ପ୍ରିୟେ । ଆସ । ଆଉ ବିଳମ୍ବ କଣ ? ଥାଅ ଅଯୋଧ୍ୟା, ଶରଣ୍ୟପୁରୀ ସେହି, ବିଶ୍ୱାମିତ୍ରଙ୍କର ଆଶ୍ରୟ ଗ୍ରହଣ କର । ହରିଶ୍ଚନ୍ଦ୍ର ତାର ସମ୍ବଳ ପୁତ୍ର ପତ୍ନୀ ନେଇ କ୍ଷୁଦ୍ର ରାଜ୍ୟ ଦେଇ ବିଦାୟ ହେଲା । ( ପ୍ରସ୍ଥାନ )

ଶୈବ୍ୟା—ମହାରାଜ··· ( ନେତ୍ରଜଳ ତ୍ୟାଗ

ହରି—ପ୍ରିୟେ ! ବାବା, ରୋହିତ ରେ !

( ରୋହିତକୁ କୋଳାଇ ପ୍ରସ୍ଥାନୋଦ୍ୟତ )

( ପଟ୍ଟପତନ )

---

## ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

ଅରଣ୍ୟ ନିକଟ ପଥ ।

( ରାଣୀଙ୍କ ଅଞ୍ଚଳରେ ରୋହିତାଶ୍ୱ ଶୁପ୍ତ ଓ ରାଣୀ ଧୀରେ ଧୀରେ ଦୁଇଟି ବଡ଼ ପଥ ଧରି ବଞ୍ଚୁଥିଲେ । ସମୟ-ଗ୍ରୀଷ୍ମ ମଧ୍ୟାହ୍ନ )

ଶୈବ୍ୟା—( ବଞ୍ଚୁ ବଞ୍ଚୁ ) ଦୀନବନ୍ଧୁ ? ଏ କଣ ତୁମ୍ଭର ଦୀନବନ୍ଧୁର ଚିହ୍ନ ? ଦୟାମୟର ଲକ୍ଷଣ ? ଏ ପରୀକ୍ଷାର ଆଉ କେତେଦିନ ବାକି ଅଛି ପ୍ରଭୁ ? ନା, ଆଜୀବନ ଆଉ ଶେଷ ନାହିଁ ? ଏ ପରୀକ୍ଷା ହିଁ ଶେଷ ପରୀକ୍ଷା । ହାୟ ! ସନ୍ତାନପ୍ରତି ଏହି କି ପ୍ରଭୁଙ୍କର ସ୍ନେହ ? ( କିଛିକ୍ଷଣ ନୀରବ ) ଶୈବ୍ୟା ! ଅଭିମାନିନୀ-ଶୈବ୍ୟା ! ଗରବିଣୀ ଶୈବ୍ୟା ! କହୁଛୁ—ଢେର କଥା କହୁଛୁ—ଯେତେ ପାରୁ କହୁଛୁ । କିନ୍ତୁ । ଆଜି ? ରାତିରୁ ନିରାହାର, କଣ୍ଠ ତାଳୁ ଶୁଷ୍କ । ମହାରାଜ, ଟିକିଏ ଜଳ ଆଣିଦିଅ, ଏତିକି କହିବାକୁ ଛାତି ଫାଟି ଯାଉଛି । ( ମୁଖରେ ଲୁଗାଦେଇ ରୋଦନ ) ବିଧି ! ରୋହିତରେ ! ଶେଷରେ ଏ ଦୃଶ୍ୟ ମଧ୍ୟ ଦେଖିବାକୁ ଥିଲା ? ମନ ! ଏ ବିପଦବେଳେ ଟିକିଏ ଆଶ୍ୱସ୍ତ ହୁଅ । ହଁ, କଣ କହିଦେଲି, ଆଶ୍ୱସ୍ତ ହୋ ? କାହାକୁ ଚାହିଁ ଆଶ୍ୱସ୍ତ ହେବ ? ଦୀନବନ୍ଧୁ । ତେମେ କହ ଦେଖି, କାହାକୁ ଚାହିଁ ଆଶ୍ୱସ୍ତ ହେବ ? ଯେଉଁ ଦାନବୀର ଅଯୋଧ୍ୟାର ନରପତି କାଲି ସସାଗରା ପୃଥିବୀର ରାଜାଧିରାଜ । ମସ୍ତକରେ ମଣିମୟ ରାଜମୁକୁଟ, ପଦସେବାରେ ଲକ୍ଷ ଭୃତ୍ୟ ନିଯୁକ୍ତ—ଆଜି ସେ ଦୀନହୀନ, ବାସହୀନ, ଭିକ୍ଷୁ । ପୁଣି ଏ ହତଭାଗିନୀ ତାଙ୍କୁ ଜଳ ଆଣିବାକୁ ପଠାଇଅଛି, ଶ୍ରାନ୍ତ-କ୍ଲାନ୍ତ-ପଥିକ - ବଦନରେ ଅଗ୍ନିକଣା ! ହରି ? ଦୀନବନ୍ଧୁ ! କଅଣ ଏଇ ଦୃଶ୍ୟ ଦେଖି ମନ ଆଶ୍ୱସ୍ତ ହେବ ? କ୍ଲାନ୍ତ ପଦ ଦୁଇଟି ଖର-ରବିର ପ୍ରଚଣ୍ଡ ତାପରେ ଉତ୍ତପ୍ତ ଧରଣୀ ଉପରେ ପଡ଼ିଗଲାବେଳେ ପଦପଦକେ ଯେପରି କିଏ ଅଗ୍ନିଶିଖାର ମସ୍ତକ ନିର୍ଦ୍ଦେଶ କରି ବଜ୍ରହାର କଲାପରି ବୋଧହୁଏ । ଆଉ ତହିଁ ଉପରେ ପୁଣି ଘର୍ମ୍ମାକ୍ତ କଳେବରରେ, ମ୍ଳାନ ବଦନରେ, କ୍ଷୀଣ ସ୍ୱରରେ, "ବାପରେ ରୋହିତ" ବୋଲି ଡାକି ତାକୁ ଯେତେବେଳେ ସେ ଛାତିକୁ ଟେକିନେଲେ ଦେଖିଲି ସୂର୍ଯ୍ୟଦେବ ଶୋକସନ୍ତପ୍ତ-ହୃଦୟରେ ତାଙ୍କର ସେହି ଜଳଦ-ପଟଳରୂପି ବସନାଞ୍ଚଳରେ ମୁଖ ଲୁଚାଇଦେଲେ, ଆଉ ଆକାଶ ଶୋକରେ ଉଚ୍ଛୃଙ୍ଖଳ ହୋଇପଡ଼ିଲା । ଲତିକାଟି ପର୍ଯ୍ୟନ୍ତ ଶୋକାକୁଳ ହୋଇ ନଇଁପଡ଼ିଲା । ତଥାପି—ତଥାପି ନାରୀର ହୃଦୟ ବିଦୀର୍ଣ୍ଣ ହେଲା ନାହିଁ । ଦୀନବନ୍ଧୁ ! କଅଣ ଏଇ ଅଭିନୟ ଦେଖି ଆଶ୍ୱସ୍ତ ହେବ ? ହରି । କିଏ କହେ ନାରୀ ହୃଦୟରେ କୋମଳତା ଅଛି ? କାହିଁ ? ମୁଁ ତ ତା'ର ଲେଶ ମାତ୍ର ଅନୁଭବ କରିପାରୁ ନାହିଁ । କିମ୍ବା, ଏ ମାୟାମୟଙ୍କର ମାୟା । ପ୍ରଭୁ ! ମୋ ନିମିତ୍ତ ମୋର କ୍ଷୋଭ ନାହିଁ । କିନ୍ତୁ ମୁଁ ମୋର ହୃଦୟର ଧନ ନିମିତ୍ତ ମସ୍ତକରେ ସହସ୍ର ବୃଶ୍ଚିକ-ଦଂଶନ ଅନୁଭବ କରୁଅଛି । ମନ ଜଳି ଯାଉଛି । କିପରି ଏ ଦୃଶ୍ୟ ଦେଖିବି ପ୍ରଭୁ ? ପଦେ ପଦେ ଲାଞ୍ଛିତ, ଅବମାନିତ, କଷ୍ଟପ୍ରାପ୍ତ ନୃପତିଙ୍କୁ ଦେଖିବି; ମୋର ଆଉ ଧୈର୍ଯ୍ୟ ରହୁ ନାହିଁ । ଆଉ କେତେ କଷ୍ଟ ସହିବି ହରି ? ବିପଦରେ କଣ ପଶ୍ଚାତ୍‌ପଦ ହୋଇଛି ? ଧର୍ମ୍ମ ପରିତ୍ୟାଗ କରିଛି ? ତେବେ ଦିଅ ପ୍ରଭୁ ! ( କର ପାତିଲେ )

( ଗୀତ )

ପାଷାଣ ହୃଦୟେ ମୋର କଠୋର ପ୍ରହାର ହରି !
ପାତିଛି କଠିନ ଛାତି, ଏ ବିପଦେ ଥୟ କରି ।
ଅମୂଲ୍ୟ ପଲଙ୍କେ ଯାର-ନୋହେ ନିଦ୍ରା ଲଭିବାର
ଧୂଳି ଧୂସରିତ ପଥେ କଲ ତାକୁ ହତଶିରୀ । ୧ ।
ରାଜ ଅଧିରାଜ ମମ—ପଥର ଭିକାରୀ ସମ,
ଜୀବନେ ମୁଁ ଥାଉଁ ଥାଉଁ ନ ଦେଖିବି ଏତେ ସରି । ୨ ।

( ଅଶ୍ରୁମୁଞ୍ଚନ )

ରୋହିତ—( ନିଦ୍ରାରୁ ଉଠି ମା, ମା । ବାବା କ'ଣ ଏତେବେଳେଯାଏ ଆସି ନାହାନ୍ତି ?

ଶୈବ୍ୟା—(ନେପଥ୍ୟଆଡ଼କୁ ଚାହିଁ) ହେଇ ଆସିଲେଣି ।

ହରିଶ୍ଚନ୍ଦ୍ର—(ହସ୍ତରେ ଜଳପାତ୍ର ଧରି ପ୍ରବେଶ) ପ୍ରିୟେ ! ଜଳ ଆଣିବାକୁ ଯାଇ ମୋ'ର କଷ୍ଟ ହୋଇନାହିଁ । ମୁଁ ମୋର କଷ୍ଟ ଭୁଲିଯାଇଛି । ଶୈବ୍ୟା ! ତମର ଆଉ ପ୍ରାଣପ୍ରିୟ ରୋହିତର ତୃଷାତୁର କଷ୍ଟ ଦେଖି ବକ୍ଷ ବିଦୀର୍ଣ୍ଣ ହୁଏ । ରାଜକନ୍ୟା, ରାଜରାଣୀ ହୋଇ କର୍ମରେ କି ଯାତନା ଥିଲା !

ଶୈବ୍ୟା—ମହାରାଜ ! ଏ ଯାତନା ନୁହେଁ । ତୁମ୍ଭେ କାତର ହୁଅନାହିଁ । ଯେତେଦିନ ଏ ଦାସୀ ପ୍ରଭୁଙ୍କର ଚରଣ ସେବା କରି ପାରୁଛି ସେତେ-ଦିନ ଦୁଃଖ କଣ ଜା'ଣେ ନାହିଁ । ଆଶ୍ୱସ୍ତ ହୁଅ । ତୁମର ଏ କାତରଭାବ ଦେଖି ମୋର ଅବୟବ ସକଳ ସ୍ଫୁରିତ ହେଉଅଛି । ମହାରାଜ ! ଯେଉଁ ସତ୍ୟ ଓ ଧର୍ମର ଆଶ୍ରୟ ଗ୍ରହଣକରି ସ୍ୱର୍ଗ ମର୍ତ୍ତ୍ୟର ପୂଜ୍ୟ ହୋଇଅଛ, ସେହି ସତ୍ୟ ଓ ଧର୍ମ ସ୍ମରଣ କରି ସ୍ଥିର ହୁଅ । (ରୋହିତ ପ୍ରତି) ବତ୍ସ ରୋହିତ ରେ । ଆ ବାବା । ( କାନନରୁ ଲୁଣ୍ଠିତ ଆହାର ଫିଟାଇ ଓ ଜଳଦେଇ ଆଶ୍ୱସ୍ତ କରିବାର )

ହରିଶ୍ଚନ୍ଦ୍ର—ପ୍ରିୟେ । ସ୍ଥିର ହେବି ? କାହା ପେନ ସ୍ଥିର ହେବି ?

ରୋହିତ ନବୀନ ଚନ୍ଦ୍ର ଝାଉଁଳି ଗଲାଣି,
ଶତ-ସଜ-ସରସିଜ ଆନନେ ଭ୍ରମର,
ବିଷାଦ-କାଳିମା-ଛାୟା ଦେଇଛି ଘୋଟାଇ ।
ଆଦରିଣୀ ଜନକ-ପିତୃଳା ରାଜଜେମା,
ଥିଲ ଯେବେ ଅଯୋଧ୍ୟାରେ ମହାରାଣୀ ଯେହ୍ନେ,
ଭିଖାରିଣୀ ବେଶେ ଆଜ ଧୂଳି ଧୂସରିତ ।
ବନ୍ଦିଯାଏ ପାର୍ଥିବ ଇନ୍ଦ୍ର ମସ୍ତକଁ ନିଗଡ଼;
ସିଞ୍ଚି ଛଳ ଛଳ କୁରଙ୍ଗ ନୟନ ନୀର,
ଦୁଃଖ-ଯାଗ-କୁଣ୍ଡେ ମମ ଦିଏ ଶେଷାହୁତି ।
ପ୍ରିୟେ । ପ୍ରିୟେ । କି କହିଲ କି କହିଲ ?
ଶୈବ୍ୟା !
କହ ଦେଖି ଆଉ ବାରେ । କି ନୃଶଂସ ପ୍ରାଣେ
କହ ଧରିବି ମୁଁ ଧୈର୍ଯ୍ୟ ? ସତି ! ଜୀବେଶ୍ୱରି !
କାହିଁ ସେ ବଦନେ ତବ ମଧୁ ମଧୁ ହାସ ?
ରାଜକାର୍ଯ୍ୟ-କ୍ଲାନ୍ତ ଏହି ଭକ୍ତର ହୃଦୟେ
ଚମକାଏ ଯାହା ବିଦ୍ୟୁତରେଖା ? ଶତ ଶତ
ହାସଭରା ହୀରାର କଳିକା, କି ଜାଣି,
ଗୁପ୍ତ ଆଶା ପୋଷଣ ମାନସେ, ଉପହାସ
କରେ କ୍ଷଣେ ଦେବରାଜ ଭୂତି । ହସି ଉଠେ
ସସାଗରା ଧରା । କାହିଁ ସେ ମାଧୁରୀ ତବ ?
କହ ପ୍ରିୟେ । ସେହି ମୁଖେ ଦେଖିଲେ ମୁଁ ଚନ୍ଦ୍ରା-
କରାଙ୍କିତ ସୂକ୍ଷ୍ମରେଖା ରାଶି, କେଉଁ ପ୍ରାଣେ
ଲଭିବି ସାନ୍ତ୍ୱନା ? ପ୍ରିୟେ, ରାଜରାଜେଶ୍ୱରି !
ହସ ଦେଖି ଆଉଥରେ । ଶାନ୍ତହେଉ କ୍ଷଣ-
ଲାଗି ମରୁ ପ୍ରାଣ ମମ ଲଭୁ ସେ ଲହରୀ ।

ଶୈବ୍ୟା—ହସିବି ମୁଁ ନାଥ! କାହୁଁ ମୁଁ ପାଇବି ହସ ?
କିଏ ଦେବ ହସ ମୋତେ ? ସହକାର କୋଳେ
ବସି କୋକିଳ-ମୋହନ ବସନ୍ତ ଆଗମେ
ଯିନା କୁହୁ କୁହୁ ଭାଷେ, କନ୍ତୁ ରବଇ କି
ତଥା, ଘୋର ଶୀତକାଳେ । ହସିବାକୁ କହ
ମୋତେ ? ସୁଧାସିକ୍ତ-କଣ୍ଠ ବାକ୍ୟ ଶ୍ରବଣରୁ,
ମରଣର ବିଭୀଷିକା ଅତ୍ୟାନନ୍ଦକର ।
ନାଥ । ଆଜନ୍ମ ଲଳିତ ସୁଖ-ଲତିକାର
କୋଳେ, ସୁଖଭୋଗୀ ଅଯୋଧ୍ୟା ନୃପତି;—ନିଜେ
ଦେବରାଜ ସେହି ସୁଖ ଲଭିଥିବେ କିନା,
ଲାଗଇ ସନ୍ଦେହ ମୋତେ । ଆଉ, ଆଜ ସେହି
ରାଜରାଜେଶ୍ୱରେ ମମ, ଦୀନଦଶାପନ୍ନ,
ପଥର କଙ୍ଗାଳ ଦେଖି, କି ସୁଖରେ ଆଉ
ଦୁଃଖିନୀ ବଦନ ସତେ ପ୍ରଫୁଲ୍ଲ ହୋଇବ ?
କେଉଁ ମୃତ-ମୁଖେ ଆଉ ସୁହାସ ଫୁଟିବ ?

ହରିଶ୍ଚନ୍ଦ୍ର—ଶୈବ୍ୟା ! ସରଗର ଦେବ,କରୁଣାର ମୂର୍ତ୍ତି !
କାହିଁ ରଖିଥିଲୁ ସଞ୍ଚ ଏ ଅମୃତଧାର ?
ପ୍ରିୟତମେ ! ବାଧେ ମୋତେ ସେହି ଦୁଃଖ,
ସେହି ରାଜରାଜେଶ୍ୱରୀର ଏ ଭିଖାରୁଣୀବେଶ ।
ଏକେ ଦବାନଳି ଦୁଃଖଭରେ ଅବସନ୍ନ ଚିତ୍ତ,
ତହିଁପରେ ଦେଖିଦେଲେ ପୁତ୍ର-ପତ୍ନୀମୁଖ
ସରିଯାଏ କଥା ! ଘୂରିଯାଏ ମଥା ମୋର,
ଚତୁର୍ଦ୍ଦିଗ ଦିଶେ ଶୂନ୍ୟ—ହାହାକାରମୟ !
ତେଣୁ କହୁଥିଲି ଯିବା ସଖି ! ପିତ୍ରାଳୟେ
ଯାଅ ପୁତ୍ର ସଙ୍ଗେ । ଦୁଃଖ କପାଁ ମାନମୟି ?
ଶୈବ୍ୟା—କି କଥା କହୁଛ ନାଥ ? ତୁମ୍ଭେ ତପ୍ତବକ୍ଷେ
କର କଶାଘାତ । ଦାସୀ ଅଭାଗିନୀ ବୋଲି
ନାହିଁ କି ହେ ତା'ର ଆଉ ହୃଦୟର ବଳ ?
ଅବଳା ହୃଦୟେ କି ହେ ନାହିଁ ଅନୁଭୂତ ?
ମହାରାଜ ! ମଣିଛ କି ତୁମ୍ଭ ବିନୁ ଦାସୀ
କୁସୁମ-ଶୟନ ସୁଖ ? ପ୍ରମୋଦ ଉଦ୍ୟାନେ,
ସଖି ସହଚରୀମେଳେ, କୁଙ୍କୁମ କସ୍ତୁରୀ
ଲେପି ଅଙ୍ଗରେ ମୋହର, ତୁମ୍ଭ ବିନୁ ନାଥ !
ମଣିଛ କି ଦଣ୍ଡେ ଦେଲେ ସୁଖ ? ସତ୍ୟନିଷ୍ଠ !
ସତ୍ୟଭଙ୍ଗ କପାଁ କର ଆଜ ? ଆର୍ଯ୍ୟପୁତ୍ର !
ମନେ ପଡ଼େ ସେହି ଦିନ ? ମନେ ଅଛି ପ୍ରଭୁ !
ସେହି ବାସନ୍ତୀ ପୂର୍ଣ୍ଣିମା ନିଶି, ଆଉ ସେହି
ପ୍ରମୋଦ କାନନମଧ୍ୟେ ଲତିକା-ବିତାନେ—
ଯହିଁ ଚନ୍ଦ୍ରକର ଲତିକାର ସୁକୋମଳ
କୁସୁମ-ପତ୍ରାଳୀ ଭେଦି ପଶିଦେଇଥିଲା
ତଳେ ଦୀର୍ଘ ମୃଗଚର୍ମ ? ପ୍ରଥମ ମଳୟ
କାହୁଁ ଅଭିମାନୀ କୁସୁମର ବାସ ବୋଳି
ଅଙ୍ଗେ, ରାଜରାଜେଶ୍ୱରୀ-ପଦେ ଭେଟି ଦେଲା
ଆଣି କେଉଁ ଛିନ୍ନ ମଲ୍ଲିକାର ଉଷ୍ଣଶ୍ୱାସ-
ବିଦଳିତ ପାଖୁଡ଼ା ଗୋଟିଏ । ଅଙ୍ଗେ ତବ
ଲାଗିଗଲା ଆସି । ମନେ ଅଛି ? ମନେ ଅଛି
ନାଥ ! କିସ ସତ୍ୟ କରିଥିଲ ? ତୋଳି ଦେବାକୁ
ଯାହୁଁ ଇଚ୍ଛାକଲି ପ୍ରଭୁ ! ରାଜକାର୍ଯ୍ୟ—
କ୍ଲାନ୍ତ ତବ ଘର୍ମାକ୍ତଶରୀରେ ଲାଗିଯାଇ
ତାହା ଲଭିଲା ଆଶ୍ରୟ । ତହୁଁ ପାର୍ଶ୍ୱେ ମୋର
ଦୃଷ୍ଟି ଗଲାପଡ଼ି, ତୁମ୍ଭଲାଗି ଗୁନ୍ଥି ଥିଲି
ଯେଉଁ ଫୁଲହାର, ତୁମ୍ଭ ଦରଶନେ ଦାସୀ
ଭୁଲିଯାଇଥିଲା ତାହା ଭେଟିବାକୁ ପଦେ ।
ଭାସିଯାଇଥିଲା କାହିଁ ପ୍ରେମର ତରଙ୍ଗେ ।
ମନେ ନାହିଁ ଫୁଲହାର କଥା । ମନେ ପଡ଼େ
ନାଥ ? ଦେଖିଲି ମୁଁ ଛିନ୍ନ-ଭିନ୍ନ କୁସୁମଟି
ତହୁଁ ପବନବିଘାତେ ଇତସ୍ତତଃ ଦଳ
କ୍ଷିପ୍ତ କରି, ଅଭିମାନେ ଯଥା ମୋତେ ଦୂରୁଁ
ସେ ରହିଲା, ଲଭି ନ ପାରିଲା ବୋଲି ତବ
ଅଙ୍ଗ-ସଙ୍ଗ । ଗନ୍ଧବହ ବୁଝି ତା' ବେଦନା
ପାଖୁଡ଼ାଟି ଦେଲା ଉପହାର । ହସି ହସି
କହି ଏହା, ଯହୁଁ ଛଡ଼ାଇବି ମନେ କରି
ଶ୍ରୀଅଙ୍ଗୁ ପାଖୁଡ଼ାଟିକି ବଢ଼ାଇଲି କର,
ବାରଣ କରିଲ ମୋତେ ଦରହାସ୍ୟ ମୁଖେ ।
କହିଥିଲ, "ମନଲାଗି ଦିଏ ଉପହାର
ମଳୟ ସମୀର, ଦିଅ ନାହିଁ ବାଧା ତାକୁ ।
ଥାଉ ସେ ପାଖୁଡ଼ା, ଲିପ୍ତ ଥାଉ ଅଙ୍ଗେ ମୋର,
ରହେ ସଖି ! ସୁଖେ, ଦୁଃଖେ, ସମ୍ପଦେ, ବିପଦେ
ଚିରଦିନ ଥାଆନ୍ତା କି ଲିପ୍ତ ?" ସତ୍ୟ ତହିଁ
କରାଇଲ ମୁହିଁ, ଶଶୀ ସାକ୍ଷ କରି, ଥିବ
ଜନ୍ମେ ଜନ୍ମେ ଦାସୀ, ସମ୍ପଦେ ବିପଦେ ତବ
ପାଶେ ପାଶେ ଥାଇ କରୁଥିବ ଶ୍ରୀଚରଣ-
ସେବା । ସେ ସତ୍ୟ କି ଏତେ ଶୀଘ୍ର ଭୁଲିଗଲ
ନାଥ ? ଧର୍ମବୀର ! ସତ୍ୟ ଭଙ୍ଗ କରିବ କି
ନିଶଙ୍କେ ? ସମ୍ଭବିବ ଏତେ ଅବିଚାର ପ୍ରଭୁ ?
ହରିଶ୍ଚନ୍ଦ୍ର—(କୋଳ କଲାପରେ ଅଳ୍ପ ଗଦ୍‌ଗଦ କଣ୍ଠରେ)
ପ୍ରିୟେ ! ଭୁଲି ନାହିଁ ସେ ସୁଖ ସ୍ୱପନ । ହୃଦେ
ମମ ଅହରହ ସେହି ସ୍ମୃତିମାନ ଜାଗି,—
ଦଂଶଇ କଣ୍ଟକେ ମୋତେ । ଶୈବ୍ୟା ! ଛାଡ଼ିଦେବି ?
କାହାକୁ ଛାଡ଼ିବ ?
ଜୀବନକୁ ଫିଙ୍ଗିଦେଇ

ଦୂରେ, ବିଶ୍ୱାସ କି ଦେଖ ? ନା ନା, ସୁଲୋଚନେ !
ବୃଥା ସେ ଭାବନା—ବାତୁଳତାପୂର୍ଣ୍ଣ ତାହା ।

ମାଙ୍ଗଲ୍ୟ—( କିଛି ଖାଦ୍ୟଦ୍ରବ୍ୟ ଘେନି ପ୍ରବେଶ )
ସତ୍ୟବୀର ! ଦେଖନ୍ତୁ ଏ ଆହାର ସାମଗ୍ରୀ ।
ଗୁରୁଦେବ ବିଶ୍ୱାମିତ୍ର ପେଶିଛନ୍ତି ମୋତେ ଦେଇ ଏହା ।

ହରିଶ୍ଚନ୍ଦ୍ର—ଶିରୋଧାର୍ଯ୍ୟ ମୋର ତାହା । ଗୁରୁଦେବ କୁଶଳେ 'ଛନ୍ତି ତ ?

ମାଙ୍ଗଲ୍ୟ—ଅନନ୍ତ କୁଶଳେ ।(ଆହାର୍ଯ୍ୟ ଦେବା ଓ ରାଣୀ ନେଇ ବେଢିଲେ)

ଶୈବ୍ୟା—ମହାରାଜ ! କେଉଁ ହସ୍ତରେ ଏ ଆହାର ପରଶିବ ? ନାହିଁ, ମୋର ହସ୍ତ ସ୍ଖଳିତ ହୁଏ ! ଆପଣ ନିଜେ ଗ୍ରହଣ କରନ୍ତୁ । ମୁଁ ପାରିବ ନାହିଁ ।

ହରିଶ୍ଚନ୍ଦ୍ର—(ଅର୍ଦ୍ଧ ସ୍ୱଗତ ) ହରିଶ୍ଚନ୍ଦ୍ର !
ଏହି କି ତୋ ଧର୍ମ-ପରିଣାମ ?
କାହିଁ ଅଯୋଧ୍ୟାର ରାଜା ?—ରାଜରାଜେଶ୍ୱର ?
ଅମୃତ ଭୋଜନ, ଯାହା ମଣୁଥିଲି ବିଷ
ଆଜି ଏ ଆହାର୍ଯ୍ୟ ଭୋଗ ? ଦାସ-ଦାସୀ ମୋର
ଯାହା ସ୍ୱପନେ ନ ଦେଖେ, କିପରି ମୁଁ ତାହା
ଆଜି ପତ୍ନୀ-ପୁତ୍ରମୁଖେ ଦେଖିବି ନୟନେ ?
ହା ଦୁର୍ଦ୍ଦୈବ ! ହା ବିଧାତା ! ହା କର୍ମ !
ବତ୍ସରେ ! ରୋହିତରେ ମୋର ! ରଙ୍କନିଧି
ମୋର ! ଆହା !

(ଲୋତକତ୍ୟାଗ)

ଶୈବ୍ୟା—ଧୈର୍ଯ୍ୟ ଧର ନାଥ ! ବିପଦ କାଳରେ କାତର ହେବା ଉଚିତ ନୁହେଁ । ଏ ବିକଳଭାବ ଦେଖି ଶିଶୁପ୍ରାଣ ରୋହିତର ଧୈର୍ଯ୍ୟ ରହିବଟି କି ?

ହରିଶ୍ଚନ୍ଦ୍ର—ନାହିଁ ପ୍ରିୟେ ! ମୁଁ କାତର ହେଉ ନାହିଁ । ( ନିଃଶ୍ୱାସ ତ୍ୟାଗ କରି କିଞ୍ଚିତ୍ ସାହସର ଛଳନା ଦେଖାଇ ) ନିଅ, ଆଗେ ତୁମ୍ଭଲାଗି ଆଉ ପ୍ରାଣପ୍ରିୟ ରୋହିତଲାଗି ନେଇଯାଅ ।

ରୋହିତ—ପିତା, ଆଗେ ଆପଣ ନିଅନ୍ତୁ । ମା ଆଉ ମୁଁ ପରେ ଖାଇବୁ ।

ମାଙ୍ଗଲ୍ୟ—ଆସେଁ ତେବେ ମହାରାଜ ! ଗୁରୁଦେବ ମମ
କହିଛନ୍ତି, 'ଏତେ ଦିନ କ୍ରମେ ଗତ' । ନୃପ !
ସତର୍କ ହୁଅନ୍ତୁ । ପଲକମାନଙ୍କେ ମାସେ
ହୋଇବ ସମ୍ପୂର୍ଣ୍ଣ । ନିକଟ ହେଉଛି କ୍ରମେ
ଦକ୍ଷିଣା ଦିବସ । ସତ୍ୟଭଙ୍ଗ ହେବେ ନୃପ !

ହରିଶ୍ଚନ୍ଦ୍ର—ହୋଇ ନାହିଁ ଏପର୍ଯ୍ୟନ୍ତ କହ ମହର୍ଷିଙ୍କୁ ।
ରବିକୁଳ ରାଜରାଜେଶ୍ୱର
ଆଜି ଦୀନ ହୀନ ବୋଲି
ସତ୍ୟ ଭଙ୍ଗ, ଧର୍ମ ଭଙ୍ଗକରି
ନାରକୀ ହେବାକୁ ତାର ମନ୍ତ୍ର ନ ବଳଇ ।
ନୁହେଁ, ନୁହେଁ ହରିଶ୍ଚନ୍ଦ୍ର ତେତେ ଅପଦାର୍ଥ ।
ଯାଅ ତୁମ୍ଭେ, ଏ ବାରତା କହିବ ଗୁରୁଙ୍କୁ ।

( ମାଙ୍ଗଲ୍ୟ ପ୍ରସ୍ଥାନ )

ଶୈବ୍ୟା—ପ୍ରଭୁ ! ଏ ଅପମାନରେ ମୋର ହସ୍ତପଦ କ୍ରମେ ଶିଥିଳ ହେଉଅଛି, ହୃଦୟ ବିଶୁଷ୍କ ହୋଇ-ପଡୁଛି, ମନ ଅଥୟ ହୋଇଯାଉଛି ।

ହରିଶ୍ଚନ୍ଦ୍ର—ଅଧୀର ହୁଅ ନାହିଁ । ଆସ, ନଦୀକୂଳକୁ ଯାଇ ଶୀଘ୍ର ଶୀଘ୍ର ଆହାର ଶେଷ କରି ଚାଲିଯିବା ।

(ଶୈବ୍ୟା ଲୋତକ ତ୍ୟାଗକରି ପୁତ୍ରକୁ ଘେନି, ପ୍ରସ୍ଥାନ । )

---

## ଦ୍ୱିତୀୟ ଦୃଶ୍ୟ

(ସ୍ଥାନ—ଅଯୋଧ୍ୟାର ରାଜସଭା ।
ବିଶ୍ୱାମିତ୍ର, ମନ୍ତ୍ରୀ ଓ ପାରିଷଦ ବର୍ଗ ଆସୀନ ।)

ବିଶ୍ୱାମିତ୍ର—ମନ୍ତ୍ରି ! ଆଜି ରାଜସଭାରେ କି କି କାର୍ଯ୍ୟ କରିବାର ଅଛି ?

ମନ୍ତ୍ରୀ—ମୁନିବର ! ପ୍ରଜାବର୍ଗ ଇତସ୍ତତଃ ପଳାୟନ-ନିରତ । ଦେଶରେ ଅତ୍ୟାଚାରର ସୀମା ନାହିଁ । ଆପଣ ନିଜେ ଦେଶ ପରିଦର୍ଶନ କରି ସମସ୍ତ ବିଷୟ ବୁଝି ଦେଖନ୍ତୁ ।

ବିଶ୍ୱାମିତ୍ର—ରହ ମନ୍ତ୍ରି ! ( ନେପଥ୍ୟ ଆଡ଼କୁ କାନ ଡେରି ) ଏ କାହାର ସଙ୍ଗୀତ ? କିଏ ଗାଏ ?

ନେପଥ୍ୟେ— ( ଗୀତ )

ଚକିତ ଗୁରୁଭରେ, ଶଙ୍କିତ ଅଙ୍ଗ
କମ୍ପିତ ଜଳନିଧି ଉଚ୍ଛଳ ତରଙ୍ଗ ।୦।
ଗ୍ରଳ ଧର୍ମ ପଥେ, ଗ୍ରଳ କର୍ମ ପଥେ
ରବିକୁଳ ରାଜା ହରିଶ୍ଚନ୍ଦ୍ର,
ତବ ଯଶୋଗୀତି, ତବ ପୁଣ୍ୟ ସ୍ତୁତି
ଗାଉ ମେଘ ଗୁରୁ ଗୁରୁ ମନ୍ଦ୍ର ॥

ବିଶ୍ୱାମିତ୍ର—ଏ କ'ଣ ! ରାଜା ହରିଶ୍ଚନ୍ଦ୍ରଙ୍କର ଯଶୋଗୀତି ଗାନ !

ପୁନଃ ନେପଥ୍ୟେ— ( ଗୀତ )

ଶୈବ୍ୟା କମଳମା ପତି-ମନୋହାରିଣୀ
ରୋହିତ ପୁତ୍ର ସୁମଞ୍ଜୁଳବାଣୀ
ତବ ଜୟ ଜୟ ଗୀତି— ନନ୍ଦନରି ଗାଉ ନିତି
ଦାନବୀର ଜୟ ହରିଶ୍ଚନ୍ଦ୍ର
ଯାବତ ରବି-ତାରା-ଚନ୍ଦ୍ର ।

ବିଶ୍ୱାମିତ୍ର—ମନ୍ତ୍ରି, ଡେକିଆସ, କିଏ କରେ ସ୍ତୁତିବାଦ ହରିଶ୍ଚନ୍ଦ୍ରଙ୍କର ।

ମନ୍ତ୍ରୀ—ଦାସୀ !

ନେପଥ୍ୟେ ଦାସୀ—ଆଜ୍ଞା ହେଉ ମନ୍ତ୍ରିମା !

ମନ୍ତ୍ରୀ—ଡାକିଆଣ କିଏ ସେ ଗାୟକ ।

ନେପଥ୍ୟେ ଦାସୀ—ଯେ ଆଜ୍ଞା ମନ୍ତ୍ରିମା !

( ଦୂତର ପ୍ରବେଶ ଓ ଅଭିବାଦନ )

ବିଶ୍ୱାମିତ୍ର—କିଏ ତୁମ୍ଭେ ? ଆସିବାର ଅଭିପ୍ରାୟ ?

ମନ୍ତ୍ରୀ—ସେ ଭୂତପୂର୍ବ ରାଜା ହରିଶ୍ଚନ୍ଦ୍ରଙ୍କର ପ୍ରଧାନ ଦୂତ ।

ବିଶ୍ୱାମିତ୍ର—କ'ଣ କହୁଛ ?

ଦୂତ—ସେନାପତି ଓ କେତେକ ସୈନ୍ୟ ମହାରାଜ ହରିଶ୍ଚନ୍ଦ୍ରଙ୍କର ଅନ୍ୱେଷଣରେ ରାଜ୍ୟ ତ୍ୟାଗ କରୁଛନ୍ତି । ଦେବ ! ସାବଧାନ ହେଉନ୍ତୁ । କ୍ରମେ ସୈନ୍ୟସଂଖ୍ୟା କମିଆସିଲା । ଚକ୍ରବର୍ତ୍ତୀ ସାମନ୍ତ ରାଜାମାନେ ଏସବୁ ଦେଖି ଅସ୍ୱୀକାର କରୁଅଛନ୍ତି ।

ବିଶ୍ୱାମିତ୍ର—( ସ୍ୱଗତ ) ଏ କଣ ? ହରିଶ୍ଚନ୍ଦ୍ରଙ୍କ ଧର୍ମର ପରାକାଷ୍ଠା ପ୍ରକାଶ ! ( ପ୍ରକାଶ୍ୟେ ) ମନ୍ତ୍ରି ! ଉପାୟ କଣ ? ହରିଶ୍ଚନ୍ଦ୍ର କ'ଣ ଆମ୍ଭକୁ ପ୍ରଜାହୀନ ରାଜ୍ୟ ଦାନ କରିଗଲେ ? ସେମାନଙ୍କୁ ବାରଣ କରିବାର ଚେଷ୍ଟା କର ।

ମନ୍ତ୍ରୀ—ଯେ ଆଜ୍ଞା ପ୍ରଭୁ !

ବିଶ୍ୱାମିତ୍ର—ଦୂତ ! ତୁମ୍ଭେ ବର୍ତ୍ତମାନ ଯାଇ ପାର । ତୁମ୍ଭକୁ ମଧ୍ୟ ଚେଷ୍ଟା କରିବାକୁ ହେବ ।

( ଦୂତର ଅଭିବାନନ୍ଦ ଓ ପ୍ରସ୍ଥାନ )

( ଗାୟକଦ୍ୱୟ ପ୍ରବେଶ ଓ ଅଭିବାଦନ )

ବିଶ୍ୱାମିତ୍ର—ତୁମ୍ଭେଦୁହେଁ ଗାଉଥିଲ ?

ଗାୟକ—ଆଜ୍ଞା ହଁ, ଆମ୍ଭେଦୁହେଁ ଗାଉଥିଲୁଁ ।

ବିଶ୍ୱାମିତ୍ର—ଜାଣ ନାହିଁ, ଏ ହରିଶ୍ଚନ୍ଦ୍ରଙ୍କ ରାଜତ୍ୱ ନୁହେଁ ? ତେବେ ତାଙ୍କର ଯଶୋଗାନର ଅଭିପ୍ରାୟ ?

ଗାୟକ—ଆମ୍ଭେମାନେ ଭଟ୍ଟ । ବ୍ୟବସାୟ—ରାଜାଙ୍କର ସ୍ତବପାଠ ।

ବିଶ୍ୱାମିତ୍ର—ନା, ସେସବୁ ହେବ ନାହିଁ ।

ଗାୟକ—ଉତ୍ତମ ! ଆମ୍ଭର ନୂତନ ରାଜାଧିରାଜଙ୍କର ମଧ୍ୟ କୀର୍ତ୍ତି କିଛି ସାମାନ୍ୟ ନୁହେଁ । ଆଜଠାରୁ ତାହା ହିଁ ଗାନ କରିବୁଁ ।

ବିଶ୍ୱାମିତ୍ର—ନୂତନ ରାଜାଧିରାଜ ! ଜାଣ, ମୁଁ ବିଶ୍ୱାମିତ୍ର । ମୁଁ ରାଜାଧିରାଜ ନୁହେଁ । ବ୍ରହ୍ମର୍ଷି ।

ଗାୟକ—କିନ୍ତୁ ବାକ୍ୟତଃ ମାତ୍ର ।

୨ୟ ଗାୟକ—ଗୃହୀତ ପ୍ରମାଣରେ ତ ଚକ୍ରବର୍ତ୍ତୀ ଆମ୍ଭମାନଙ୍କ ରାଜା ।

ବିଶ୍ୱାମିତ୍ର—( ବିସ୍ମୟଚିତ୍ତରେ ) ଯାଅ ! ଯାଅ ! ବିଶେଷ ବିରକ୍ତ କର ନାହିଁ ।

ଗାୟକ—କିନ୍ତୁ ମହାରାଜ ! ଦାନବୀରଙ୍କର ସ୍ତବ ଗାନ କରିବୁଁ ନାହିଁ ବୋଲି ସେ ଆଜି ଆପଣଙ୍କୁ ଆମ୍ଭମାନଙ୍କର ମୁଖ ବା ହୃଦୟ ଦାନ କରି ନାହାନ୍ତି ।

ବିଶ୍ୱାମିତ୍ର—ଯାଅ, ଶୀଘ୍ର ଦୂର ହୁଅ ଉଦ୍ଧତ ।

ଗାୟକ—ରାଜାଧିରାଜଙ୍କ ଅନୁଗ୍ରହ ! ଚାଲ ଭାଇ ।

୨ୟ ଗାୟକ—କିନ୍ତୁ ମହର୍ଷେ ! ଆମ୍ଭମାନଙ୍କର ଧର୍ମ-ପରାୟଣ ମହାରାଜ ହରିଶ୍ଚନ୍ଦ୍ର ସସାଗରା ଧରା ଦାନଦ୍ୱାରା ସ୍ୱର୍ଗର ପଥ ନିଷ୍କାସନ କରି ଦେବୋପମ ହୋଇଛନ୍ତି ଆଉ ଆପଣ ପୂର୍ବେ ରାଜା ଥାଇ ତପଃପ୍ରଭାବରୁ ଯେଉଁ ବ୍ରହ୍ମତେଜ ଲାଭକରିଥିଲେ, ତାହା ପତନୋନ୍ମୁଖ ।

୧ମ ଗାୟକ—ଆପଣ ଯେଉଁ ତିମିରରେ ଥିଲେ, ସେହି ତିମିରରେ ।

୨ୟ ଗାୟକ—"ତିମିରେ ତିମିରେ ସଦା ସେ ତିମିରେ ।"

ବିଶ୍ୱାମିତ୍ର—ମନ୍ତ୍ରି ! ଶୀଘ୍ର ଏମାନଙ୍କୁ ବାହାର କରିଦିଅ । ଯାଅ ମୂର୍ଖ ।

୧ମ ଗାୟକ—ତେବେ ବିଦାୟ ନେଉଁ । (ପ୍ରଣାମକରଣ)

ବିଶ୍ୱାମିତ୍ର—ଯାଅ ପାପି ! ତୁମ୍ଭେମାନେ ଆଉ ଏସବୁ ସଙ୍ଗୀତ ଗାନ କରିବ ନାହିଁ; କଲେ, ଶାସ୍ତି ପ୍ରାଣଦଣ୍ଡ ।

୨ୟ ଗାୟକ—ଆହା ! ମହାରାଜ ! ପାପୀର ଶାସ୍ତି ଭଲ ତାହା ମଞ୍ଜୁର । ମହାରାଜ ହରିଶ୍ଚନ୍ଦ୍ର ଆଉ ଅମ୍ଭମାନଙ୍କର ମୁଖ ବା ହୃଦୟ କାହାରିକୁ ଦାନ କରିପାରିନାହାନ୍ତି ।

ବିଶ୍ୱାମିତ୍ର—ଦେଖ, ରହିଥାଅ, ଆଦେଶ-ଲଙ୍ଘନର ଦଣ୍ଡ ମସ୍ତକଚ୍ଛେଦନ । ଉଦ୍ଧତ···

୧ମ—ଆହା ଦୟାମୟ ! ସେହି ଅନୁଗ୍ରହ, ଅଧମ ସେହି ଅନୁଗ୍ରହପ୍ରାର୍ଥୀ । ଦୟା କରି ସେହି ଅନୁଗ୍ରହ କରନ୍ତୁ । ଏ ପାପ ନୟନରେ, ଏ ପାପ ଜୀବନରେ, ଏ ପବିତ୍ର ସିଂହାସନରେ ହରିଶ୍ଚନ୍ଦ୍ର ଭିନ୍ନ ଅନ୍ୟର ଉପବେଶନ କରିବାର ଦେଖିବା ପୂର୍ବରୁ ସେହି ଅନୁଗ୍ରହ କରନ୍ତୁ ।

୨ୟ ଗାୟକ—କିମ୍ବା ବହୁ ଯତ୍ନ ଓ ଆୟାସଲବ୍ଧ ବ୍ରହ୍ମତେଜବଳରୁ ଭସ୍ମ କରିଦେଲେ ମଧ୍ୟ ବିଶେଷ ଦୟା ପ୍ରକାଶିତ ହୁଅନ୍ତା ।

ବିଶ୍ୱାମିତ୍ର—( ସ୍ୱଗତ ) ଆଶ୍ଚର୍ଯ୍ୟ ! ହରିଶ୍ଚନ୍ଦ୍ର ! ବାସ୍ତବରେ ତୁମ୍ଭେ ଦାନବୀର ଓ ଧର୍ମବୀର । ( ପ୍ରକାଶ୍ୟେ ) ଯାଅ ମୂର୍ଖ ! ଦୂର ହୁଅ ।

ଗାୟକଦ୍ୱୟ—ଯେ ଆଜ୍ଞା ମହାରାଜ ! ( ପ୍ରଣାମ ଓ ପ୍ରସ୍ଥାନ କରୁ କରୁ )
"ତିମିରେ ତିମିରେ ସଦା ସେ ତିମିରେ ।"

ବିଶ୍ୱାମିତ୍ର—ମନ୍ତ୍ରି ! ଶୀଘ୍ର ଯାଗବସ୍ତୁର ଆୟୋଜନ କର, ଆମ୍ଭେ ବର୍ତ୍ତମାନ ପ୍ରସ୍ତୁତ ହେବାକୁ ଯାଉଅଛୁଁ ।

ମନ୍ତ୍ରୀ—ଯଥା ଆଜ୍ଞା । ( ଆସନତ୍ୟାଗ )

( ବିଶ୍ୱାମିତ୍ରଙ୍କ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

(ସ୍ଥାନ—ରାଜପଥ । ସମୟ—ଅପରାହ୍ନ । ଭିକ୍ଷୁ, ଭିକ୍ଷୁବାଳକ ଗୀତ ଗାଉ ଗାଉ ପ୍ରବେଶ । )

ଭିକ୍ଷୁ—ଦାମିନୀ ଚମକିତ, ଅମ୍ବର ଡମ୍ବୁରିତ,
ତମସାବଗୁଣ୍ଠିତ,
ବରଷା ଆସେ,
ଗମ୍ଭୀର ଗରଜିତ, ଫେନିଳବିଶୋଭିତ,
ଘନ ଘନ କମ୍ପିତ,
—ତରଙ୍ଗି ଭାସେ ।

ଭିକ୍ଷୁବାଳକ—ତୁଟିମିବ ଅମା ନଶୀ ଧରମର ବଳରେ ।
ଚଳରେ ନାବିକ ତୁ ଧରମେ ଚଳରେ ।
ଦେଖ ଦେଖ ଆକାଶେ, ଜ୍ୟୋତି ବିକାଶେ,
ଦେବରଥ ତୋହଲାଗି ଆସେ ।

( ହରିଶ୍ଚନ୍ଦ୍ର, ଶୈବ୍ୟା ଓ ରୋହିତ ପ୍ରବେଶ )

ହରିଶ୍ଚନ୍ଦ୍ର—ପ୍ରିୟେ ! ଶୁଣିଲ ତ ଭିକ୍ଷୁକର ସଙ୍ଗୀତରେ କି ମହାଭାବ ? ମୋର ଏ ହୀନ-ଦରିଦ୍ରାବସ୍ଥା, ଏ ପଥଶ୍ରାନ୍ତି କ୍ଷଣକମଧ୍ୟରେ ସବୁ ଭୁଲିଯାଏଁ ।

ଶୈବ୍ୟା—ପ୍ରକୃତରେ କି ଗମ୍ଭୀର ଭାବ ! ସ୍ୱର୍ଗୀୟ ସଙ୍ଗୀତ !

( ଭିକ୍ଷୁ ଓ ଭିକ୍ଷୁବାଳକ ନିକଟକୁ ଆସିଲେ )

ଭିକ୍ଷୁ—ବାବା, ମହାରାଜ ହରିଶ୍ଚନ୍ଦ୍ର ଏହି ବାଟେ ଆସୁଥିଲେ, ଦେଖି ନାହଁ ?

ହରିଶ୍ଚନ୍ଦ୍ର—ସେ ଗଲେଣି ବାହାର କମ୍ପା ଆସୁଥିବେ । ତୁମ୍ଭେ କ'ଣ ତାଙ୍କଠାରୁ କିଛି ପାଇବା ଆଶା କରିଥିଲ ?

ଭିକ୍ଷୁକ—ହଁ, ମୋ କର୍ମରେ ତ ନାହିଁ । ମୁଁ ଆଉ ସେ ଶ୍ରୀଚରଣ-ଦର୍ଶନ କରନ୍ତି କିପରି ?

ହରିଶ୍ଚନ୍ଦ୍ର—( ସ୍ୱଗତ ) ହୀନଦରିଦ୍ରର ଚରଣ ଦର୍ଶନ ! ଭିକ୍ଷୁ ! ଜାଣି ପାରୁନାହଁ, ହରିଶ୍ଚନ୍ଦ୍ର ଆଜି ତମରି-ପରି ଭିକ୍ଷାନ୍ନପ୍ରେକ୍ଷୀ—ତା'ର ରାଜ୍ୟ ନାହିଁ, ତା'ର ରାଜତ୍ୱ ନାହିଁ, ତା'ର କିଛି ନାହିଁ । ହରି ! ଦୟାସିନ୍ଧୁ ! ଏ ଭିକ୍ଷୁକ କ'ଣ ମୋଠାରୁ ନିରାଶ ହେବ ପ୍ରଭୁ !

ଭିକ୍ଷୁକ—କିଏ ତେମେ ବାପ ?

ହରିଶ୍ଚନ୍ଦ୍ର—ମୁଁ ତାଙ୍କର ଜଣେ ଅନୁଚର ମାତ୍ର । ତୁମେ ତାଙ୍କ ନିକଟରୁ କ'ଣ ଆଶା କରୁଥିଲ ?

ଭିକ୍ଷୁକ—ତିନି ଦିନ ଅନାହାର, କିଛି ଖାଇ ନାହିଁ ଆଉ ପାଦରେ ବଳ ନାହିଁ । କଣ୍ଠ-ତାଳୁ ପଡ଼-ଆସୁଛି ।

ଶୈବ୍ୟା—ମହାରାଜ ! ତାଙ୍କୁ ମୋର ଏହି ଯତ୍‌ସାମାନ୍ୟ ଆହାର ଦେଇଦିଅନ୍ତୁ ।

ହରିଶ୍ଚନ୍ଦ୍ର—( ବିକଳ କଣ୍ଠରେ ) ଦେବି ! ତୁମ୍ଭେ ଆହାର କେଉଁଠୁ ପାଇଲ ?

ଶୈବ୍ୟା—କାଲି କାନିରେ ବାନ୍ଧିରଖିଥିଲି, ଖାଇ ନାହିଁ ।

ହରିଶ୍ଚନ୍ଦ୍ର—ଶୈବ୍ୟା ! ଶୈବ୍ୟା ! ଏ କି ବିଷମ ବଜ୍ର-ପ୍ରହାର ? ( ନେତ୍ରଜଳତ୍ୟାଗ )

ଶୈବ୍ୟା—ଚିନ୍ତା ନାହିଁ ମହାରାଜ ! ( ଖାଦ୍ୟ ଖୋଲିଦେଇ କିଞ୍ଚିତ୍ ରଖି ) ରୋହିତଲାଗି ଏତିକି ଥାଉ । ଆସ ଭିକ୍ଷୁକ, ଆସ; ନିଅ, ଏହି ଅଳ୍ପ ଆହାର ନେଇ ତୃପ୍ତ ହୁଅ ।

ଭିକ୍ଷୁକ—( ଗଦ୍‌ଗଦ ସ୍ୱରରେ ) ମା ! ( ଆହାର ଦେଖି ଦେଖି ) ଅଳ୍ପ କ'ଣ ? ଏ ତ ଆମ ଦୁଇଜଣଙ୍କର ବହୁତ ହେବ । ମା ! ସ୍ୱାମୀ ସଙ୍ଗେ ସୁଖରେ ଥାଅ, ମୁଁ ବିଦାୟ ହେଉଛି ।

( ଭିକ୍ଷୁ ଓ ବାଳକର ପ୍ରସ୍ଥାନ )

ଶୈବ୍ୟା—ମହାରାଜ ! ପଥ ଚାଲି ଚାଲି ବଡ଼ କ୍ଳାନ୍ତ ହୋଇପଡ଼ିଲଣି । ଏହିଠାରେ ବିଶ୍ରାମ କରନ୍ତୁ ।

(ମାଳାଦ୍ର, ଭୂତିଆ, ବଳି ପ୍ରଭୃତି କେତେକ ବ୍ରାହ୍ମଣ ପ୍ରବେଶ )

ମାଳାଦ୍ର—ଏ ଭୂତିଆମ୍ପା ! ବୁଝିଲୁ ଦେଖି, ଏମାନେ ଅବା ଦେଖିଥିବେ । ( ହରିଶ୍ଚନ୍ଦ୍ର ପ୍ରଭୃତିଙ୍କ ପ୍ରତି ) ଦାନବୀର ମହାରାଜ ହରିଶ୍ଚନ୍ଦ୍ରଙ୍କୁ ଦେଖିଛ କି ବାଟୋଇ ଭାଇ ! ସେ ଏ ବାଟେ ଆସୁ ନାହାନ୍ତି ?

ହରିଶ୍ଚନ୍ଦ୍ର—ବିପ୍ରଗଣ ! ଆପଣମାନେ କିଅଣ ହରିଶ୍ଚନ୍ଦ୍ରଙ୍କଠାରୁ ଦାନଗ୍ରହଣନିମିତ୍ତ ଅପେକ୍ଷା କରିଅଛନ୍ତି ?

ବଳି—ହଁ, ତାଙ୍କୁ ହିଁ ଖୋଜୁଛୁ ।

ହରିଶ୍ଚନ୍ଦ୍ର—ବିପ୍ରଗଣ ! କ୍ଷମା କରନ୍ତୁ । ହରିଶ୍ଚନ୍ଦ୍ର ବର୍ତ୍ତମାନ ହୀନ—ଦରିଦ୍ର । ସେ ଯଥାସର୍ବସ୍ୱ ବିଶ୍ୱାମିତ୍ର ମୁନିଙ୍କ ଶ୍ରୀଚରଣରେ ଅର୍ପଣ କରିଦେଇ କାଶୀବାସନିମିତ୍ତ ଆସୁଛନ୍ତି । ପଥର ଭିକାରୀଠାରୁ ମଧ୍ୟ ହୀନ ଅବସ୍ଥାରେ ଅଛନ୍ତି ।

ମାଳାଦ୍ର—କାହିଁକି ? ତାଙ୍କ ସଙ୍ଗରେ କ'ଣ କିଛି ନାହିଁ ? ବିଶାମିତ୍ର କିଅଣ ତାଙ୍କ ସଙ୍ଗେ କିଛି

ହେଲା ନାହିଁ ? ଏତେ ବଡ଼ ରାଜ୍ୟ ନେଇ ମଧ୍ୟ ଲୋଭ ? ସେ କ'ଣ ସାକ୍ଷାତ୍ ଯମ ?

ହରିଶ୍ଚନ୍ଦ୍ର—ସେ କଥା କହିବେ ନାହିଁ । ଦାତବ୍ୟ ଧନ ହରିଶ୍ଚନ୍ଦ୍ରଙ୍କର ପୁନଃ ଭୋଗ୍ୟ ନୁହେଁ ।

ଭୃତିଆ—କି ରେ ! ଏ ତ କ'ଣ ସବୁ ଜାଣିଛି ।

( ସେନାପତି ପ୍ରବେଶ ।)

ସେନାପତି—( ମଳିନ ବେଶରେ ଓ କମ୍ପିତ କଣ୍ଠରେ ) ମହାରାଜାଙ୍କର ଜୟ ହେଉ ! ଧର୍ମର ଜୟ ହେଉ ! ( ପଦତଳେ ପତନ )

ହରିଶ୍ଚନ୍ଦ୍ର—( ଉଠାଇନେଇ କୋଳ କରି ) ଏ କ'ଣ ? ତୁମ୍ଭେ ଏଠାକୁ ଆସିଲ କାହିଁକି ?

ସେନାପତି—ମହାରାଜ ! ଆଉ କାହିଁକି ଥାଆନ୍ତି ? ମହାରାଜାଙ୍କ ଦାନ ସଙ୍ଗେ ସଙ୍ଗେ ମଧ୍ୟ ମୁଁ ସେ ସେନାପତିତ୍ୱ ସେହି ସର୍ବଗ୍ରାସୀ ବିଶ୍ୱାମିତ୍ର ଗର୍ଭରେ ଦେଇଦେଇଛି ।

ମାଲାଦ୍ର—( ଆଶ୍ଚର୍ଯ୍ୟଭାବେ ) ଏଁ ଏଁ, କାହିଁ ? ଏ କ'ଣ ସେହି ହରିଶ୍ଚନ୍ଦ୍ର ?

ଭୃତିଆ—କାହିଁ ? ଭିକ୍ଷୁକ ? ମହାରାଜ ଭିକ୍ଷୁକ ?

ହରିଶ୍ଚନ୍ଦ୍ର—ହଁ, ଏହି ଦାସ ହିଁ ସେହି ହରିଶ୍ଚନ୍ଦ୍ର । ସେହି ଭିକ୍ଷୁକ ହରିଶ୍ଚନ୍ଦ୍ର ।

ଶୈବ୍ୟା—ଏହି ପ୍ରଥମ । ଭିକ୍ଷୁକ ହରିଶ୍ଚନ୍ଦ୍ର । ହା ଦେବ ! ଏ କଥା ମଧ୍ୟ ଶୁଣିବାକୁ ହେଲା ?— ଆଉ ଶୈବ୍ୟାର କର୍ଣ୍ଣ ବଧିର ହୋଇ ନାହିଁ । ( ନୀରବ ଓ ଅଶ୍ରୁମୋଚନ )

ହରିଶ୍ଚନ୍ଦ୍ର—ଜୀବନରେ କେବେ ପ୍ରାର୍ଥୀଙ୍କୁ ନିରାଶ କରି ନ ଥିଲି । ବିପ୍ରଗଣ ! ମୁଁ ଅତି ଦୁର୍ଭାଗ୍ୟ, ମୋର କିଛି ନାହିଁ । ଏକବସ୍ତ୍ର ଭିନ୍ନ ଦ୍ୱିତୀୟ ନାହିଁ ।

ଭୃତିଆ—ଏଁ, କ'ଣ ? ସତେ, ଯଥାସର୍ବସ୍ୱ ଦାନ ? କି ନିର୍ବୋଧ !

ସମସ୍ତେ—( ଏକକଣ୍ଠରେ ଓ ଊର୍ଦ୍ଧ୍ୱବାହୁରେ )
"ଜୟ ମହାରାଜ ହରିଶ୍ଚନ୍ଦ୍ରଙ୍କର ଜୟ !"
"ଜୟ ଦାନବୀର ହରିଶ୍ଚନ୍ଦ୍ରଙ୍କର ଜୟ !"

ହରିଶ୍ଚନ୍ଦ୍ର—ବିପ୍ରଗଣ ! ଆଉ ଏ ଯଶୋଗୀତି ଭଲ ଲାଗୁନାହିଁ । ମୁଁ ମର୍ମାନ୍ତିକ ଯାତନା ଅନୁଭବ କରୁଛି । ଆପଣମାନେ ନିରସ୍ତ ହେବେ ।

ରୋହିତ—ପିତା ! ସେ କି କଥା ? ମୋର ଏହି ବହୁମୂଲ୍ୟ ଉତ୍ତରୀୟଟି ଗ୍ରହଣ କରନ୍ତୁ ।

ହରିଶ୍ଚନ୍ଦ୍ର—ବାପ ରେ !

( ବାଷ୍ପାକୁଳ ନେତ୍ରରେ କରୁଣ ଦୃଷ୍ଟିପାତ ) ।

ରୋହିତ—ବିକଳ ହୁଅ ନାହିଁ ପିତା ! ଆପଣ ସସାଗରା ପୃଥିବୀ ଦାନ କରିପାରିଲେ ଆଉ ମୁଁ ଆପଣଙ୍କ ପୁତ୍ର ହୋଇ ସାମାନ୍ୟ ଉତ୍ତରୀୟଟି ଦାନ କରିପାରିବି ନାହିଁ । ବିପ୍ରଗଣ ! ଆସ, ନିଅ । ( ଉତ୍ତରୀୟ କାଢ଼ିଦେବା )

ସେନାପତି—ଧନ୍ୟ ରୋହିତ ! ଅଙ୍ଗାଚ୍ଛାଦନନିମିତ୍ତ ଅନ୍ୟ ବସ୍ତ୍ର ନାହିଁ । ମସ୍ତକନିମିତ୍ତ ଆବରଣ ନାହିଁ । ସେହି ଖଣ୍ଡକ ହିଁ ସମ୍ବଳ, ତଥାପି କି ଦାନ ?

ମାଲାଦ୍ର—କୁମାର ! ଏହି ବଂଶରୁ ଯଥେଷ୍ଟ ଦାନ ଗ୍ରହଣ କରିଛୁଁ । ସେହି ଦାନ ଭୋଜନର ରକ୍ତରେ ଏ ଶିରା-ପ୍ରଶିରା ନିର୍ମିତ । ଏ ବ୍ରାହ୍ମଣର ବ୍ରହ୍ମଶରୀର ଅଣୁପରମାଣୁ ମଧ୍ୟରେ ଯେଉଁ ତପ୍ତ ରକ୍ତସ୍ରୋତ ପ୍ରବାହିତ ତହିଁର ପ୍ରତ୍ୟେକ ଅଂଶ, ପ୍ରତ୍ୟେକ ଭାଗ ପରୀକ୍ଷା କଲେ ସୂର୍ଯ୍ୟବଂଶର ଦାନର ସୂଚନା ମିଳିପାରିବ । ଆମ୍ଭେମାନେ ପରମ ପରିତୁଷ୍ଟ । ଆଶୀର୍ବାଦ କରୁଁ, ରାଜାଧିରାଜ ହୁଅ । ଯଶସ୍ୱୀ ହୁଅ । ଧାର୍ମିକ ହୁଅ ।

ସମସ୍ତେ—"ଜୟ ଦାତା ହରିଶ୍ଚନ୍ଦ୍ରଙ୍କର ଜୟ !"
"ଜୟ ମହାରାଣୀଙ୍କର ଜୟ !"
"ଜୟ କୁମାରଙ୍କର ଜୟ !"

ରୋହିତ—( ସ୍ମିତମୁଖେ ) ବିପ୍ରଗଣ ! ଅନୁଗ୍ରହ କରି ଏ ଉତ୍ତରୀୟଟି ଗ୍ରହଣ କରନ୍ତୁ ।

( ଉତ୍ତରୀୟ ବଢ଼ାଇଦେବାର ଉପକ୍ରମକାଳରେ ବିଶ୍ୱାମିତ୍ର ପ୍ରବେଶ )

ବିଶ୍ୱାମିତ୍ର—ନାହିଁ ରୋହିତ ! ସେଥିରେ ତୁମର କୌଣସି ଅଧିକାର ନାହିଁ । ପରସ୍ୱ ଅପହରଣ କରି ଦାନ ? ଏ ଦାନରେ ପୁଣ୍ୟ ନାହିଁ; ବରଂ ପାପ । ଆସ ରୋହିତ ! ସେ ଉତ୍ତରୀୟଟି ତୁମର ନୁହେଁ ।

(ଉତ୍ତରୀୟ କାଢ଼ିନେବା)

ମାଲାଦ୍ର—ଧିକ୍ ଧର୍ମ ! ଧିକ୍ କର୍ମ ! ଧିକ୍ ସାଧନା !

ବିଶ୍ୱାମିତ୍ର—(କ୍ରୋଧ ନେତ୍ରରେ ଚାହିଁ) କିଏ ତୁ ବ୍ରାହ୍ମଣ ? ଜାଣି ନାହୁଁ ମୁଁ କିଏ ? ବ୍ରହ୍ମ ତେଜରେ ଭସ୍ମ କରିଦେଇପାରେ ।

ମାଲାଦ୍ର—ହିଁ, ବ୍ରାହ୍ମଣ ମୁଁ । ମାତୃଗର୍ଭରୁ ଉପବୀତଧାରୀ ବ୍ରାହ୍ମଣ । ଜନ୍ମରୁ ବ୍ରହ୍ମତେଜୋଧାରୀ ବ୍ରାହ୍ମଣ । ମୁଁ ଆଜି କଠୋର ତପୋବଳରେ ବ୍ରହ୍ମତେଜ ଲାଭ କରି ନାହିଁ ଯେ ନିଜ ମୁଖରେ ଆତ୍ମଗରିମା ଗାଇ-ବୁଲିବି, ମହାତ୍ମନ୍ ! ଆତ୍ମଗରିମା ଆପାତତଃ ମୁନି-ଋଷିମାନଙ୍କର ମୁଖରେ ସୁନ୍ଦର ନୁହେ ।

ବିଶ୍ୱାମିତ୍ର—ସାବଧାନ ହୁଅ । ନିଜର ମର୍ଯ୍ୟାଦା ବୁଝି କଥା କହ ।

ଭୂତଆ—ବହୁତ ବୁଝିଛୁଁ । ଯେତେ ଭଲ ବୁଝିଛୁଁ, ଜାଣୁ (ପଇତା ଦେଖାଇ) ଏ ସୂତର ଆଉ ଆପଣଙ୍କର ସ୍କନ୍ଧର ସୂତର ମର୍ଯ୍ୟାଦା ମଧ୍ୟରେ ଅନେକ ପ୍ରଭେଦ । ଏହା ଧର୍ମଲବ୍ଧ, ଜନ୍ମସିଦ୍ଧ ଓ କର୍ମଫଳ ଆଉ ସେ ଆପଣଙ୍କର କଷ୍ଟକଳ୍ପିତ, ଆୟାସ ଉତ୍ପନ୍ନ । ଆଉ ସେହି ହେତୁରୁ ହିଁ ଆମ୍ଭେମାନେ କାହାରିକୁ ଭସ୍ମର ଭୟ ଦେଖାଉ ନାହୁଁ ।

ବିଶ୍ୱାମିତ୍ର—ସ୍ଥିର ହୁଅ ପାପୀ ।

ମାଲାଦ୍ର—ରାଜର୍ଷେ ! କ୍ରୋଧ ସମ୍ବରଣ କରନ୍ତୁ । ଆମ୍ଭେମାନେ ପାପୀ ନୋହୁଁ । ପାପର ପ୍ରାୟଶ୍ଚିତ୍ତ ଦେଖାପଡ଼ୁଛି । ସେହି କାରଣରୁ ବିଶ୍ୱାମିତ୍ର ମୁନି ଆଜି ତପଃଜପ ଛାଡ଼ି ରାଜା ।

ବିଶ୍ୱାମିତ୍ର—ମହାରାଜ ! ମୋତେ ବେଶୀ ବେଳ ଆଉ ଏ ଅପମାନ ସହ୍ୟ କରିବାକୁ ଦେବେ ନାହିଁ । ଶୀଘ୍ର ଆପଣଙ୍କ ଅଙ୍ଗୀକୃତ ଦକ୍ଷିଣା ଦେଇ ବିଦାୟ ହଅନ୍ତୁ ଅଥବା ଋଣ ପରିଶୋଧ କରିବେ କି ନାହିଁ ସ୍ପଷ୍ଟ କହନ୍ତୁ ।

ସେନାପତି—ସ୍ଥିର ହୁଅ ରାଜର୍ଷି ! ଯେପର୍ଯ୍ୟନ୍ତ ଦକ୍ଷିଣା ଦେବାର ଅଙ୍ଗୀକୃତ ସମୟ ଅତିବାହିତ ନୁହେଁ, ସେତେବେଳଯାଏ ଆପଣ ମହାରାଜଙ୍କ ପ୍ରତି ଏପରି କଟୂକ୍ତି ପ୍ରୟୋଗ କରିପାରନ୍ତି ନାହିଁ ।

ବିଶ୍ୱାମିତ୍ର—(କ୍ରୋଧ ନେତ୍ରରେ ଫେରି ଚାହିଁ) ଏ ପୁଣି କିଏ ? ତୁମ୍ଭଙ୍କୁ ତ ମୁଁ ହରିଶ୍ଚନ୍ଦ୍ରଙ୍କ ରାଜସଭାରେ ଦେଖିଥିଲାପରି ବୋଧ ହୁଏ ।

ସେନାପତି—କାହିଁ ? ମୋତେ ତ ସେପରି ବୋଧ ହୁଏ ନାହିଁ ।

ବିଶ୍ୱାମିତ୍ର—ତୁମ୍ଭେ ବୋଧ ହୁଏ ସେଦିନ ବିଦାୟ ନେଇ ଆସିଲ ?

ସେନାପତି—ଓହୋଃ ! ତେବେ ଦେଖିଛନ୍ତି; କିନ୍ତୁ ସେ ଆପଣଙ୍କ ଭ୍ରମ । ମହାରାଜ ହରିଶ୍ଚନ୍ଦ୍ରଙ୍କ ଧର୍ମ-ସଭାରେ ଦେଖି ନ ଥିବେ ।

ବିଶ୍ୱାମିତ୍ର—ମୋ ସହିତ ପରିହାସ ? ନାରକି !

ସେନାପତି—ମହାରାଜଙ୍କ ଅନୁଗ୍ରହ, ଦୟା । ମହାରାଜ ବିଶ୍ୱାମିତ୍ରଙ୍କର ଯଦି ସ୍ୱର୍ଗବାସ ହୁଏ, ତେବେ ମୁଁ ଦ୍ୱାଦଶ ବର୍ଷ ଅନଶନ-ବ୍ରତପାଳନରେ ତପସ୍ୟା କରି ଭଗବାନଙ୍କ ଚରଣାରବିନ୍ଦରୁ ନାରକୀ ହେବାକୁ ବର ମାଗିନେବି; କିନ୍ତୁ, ତଥାପି, ତପସ୍ୱୀ ହୋଇ ଏତେ ନିର୍ମମ କାର୍ଯ୍ୟ ସାଧନ କରିପାରିବି ନାହିଁ କିମ୍ବା ଏ ତୀବ୍ର କଟୂକ୍ତି ପ୍ରୟୋଗ କରିପାରିବି ନାହିଁ ।

ବିଶ୍ୱାମିତ୍ର—ଦେଖ ! ସାବଧାନ ହୁଅ । (ରାଜାଙ୍କ ପ୍ରତି) ମହାରାଜ ! କ'ଣ କହନ୍ତି ? ମୋର ଋଣ

ପରିଶୋଧ କରିବେ, ନା ସତ୍ୟଭଙ୍ଗ ହେବେ ?

ସେନାପତି—ମହାରାଜ ! ଏ ଦାସପ୍ରତି ଅନୁଗ୍ରହ କରି ଆପଣ ପ୍ରତିଶ୍ରୁତ ସମସ୍ତ ଅର୍ଥ ଗ୍ରହଣ କରି ଋଣମୁକ୍ତ ହୁଅନ୍ତୁ । ପୁରୁଷାନୁକ୍ରମେ ଏ ଭକ୍ତ ସୂର୍ଯ୍ୟବଂଶପ୍ରତିପାଳିତ । କିଛି ଚିନ୍ତା ନାହିଁ ମହାରାଜ !

ହରିଶ୍ଚନ୍ଦ୍ର—( ଅଧୋମୁଖେ ଦଣ୍ଡାୟମାନ ) ।

ସେନାପତି—ଶୁଣନ୍ତୁ ମୁନିବର ! ମୁଁ ଦେଇଦେବି । ମୋର ଅନ୍ନଦାତାଙ୍କୁ ଋଣମୁକ୍ତ କରିବି । ମହାରାଜ ତ ଆଉ ମୋର ଅର୍ଥ ଆପଣଙ୍କୁ ଦାନ କରି ନାହାନ୍ତି ! ଏ ଥର କ'ଣ କହନ୍ତି ?

ବିଶ୍ୱାମିତ୍ର—ପରିହାସ ? ମୋ ସହିତ ପରିହାସ ? ତୁମ୍ଭର ଦେବାର ବା ମହାରାଜଙ୍କର ନେବାର ଇଚ୍ଛା ଥିଲେ ମହାରାଜାଙ୍କୁ ଦେଇଦିଅ । ସେ ନିଜେ ମୋତେ ଦେଇ ଋଣମୁକ୍ତ ହୁଅନ୍ତୁ । ମହାରାଜ ! କ'ଣ ଭାବୁଛନ୍ତି ?

ହରିଶ୍ଚନ୍ଦ୍ର—( ସେନାପତି ପ୍ରତି ) ସେନାପତି ! ଯଥେଷ୍ଟ ହୋଇଛି । ହରିଶ୍ଚନ୍ଦ୍ର ତାର ଧର୍ମର ଫଳ ଯଥେଷ୍ଟ ପାଇଛି । କ୍ଷମା କର । ମୁଁ ସେ ଧନ ଗ୍ରହଣ କରିପାରିବି ନାହିଁ । ତାହା ମୁଁ ଦାନ କରିଛି ।

ବ୍ରାହ୍ମଣଗଣ—ସାଧୁ ! ସାଧୁ ହରିଶ୍ଚନ୍ଦ୍ର ! ସାଧୁ ସେନାପତି !

ସେନାପତି—ନୋହିଲା । କରଜସୂତ୍ରେ ଗ୍ରହଣ କରନ୍ତୁ ।

ଶୈବ୍ୟା—ସେନାପତି ! କରଜସୂତ୍ରେ ଗ୍ରହଣ କରି ଋଣମୁକ୍ତ ହେବାର ତ ଉପାୟ ନାହିଁ । ତୁମ୍ଭେ କୁଶଳରେ ଦେଶକୁ ଫେରିଯାଅ । ଆମ୍ଭେମାନେ ତୁମ୍ଭଠାରୁ ଆଶାତୀତ ଉପକାର ଲାଭ କରିଅଛୁଁ । ତୁମ୍ଭେ ଫେରିଯାଅ । ଆମ୍ଭେମାନେ ଆମ୍ଭମାନଙ୍କର କର୍ମଫଳ ଭୋଗ କରିବୁଁ । ଭଗବାନ୍ ମାତ୍ର ଭରସା ।

ସେନାପତି—( ମୁଖରେ ଲୁଗା ଦେଇ ) ବିଦାୟ ହୁଅ ବନ୍ତି ।

ମାଳାଦ୍ର—ଧନ୍ୟ ଧର୍ମନିଷ୍ଠା ! ଏତେ କଷ୍ଟରେ ମଧ୍ୟ ଧର୍ମପଥ ବିଚଳିତ ହେଲ ନାହିଁ । ଚାଲ ଯାଇ, ଏ ମର୍ମବିଦାରକ ଦୃଶ୍ୟ ବ୍ରାହ୍ମଣର ଦ୍ରଷ୍ଟବ୍ୟ ନୁହେଁ । ଏ କେବଳ ନରପିଶାଚ-ରହସ୍ୟ । ଆସ ସେନାପତି ।

ବିଶ୍ୱାମିତ୍ର—( କୋପଦୃଷ୍ଟିପାତ )

ହରିଶ୍ଚନ୍ଦ୍ର—ଯାଅ ସେନାପତି ! ଆଉ ଏ ଅଧମଲାଗି ବିକଳ ହୁଅ ନାହିଁ । ( ଲୋଚନମୁଞ୍ଚନ )

ସେନାପତି—ମହାରାଜ ! ମୋତେ ନିବାରଣ କରିବେ ନାହିଁ । ମୋର ପ୍ରାଣପ୍ରିୟ ମହାରାଜ ଯେଉଁଠି, ମୁଁ ସେଇଠି ଥିବି । ମୋ ମହାରାଜ ରାଜଚକ୍ରବର୍ତ୍ତୀ-ମୁଁ ସେନାପତି । ମହାରାଜ ଦୀନ ଦରିଦ୍ର ଭିକ୍ଷୁ—ମୁଁ ଶ୍ରୀଚରଣସେବକ, ଦାସ ।

( ଲୋଚନତ୍ୟାଗ । )

ବ୍ରାହ୍ମଣଗଣ—ଧନ୍ୟ ସେନାପତି ! ଧନ୍ୟ ଭକ୍ତ ! ଧନ୍ୟ ନିଷ୍ଠା ! ! !

ହରିଶ୍ଚନ୍ଦ୍ର—ସେନାପତି ! ମହେନ୍ଦ୍ର ! ମୋର ଶେଷ ଅନୁରୋଧ ରକ୍ଷା କର । ଫେରିଯାଅ ।

ସେନାପତି—( କାତର ଦୃଷ୍ଟିରେ ) ମହାରାଜ !···

ଶୈବ୍ୟା—( କଥାରେ ବାଧା ଦେଇ ) ଆସ ମହେନ୍ଦ୍ର ! ବ୍ୟସ୍ତ ହୁଅ ନାହିଁ, ଫେରିଯାଅ । ଅଉ ସମସ୍ତଙ୍କୁ ଆମ୍ଭମାନଙ୍କର ସ୍ନେହ ଜଣାଇବ । ଯାଅ,ଫେରିଯାଅ ।

ବ୍ରାହ୍ମଣଗଣ—ଆସ ସେନାପତି ! କେତେକାଳ ଆଉ ଏ କଷ୍ଟକର ଦୃଶ୍ୟର ଦର୍ଶକ ହେବ ? ଆସ ।

ସେନାପତି—( ପ୍ରଣାମକରଣ ) ଯାଅ ବିଶ୍ୱାମିତ୍ର ! ଏ ଦୃଶ୍ୟ ଚଣ୍ଡାଳର ମଧ୍ୟ ସହ୍ୟ ନୁହେଁ । ମୁଁ ମଧ୍ୟ ଆଉ ଦେଶକୁ ଫେରି ହତଶ୍ରୀ ପ୍ରାସାଦ, ପକ୍ଷୀଶୂନ୍ୟ ପିଞ୍ଜର ବା କୁସୁମହୀନ କୁଞ୍ଜ ଦେଖିପାରିବି ନାହିଁ । ଯେବେ ସୁଦିନ ଆସିବ ଆଉ ମହାରାଜାଙ୍କ ଆଜ୍ଞା ପ୍ରତିପାଳନ କରିପାରିବି, ତେବେ ଦେଶକୁ ଫେରିବି, ନଚେତ୍ ଏ ଜୀବନରେ ଇତି ।

( ପ୍ରଣାମ ଓ ଅଶ୍ରୁମୋଚନ କରି ପ୍ରସ୍ଥାନ )

ବ୍ରାହ୍ମଣଗଣ—ଜୟ ଧର୍ମର ଜୟ, ଜୟ ଦାତା ହରିଶ୍ଚନ୍ଦ୍ରଙ୍କର ଜୟ, ଜୟ ଧର୍ମବୀରଙ୍କର ଜୟ ! (ପ୍ରସ୍ଥାନ)

ବିଶ୍ୱାମିତ୍ର—ଧର୍ମବୀର ! ଋଣଗ୍ରସ୍ତ ହୋଇ ଧର୍ମବୀର ଉପାଧି ଗ୍ରହଣ କରୁଥାଅ । ଆଜି ମୁଁ ଏ ଉପହାସ ସହ୍ୟ କରିପାରିବି ନାହିଁ ।

ହରିଶ୍ଚନ୍ଦ୍ର—ତପୋଧନ ! ଦାସ ଶ୍ରୀଚରଣରେ କି ଅପରାଧ କଲା ?

ବିଶ୍ୱାମିତ୍ର—ସେ ଗଲା, ବର୍ତ୍ତମାନ କାଳହନକ ମାତ୍ର ସମୟ, ପ୍ରସ୍ତୁତ ହୁଅ ।

ଶୈବ୍ୟା—ଋଷିବର ! ଆପଣ ଆମ୍ଭମାନଙ୍କୁ ମୁକ୍ତିଦାନ କରନ୍ତୁ । ରାଜ୍ୟ ନାହିଁ, ଧନ ନାହିଁ, ଧନୁର୍ବାଣ ବର୍ଜନ କରିଅଛୁଁ । କ୍ଷତ୍ରିୟ, ଭିକ୍ଷା ନିଷେଧ । ଆଜି କିଅଣ ଅଛି ? ଧନ କେଉଁଠୁ ପାଇବୁଁ ? ଆମ୍ଭମାନେ ଆପଣଙ୍କ ସେବାରେ ନିଯୁକ୍ତ ହେଲେ କ'ଣ ଋଣମୁକ୍ତ ହୋଇପାରିବୁଁ ନାହିଁ ?

ବିଶ୍ୱାମିତ୍ର—ମହାରାଣି ! ତପସ୍ୱୀର ପୁଣି ସେବକରେ କି ଆବଶ୍ୟକ ? ମହାରାଜ ! ପ୍ରକୃତରେ କିଅଣ ଆପଣଙ୍କର କିଛି ନାହିଁ ?

ହରିଶ୍ଚନ୍ଦ୍ର—( ନୀରବେ ଅଧୋମୁଖ )

ବିଶ୍ୱାମିତ୍ର—ନୀରବ ରହିଲେ କାହିଁକି ? ମୁଁ ତ ଦେଖୁଛି ଆପଣଙ୍କର ସମସ୍ତ ରହିଛି ।

ହରିଶ୍ଚନ୍ଦ୍ର—ଆପଣଙ୍କର ଏ ପରିହାସ ମୋର ମର୍ମର କଷ୍ଟଦାୟକ, ଏ କଥା ବୁଝିବା ତ ଆପଣଙ୍କର···

ବିଶ୍ୱାମିତ୍ର—ପରିହାସ ନୁହେଁ, ସତ୍ୟ । ଆପଣଙ୍କର ସ୍ତ୍ରୀ-ପୁତ୍ର ଅଛନ୍ତି, ପୁଣି ଆପଣ ନିଜେ ବିଦ୍ୟମାନ; ଆଉ ଅଧିକ କ'ଣ ? ମୋର ସେବାଦ୍ୱାରା ଋଣମୁକ୍ତ ହେବାକୁ ପ୍ରସ୍ତୁତ ଅଛନ୍ତି, ମୋର ପ୍ରୟୋଜନ ନ ଥିବା ସ୍ଥଳେ ଆପଣ ଅନ୍ୟ କାହାରିଠାରେ ପ୍ରାର୍ଥୀ ହୋଇପାରନ୍ତି । ସେ ଅଧିକାର ତ ମୋତେ ଦାନ କରି ନାହାନ୍ତି ?

ଶୈବ୍ୟା—ଉତ୍ତମ ପ୍ରସ୍ତାବ ମୁନିବର ! ଆମ୍ଭେମାନେ କାଲି ବାରାଣସୀରେ ପ୍ରବେଶମାତ୍ରେ ତହିଁର ଆୟୋଜନ କରିବୁଁ । ଆପଣ ବ୍ୟସ୍ତ ହେବେ ନାହିଁ । ଆମ୍ଭେମାନେ ବାହାରିଲୁଁ । ଆପଣ ଆସନ୍ତୁ ।

ବିଶ୍ୱାମିତ୍ର—ଧର୍ମ ରକ୍ଷା କର, ସତ୍ୟ ରକ୍ଷା କର । ଉତ୍ତମ ! (ପ୍ରସ୍ଥାନ)

ହରିଶ୍ଚନ୍ଦ୍ର—ଚାଲ ପ୍ରିୟେ ! ଚାଲ ବାବା ରୋହିତ, ଚାଲ ନିଜର କର୍ତ୍ତବ୍ୟ ପଥରେ ଅଗ୍ରସର ହେବା । ଭଗବାନ୍ ! ଆଉ କେତେ ପରୀକ୍ଷା କରିବ କରିଯାଅ; କିନ୍ତୁ ଦୟାମୟ ! ଏତିକି ପ୍ରାର୍ଥନା, ଯେପରି ହୀନ ଦରିଦ୍ର ବୋଲି ଧର୍ମ ବିଚଳିତ ନ ହୁଏ । ( ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

[ସ୍ଥାନ—ବାରାଣସୀର ପ୍ରାନ୍ତର । ସମୟ—ପ୍ରାତଃକାଳ ।]

ଧର୍ମ—(ପ୍ରବେଶି) ନାହିଁ ; କିଏ କହେ ଧର୍ମ ନାହିଁ ? ହେଲା—ଧର୍ମ ନାହିଁ । ନା, ନା, ଧର୍ମ ଆଉ ବା ନ ଥାଉ, କିନ୍ତୁ ହରିଶ୍ଚନ୍ଦ୍ରଙ୍କ ପରି ଧାର୍ମିକ ନାହିଁ । ଧର୍ମର ଅସି ବଡ଼ ତୀକ୍ଷ୍ଣ । କିନ୍ତୁ ଏ ଅସି ଧାରଣ କରିପାରନ୍ତି କେତେ ଜଣ ? ହରିଶ୍ଚନ୍ଦ୍ର ! ହରିଶ୍ଚନ୍ଦ୍ର ! ଶଙ୍କା ନାହିଁ । ଏ ଜଗତରେ ତୁମ୍ଭ ସମାନ କେହି ନୁହେଁ । ଶ୍ରୀରାମଚନ୍ଦ୍ରଙ୍କର ସେ ବାଲ୍ମୀକି କଣ୍ଠ-ନିଃସୃତ ଚରିତ୍ରର ବର୍ଣ୍ଣନା ଏହାର କେଉଁ ଅଂଶ ସଙ୍ଗେ ସମାନ ହୋଇପାରେ ? ସଂସାର ପକ୍ଷରେ ସେ ଚରିତ୍ର—ଚରିତ୍ର; କିନ୍ତୁ ଧର୍ମବୀର ଦାନବୀର ହରିଶ୍ଚନ୍ଦ୍ର ! କହ ଦେଖି, ଆଜି ଯଦି ତୁମ୍ଭେ ସେହି ସଂସାର ଚକ୍ଷୁରେ ପ୍ରମାଣିତ ଚରିତ୍ରର ତରବାରି ଦେଇ ଦେଖ,

ବିଦେଶ, ସ୍ୱର୍ଗ, ମର୍ତ୍ତ୍ୟ, ଆକାଶ, ପାତାଳ ଜୟ କରିଥା'ନ୍ତି, ତେବେ କ'ଣ ଅକ୍ଷୟ ସ୍ୱର୍ଗବାସ ପାଇପାରନ୍ତି ? ଦେବଚକ୍ଷୁରେ ତୁଂଭେ ବୀର ବୋଲି ପ୍ରମାଣିତ ହୁଅନ୍ତି ? କିନ୍ତୁ ହରିଶ୍ଚନ୍ଦ୍ର, ତେବେ ମଧ୍ୟ ପରୀକ୍ଷା ଶେଷ ନୁହେଁ । ସେ ଶେଷଦିନକୁ ଅପେକ୍ଷା କର । ଅତି କଠିନ ପରୀକ୍ଷା । ବିପଦବେଳେ କାତର ହୋଇ ଧର୍ମ ଭୁଲ ନାହିଁ । ଚିନ୍ତା ନାହିଁ, ମୁଁ ନିଜେ ତୁଂଭର ପରୀକ୍ଷା ସଙ୍ଗେ ସଙ୍ଗେ ମଧ୍ୟ ତୁଂଭଙ୍କୁ ସାହାଯ୍ୟ ଦେବି । ଅଧୀର ହୁଅ ନାହିଁ—ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ନିଶ୍ଚୟ ତୁଂଭେ ସେ ଦର୍ପାନ୍ଧ ବିଶ୍ୱାମିତ୍ରଙ୍କୁ ପ୍ରତିଶ୍ରୁତ ଦକ୍ଷିଣା ଦେଇପାରିବ । ସେଥିଲାଗି ଧର୍ମ ଦାୟୀ—ନଚେତ୍ ଧାର୍ମିକର ପତନ ଆଉ ସଙ୍ଗେ ସଙ୍ଗେ ଧର୍ମର ବିଲୟ । ( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ସ୍ଥାନ—ବାରାଣସୀ ନଦୀକୂଳ

ହରିଶ୍ଚନ୍ଦ୍ର, ଶୈବ୍ୟା ଓ ରୋହିତ ପ୍ରବେଶ ।]

ହରିଶ୍ଚନ୍ଦ୍ର—ପ୍ରିୟେ ! ଆମ୍ଭେମାନେ କାଶୀରେ ପହଞ୍ଚିଛୁଁ । ଆଜି ଶେଷ ଦିନ, କର୍ତ୍ତବ୍ୟ ନିର୍ଣ୍ଣୟର ଶେଷ । ସ୍ୱର୍ଗ କିମ୍ବା ନର୍କ, ପାପ କିମ୍ବା ପୁଣ୍ୟ, ଉତ୍ଥାନ କିମ୍ବା ପତନ ।

ଶୈବ୍ୟା—ମହାରାଜ ! ଆଜି ବିଶେଷ ଚିନ୍ତା କରନ୍ତୁ ନାହିଁ । ନହେ ମୋ' ପ୍ରତି ନିର୍ମମ ହୁଅନ୍ତୁ; କିନ୍ତୁ ମହାରାଜ ! ଏହି ଅଜ୍ଞାନ ଦୁଗ୍ଧପୋଷ୍ୟ ଶିଶୁଟିର ମୁଖ ଅଭାଗିନୀର ଆଖି ଆଗରେ ମୋର ହୃଦୟ ଶତଧା ବିଦୀର୍ଣ୍ଣ କରିଦେଉଛି । ମହାରାଜ ! ଭିକ୍ଷୁ ବାଳକ ହୋଇଥିଲେ ବଞ୍ଚିପାରନ୍ତା; କିନ୍ତୁ ଏହାର ତ ବଞ୍ଚିବାର ଆଶା ନାହିଁ ।

ହରିଶ୍ଚନ୍ଦ୍ର—ପ୍ରିୟେ ! ନିତାନ୍ତ ଅସହ୍ୟ । ଓଃ ! ଧର୍ମର କଅଣ ଏହି ବିଚାର ? ରୋହିତ ରେ ! ( କୋଳାଇ ଅଶ୍ରୁପାତ )

ରୋହିତ—ପିତା, ମୋ'ଲାଗି ବିକଳ ହୁଅ ନାହିଁ । ସେଉଁ ସତ୍ୟ ଆଉ ଧର୍ମ ପାଳନ କରି ଧନ୍ୟ ହୋଇଅଛ, ସେ ବିଷୟ ସ୍ଥିର କର । ଆଜି ଦକ୍ଷିଣା ଦେବାର ଶେଷ ଦିବସ । ସୂର୍ଯ୍ୟଦେବ ଅସ୍ତ ନ ହୋଉଣୁ ଉପାୟ କରିବା ଆବଶ୍ୟକ ।

ଶୈବ୍ୟା—ମହାରାଜ ! ମୋତେ ଆଉ ଭଲ ଆଶା ଦେଖାଯାଉ ନାହିଁ । ଦକ୍ଷିଣାଦାନ ଅସଂଭବ, ମୁକ୍ତି ମଧ୍ୟ ସେଥି ସଙ୍ଗେ ଅସଂଭବ । ( ଅଶ୍ରୁମୁଞ୍ଚନ )

( ବିଶ୍ୱାମିତ୍ର ପ୍ରବେଶ । ସମସ୍ତେ ପ୍ରଣାମକରଣ )

ବିଶ୍ୱାମିତ୍ର—ମହାରାଜ ! କାହିଁ ମୋର ଦକ୍ଷିଣା ? ଆଜି ତ ଶେଷ ଦିବସ । କାହିଁ ଧର୍ମ ?

ଶୈବ୍ୟା—କ୍ଷମା ଦେବେ ଗୁରୁଦେବ ! ଏପର୍ଯ୍ୟନ୍ତ ସୂର୍ଯ୍ୟ ଅସ୍ତ ହୋଇ ନାହାନ୍ତି । ଆଉ ଅଳ୍ପ କାଳ ଅପେକ୍ଷା କରନ୍ତୁ ।

ବିଶ୍ୱାମିତ୍ର—ମହାରାଣି ! ବହୁତ ଅପେକ୍ଷା କରିଛି । କହିଦିଅ, ବୁଲିଯିବ ଆଉ ତୁଂଭର ପତି ସତ୍ୟଭ୍ରଷ୍ଟ ହୋଇ ନର୍କଗାମୀ ହେବେ ।

ଶୈବ୍ୟା—ତପୋଧନ ! ସେ କଥା ଅସାଧ୍ୟ । ମହାରାଜାଙ୍କର ଶ୍ରୀଚରଣସେବିକା ଏ ଅଭାଗିନୀ ବିଶେଷତଃ ସୁପୁତ୍ର ରୋହିତ, ଉଭୟଙ୍କର ମରଣ ପୂର୍ବରୁ ସେମାନେ ମହାରାଜାଙ୍କୁ ସତ୍ୟଭ୍ରଷ୍ଟ ହେବାକୁ ଦେବେ ନାହିଁ । କିଏ କହେ, ମହାରାଜା ହରିଶ୍ଚନ୍ଦ୍ର ସତ୍ୟଭଙ୍ଗ ନର୍କଗାମୀ ହେବେ ? ଅସମ୍ଭବ କଥା ! ମୁଁ ବୁଦ୍ଧିହୀନା ରମଣୀ ମାତ୍ର; କିନ୍ତୁ ବୁଝିଛି ଯେପର୍ଯ୍ୟନ୍ତ ମାର୍ତ୍ତଣ୍ଡ ଅସ୍ତଗାମୀ ନୁହନ୍ତି, ସେତେବେଳଯାଏ 'ନର୍କଗାମୀ' ହେବା କହିବା ଅନୁଚିତ । ( ରାଜାଙ୍କପ୍ରତି ) ମହାରାଜ ! ଆଉ ଏ କଟୁବାକ୍ୟ ସହିହେଉ ନାହିଁ ପ୍ରଭୁ ! ମାନବର ଏ ସ୍ଥୂଳ ବନ୍ଧନ ଶୀଘ୍ର ଫିଙ୍ଗିଦେଇ ଋଷିଋଣ ମୁକ୍ତ ହେବାର ଉପାୟ ଚିନ୍ତା କରନ୍ତୁ । କ୍ଷତ୍ରିକୁଳର ପତ୍ନୀ ଓ ପୁତ୍ର ଆଉ କେଉଁ ସମୟ

ଲାଗି ଆବଶ୍ୟକ ? ଧର୍ମାବତାର ! ମୋତେ ଆଉ କୁମାର ରୋହିତଙ୍କୁ ଆକାଶରେ ବିକ୍ରୟ କରି ଧର୍ମାବତାର ଉପାଧି ସାର୍ଥକ କରି ଧନ୍ୟ ହୋଉନ୍ତୁ ।

ହରିଶ୍ଚନ୍ଦ୍ର—( ଅଧୋମୁଖେ ନୀରବ ଭୂମ୍ୟବଲୋକନ )

ବିଶ୍ୱାମିତ୍ର—ସାଧୁ ସାଧୁ ! କ୍ଷତ୍ରିୟ ରମଣୀର ବିଶେଷତଃ ଦାନବୀର ହରିଶ୍ଚନ୍ଦ୍ରଙ୍କ ରାଜରାଣୀର ଉଚିତ ପରାମର୍ଶ ।

ଶୈବ୍ୟା—ମହାରାଜ ! ଆଉ ଭାବନା କଅଣ ? ଭାବିବାର କଣ ଅଛି ? ଆସନ୍ତୁ, ଆଜି ଏ ଶେଷ ଦିନରେ ଥରେ ସମସ୍ତେ ମିଶି ପୁଣ୍ୟତୋୟା ଭାଗୀରଥୀର ଜଳରେ ସ୍ନାନ କରି ଶୀଘ୍ର ଭୋଜନ ଶେଷ କରିବା । କିଏ ଜାଣେ, ଆଉ ଦିନେ ଏ ଦୁଃଖ ଜୀବନରେ ଏ ଭାଗ୍ୟ ହେବ କି ନାହିଁ । ମହାରାଜ··· ( ଅଶ୍ରୁପାତ )

ହରିଶ୍ଚନ୍ଦ୍ର—ଶୈବ୍ୟା ! ପ୍ରିୟତମେ··· ( ଅଶ୍ରୁତ୍ୟାଗ )

ଶୈବ୍ୟା—ସ୍ଥିର ହୁଅନ୍ତୁ ମହାରାଜ ! ତପୋଧନ ! ଆପଣ ଆହ୍ନିକ ସାରିକି ଆସନ୍ତୁ । ଆମ୍ଭେମାନେ ନଦୀକୂଳକୁ ଯାଉଅଛୁଁ ।

ବିଶ୍ୱାମିତ୍ର—ଯାଅ ମା ! ଶୀଘ୍ର ପତିଙ୍କନିମିତ୍ତ ନିଜେ ଧର୍ମରକ୍ଷାଲାଗି ପ୍ରସ୍ତୁତ ହୁଅ । ଧର୍ମ ଓ ସତ୍ୟ ରକ୍ଷା କର ।

( ବିଶ୍ୱାମିତ୍ର ଏକ ଦିଗେ ଓ ରାଜା ପ୍ରଭୃତି ଅନ୍ୟ ଦିଗେ ପ୍ରସ୍ଥାନ )

( ଯବନିକା ପତନ )

---

## ପଞ୍ଚମ ଅଙ୍କ—ପ୍ରଥମ ଦୃଶ୍ୟ

[ ସ୍ଥାନ—ଅରଣ୍ୟ । ଏକାକୀ ବିଶ୍ୱାମିତ୍ର । ]

ବିଶ୍ୱାମିତ୍ର—ଏ କ'ଣ ? ବିଶ୍ୱାମିତ୍ରର ଉଗ୍ର ହୃଦୟ ଆଜି ଏ କଅଣ ? ଅବଳାନୟନରେ ଜଳକଣା ଦେଖି ଏଡ଼େ ଦୁର୍ବଳ ହୁଅ କାହିଁକି ? ରମଣୀ ! କି ଘୋର ତପସ୍ୟା ! କି ଘୋର ସାଧନା ? ସେ ବିଶ୍ୱାମିତ୍ରର ବ୍ରହ୍ମର୍ଷି ହେବାନିମିତ୍ତ ଯେଉଁ ଉଗ୍ର ତପସ୍ୟା ତାହାଠାରୁ କୋଟି ଗୁଣେ ଅଧିକ । ବିଶ୍ୱାମିତ୍ରର ତପସ୍ୟା କାମନା-ବିଜଡ଼ିତ ଆଉ ଏ ତ ନିଷ୍କାମ । ମାୟା-ମମତାହୀନ ଋଷିପ୍ରାଣରେ ଜଗତର ସାରତତ୍ତ୍ୱ ଉପଲବ୍ଧି କରାଇପାରେ ଏକା ରମଣୀ,ପତିବ୍ରତାରମଣୀ। ଶୈବ୍ୟା ରାଜରାଣୀ। ଏ କଣ ? ଆଜି କ'ଣ ପତିହେଉ ପାଷାଣୀ ହେଲୁ । ସମ୍ମୁଖରେ ନରକର ବିଭୀଷିକା । ଉଚ୍ଛିଷ୍ଟାନ୍ନ ସେବାର ଆୟୋଜନ, ଆଉ ଅନ୍ତରର ଅଭ୍ୟନ୍ତରର ଅଭ୍ୟନ୍ତରରେ ପତିସେବା । ତୋର ପତିସେବା ଆଜି ବିଶ୍ୱାମିତ୍ରର କଠୋର ହୃଦୟରୁ ମଧ୍ୟ ଦୟା ଟାଣିନିଏ । ବିଶ୍ୱାମିତ୍ରର ଅଗ୍ନିସ୍ଫୁଲିଙ୍ଗ ଉଦ୍‌ବମନକାରୀ ନୟନରୁ ମଧ୍ୟ ଦୁଇଟି ଉଷ୍ଣ ଅଶ୍ରୁବିନ୍ଦୁ ଝରାଇଦେଇପାରେ । ନା, କଣ କରେଁ ? ଏ କଣ ? ଥାଉ ଥାଉ, ଏପର୍ଯ୍ୟନ୍ତ ମଧ୍ୟ ଶେଷନୁହେଁ । ଇଚ୍ଛା—ଇଚ୍ଛା, ଆଉ ସାଧନା—ସାଧନା । ଧର୍ମର ଚରମ ପରୀକ୍ଷା କରିବି, ଦର୍ପାନ୍ଧର ଦର୍ପ ଚୂର୍ଣ୍ଣ କରିବି, ଐଶ୍ୱର୍ଯ୍ୟର ନାମ ଲୋପ କରିବି । ଧର୍ମଗର୍ବିତ ହରିଶ୍ଚନ୍ଦ୍ରକୁ ନରକର ନିମ୍ନତମ ସୋପାନରେ ଦଣ୍ଡାୟମାନ କରାଇ ଧର୍ମମୁଖରେ କାଳିମା ଲେପନ କରି, ଦେଖାଇବି ଧର୍ମ ନାହିଁ, ମୋର କବିତ୍ୟା ସାଧନର ବିଘ୍ନକାରୀ ଧର୍ମ ନାହିଁ, ଚଣ୍ଡାଳର ଯାଗନଷ୍ଟକାରୀ ଧର୍ମ ନାହିଁ । ଧର୍ମ ବିଲୁପ୍ତ ଅଥବା ଋଷିକୋପରେ ଅନ୍ୟତ୍ର ପଳାୟିତ । ବିଶ୍ୱାମିତ୍ରର ସେ କଥା ବେଶ୍ ମନେ ଅଛି । ମାଙ୍ଗଲ୍ୟ ! ମାଙ୍ଗଲ୍ୟ !

ମାଙ୍ଗଲ୍ୟ ପ୍ରବେଶ—( ସ୍ୱଗତ ) ବାପ୍ ରେ ! ଏ କି ଭୀଷଣ ମୂର୍ତ୍ତି ! ବିଷ୍ଣୁଙ୍କର ଦଶଅବତାର; କିନ୍ତୁ ଆଂଭ ବ୍ରହ୍ମର୍ଷିଙ୍କର ଦଶସହସ୍ରାବତାର । ଆଉ ଅ... ସାକ୍ଷାତ୍ ଯମାବତାର । ତପୋଧନ ! ହରିଶ୍ଚନ୍ଦ୍ରକୁ ଗ୍ରାସ କରି କଣ ଉଦର ପୂର୍ତ୍ତି ହୋଇ ନାହିଁ ? ଏ ଦରିଦ୍ର ବ୍ରାହ୍ମଣ-ସନ୍ତାନକୁ ଲୋଭ ?

ବିଶ୍ୱାମିତ୍ର—ମାଙ୍ଗଲ୍ୟ !

ମାଙ୍ଗଲ୍ୟ—ଗୁରୁଦେବ ! ( ସ୍ୱଗତ ) ଫେର୍ କି କୁଚକ୍ର ମସ୍ତକରେ ଚିବ ପୂରିଛି ? (ପ୍ରଣାମକରଣ)—(କୋମଳ କଣ୍ଠରେ) ଗୁରୁଦେବ ! ଆଜ ଯେ ଦକ୍ଷିଣାର ଶେଷ ଦିବସ ? କାହିଁ ? ଦକ୍ଷିଣା କାହିଁ ? ହରିଶ୍ଚନ୍ଦ୍ର କଣ ସତ୍ୟଭଙ୍ଗ ହେଲେ ? ବେଶ୍ ବାବା ! ନରକଂ ନରକଂ ନରକେ ପତନଂ ।

ବିଶ୍ୱାମିତ୍ର—ନା, ଆଜ ସୂର୍ଯ୍ୟାସ୍ତ ପୂର୍ବରୁ ଦେବାକୁ ଅଙ୍ଗୀକାର କରିଛନ୍ତି । ସେ ସତ୍ୟଗ୍ରାହୁ, ଦେଇ-ଦେବେ ।

ମାଙ୍ଗଲ୍ୟ—ଗୁରୁଦେବ ! ଏଣେ ମୁଁ ଯେ ଅଥୟ ହୁଏଁ, ସେ କଥା ତ ଆଉ ବୁଝିଲେ ନାହିଁ । ସୁବର୍ଣ୍ଣ-ମୁଦ୍ରା ! ଆହା ! କି ସୁନ୍ଦର ହଳଦିବସନ୍ତ ପକ୍ଷୀ ! ତୋତେ ଦେଖିଲେ ମାଙ୍ଗଲ୍ୟର ମନ କ'ଣ ହୁଏ ?

ବିଶ୍ୱାମିତ୍ର—ମାଙ୍ଗଲ୍ୟ ! କଣ ବାଗୁଳ ହେଲୁ ? ଏ କଣ ? ଯାଅ, ଶୀଘ୍ର ମୋର ହୋମକାଠ ଆଦି ସଂଗ୍ରହ କରିଦିଅ ।

ମାଙ୍ଗଲ୍ୟ—କରିସାରିଛି ଯେ ଗୁରୁଦେବ ! ଆହା! ସ୍ୱର୍ଣ୍ଣମୁଦ୍ରା ! ସହସ୍ର ସ୍ୱର୍ଣ୍ଣମୁଦ୍ରା ! ଗୁରୁଦେବ ! ମୋତେ ଟିକିଏ ସେଥି ଶାପ ଦେବା କଥା ଆଉ ଭସ୍ମ କରିବା କଥା ଶିଖାଇଦିଅନ୍ତୁ । ମୁଁ ପ୍ରତିଦିନ ସହସ୍ର କଣ, ଶତସହସ୍ର ସ୍ୱର୍ଣ୍ଣମୁଦ୍ରା ସଂଗ୍ରହ କରିପାରନ୍ତି । ଆହା, ଗୁରୁଦେବ ! ଏଇଠି ଏକା ଜାଣିଲି, ଆପଣଙ୍କ ତପସ୍ୟା ପୂର୍ଣ୍ଣ । ଏତେଦିନ ବୁଦ୍ଧି ନ ଥିଲା ତପସ୍ୟା କଲେ ଲାଭଟା କଣ ? ବେଶ୍ ବୁଝିଲି । ଏଥର ବେଶ୍ ବୁଝିଛି । ତପସ୍ୟା କଲେ ରଜା ମହାରଜା ଇନ୍ଦ୍ର-ଚନ୍ଦ୍ରଙ୍କୁ ଖୁବ୍ ଡରେଇ ରଖିପାରିବ । ଆଉ ସ୍ୱର୍ଣ୍ଣ, ସେଇ ହଳଦିବସନ୍ତ । ଆହା ! କି ସୁନ୍ଦର ଟିଂ ଟିଂ ରବ ତୋର !

ବିଶ୍ୱାମିତ୍ର—ଯା ମୂର୍ଖ ! ଅଗ୍ନି, ସମିଧ ସଂଗ୍ରହ କରି ଆଣ । ମୁଁ ସ୍ନାନବନ୍ଦନାଦି ଆସେଁ । ଯାଅ ।

( ପ୍ରସ୍ଥାନୋଦ୍ୟତ )

ମାଙ୍ଗଲ୍ୟ—( ଭୟକମ୍ପିତ ସ୍ୱରରେ ) ଯାଉଛି ଯାଉଛି ଗୁରୁଦେବ ! ମୋତେ ଭସ୍ମ କରନ୍ତୁ ନାହିଁ । ଏକମାତ୍ର ସନ୍ତାନ !

ବିଶ୍ୱାମିତ୍ର—ଯାଅ ବାଗୁଳ । ( ପ୍ରସ୍ଥାନ )

ମାଙ୍ଗଲ୍ୟ—( ଭୟରେ ) ହିଁ ହିଁ; କିନ୍ତୁ ତଥାପି ସେଇ ସ୍ୱର୍ଣ୍ଣ, ସେଇ ହଳଦିବସନ୍ତ···( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ସ୍ଥାନ—ନଦୀକୂଳ । ଶୈବ୍ୟା ଓ ରୋହିତ )

ରୋହିତ—( ପ୍ରବେଶ ) ମା, ମା ! ମୁଁ ତେବେ ଆଉ କିପରି ବଞ୍ଚିବି ? ତୁମେ କଣ ମୋତେ ସଙ୍ଗରେ ନେବ ନାହିଁ ? ମା ମା, କହ···

ଶୈବ୍ୟା—ତୁନି ହୁଅ ବାବା ! କିଏ ଆସିଲାପରି ଶୁଭୁଛି । ଦାସୀ ଆତ୍ମବିକ୍ରୟ କରିବାକୁ ପ୍ରସ୍ତୁତ । କେହି କାଶୀବାସୀ ବ୍ରାହ୍ମଣ ଦୟାପୂର୍ବକ ସତ୍-ସାମାନ୍ୟ ମୂଲ୍ୟ ଦେଇ କ୍ରୟ କରିବେ କି ?··· ନା, କାହିଁ ? କେହି ତ ନାହିଁ । ସେ ମୋର ଭ୍ରମ ।

( ଦୁଇ ଜଣ ବ୍ରାହ୍ମଣଙ୍କ ପ୍ରବେଶ )

ବୃଦ୍ଧ—ନିହାତି ବଗୁଲିଆ ଟୋକାଟା । କାହିଁ ? କେଉଁଠି କିଏ ଡାକିଲା ? କେଉଁଠି ଦାସୀ ବିକି ହେଉଛି । ମୁଁ ବୁଢ଼ାଲୋକ । ମିଛରେ ମୋତେ ଏତେ ବାଟ ଟାଣିଆଣିଛୁ । ହା ରେ କାଳ, ଏବକୁ କାଳ ହେଲା ସେଇଆ ।

ପୁତ୍ର—ନନା, ହୁଁ ? ମିଛରେ ମିଛରେ କାହିଁକି ଏତେ ରାଗ ହେଉଛ ହେ ? ଦେଖିଲ, ହେଇଟି କିଏ ଜଣେ ଠିଆହୋଇଛି ।

ବୃଦ୍ଧ—ତୋ ମୁଣ୍ଡ ଚହଲିଛୁ, ଟଙ୍କା-କଉଡ଼ି ସାରି... କୁଳାଙ୍ଗାର !

ଶୈବ୍ୟା—କାଶୀବାସୀ କେହି ବ୍ରାହ୍ମଣ ଯଥୋଚିତ ମୂଲ୍ୟରେ ଦାସୀ କ୍ରୟ କରିବାକୁ ଇଚ୍ଛା କରନ୍ତି କି ?

ପୁତ୍ର—ନନା, ହେଇଟି ! ଶୁଣୁଛ ?

ପିତା—ହଁ ରେ ବାପ ! ମୋତେ ଏବେ କାହିଁକି ଭଲ ଦିଶୁ ନାହିଁ । କୋଉଠି ? ଚାଲିବୁ ।

( ଉଭୟଙ୍କ ଶୈବ୍ୟା ନିକଟେ ପ୍ରବେଶ )

ପିତା—ମା, ତୁ ବିକି ହବୁ ? ତୁ ତ କଣ ମା ବଡ଼ଘର ପିଲାପରି ଦିଶୁଛୁ ?

ପୁତ୍ର—ସେଥିରୁ ତେମେ କି ପାଇବ ? ବିକି ହବୁ ତ ?

ଶୈବ୍ୟା—ହଁ ପ୍ରଭୁ !

ପିତା—କିଏ ତତେ ବିକି କରୁଛୁ ମା ? ସେ କାହିଁ ? ( ସ୍ୱଗତ ) ବାସ୍ତବରେ ୟାକୁ ଦେଖିଲେ ମନରେ ଦୟା ଆସେ ।

ଶୈବ୍ୟା —ନିକଟରେ ଅଛନ୍ତି, ଏଇ ଆସିବେ ।

ପିତା—ମା ! ମୋର ତ ସେମିତି କିଛି ଝାଣୁଆ ଘର ନୁହେଁ । ଏଇ କୁଳାଙ୍ଗାର ଟୋକାଟାକୁ ଗୋଟାଏ ବାହା କଲି ଯେ ସେ ମହାରାଣୀ । ବ୍ରାହ୍ମଣୀ ବହୁତ ବୁଢ଼ୀ । କାମଦାମକୁ ଏବେ ଆଉ ପାରୁ ନାହିଁ । ମା ସୁଖେ ଦୁଃଖେ ଚଳିବୁ ତ ଚାଲ ! ହଁ ମା, ତୁ ତ ବେଶୀ ଖାଉ ନାହିଁ ।

ଶୈବ୍ୟା—( ସ୍ୱଗତ ) ହରି ! ଦୁଃଖିନୀ କର୍ମରେ ପୁଣି ଏ ପ୍ରଶ୍ନ ଶୁଣିବାକୁ ହେଲା ! ହଉ...(ପ୍ରକାଶ୍ୟ) ନାହିଁ ପ୍ରଭୁ ! ଯାହା ଦେବେ ସେଥିରେ ମୋର ସନ୍ତୋଷ । ଆଉ ଏତିକି, ମୋତେ କାହାରି ଅଇଁଠା ଦେବେ ନାହିଁ ।

ବୃଦ୍ଧ—ବାପ୍ ରେ ! ଏ ତ ମୋ ବୋହୂଠାରୁ ବଳିଲା ! ହଉ, ଯାହା କରିବୁ କର କୁଳାଙ୍ଗାର ।

ପୁତ୍ର—ତୋର ଦାମ୍ କେତେ ?

ଶୈବ୍ୟା—ମୋର ପ୍ରଭୁ ଜଣେ ବ୍ରାହ୍ମଣଙ୍କଠାରୁ ସହସ୍ର ସ୍ୱର୍ଣ୍ଣମୁଦ୍ରା ଋଣ କରିଅଛନ୍ତି, ଆଉ ଆପଣ ଯାହା ଦୟା କରି ଦେବେ ।

ବୃଦ୍ଧ—କେତେ ? କେତେ ? ହଇ ରେ ପୁଅ, କେତେ କହିଲା ? ମୋର ତ କଣ ମୁଣ୍ଡ ଘୂରୁଚି ରେ !

ଶୈବ୍ୟା—ନା ପ୍ରଭୁ, ଆପଣଙ୍କର ଇଚ୍ଛା ଅନୁସାରେ ଯାହା ହେବ ଦିଅନ୍ତୁ ।

ପୁତ୍ର—ଆଚ୍ଛା, ଯାହା ହବ ଅଧାଅଧି ଦିଆଯିବ । ଏତେ ପୁଣି କାହୁଁ ପାଇବୁଁ ? ତୋତେ ବା କିଏ ଦେବ ? ତୋତେ ଭୁଲିଲେ ତ ସେତିକି ହେବ ନାହିଁ । ଅଧାଅଧି ଦେଖିବା ।

ବୃଦ୍ଧ—ହଇ ରେ, ହଇ ରେ ? ଅଧାଅଧି କଣ କହୁଛୁ ?

ପୁତ୍ର—ନନା ! ସେ କେତେ କହୁଛୁ କି ତୁମେ କଣ ଜାଣିଛ ? ଚୁମାହ ।

ରୋହିତ—ଆଉ ପ୍ରଭୁ ମୋର କଣ ?

ବୃଦ୍ଧ—ଏ ଫେର୍ କଣ ରେ ? ଏ ଲାଙ୍ଗୁଡ଼ିଟି ଫେର୍ ? ଏ କଣ ତୋର ପୁଅ ?

ଶୈବ୍ୟା—ହଁ ପ୍ରଭୁ !

ବୃଦ୍ଧ—ସେ ଆମର କଣ ହେବ ? ତାକୁ ଫେର୍ ହିଁ ଓଳି ହି ବଖତ କିଏ ଯୋଗାଇବ ? ନାଁ ରେ ପୁଅ, ଚାଲ ଆମର ଆଉ କୋଉଠି ଦେଖିବା, ଏ କଥା ପଟିବ ନାହିଁ ।

ରୋହିତ—ପ୍ରଭୁ ମୋତେ ଯାହା କହିବ ତାହା କରିବି । ଗୋରୁ ଜଗିବି । ଫୁଲ ତୋଳିବି, ଘର ଝାଡ଼ିବି । ମା ମା ! ମୁଁ ତମକୁ ଛାଡ଼ି କିପରି ରହିବି ? ପ୍ରଭୁ, ତମ ପାଦତଳେ ପଡ଼ୁଛି ମୋତେ ନିଅ ।

ପୁତ୍ର—ଛାଡ଼, ନନା—ଚାଲୁ ସିଏ, ଛୁଆଟା ତ ।

ବୃଦ୍ଧ—କାଙ୍ଗାଳ କରିବ ମୋତେ । କୁଳନାଶବେଳକୁ ଘୋଡ଼ାମୁହାଁ ଜାତ । ଘଉଳ ଅଟା ତ ଘର ଶସ୍ତା ରେ ପୁଅ । ବୋପା ଥାଉ ପୋଡ଼ିଛୁ ପରା ?

ଶୈବ୍ୟା—ପ୍ରଭୁ ବିରକ୍ତ ହୁଅନ୍ତୁ ନାହିଁ । ମୁଁ ମୋ'ର ଖାଦ୍ୟରୁ ଅଂଶ ଦେବି । ତା'ଲାଗି ଆଉ ଅଧିକ ଦେବା ଦରକାର ନାହିଁ ।

ରୋହିତ—ପ୍ରଭୁ ! ଆପଣଙ୍କ ଘରେ ଯାହା କୁକୁର ବିଲେଇ ଖାଇପାନ୍ତି, ମୋତେ ସେତିକି ଦେବ । ମୁଁ ପଚେଛ ଦିନେ ଦିନେ ଖାଇବି ନାହିଁ ।

ପୁତ୍ର—ନନା, ତମର ଟିକିଏ ମାୟା ହେଉ ନାହିଁ । ତେମେ ମୋତେ ଛାଡ଼ିପାରିବ ?

ବୃଦ୍ଧ—ଓଁ ! କଣ କହୁଛୁ ରେ ? ମୋ ବେକରେ ଛୁରି ଦେଇ କୁଆଡ଼େ ଯିବୁ ଯା ।

ପୁତ୍ର—ନନା ! ମୁଁ କଣ ପଳେଇଯିବା କଥା କହୁଛି । ତେମେ ତ ଅଡ଼୍ଆ ବୁଝୁଛ । ମୁଁ କହୁଛି କି, ତେମେ କି ବୋଉ ମୋତେ ଛାଡ଼ି କିପରି ରହିପାରିବ ?

ବୃଦ୍ଧ—ଓଁ, ଆରେ ନାହିଁ ରେ ! ସେ କଥା କହ ନା ରେ, ଚାଲନ୍ତୁ ଏନ୍ତେ । ଚାଲ ମା ।

( ବିଶ୍ୱାମିତ୍ର ପ୍ରବେଶ । ଶୈବ୍ୟା ଓ ରୋହିତ ପ୍ରଣାମକରଣ )

ବିଶ୍ୱାମିତ୍ର—ମା ! ସୁଖିନୀ ହବ । ହରିଶ୍ଚନ୍ଦ୍ର କେଉଁଠି ? ମୋର ଦକ୍ଷିଣା କାହିଁ ?

ଶୈବ୍ୟା—ସେ ସ୍ନାନ କରିବାକୁ ଯାଇଥିଲେ । ତାଙ୍କଠାରୁ ଅନୁମତି ନେଇ ଆସିବା, ଏ ସାହସ ମୋର ହେଲା ନାହିଁ । ଶୁଣିପାରିଲେ ସେ ସେ କଣ ହେବେ, ଜାଣିପାରେ ନାହିଁ । ମୁଁ କେବଳ ଧର୍ମ ସାକ୍ଷ୍ୟ କରି ଆସିଅଛି । ଆପଣ ତାଙ୍କୁ ପ୍ରବୋଧ ଦେବେ ଆଉ ଏହି ଅର୍ଦ୍ଧେକ ମାତ୍ର ଦକ୍ଷିଣା ସଂଗ୍ରହ କରିପାରିଛି ।

ବିଶ୍ୱାମିତ୍ର—ଅର୍ଦ୍ଧେକ ! ଆଶ୍ଚର୍ଯ୍ୟ ! ଆଉ କେତେ ଦିନ ମହଲତ୍ ଅଛି କି ?

ଶୈବ୍ୟା—ପ୍ରଭୁ, ମୋର ଆଉ କି ସାଧ୍ୟ ? ( ବ୍ରାହ୍ମଣ-ପ୍ରତି ) ଦେବ ! ଦାସୀନିମିତ୍ତ ଯାହା ଦେବାର ଏହାଙ୍କୁ ଦେଇଦିଅନ୍ତୁ ।

ବୃଦ୍ଧ—ଯୁଆଙ୍କରଠାରୁ ଋଣ ? ହଇ ହେ ବାପା ! ଆଉ କେତୋଟି ଏମିତି ଦାସୀ ରଖିଛ ? ଏ ବେପାର ଭଲ ଚଳୁଛି ତ ? ଏବେ ମୁନି-ଋଷି ଏମିତି ହଡ଼ାବେପାରୀ ହେଲେଣି ବୋଲି ତ ଜାଣି ନ ଥିଲି । ଭଲ କରିଛ ବାପା !

ବିଶ୍ୱାମିତ୍ର—ପାପୀ ! ଭସ୍ମ କରିଦେବି ।

ପୁତ୍ର—ଆମେ ଆଉ ତମ ଖାତକ ନୋହୁଁ ଯେ ଏ ଧମକ । ଭଲ ଲୋକପରି ଚୂପ୍ କରି ଦାମ୍ ନେଇ ଚାଲଯା—ବେଶ୍ ବେପାର କରିଛ ।

( ଟଙ୍କାପ୍ରଦାନ )

ଶୈବ୍ୟା—ଗଣିନିଅ ପ୍ରଭୁ ! ଆଉ ମୋର ସ୍ୱାମୀଙ୍କୁ ପ୍ରବୋଧ ଦେବେ ମୁଁ ବିଦାୟ ନ ନେଇ ତାଙ୍କ ଚରଣରେ ଅପରାଧିନୀ । ମୋତେ କ୍ଷମା ଦେବେ । ପ୍ରଭୁ ! ସ୍ୱାମୀ ! ଦେବ ! ବିଦାୟ ନିଏଁ । ଯଦି ସମୟ ହୁଏ, ତେବେ ପୁଣି ଚରଣ ସେବା ନଚେତ୍ ସେଇ ଅନନ୍ତ ଧାମ । ପ୍ରଭୁ ! ବିଦାୟ ନିଏଁ ।

( ଅଶ୍ରୁମୁଞ୍ଚନ )

ରୋହିତ—ଚାଲ ମା, ପିତାଙ୍କ ପାଖରୁ ବିଦାୟ ନେଇ ଆସିବା—ସେ ରହିଥିବେ ।

ଶୈବ୍ୟା—ବାପା ! ଆଉ ସେ କଥା କହନା । ଋଷିବର ! ଆପଣ ଆସନ୍ତୁ···

ବୃଦ୍ଧ—ଚାଲ ମା, ବେଗେ ଚାଲ । ଫେର୍ କେତେ ବାଟ ଅଛି, ସକାଳୁ ଦୋଟି କ'ଣ ଖାଇଥିଲି ଯେ ପେଟ ଖାଲି କୋରେଇହେଲାଣି । ଆସି ଦି'ଘଡ଼ି ବେଳ ହେଲାଣି । ହଇ ରେ ପୁଅ ! ଚାଲ ।

ଶୈବ୍ୟା—ତପୋଧନ ! ପ୍ରଣାମ ଗ୍ରହଣ କରନ୍ତୁ । ପ୍ରଭୁ ! ସ୍ୱାମୀ··· ( ଅଶ୍ରୁମୁଞ୍ଚନ )

( ଶୈବ୍ୟା ଓ ବ୍ରାହ୍ମଣ ଇତ୍ୟାଦିଙ୍କ ପ୍ରସ୍ଥାନ )

ବିଶ୍ୱାମିତ୍ର—ଯାଃ, ଶେଷ ! ଆମ ଧର୍ମ, ଦେଖ । ପାରିବ ତ ରକ୍ଷା କର । ଓଃ ମନ ! ବିଶ୍ୱାମିତ୍ର ? ଏ କଣ ? ଏ କି ଦୁର୍ବଳତା ? ନା, ତେବେ କେ ଶେଷ ନୁହେଁ

ଦୃଢ଼ମୁଷ୍ଟି ଏପର୍ଯ୍ୟନ୍ତ ଖୋଲ ନାହିଁ । ହରିଶ୍ଚନ୍ଦ୍ର ! ଧାର୍ମିକ ! ବାକ ତୋର ଦମ୍ଭ !

---

## ତୃତୀୟ ଦୃଶ୍ୟ

( କୁଟୀର ନିକଟସ୍ଥ ଗ୍ରାମ୍ୟପଥ ।ବିଦୂଷକ ପ୍ରବେଶ । )

ବିଦୂଷକ—( ବିଷଣ୍ଣଭାବେ ) ଆହା ! ସେ ଦିନେ ଆଉ ଏ ଦିନେ କେତେ ପ୍ରଭେଦ ! ଖୋଜ ଖୋଜ ପାଦ ଗଲା, ବଳ ଗଲା, ଦିନ ମଧ୍ୟ ଶେଷ । ଆହାର ବିହାର, ମାନ ମହତ୍ତ୍ୱ ଅବା ପଚାରେ କିଏ ? ଶୀତଦିନ, ବୁଲି ବୁଲି ଶୋଷ ହେଲାଣି । ଖରାଦିନ ପରି ଦେହରୁ ଝାଳ ବହୁଛି । ଓହୋ ! (ଥକା ହେବାପରି ବସିପଡ଼ିବା )

( ଗୋପାଳୁଣୀ ବାଳିକା ଦଧିଭାଣ୍ଡ ଧେନ ପ୍ରବେଷ୍ଟା )

ଗୋପାଳୁଣୀ ବାଳିକା—ମଲା ଏ ଦିନଟା କେମିତେ କେଜାଣି । ଖରାକୁ ଗଲେ ଖରା କାଟୁଛି ପୁଣି ଛାଇରେ ବସିଲେ ଶୀତ । କାମ କରେଇ ଦବ ନାହିଁ । ଘରୁ ପୁଞ୍ଜ ପୁଞ୍ଜ ଦାଣ୍ଡକୁ ଅଇଲଣି । ( ବସି ଦହି ମୋହିଁବାର )

ବିଦୂଷକ—( ସ୍ୱଗତ ) ଓହୋ ! ଟୋପିଏ ମିଳନ୍ତା କି ଭଲ ! ଧନ କାହାନ୍ତି ? ଦରଶନକୁ ତ କଉଡ଼ି କଡ଼ାଏ ନଦାରଦ । ଦେଖେଁ, କୁଡ଼ିଆ ପାଖକୁ ଯାଏଁ । ( ଉଠି କୁଡ଼ିଆନିକଟକୁ ଯାଇ ଗୋପାଳୁଣୀ ପ୍ରତି ) ଏ କଣ ଗଉଡ଼ ଘର ?

( ଗୋପାଳୁଣୀ ନିରୁତ୍ତର )

ବିଦୂଷକ—ତମକୁ ଶୁଭେ ନାହିଁ କି ?

ଗୋପାଳୁଣୀ—ତମକୁ ଦିଶେ ନାହିଁ କି ?

ବିଦୂଷକ—ଦିଶିବା କଥା କଣ ଅଛି ?

ଗୋପାଳୁଣୀ—ତେବେ ଆଉ ଶୁଭିବ କଅଣ ?

ବିଦୂଷକ—ମୁଁ ପରା ପଚାରୁଛି ଏ କଣ ଗଉଡ଼ଘର ?

ଗୋପାଳୁଣୀ—ହଁ, ଦେଖୁନ ପରା ମୁଁ ଦହି ମୋହୁଁଛି ।

ବିଦୂଷକ—ହଁ ହଁ, ମୋର ଭୁଲ ହେଲା । ଦୁଧ ଅଛି ?

ଗୋପାଳୁଣୀ—( ନିରୁତ୍ତର )

ବିଦୂଷକ—ଉତ୍ତର ନାହିଁ ଯେ ?

ଗୋପାଳୁଣୀ—ତମ ଘର କେଉଁଠେଇଁ, ତମର ମା ଭଉଣୀ ନାହାନ୍ତି କି ?

ବିଦୂଷକ—ଆମ୍ଭ ଘର ଡେଣେ । ଏପରି କଥା କାହିଁକି କହିଲ ? କଣ ଭୁଲ ହେଲା କି ?

ଗୋପାଳୁଣୀ—ତମଆଡ଼େ ଏମନ୍ତେ ସମସ୍ତେ କହନ୍ତି ?

ବିଦୂଷକ—ହଁ, ଏ ଆଡ଼େ ଆଉ କ'ଣ କହନ୍ତି କି ?

ଗୋପାଳୁଣୀ—ଏଆଡ଼େ ନିଆଁନି କହନ୍ତି । ହଉ, କହିତ ସାରିଲଣି, କେତେକର ନେବ ?

ବିଦୂଷକ—କେତେକର ଆଉ କଣ ? ଆମ୍ଭେ ତ ଅଭ୍ୟାଗତ ଲୋକ; ଯାହା ତୁମ୍ଭ ଇଚ୍ଛା, ଦିଅ ।

ଗୋପାଳୁଣୀ—ଯାଯା ରେ—କଣଟା ଏ ତୁଣ୍ଡରୁ ବାହାରି-ଆସୁଥିଲା ଯେ···ଦାଦିକି ଡାକେଁ, ଏଇ ନେ ଅଭ୍ୟାଗପଣିଆ ଛଡ଼େଇଦେବ । ଏ ଦାଦି, ଦାଦି ଲୋ !

( ଶିକା ବାହୁଙ୍ଗି ହସ୍ତେ ଗୋବିନ୍ଦ ବେହେରାର ପ୍ରବେଶ )

ଗୋବିନ୍ଦ—କଅଣ କି ଲୋ, କାହିଁକି ହୁରି ପକେଇଚୁ ?

ଗୋପାଳୁଣୀ—ଦେଖିବୁ, ଏଇଟା କିଏ ? ଏଠିକି ଆସି କଣ ଭଣ୍ଡସଣ୍ଡ ଗୁରାଏ କହୁଚି ପୁଣି କହୁଚି "ମୁଁ ଅଭ୍ୟାଗତ, ମୋତେ ନିଆଁନି ଦେ ।"

ଗୋବିନ୍ଦ—ତୁ କିଏ ରେ ? ତୋତେ ସିନା ଲେଉଁ ଅଛୁ ମରଦଙ୍କ ସାଙ୍ଗେ କଥାବାର୍ତ୍ତା କରିବୁ କି ? ଦେଖୁଛୁ ମାଇପି ପିଲା—ତା' ସାଙ୍ଗେ ତୋର କହିବାର ବରିଣି କଅଣ ? ଯାଉଚୁ କି, ଦେବି ବାହୁଙ୍ଗୀରେ ପାହାରେ ?

ବିଦୂଷକ—( ସ୍ୱଗତ ) ଓହୋ ! କାଳର ଗତି ବେଆଡ଼ା, ନୋହିଲେ ମୋର ଏଇ ଅବସ୍ଥା

କାହିଁକି ଦୁଃଅନ୍ତ ? ( ପ୍ରକାଶ୍ୟେ ) କ୍ଷମାକର, ମୁଁ ଯାଉଛି ।

( ପ୍ରସ୍ଥାନ )

ଗୋବିନ୍ଦ—ଚାଲ ଝିଅ, ଘରକୁ ଚାଲ, ତୁ ଏଠି ବସିଛୁ କାହିଁକି ?

( ଉଭୟଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

ସ୍ଥାନ—ବାରାଣସୀ ନଦୀର ଉପକଣ୍ଠ ।

( ସମୟ—ସନ୍ଧ୍ୟାର କିଞ୍ଚିତ୍ ପୂର୍ବ—ହରିଶ୍ଚନ୍ଦ୍ର ଶାୟିତ )

ବିଶ୍ୱାମିତ୍ର—(ପ୍ରବେଶି) ଏହି ତ ! ହରିଶ୍ଚନ୍ଦ୍ର ! (ନିକଟକୁ ଯାଇ) ଘୋର ନିଦ୍ରାଭିଭୂତ । ଧର୍ମର ଶାସନା, ସେଥିଲାଗି ତୁମ୍ଭର କୁସୁମ-କୋମଳ-ତଳ୍ପଶାୟୀ ଦେହ ଆଜି ଧୂଳିଶଯ୍ୟା ମୂଲ୍ୟବାନ୍ ମନେ କରେ, ହୃଦୟ ବିଗଳିତ ହୁଏ । ବିଶ୍ୱାମିତ୍ର ଅର୍ଥଲିପ୍ସୁ ନୁହେଁ । ମୁଁ ଆଉ ଧର୍ମର ପ୍ରଭାବ ପରୀକ୍ଷା କରିବାକୁ ଇଚ୍ଛା କରୁନାହିଁ । ଜାଣିଲିଣି; ଚିହ୍ନିଲିଣି । କ୍ଷମା ଦେବି । ମୋର ଦକ୍ଷିଣା ନେବାକୁ ଚାହେଁ ନାହିଁ । ନା—କଣ କହିଲି ! ପ୍ରତିଜ୍ଞା ବିଚ୍ୟୁତ ହେବି ? ବିଶ୍ୱାମିତ୍ର ! ବିଶ୍ୱାମିତ୍ର ! ପ୍ରତିଜ୍ଞାଚ୍ୟୁତ ହେବି ? ନା—ଆଉ ଥରେ, ଆଉ ଥରେ ତୋର ଭ୍ରୂକୁଟୀ କଠୋରର ଆଶ୍ରୟ ଗ୍ରହଣ କର, ଆଉ ଥରେ ଦେଖା ଚଣ୍ଡାଳର ପରିବର୍ତ୍ତନ କଣ କରିପାରେ, ଆଉ ଥରେ ସେହି ଭୟାନକ ଦୃଶ୍ୟ ଦେଖିନେ—( ନୀରବ ) ହରିଶ୍ଚନ୍ଦ୍ର ! ହରିଶ୍ଚନ୍ଦ୍ର !

ହରିଶ୍ଚନ୍ଦ୍ର—( ନିଦ୍ରାର ଉତ୍ଥିତ ପ୍ରାୟ ) ଏ କ'ଣ ? ସ୍ୱପ୍ନ କ'ଣ ମିଥ୍ୟା ? ଶୈବ୍ୟା ! ଶୈବ୍ୟା କାହିଁ ? କୁଆଡ଼େ ଗଲା ? ସ୍ୱପ୍ନ କଣ···

ବିଶ୍ୱାମିତ୍ର—ଦେଖ ହରିଶ୍ଚନ୍ଦ୍ର ! ଏ ପ୍ରଲାପ ଛାଡ଼ । ଦେଖ ! ସୂର୍ଯ୍ୟଦେବ ଅସ୍ତମିତ ପ୍ରାୟ ।

ହରିଶ୍ଚନ୍ଦ୍ର—ତପୋଧନ ! ମୋତେ ଆଗେ କହନ୍ତୁ ମୋର ଶୈବ୍ୟା ଓ ରୋହିତ କାହାନ୍ତି !

ବିଶ୍ୱାମିତ୍ର—ସେମାନେ ଅଛନ୍ତି । ନିର୍ବିଘ୍ନରେ ଅଛନ୍ତି । ଚିନ୍ତା ନାହିଁ । ବର୍ତ୍ତମାନ ତୁମ୍ଭ କାର୍ଯ୍ୟ ଶେଷ କର । ନଚେତ୍ ନର୍କଗାମୀ ହେବାକୁ ପ୍ରସ୍ତୁତ ହୁଅ । ନାରୀର ତ ଧର୍ମ-ଜ୍ଞାନ ଅଛି । କିନ୍ତୁ ତୁମ୍ଭପରି ପାଷାଣ୍ଡର କିଛି ନାହିଁ । ଓହୋ ! ଶୈବ୍ୟା ! ନାରୀ ! ଧନ୍ୟ ତୋ'ର ପତିଭକ୍ତି ! ଧନ୍ୟ ତୋ'ର ନିଷ୍ଠା ! ତୁ ତ ଅର୍ଦ୍ଧେକ ଦକ୍ଷିଣା ସଂଗ୍ରହ କରି ପାରିଛୁ, କିନ୍ତୁ —

ହରିଶ୍ଚନ୍ଦ୍ର—କ'ଣ କହିଲେ ଗୁରୁଦେବ ! ନାରୀର ଅର୍ଦ୍ଧେକ ଦାନ ! ଆଉ ଥରେ କହନ୍ତୁ—ମୋର ରୋହିତ କାହିଁ, ଶୈବ୍ୟା କାହିଁ ?

ବିଶ୍ୱାମିତ୍ର—କହିଲି ହରିଶ୍ଚନ୍ଦ୍ର ! ଏ ଅଭିନୟନର ଦର୍ଶକ ମୁଁ ନୁହେଁ । ଶୀଘ୍ର ଦକ୍ଷିଣାର ଆୟୋଜନ କର ।

ହରିଶ୍ଚନ୍ଦ୍ର—କହନ୍ତୁ ଗୁରୁଦେବ ! ମୋର ଶୈବ୍ୟା କାହିଁ ? ରୋହିତ କାହିଁ ?

ବିଶ୍ୱାମିତ୍ର—ସେମାନେ ମୋତେ ଅର୍ଦ୍ଧେକ ଦକ୍ଷିଣା ଦେଇପାରିଛନ୍ତି—କୁଶଳରେ ଅଛନ୍ତି । ତୁମ୍ଭେ ଉପାୟ ଦେଖ—ଋଣମୁକ୍ତ ହୁଅ ।

ହରିଶ୍ଚନ୍ଦ୍ର—ତେବେ ସତ୍ୟ । ସ୍ୱପ୍ନ ତେବେ ସତ୍ୟ । ଶୈବ୍ୟା ତେବେ ଦାସୀ—ଅଯୋଧ୍ୟାର ରାଜରାଣୀ ଶୈବ୍ୟା ଦାସୀ, ସହସ୍ର ଦାସଦାସୀ-ଚର୍ଚ୍ଚିତା ଅଭିମାନିନୀ ଶୈବ୍ୟା ଦାସୀ । ରାଜକୁମାର ରୋହିତ ଆଜି ଦାସୀପୁତ୍ର ! ଉଚ୍ଛିଷ୍ଟାନ୍ନ ଲାଳିତ ଦାସ ! ପ୍ରଭୁ ! ତେବେ ଆଉ ଚିନ୍ତା କଅଣ ? ତେବେ ଆଉ କାହିଁକି ଅଭିମାନ ? ଆସ କାଶୀବାସୀ ! କାହାର କ୍ରୀତଦାସର ଆବଶ୍ୟକ ? ଏ ଅଧମ ଆଚଣ୍ଡାଳର ଦାସତ୍ୱ ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛି—

( ନମୁଆଁ ଓ ସୁନ୍ଦର ପ୍ରବେଶ )

ହରିଶ୍ଚନ୍ଦ୍ର—( ଉଚ୍ଚସ୍ୱରେ ) ଆସ କାଶୀବାସୀ ! ଏ ଦାସ ଚଣ୍ଡାଳରପର୍ଯ୍ୟନ୍ତ ଦାସତ୍ୱ ସ୍ୱୀକାର କରିବାକୁ ସ୍ୱୀକୃତ ଅଛି ।

ନମୁଆଁ—ଦେଖିଲୁରେ ! କାହାଁ କେ ବିକୀ ହୋବେ ।

ସୁନ୍ଦର—ଇଠା—ସାମନେମେ ଖଡ଼ା ରହେଚ । ଆର୍ ତୁମ୍‌କେ ଦେଖା ହୋ ନୋଇଁ ?

ନମୁଆଁ—ଅରେ କାହାଁ କେ ରେ ?

ବିଶ୍ୱାମିତ୍ର—ଆସ, ଏ ପାଖକୁ ଆସ ।

ନମୁଆଁ—ଚଲଚ, ଚଲଚ ।

ହରିଶ୍ଚନ୍ଦ୍ର—ତୁମ୍ଭେମାନେ କିଏ ?

ସୁନ୍ଦର—କିବା ? ଏ ସର୍ଦ୍ଦାରକୁ ଚିହ୍ନୁ ନାହିଁ ? ଶମଶାନ୍‌କୁ ଯେତ୍‌ବେଲେ ମର୍‌ବାକୁ ଆଇବୁ ତେତ୍‌ବେଲକେ ଯାଇଁ ଚିହ୍ନ୍‌ବୁ ।

ହରିଶ୍ଚନ୍ଦ୍ର—(ବିଶ୍ୱାମିତ୍ରଙ୍କୁ) ଦେବ ! ଚଣ୍ଡାଳ···

ବିଶ୍ୱାମିତ୍ର—ଦେଖ । ସାବଧାନ, ଆକାଶକୁ ଥରେ ଚାହିଁ ଦେଖ । ଏହିକ୍ଷଣି ତୁମ୍ଭେ ଆଚଣ୍ଡାଳର ଦାସତ୍ୱ ସ୍ୱୀକାର କରୁଥିଲ । ସେ କ'ଣ ବାକ୍ୟତଃ ମାତ୍ର ?

ମୁନଆଁ—ତୁଇ କିଣି ହବ ? ହାମର ବି ବହୁତ ଦର୍କାର ଆଛି । ଆଜ୍‌କଲକେ ଦିନ୍‌ରାତ୍ ରାମନାମ ସତ୍ୟହାୟ, ହରିନାମ ସତ୍ୟହାୟ ବଲି ବହୁତ ମୁର୍ଦ୍ଦା ଆସ୍‌ଛି । ଆର ସଂଭାଲଯାଏ ନାହିଁ । କି କହବରେ ?

ସୁନ୍ଦର—( ଜନାନ୍ତିକେ ) ଇ ସର୍ଦ୍ଦାର ! ଦେଖ୍-ଚନା—କେନ୍ତା ମୋଟା ମୁଠା ହଇଚି । ଖୁବ ପାରବୋ ଏନ୍‌କା । ହାମର କାମକେ ଠିକ୍‌କା ହୋବେ ।

ହରିଶ୍ଚନ୍ଦ୍ର—ମୋତେ କଣ କରିବାକୁ ହେବ ?

ନମୁଆଁ—ତୁଇ କି ବୁଝି ପାରଛେନା ? ଏଇ ଯେ ଦେଖନ୍ତ ଦକ୍ଷିନ୍‌ଦାଟେ, ଏ ଘଟିକ ତୁ ଜମ୍ମା ହୋବେ । ଯେତେ ମୁର୍ଦ୍ଦା ଆଇବ ସବ୍‌ସେ ଲୁଗା ଉଗା ଲେଇକେ ଆଉର୍‌ଭି ପାଞ୍ଚପଣ କଉଡ଼ି ମୁର୍ଦ୍ଦାର ଗୁଠାକେ ଆଦାୟ କରବୁ ।

ସୁନ୍ଦର—ଆଉ ଗୋଟା କଥା ଅଛି । ଫେର୍ ତୁମକେ ହାମାର ଘୁଅରିଗୁଲ୍‌ଭି ଥୋଡ଼ା ଚରାଇବାକେ ହୋବ । ସମ୍‌ଝଲ୍ ତ ? ଘୁଷ୍‌ଘା ଘୁଷ୍‌ଘା—କି ବଲ୍‌ଛୁ ?

ନମୁଆଁ—ହାଁ ହାଁ ଏଇ ତୋ କାମ୍ ।

ହରିଶ୍ଚନ୍ଦ୍ର—ତପୋଧନ । ଏ କି ବିଭତ୍ସ କାଣ୍ଡ ?

ବିଶ୍ୱାମିତ୍ର—ନା, ମୁଁ ଆଉ ଶୁଣିବାକୁ ଚାହେଁନାହିଁ । ମାନ-ଦରିଦ୍ର ବୃତ୍ତିର ପୁଣି କାର୍ଯ୍ୟାକାର୍ଯ୍ୟ ବିଚାର ? ଦେଖ, ସୂର୍ଯ୍ୟ ପ୍ରାୟ ଅସ୍ତଗତ । ଅର୍ଦ୍ଧଗତ ।

ହରିଶ୍ଚନ୍ଦ୍ର—ନା କ୍ଷମା କରନ୍ତୁ, ସେ ମୋର କ୍ଷଣିକ ବାତୁଳତା ମାତ୍ର । ଆସ ମୋର ଚଣ୍ଡାଳ ପ୍ରଭୁ ! ଏ ଜୀବନ ତୁମର କ୍ରୀତ । ଆଉ ଏହି ମହାତ୍ମାଙ୍କୁ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଦେଇ ମୋତେ ଋଣମୁକ୍ତ କର ।

ସୁନ୍ଦର—ଇ ସର୍ଦ୍ଦାର । ଶୁଣିଛୁ ତୋ ?

ନମୁଆଁ—( ଜନାନ୍ତିକେ ) ଥାକେବା, ଚଣ୍ଡାଳ ନୌକର ମିଲବା କି ସହଜ ପାଠ କିବା ? ଦେଇଦେ, ଦେଇଦେ ।

ସୁନ୍ଦର—ଆ ବାମୁନ୍ । ତୁ ହାମାର ସାଥ ଚଲ୍‌କେ ଲେ ଆସ୍‌ବ ।

ହରିଶ୍ଚନ୍ଦ୍ର—( ସ୍ୱଗତ ) ଶୈବ୍ୟା ! ଧର୍ମ ହିଁ ତୁମର ରକ୍ଷକ । ଆଉ ହରିଶ୍ଚନ୍ଦ୍ରକୁ···

ବିଶ୍ୱାମିତ୍ର—( କଥାରେ ବାଧାଦେଇ ) ଭୁଲ ହରିଶ୍ଚନ୍ଦ୍ର ।

ନମୁଆଁ—କି ନାଁଟା କହିଲୁ ବାମୁନ୍ ?

ହରିଶ୍ଚନ୍ଦ୍ର—ହରି—ଚମା—ନାଁ ।

ସୁନ୍ଦର—ଆରେ ବା ବା ବା—ବେଶ ନାଁଟି । ହରି, ହରିଆ, ଅଚ୍ଛା ସର୍ଦ୍ଦାର, ଅଚ୍ଛା ।

( ପ୍ରସ୍ଥାନ )

ପଟପତନ

## ଷଷ୍ଠ ଅଙ୍କ—ପ୍ରଥମ ଦୃଶ୍ୟ

ଗୃହାଭ୍ୟନ୍ତର ।

( ଶୈବ୍ୟା ଅଣ୍ଟା ପେଷୁଥିବା ବେଳେ ରୋହିତ ପ୍ରବେଶ )

ରୋହିତ—ମା, ମା—ମୁଁ ପେଷିଦେବି, ଥାଉ, ତମ ହାତକୁ ବଡ଼ ବାଧିବଣି···

( ବ୍ରାହ୍ମଣୀର ପ୍ରବେଶ )

ବ୍ରାହ୍ମଣୀ—ଏତେ ବାଧିଣିଆ ମା ତୋର ରେ । ଦାସୀ ପୁଅର ପୁଣି କ ସୁଆଗ ଲୋ ? ଅହା ହା । ମରି ଯାଉଥାଏଁ । ତୋର ଅଟାପେଶା ସରିନି କି ଲୋ ? ହଇଲୋ ?

ଶୈବ୍ୟା—ସରିଛି ମା ! ସେ ଛୁଆଟା, ତା କଥା କାହିଁକି ମନରେ ଧରୁଛ ? ଯା ବାପା ତୁ ଯା, ତୋ କାମ କରିବୁ ।

( କ୍ଷୁବ୍ଧମନରେ ରୋହିତର ପ୍ରସ୍ଥାନ )

ବ୍ରାହ୍ମଣୀ—ଛୁଆଟା ! କଂସେ କଂସେ ଗେଫିଲି ବେଳକୁ ଆଉ ଛୁଆ ନୁହେ । ଗିଳୁଛି ତ ବେଶ୍ । ହଇ ଲୋ, ବେଶ୍ ଭୋଜନ ତ ପକଉଛି ।

ଶୈବ୍ୟା—ମା', ସେପରି କାହିଁକି କହୁଛ ? ସେ କ'ଣ କଲା କି ? ତମର କେଉଁ କାମ ବାକି ଅଛି ? ମୁଁ ତ ସବୁ ସାରିଦେଇଛି ।

ବ୍ରାହ୍ମଣୀ—କାଇଁ, ପାଣି କାଢ଼ିଛୁ ?

ଶୈବ୍ୟା—ଅନେକବେଳୁ କାଢ଼ି ସାରିଛି । ଦେଖ ମା । ଦେଖିବ ଯା ।

ବ୍ରାହ୍ମଣୀ—ହଇଲୋ କହୁଛୁ କଣ ? ଯା ଯା—ଧମକ ? ଦାସୀ ହୋଇ ପୁଣି ଧମକ ?

ଶୈବ୍ୟା—ଧମକ କଣ ମା ! ମୁଁ କହିଲି ଦେଖିବାକୁ ।

ବ୍ରାହ୍ମଣୀ—ଯା ଯା ରେ ଭୁଣ୍ଡ । ଧାନତକ କୁଟି ଦେଇଛୁ ?

ଶୈବ୍ୟା—ହଁ ସାରିଛି ।

ବ୍ରାହ୍ମଣୀ—ଆଉ ତସୁ କୁଣ୍ଡା ?

ଶୈବ୍ୟା—ଅଲଗା ଅଲଗା କରି ରଖି ଦେଇଛି ମା ।

ବ୍ରାହ୍ମଣୀ—ହଁ ରଖିଥା—କାଲି ଦିନକ ସେଇ କୁଣ୍ଡାକୁ ମୋଠୁ ଟିକଏ ଲୁଣ ନେଇକରି ପିଠା କରି ଖାଇବୁ; ସେଥିରେ ଦିନଟେ ଚଳିବାହାରି ଯିବ । ନା—ସାନ୍ତାଣୀଙ୍କି ରୁଚିବ ନାଇଁ ?

ଶୈବ୍ୟା—ମା' ରୁଚିବ ନାହିଁ ବୋଲି କେଉଁ ଦିନ ତ ମୁଁ କୌଣସିଥିରେ କଥା କହି ନାହିଁ ।

ବ୍ରାହ୍ମଣୀ—କଣ କହିଲୁ ? ଶୁଣ ହେ ! ପୁଣି ଫେର୍ ମୋତେ କଣ କହିଲା, ଆଲୋ ! ଗୋରୁହାଣ୍ଡି ଧୋଇ ଦେଇଛୁ ?

ଶୈବ୍ୟା—ସକାଳୁ ଧୋଇଛି ।

( ସୋଦବେଗେ ବ୍ରାହ୍ମଣର ରୋହିତକୁ ଘେନି ପ୍ରବେଶ । )

ବ୍ରାହ୍ମଣ—ରଖିଆ ! ଦେଖ ! ଆଣିବାକୁ ତ ହମ ହମ । ଦେଖ, ଗୋଟେ କାମ କରି ସାରିଲାଣି ।

( ରୋହିତକୁ ଚପେଟାଘାତ )

ରୋହିତ—ବାବା ! ମୁଁ ଚୋରି କରିନାଇଁ । ମୋତେ ମାରନା—ମୁଁ କରି ନାହିଁ । ମୁଁ ଚୋରି କରି ନାହିଁ ।

ଶୈବ୍ୟା—ଗୋସେଇଁ ! ଥାଉ ସେତିକି ଥାଉ । ତା ଲାଗି ମୋତେ ପଛେ ମାର !

ବ୍ରାହ୍ମଣୀ—ଏଁ ? ଶକ ! ଦାସୀର ଫେର୍ ପୁଅପାଇଁ କାନ୍ଦ ବାହାରି ପଡ଼ୁଛି ! ଥାଉ ଥାଉ ସୁନାଲୁହ ତଳେ ପଡ଼ିଯିବଟି ।

ଶୈବ୍ୟା—ଠିକ ମା, ମୁଁ ଦାସୀ । ଆତ୍ମବସ୍ତୁ ତା ହୋଇଥିଲି । ଏଥର ବୁଝିଲି ମା, ମୁଁ ଏକା ତମର ଦାସୀ ନୁହେଁ । ମୋର ସ୍ନେହ-ମମତା, ଦୟା-ମାୟା, ଶାନ୍ତି-ସୁଖ, ସବୁ ତମର ଦାସୀ । ତମେ ହସିବାକୁ ଆଜ୍ଞା କଲେ ହସିବ । ଆଉ କାନ୍ଦିବାକୁ ଆଜ୍ଞା କଲେ କାନ୍ଦିବ ।

ବୃଦ୍ଧ—ଥାଉ ତୋ ପୁରାଣ । ପାଜି ଟୋକା (କାଟିଦେବା)

ଶୈବ୍ୟା—ଓଃ ହରି ! ଧର୍ମ—(ମୁଖରେ ବସନ ଦେବା )

( ରଘୁର ପ୍ରବେଶ )

ରଘୁ—କଣ, କଣ ? ନନା ! କାହିଁକି ତାକୁ ମାରୁଛ ? ଏ କଣ ?

ବ୍ରାହ୍ମଣୀ—ନାଇଁ ମୁଣ୍ଡରେ ବସା, ନେ ।

ରୋହିତ—( କାନ୍ଦି କାନ୍ଦି ) ଗୋସାଇଁଙ୍କ ଶାଳଗ୍ରାମ-ଶିଳା ବାହାରେ ପଡ଼ିଥିଲା, ମୁଁ ବାହାର ଓଲାଉ ଓଲାଉ ଦେଖିଲି । ଅଣିକରି ଦେଲାରୁ କହିଲେ ଗ୍ଡ଼େଷ କରୁଛୁ ବୋଲି । କହି, ମୋତେ ମା'ଙ୍କ ଆଗରେ ମାଡ଼ ଦେଉଛନ୍ତି—ପ୍ରଭୁ ! ପ୍ରଭୁ !

( ବିକଳକଣ୍ଠେ ଅଶ୍ରୁମୁଞ୍ଚନ )

ରଘୁ—( ପାଖକୁ ନେଇ ) ନାଇଁ ! କାନ୍ଦନା—ତେମେ ତାକୁ ମିଛରେ କାହିଁକି ମାର ନନା ?

ବୃଦ୍ଧ—ହଉ ରେ ବାପା ! ତୁ ସମ୍ଭାଳ କୁଳାଙ୍ଗାର ! ମାଇପ ତୋର ରାଣୀ ହବ ଆଉ ଦାସୀ ହବ ଠାକୁରାଣୀ—ସ୍ୱେଚ୍ଛ ଗଲା ଠାକୁର । ଆସ, ଆସିବନି ରଘୁବୋଉ ଆମରି ଯିବା । ଏଠି ଆଉ ରହିବାର ଦର୍କାର ନାଇଁ । ( ପ୍ରସ୍ଥାନ )

ରଘୁ—ହଉ ! ବଡ଼େକଣ । କି କଠିନ ଗ୍ରହ ! ଯା ରେ ବାପା ଯା, ଫୁଲ ତୋଳିଛୁ ?

ରୋହିତ—ଆଜ୍ଞା, ତୋଳିସାରି ମାଳ ଗୁନ୍ଥିକରି ଥୋଇଛି ।

ରଘୁ—ହଉ ଯା ଖେଳିବୁ ଯା ।

( ରୋହିତର ପ୍ରସ୍ଥାନ )

ରଘୁ—ବୁଝିଲ ମା, ସେ କଥା ସବୁ ଛାଡ଼ । ବୁଢ଼ାଟା ତ ସେଇଆ—ଆଉ ତା କଥା ଘେନ କାନ୍ଦନାଇଁ ।

( ପ୍ରସ୍ଥାନ )

ଶୈବ୍ୟା—ବିଧାତା ! ଏ ପୋଡ଼ା ପ୍ରାଣରେ ଯେତେ ଦୁଃଖ, ଅଲଗା ଅଲଗା କରି ଗୋଟି ଗୋଟି କରି ଭାବିଲେ କାନ୍ଦିବାକୁ ଏହି ଆଖି ଦିଓଟି ନଅଣ୍ଟ, ପୋଡ଼ିବାକୁ ଗ୍ରହ ଚିଳକ ନଅଣ୍ଟ ଆଉ ମରିବାକୁ କ୍ଷୁଦ୍ର ପ୍ରାଣ ମଧ୍ୟ ନଅଣ୍ଟ ହେବ । ପ୍ରଭୁ ! ଗର୍ବ ଅହଂକାର ସବୁ ଯାଇଛି । ଏବେ ଅଭ୍ୟୁଚରଣରେ ଆଶ୍ରୟ ଦିଅ ପ୍ରଭୁ ! ଆଉ କ'ଣ ଦେଖିବି ? ସ୍ୱାମୀଙ୍କର ସେହି ଦାରୁଣ ଦୁଃଖ, ପୁଣି ନରୁଦ୍ଦେଶ୍ୟ ଆଉ ସେହି ରାଜରାଣୀ ଶୈବ୍ୟାର···

( ଅଶ୍ରୁ ପୋଛିବା )

ନେପଥ୍ୟେ—ଦାସୀ—ଦାସୀ ।

ଶୈବ୍ୟା—ଯାଉଛି ପ୍ରଭୁ ! ( ଅଶ୍ରୁମୁଞ୍ଚନ କରିବା )

( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

ବନପଥ ।

( ଏକାକୀ ବିଶ୍ୱାମିତ୍ର ପ୍ରବେଶ । )

ବିଶ୍ୱାମିତ୍ର—ବେଶ୍ ! ତପ ଜପ ସମସ୍ତ ଶେଷ ହେଲା । ସେ କେବଳ ହରିଶ୍ଚନ୍ଦ୍ରର ତପସ୍ୟା ଆଉ ବିଶ୍ୱାମିତ୍ରର ପାପଫଳ । ହରିଶ୍ଚନ୍ଦ୍ର ରାଜ୍ୟ ବିତାଡ଼ିତ ହୋଇ, ବାରଂବାର ପରୀକ୍ଷିତ ହୋଇ, ଶୋଧିତ, ସୁବର୍ଣ୍ଣ ଆଉ ବିଶ୍ୱାମିତ୍ର ହନକୁ ହନ ଭେଳ । ( ହାସ୍ୟ ) ଏହି ତ । କି ବିଶାମିତ୍ର ! କିଏ ସୁଖୀ ? ହରିଶ୍ଚନ୍ଦ୍ର ନା ତୁମେ ନିଜେ ? ମନର ମନ କହେ—ସଦପେ କହେ—ନା ଦାନବର ହରିଶ୍ଚନ୍ଦ୍ର । ତମେ ବର୍ଷା ଦେବର ତମ ଜମଭୂତ ପ୍ରରପର ବିଶ୍ୱାମିତ୍ର ରାଜମାନଙ୍କର କୁଟିଳତାରୁ ଅଧିକ କୁଟିଳତା ମଧ୍ୟକୁ ପ୍ରବେଶ ଲାଭ କଲ, ଆଉ ଏହି କେତେବର୍ଷ କଣ କରୁଛ ? ପ୍ରଜାବର୍ଗଙ୍କର ଅସନ୍ତୋଷ, ପରିଜନମାନଙ୍କର ଚକ୍ଷୁଧାରା, ଲାଞ୍ଛିତଜିହ୍ୱା, ବିକଟ ଦଶନରେ ଯେପରି ଗ୍ରହିଁ ରହିଛୁ । ଏ କ୍ଷତ୍ରିୟର ବହୁ ଶ୍ରମରେ ଅର୍ଜିତ ବ୍ରହ୍ମର୍ଷିତ୍ୱ ତମେ ଯମଲୁକରେ ପରିଣତ । କେବଳ ଧର୍ମର ଅସ୍ତିତ୍ୱ ନର୍ଦ୍ଦେଶରେ ସବୁ ଜଳାଞ୍ଜଳି ଦେଇଛ । ଧର୍ମ କାହିଁ ? ଅସ୍ତିତ୍ୱ କାହିଁ ? ଧାର୍ମିକର ଲାଞ୍ଛନା ତେବେ କଣ ଧର୍ମର ଇଚ୍ଛା ! ତମେ ବିଶାମିତ୍ରର କୁଳିଶ-କଠୋର ହୃଦୟରେ ଦୟାର ଉଦ୍ରେକ ହୁଏ । ମନେହୁଏ,

ନା—ବେଶିଦିନ ନୁହେଁ । ଠିକ୍, ବେଶିଦିନ ନୁହେଁ । ହରିଶ୍ଚନ୍ଦ୍ର, ବେଶିଦିନ ନୁହେଁ । ମାଙ୍ଗଲ୍ୟ ! ମାଙ୍ଗଲ୍ୟ !

( ମାଙ୍ଗଲ୍ୟର ପ୍ରବେଶ )

ମାଙ୍ଗଲ୍ୟ—( ଅଭିବାଦନକରଣ ଓ ନୀରବେ ଦଣ୍ଡାୟମାନ )

ବିଶ୍ୱାମିତ୍ର—(ଆପାଦମସ୍ତକ ଲକ୍ଷ୍ୟକରି ) କି ମାଙ୍ଗଲ୍ୟ ! ଆଜି ନୀରବ କାହିଁକି ? ବଡ଼ ଗମ୍ଭୀର ଭାବ ତ ! କଣ ତପଃମଗ୍ନ ଥିଲ ?

ମାଙ୍ଗଲ୍ୟ—ନା ଗୁରୁଦେବ, ବଡ଼ କଷ୍ଟ ।

ବିଶ୍ୱାମିତ୍ର—କଷ୍ଟ ! କ'ଣ ହେଉଥିବାରୁ ତୁଣ୍ଡରୁ କଥା ବାହାର ହୋଇ ପାରୁ ନ ଥିଲ ?

ମାଙ୍ଗଲ୍ୟ—ଗୁରୁଦେବ ! ବଡ଼ କଷ୍ଟ ।

ବିଶ୍ୱାମିତ୍ର—କଣ ହେଲ ?

ମାଙ୍ଗଲ୍ୟ—ଗୁରୁଦେବ, ବଡ଼ କଷ୍ଟ ।

ବିଶ୍ୱାମିତ୍ର—ହଁ ବୁଝିଲି; କଣ ହେଲ କି ?

ମାଙ୍ଗଲ୍ୟ—ଗୁରୁଦେବ ! ବଡ଼ କଷ୍ଟ ।

ବିଶ୍ୱାମିତ୍ର—ଦୂର ମୂର୍ଖ ! ମୁଁ ଆଜି ବାରାଣସୀ ଯିବି । ମୋର ବଳୁପଣି ସଂଗ୍ରହ ହୋଇଛି ତ ?

ମାଙ୍ଗଲ୍ୟ—ଗୁରୁଦେବ ! ବଡ଼ କଷ୍ଟ ।

ବିଶ୍ୱାମିତ୍ର—( କ୍ରୋଧେ ) ମୋ ସହିତ ଖେଳ ? ଏ କି ପରିହାସ ? ସବୁଧ'ନ ମୂର୍ଖ ! କାହିଁକି ବଡ଼ କଷ୍ଟ ?

ମାଙ୍ଗଲ୍ୟ—ଗୁରୁଦେବ ସେ କଥା ତ ପଚାର ନ ଥିଲେ—କିପରି କହନ୍ତି । ( ଥରିବାର )

ବିଶ୍ୱାମିତ୍ର—ମାଙ୍ଗଲ୍ୟ··· ( ଆରକ୍ତ ଦୃଷ୍ଟିପାତ )

ମାଙ୍ଗଲ୍ୟ—ଗୁରୁଦେବ ! ଗୋଟିଏ ଲୋକ ଗୁହାରି କରି ଆସିଥିଲା । ଯେ କଥାଟିକି ବୁଝି ଦେଇଛି । ( ଚୁପ୍ ରହିବାର )

ବିଶ୍ୱାମିତ୍ର—ହଁ । ଏ କଣ ବଡ଼ କଷ୍ଟ ? କି ଦୁର୍ବୋଧ !

ମାଙ୍ଗଲ୍ୟ—ଦୋଷୀକୁ ଦଣ୍ଡ ଦେଇଛି । ଗୁରୁଦଣ୍ଡ ।

ବିଶ୍ୱାମିତ୍ର—( ଆଶ୍ଚର୍ଯ୍ୟେ ) କଣ ? ହତ୍ୟା ? ହତ୍ୟା କରିଛୁ ? ମାଙ୍ଗଲ୍ୟ ! ମୂର୍ଖ ! ହତ୍ୟାକରି ତାର ମୃତ୍ୟୁକାଳୀନ କାତର ପ୍ରାର୍ଥନା ଆଉ ଆକୁଳତା ଦେଖି· ତୋ'ର ହୃଦୟରେ ଏପରି ଭୟବ୍ୟାକୁଳତା ଆସିଛି ? ଶୀଘ୍ର କହ । କି ନୃଶଂସତା ? ଉପଯୁକ୍ତ ଫଳ ଭୋଗ କରିବୁ ପାପି !

ମାଙ୍ଗଲ୍ୟ—ନା ଗୁରୁଦେବ ! ହତ୍ୟା ? ନା ! କିଏ ? ନା ! ତାର ଶାସ୍ତି ।

ବିଶ୍ୱାମିତ୍ର—କି ଶାସ୍ତି ? ନା—ତୋର ହତ୍ୟା ନୁହେଁ । ତା'ର ହତ୍ୟା ପରେ ତାର ପ୍ରେତ ହିଁ ତୋତେ ଶାସ୍ତି ଦେଉଛି । ସେହି ଶାସ୍ତି ନା କଣ ? କିଛି ବୁଝିପାରୁ ନାହିଁ ସେ ମୂର୍ଖ !

ମାଙ୍ଗଲ୍ୟ—ଗୁରୁଦେବ ! ଅର୍ଥଦଣ୍ଡ କରିଛି ।

ବିଶ୍ୱାମିତ୍ର—ଓଃ ! ଏତେବେଳକେ··· କେତେ ଅର୍ଥଦଣ୍ଡ ?

ମାଙ୍ଗଲ୍ୟ—ପାଞ୍ଚପଣ କଉଡ଼ି ।

ବିଶ୍ୱାମିତ୍ର—କଣ ହେଲା ?

ମାଙ୍ଗଲ୍ୟ—ବ୍ରାହ୍ମଣଭୋଜନ କରିବାକୁ ଭଲ ଭଲ ଜିନିଷ କିଣିଆଣିଲି ।

ବିଶ୍ୱାମିତ୍ର—ମାଙ୍ଗଲ୍ୟ ? ଏ କି ବାତୁଳତା ! ପ୍ରଥମେ ଗୁହାରି ବୁଝିବା ଅନ୍ୟାୟ, ତାପରେ ଅର୍ଥଦଣ୍ଡ ଅନ୍ୟାୟ । ପୁଣି ରାଜକୋଷର ଅର୍ଥର ଅନ୍ୟାୟ ବ୍ୟୟ ଅନ୍ୟାୟ । ତେବେ କି ଦଣ୍ଡ ଚାହୁଁ ?

ମାଙ୍ଗଲ୍ୟ—ନା ଗୁରୁଦେବ, ଅନ୍ୟାୟ ବ୍ୟୟ ନୁହେ । ସତ୍ ବ୍ରାହ୍ମଣ ପାଇନାହିଁ । ସୁତରାଂ···

ବିଶ୍ୱାମିତ୍ର—କଣ ସୁତରାଂ ?

ମାଙ୍ଗଲ୍ୟ—ସୁତରାଂ···ହଁ । ଭାବିଲି ସେ ଗୁରୁଦେବ ତ ଜନ୍ମସିଦ୍ଧ ବ୍ରାହ୍ମଣ ନୁହନ୍ତି···

ବିଶ୍ୱାମିତ୍ର—ଚଣ୍ଡାଳ ! ଅପମାନ ! ବିଶ୍ୱାମିତ୍ରର ଅପମାନ !

ମାଙ୍ଗଲ୍ୟ—ନା ଗୁରୁଦେବ । ଶୁଣନ୍ତୁ, ତା' ପରେ ଆପଣଙ୍କ ଲାଗି ତ ରଖିଲି ନାହିଁ । ସେ ଗଲା ।

ଆଜ ବଡ଼ କଷ୍ଟରେ ଉଦରସାତ୍ କଲି ।
ଗୁରୁଦେବ ବଡ଼ କଷ୍ଟ ।

ବିଶ୍ୱାମିତ୍ର—ମୋର ଶିଷ୍ୟ ବୋଲି ଏଥର କ୍ଷମା ଦେଲି ।
ଯାଃ ମୂର୍ଖ ! ମୋର ଚକ୍ଷୁ ଆଗରୁ ଦୂର ହୁଅ ।

ମାଙ୍ଗଲ୍ୟ—ଗୁରୁଦେବ !

ବିଶ୍ୱାମିତ୍ର—ନା ଯାଅ ।

ମାଙ୍ଗଲ୍ୟ—ଗୁରୁଦେବ ! ବଡ଼ କଷ୍ଟ ।

ବିଶ୍ୱାମିତ୍ର—ଯାଅ । ବାହାରି ଯାଅ—ନଚେତ୍...

ମାଙ୍ଗଲ୍ୟ—ଯାଏଁ ଗୁରୁଦେବ । ( ପ୍ରସ୍ଥାନ )

ବିଶ୍ୱାମିତ୍ର—( କିଞ୍ଚିତ୍ ଭାବି ) ନା—ଥାଉ ନା ।
ମାଙ୍ଗଲ୍ୟ !

( ମାଙ୍ଗଲ୍ୟର ପୁନଃପ୍ରବେଶ )

ବିଶ୍ୱାମିତ୍ର—ଶୀଘ୍ର ସମସ୍ତ ପ୍ରସ୍ତୁତ କର । ମୋତେ କାଶୀ ଯିବାକୁ ହେବ ।

ମାଙ୍ଗଲ୍ୟ—ଗୁରୁଦେବ, ମୁଁ ଯିବି ତ ?

ବିଶ୍ୱାମିତ୍ର—ଯାଅ—ମୁଁ ବର୍ତ୍ତମାନ ଯାହା କହିଲି, କର ।
ମୁଁ ମଧ୍ୟ ମୋର ହୋମ ଇତ୍ୟାଦି ଶେଷକରେଁ—
ଯାଅ । ( ପ୍ରସ୍ଥାନୋଦ୍ୟତ )

ମାଙ୍ଗଲ୍ୟ—ଗୁରୁଦେବ ! କିନ୍ତୁ...

ବିଶ୍ୱାମିତ୍ର—ଯାଅ ।

( ଉଭୟଙ୍କ ଉଭୟ ଦିଗରେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ ।

ଗୃଣ୍ଡାଳ ଗୃହ ।

( ଗୃଣ୍ଡାଳପତ୍ନୀ ଓ ହରିଶ୍ଚନ୍ଦ୍ର ପ୍ରବେଶ )

ହରିଶ୍ଚନ୍ଦ୍ର—ମା ! ତେମେ ମୋତେ କାହିଁକି ବଳାଉଛ ?
ମୁଁ ଗୋଟିଏ ବ୍ରତ କରିଛି, ସେଥିଲାଗି ନିଜ
ହାତରେ ସେଷେଇ କରି ଖାଏଁ ।

ଗୃଣ୍ଡାଳପତ୍ନୀ—ନାହିଁ ବେଟା ! ମୁଁଇ ବୋଲୁସି କି
ଭଲକରି ଖାପେ କର୍, ନାଇଁତ ଏ ଶରୀର ମୁର୍ଦ୍ଦା
ହୋଇଯିବ । ତୁଇ ତ ଦିନ ଦିନ ଝଡ଼ ଯାଉଛୁ ।
ସେଇ ମୁଇଁ କହିଲିକି ତୁଇ ଚୋର ବେଷ ବନା,
ଲେକିନ୍ ମୋ ଲୋକକା ସାମନାରେ ଖା'ପେ ।

ହରିଶ୍ଚନ୍ଦ୍ର—ମା ! ମୁଁ ତ ବେଶ୍ ଶକ୍ତ ଅଛି । କାମ
ଦାମକୁ ତ ବେଶ୍ ପାରୁଛି । ମୁଁ କଣ କାମ କରି-
ପାରୁନାହିଁ ? ନ ଖାଇ ନ ପିଇ ମୋ କାର୍ଯ୍ୟରେ
ହେଳାକଲେ ମୋର ଧର୍ମହାନି ହେବ ।

ଗୃଣ୍ଡାଳପତ୍ନୀ—ଅରେ ନ୍ତ୍ରେଃ, ତ୍ରେଃ, ତ୍ରୈଃ । ଭ
ସର୍ଦ୍ଦାର ! ଶୁଣ ତୋ ହରିଯା କ କହୁଚନ୍ତି ।

( ମୁନିଆଁ ଓ ସୃତିର ପ୍ରବେଶ )

ଉଭୟେ—କ ଚା ? କ କହଚନ୍ତି ବୋ ?

ଗୃଣ୍ଡାଳପତ୍ନୀ—ମୁଇଁ କହଲି କ ଭଲସେ ଜେକ ଖା ପେ,
ନାଇଁ ତ ଶୁଖି ଯାଉଛୁ, ଆଉରଭି ମୁର୍ଦ୍ଦା ହୋଇ-
ଯିବା । ସେଇ ହରିଯା କହଚନ୍ତି ମୁଇଁ କ କାମ-
ଦାମକୁ ପାରଲା ନାଇଁ ? ଆଉରଭି କହଚନ୍ତି
ଧରମ ହାନି ହୋବ ମୁଇଁ ସବେ କାମ ନାଇଁ
କରବ ।

ମୁନିଆଁ—ଇବୋ, ବେଟା ହରିଯା । ସଚ—ତୁଇ
ଭଲକରକେ ଖା ପେ ନାହିଁକରୁଛୁ କାଇଁ ବୋ ?
ତୋକେ ହାମ ଘି ଦଉଚି, ଦୁଧ ଦଉଚି । ଅରେ
ତୁଇ କହଲି କ ହାମର କ ମକୁ ନାଇଁ ପାରଚୁକ ?
ତ୍ରେଃ ତ୍ରେଃ ନ୍ତ୍ରେଃ । ହାମର ତ ତା ଚୋଲିଛି
ନାଇଁ । ତୁଇ ହାମକୁ ବାବା କହଚୁ ଆଉ ତାକୋ
ମା କହଚୁ । ତୋକାଗି ହାମର କେତା ଭବିଚି ।
ଆର ତୁଇ ମୁର୍ଦ୍ଦା ହୋଯିବୁ ତ ସମ୍ଭାଲି ଯିବନାଇଁ,
ଆର ହାମ କାମକୁ ଅଉର ନୌକର ନାହିଁ
ଲବା ? ଅରେ ନ୍ତ୍ରେଃ ତ୍ରେଃ ନ୍ତ୍ରେଃ । ତୁଇ
ସମଝି ପାରସି ନାଇଁ । ହରିଯା, ତୁଇ ଅଜସେ
ହାମର ସାମନେ ଖା ପେ କର । ହାମ ସାଥେ
ନା ଖାଇବୁ ତ ନାଇଁ । ହାମ ସାମନେ ବସକେ
ଖାଇବୁ ।

ହରିଶ୍ଚନ୍ଦ୍ର—ଆହା ! ଗୃଣ୍ଡାଳ ହୋଇ କି ସ୍ନେହ !
ଏ ଗୃଣ୍ଡାଳର ଦାସତ୍ୱସ୍ୱୀକାରରେ, ତାର ସ୍ନେହ

ମମତାପୂର୍ଣ୍ଣ ବାକ୍ୟଗୁଡ଼ିକ ପାଖରେ ରାଜପଦ ତୁଚ୍ଛ । ସର୍ଦ୍ଦାର ଶୃଗାଳ ହେଲେ ମଧ୍ୟ ରାଜାର ଅନ୍ତଃକରଣ ।

ସୁଚରିତ—ସେଥିରୁ କି ଶାଇବ ବୋ ? ବଲିଲନା ?

ଶୃଗାଳପତ୍ନୀ—ଆମକୁ ତ ଭୁଲ ମା କରିବେ ତାକଟୁ ଆଉ ଆମର କଥା ନା ରଖିବେ ! ଆଜସେ ଇଠେ ଖା ଷେ କର । କି ସର୍ଦ୍ଦାର ?

ହରିଶ୍ଚନ୍ଦ୍ର—ଅହା, ଏ ପୁଣି ସ୍ୱର୍ଗୀୟ ସ୍ନେହର ସୁଧା ! ମା ! ଖାଇବି । ଆପତ୍ତି ନାହିଁ ।

ଶୃଗାଳପତ୍ନୀ—ଇସେ ଆମର ଭଲ ବେଟା ସବ କହିଲ ।

ମୁନିଆଁ—ଓ୍ୱାରେ ଓ୍ୱା । ଲେକିନ୍ ଆଉ ଗୋଟେ କଥା ଅଛି । ତୁ ସୁଅର ଖାବୁନା ? କାହିଁକି ମନା କରୁଛୁ । ରଜା ମାଂରଜା ଯେ ଖାଉଛୁ । ତୁ ଖାକେ ଭଲ ମୋଟାରୁଟା ହୋଗା । ଆଉ ହାମଲୋକ ତୋକେ ଦେଖି ଦେଖକେ ଶରମଶରମେ ମରିଯାଏ । ହାଃ ! ହାଃ ! ହାଃ ।

ହରିଶ୍ଚନ୍ଦ୍ର—ନାଇଁ ବାବା ! ମୋତେ ଆଉ ଯାହା ଦେବ ଖାଇବି ।

ମୁନିଆଁ—ଅରେ ବେଟା । ବଜାରସେ ଭଲ ଭଲ ପିଠାପଣା ଗନବସ ଲେକେ ଥୋଡ଼ ଥୋଡ଼ ଭି ଖା ଯେ କର । ଶରୀର ତାକତ ହୋବେ । ଆବେ ଚୁଚିବା । ( ଶୃଗାଳପତ୍ନୀ ପ୍ରତି ) ତୁଇ ଆ । ତାକୁ କିଛି କୁଛୁ ଦେ ଦେ । ଆ ବେଟା ହରିଯା । ନାଇଁ କରନା । ( ସଙ୍ଗରେ ନେଇ ଯିବା )

ହରିଶ୍ଚନ୍ଦ୍ର—ପ୍ରଭୁ ! ମୋତେ ବେଶ ସୁଖରେ ରଖିଛ । ବନ୍ଧୁବନ୍ଧୁ ପିତା ମାତା ହରାଇ ଜୀବନର ଗୋଟିଏ ମାତ୍ରା କ୍ଷତି ପାଇଥିଲି । ଏବେ ଶୃଗାଳ ହେଲେ ମଧ୍ୟ ତା'ର ସ୍ନେହ ମୋର ରାଜା ଓ ରାଣୀ ପିତା-ମାତାଙ୍କଠାରୁ ବଳିପଡ଼ିଲା । ପ୍ରଭୁ । ରାଜସୁଖ ଆଉ ଫେରି ଲୋଡ଼େ ନା । ବିଶ୍ୱାମିତ୍ର । ମୋର ଅଶେଷ ମଙ୍ଗଳ କରିଛ । ସେ କୁଟିଳତାମୟ ସସାଗରାଧରା ଶାସନଠାରୁ ଏ ତ ଢେର୍ ଭଲ । ଶୈବ୍ୟା ! ବାପରେ ରୋହିତ । ତୁମ୍ଭେମାନେ ଯଦି ସୁଖରେ ଥାଅ ।

ମୁନିଆଁ—ଆବେ । କି ଭାବୁଛୁ ?

ହରିଶ୍ଚନ୍ଦ୍ର—ନାହିଁ ଚାଲ ବାବା ।

( ସମସ୍ତଙ୍କ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ନଦୀକୂଳ—ଗୋଟିଏ ବୃକ୍ଷରେ କେତେକ ଫଳ ପାଚିଥିବା—ବୃକ୍ଷମୂଳେ ରୋହିତ )

ରୋହିତ—( ଫଳଟିଏ ଧରି ) ଅହା ! କି ସୁନ୍ଦର ଫଳ । ହରି, ତୁମେ ଦେଲ ? ତୁମେ ଜାଣ ମୋ ଦୁଃଖ ବୁଝିଲ ? ମାଆ ମୋଲାଗି ଖାଉ ନାହାନ୍ତି । ଅଳ୍ପ ହେଉ, ସେ ଖାଇଲେ ମୋତେ ଅଣ୍ଟିବ ନାହିଁ ବୋଲି ମୋତେ ଠକିଦେଇ ତାଙ୍କର ଏକାଦଶୀ ବୋଲି କହୁଛନ୍ତି । ତାଙ୍କର ମାସକଯାକ ଏକାଦଶୀ ? ଅହା ! ମା ମୋର କେତେ କଷ୍ଟ ପାଉଥିଲେ ? ହରି ! ଗୋଟିଏ ଫଳ ଦେଲ ? ଆଉ ଗୋଟିଏ ଦିଅ । ( ଫଳଦେଖାଇ ) ଏଇଟି ମା ଖାଇବେ । ଆଉ ମୋ ପାଇଁ ଗୋଟିଏ ଦିଅ ।

( କାନ୍ଦପଡ଼ାଇ ଉପରକୁ ଚାହିଁ )

ଗୀତ

ହରି, ଦିଅ ଦୟାକରି
ଅନାଇଛି ମୁଁ କାନ ପଶାରି
ଅତି ଆକୁଳେ, ମନ ବିକଳେ,
ଚରଣତଳେ ବନ୍ଦନକରି ।
ଜାଣୁଛ ହରି କେତେ ତୁନ୍ଦର
ରଖିଛ ଫଳ କେତେ ସୁନ୍ଦର,

ବାସନା ଆହା ! କେଡ଼େ ମଧୁର
ଭୋକଲା ପେଟ ଯାଉଛି ପୂରି ।
ମାଆଙ୍କ ଆଗେ କହିବି ଆଜ,
ହରି ଶୁଣନ୍ତୁ ଦୁଃଖୀ ଗୁହାରି ॥

କାହିଁ ପଡ଼ିଲା ତ ନାହିଁ । ତେବେ କଣ ଚଢ଼ିଯିବି ? ହଁ, ହରି ତ ଦେଖାଇ ଦେଲେ । ଆଉ କଣ ଖୁଆଇ ଦେଇଥାନ୍ତେ ? ନାଇଁ, ନିଜେ ଯାଇଁ ପରିଶ୍ରମ କରି ଆଣିବି । ମାଆ ବଡ଼ ଭୋକିଲା ଥିବେ—( ବୃକ୍ଷାରୋହଣ କରୁ କରୁ ) ଏଁ, କଣ ? ଗଛ ଧଡ଼ରେ ସାପଟା ଗୁଡ଼ାଇ ହୋଇ ରହିଛି । ଉଠୁନାହିଁ । ହରି ! ମୁଁ ତେବେ ଯିବି କେମନ୍ତେ ? ଯାଏଁ ଆଉ ଟିକିଏ ଯାଏ ( ଅଳ୍ପ ଉପରକୁ ଯାଇ ଫଳକୁ ହାତ ବଢ଼ାଇବାବେଳେ ) ଓ ହୋ, ହୋ ! ମା, ମା । ଏ କଣ ହେଲା ? ଘାରି ପୋଡ଼ିଲା । ମୋତେ ସାପଟା କାମୁଡ଼ିଦେଲା ପରା । ହରି, ଏ କଣ ହେଲା ! ଓହୋ ।

( ହଠାତ୍ ତଳେ ପତନ )

---

## ପଞ୍ଚମ ଦୃଶ୍ୟ

ବନପଥ

ସମୟ—ମେଘାଛନ୍ନ ରାତ୍ରି ।

( ମୁଁନିଆ ଓ ସୁଣ୍ଡିରା )

ମୁନିଆଁ—ଆରେ କାହାଁ ପଳାଇଲୁ ରେ ସୁଣ୍ଡିରା ?

ସୁଣ୍ଡିରା—ଅଛୁ ସର୍ଦ୍ଦାର ଅଛୁ ।

ମୁନିଆଁ—ଦେଖୁଛନା— ଆଜିକେ ରାତି, ସାରା ଜୀବନରେ ହାମ୍ ଦେଖିନାଇଁ । ଏତା ବୁଢ଼ା ହେଲିଣି, କବି ନାଇଁ ଦେଖିଛି ।

ସୁଣ୍ଡିରା—ହଁ ସର୍ଦ୍ଦାର । ଆଜିକେ କୁଛୁ ନା କୁଛୁ ଗୋଟେ ବଡ଼ ଗୋଲମାଲ ହୋବେ । ଦେଖୁଛନା—କେମିତା ଦନଘଟା ।

ମୁନିଆଁ—ଘନଘଟା ! ଆରେ ବାପ୍‌ରେ । ଆଜିକେ ଅସୁର ଅସୁରାଣୀ ମୁହଁରେ ଫୁଙ୍କାର ମାରୁଛନ୍ତି ଦେଖିଛୁ, କେମିତା ବିଜୁଳି ଚମକୁଛି, ଝଡ଼୍ ତୋଫାନ୍ ବହୁଛନ୍ତି । ଦେବତା ଦେବତାମାନେ କୁଛୁ କନ୍ଦଳ ବାନ୍ଧିଛନ୍ତି !

ସୁଣ୍ଡିରା—ଏତା ବଡ଼ା ଅନ୍ଧାର ତ କାହାଁ କଭି ଦେଖା ନାଇଁ ଥିଲା । ମୁହଁକୁ ମୁହଁ ଦେଖା ନାଇଁ । ରହ ସର୍ଦ୍ଦାରଜୀ । ସାଙ୍ଗହୋକେ ଚଲିବ ।

ମୁନିଆଁ—ହରିପୁ କେମିତା କରିକେ ରହିଛେ ବୋ ? ତାର ଡର ଭୟ ନାଇଁ । ହାମରି ଗୁଣ୍ଡାଳ ହୋକେ ହାମକୁ ଡର ଲାଗୁଛେ ଆର ସେ ତାର ଖଣ୍ଡା ପହରି ଅଛନ୍ତି ।

ସୁଣ୍ଡିରା—ଚଲରେ ଭୟା । ଦ୍ରୁତି ଦୁମ ଦୁମ ଚମକୁଛେ । ମନମେ ବଡ଼ା ଖଟକା ଲାଗୁଛେ । ( ଘଡ଼ଘଡ଼ )

ମୁନିଆଁ—ଓଃ—ଶିବ ବିଶ୍ୱନାଥ । ସୁଣ୍ଡିରା—ଆବୋ ଗମିଯିବା । ଆ ।

( ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

ନଦୀକୂଳ । ସମୟ—ମେଘାଛନ୍ନ ନିଶି

( ଏକାକୀ ହରିଶ୍ଚନ୍ଦ୍ର ଚିନ୍ତିତ ମନେ ଭ୍ରମଣ କରୁଥିବା ଓ ପଛର ପୃଷ୍ଠ ଦେଶରେ ଶୈବ୍ୟା । )

ହରିଶ୍ଚନ୍ଦ୍ର—ଓଃ କି ଭୟଙ୍କର ରଜନୀ ! ଥରେ ଥରେ ତଡ଼ିତ୍‌ଛଟାର ରଣରଙ୍ଗିଣୀ ବେଶ ! ବଜ୍ରର ଘୋର ଗର୍ଜ୍ଜନ ! ଅନ୍ଧକାର ! ଘୋର ଅନ୍ଧକାର ! ଆକାଶ ମେଘମାଳା ବିଲମ୍ବିତ । ଆଉ ଜ୍ୟୋତିଷ୍କ ମାନଙ୍କର ବିନ୍ଦୁଟି ପର୍ଯ୍ୟନ୍ତ ଦେଖା ଯାଉନାହିଁ । ଏଣେ ହରିଶ୍ଚନ୍ଦ୍ରର ଅନ୍ତରର ଅଭ୍ୟନ୍ତରରେ ଦେଖ ଖଣ୍ଡିଏ ବାଦଲ, କିନ୍ତୁ ଏ ମେଘ ଗର୍ଜେ ନାହିଁ, ବିଜୁଳି ଚମକେ ନାହିଁ, କେବଳ ତମସାଚ୍ଛନ୍ନ । ଚତୁର୍ଦ୍ଦିଗ ତିମିର ଘେରି ରହିଛି । ଯେତେ ଦୂରକୁ ଦୂରକୁ ଯାଅ—ଖାଲି କାଳିମାଛନ୍ନ

ତିମିର । ତିମିର ଭିନ୍ନ ଆଉ କିଛି ନାହିଁ । ଥାଏ ଯଦି ଅଛି ଗୋଟିଏ କ୍ଷୁଦ୍ର ଆଶା । ଏହି ତାମସୀ ରଜନୀରେ ଘୋର ଝଡ଼ ଭେଦକରି, ତରୁଲତାର ମିଳନ ମଧ୍ୟରେ ସେହି କ୍ଷୁଦ୍ର ଜ୍ୟୋତିଃରେଖା,—ଜଳୁ-ଜଳାର କ୍ଷଣପ୍ରକାଶ ଓ କ୍ଷଣବିଲୁପ୍ତ ଭାବପରି ଗୋଟିଏ ମାତ୍ର କ୍ଷୁଦ୍ର ଆଶା ଅଛି କିନ୍ତୁ ତାର ଆଉ କ୍ଷଣପ୍ରକାଶ ବା କ୍ଷଣବିଲୁପ୍ତ ଭାବ ନାହିଁ । କି ପ୍ରଳୟ ରଜନୀ, କି ଘନ ଅନ୍ଧକାର, କାହିଁରେ ସେ ଛପିବାର ନୁହେଁ । ସେ ଚିରଦିନ ସମାନ, ସେ ଚିରଦିନ ସେଇ କ୍ଷୁଦ୍ର, ବିନ୍ଦୁଟିଏ । ସେ ଗମ୍ଭୀର ନିଶାର ଭୟଙ୍କର ବେଶ ମାନେନାହିଁ, ଚଣ୍ଡାଳର ଭୃତ୍ୟତ୍ୱ ସ୍ୱୀକାର କରେନାହିଁ, ମୃତ କମ୍ବଳର ସ୍ପର୍ଶ ଘୃଣା କରେନାହିଁ । ଆଉ ଶ୍ମଶାନରେ—ଏ ଭୀମ ଶ୍ମଶାନରେ ପିଶାଚ ନୃତ୍ୟର ଅଟ୍ଟହାସ ମାନେ ନାହିଁ । ଶତ ମେଘର ଗର୍ଜ୍ଜନରେ, ସହସ୍ର ବିଜୁଳିର ନେତ୍ରଭଙ୍ଗିରେ, ବୃକ୍ଷ ଲତାର ଆମୂଳ-ଦୋଳନରେ, ଉଲ୍କାର ବିକଟ ରାବରେ, ଶୃଗାଳର ହୃଦୟ-କ୍ରନ୍ଦନକାରୀ ଭୀମ-ଭେରୀରେ ଚିତାଗ୍ନିର ନର୍ତ୍ତନରେ, ଚଣ୍ଡୀ ଚାମୁଣ୍ଡାର ତାଣ୍ଡବରେ—ନୀରବ ଆଉ ନିଶ୍ଚଳ, ଶୁଭ୍ର ଆଉ ତେଜୋମୟ । କିଏ ?—ଏ ପୁଣି ଅବଳାର କଣ୍ଠ ? କେଉଁ ହତଭାଗିନୀର କର୍ମ ଫାଟିଛି ? ଓହୋ ! ହୋ ! କି ବିକଳ କଣ୍ଠ ! କି କରୁଣ ସ୍ୱର ! ( କିଞ୍ଚିତ୍ ନୀରବ ) ନା, ହରିଶ୍ଚନ୍ଦ୍ର ଢେର ସହିଛି, ଢେର ଶୁଣିଛି, ଦିବା ନିଶି ସୂର୍ଯ୍ୟ-ଦେବଙ୍କର ଉଦୟଠାରୁ ଅସ୍ତପର୍ଯ୍ୟନ୍ତ ଶବ ପରେ ଶବ, ଚିତ୍କାର ପରେ ଚିତ୍କାର ! ପୂତି ଗନ୍ଧ ପରେ ପୂତି ଗନ୍ଧ, ଆଉ ଚିତା ପରେ ଚିତା ! କେତେ ପୁତ୍ରହରା ରମଣୀର ମର୍ମଭେଦୀ ବିକଳ କ୍ରନ୍ଦନ ! କେତେ ବିଧବାର କରୁଣ କଣ୍ଠ ! କେତେ ଲଲାଟର କରାଘାତ, କେତେ ହତଭାଗିନୀର ନୀରବ ଅଶ୍ରୁବିନ୍ଦୁ ! ଢେର ଦେଖିଛି, ଢେର ସହିଛି, ଢେର ଶୁଣିଛି । ଏ ଆଉ ହରିଶ୍ଚନ୍ଦ୍ର ପକ୍ଷରେ ତ ନୂତନ ନୁହେଁ । ମୁଁ କର୍ତ୍ତବ୍ୟର କିଙ୍କର । ଯାଏଁ, କର୍ତ୍ତବ୍ୟ ନିମିତ୍ତ ଅଗ୍ରସର ହୁଏଁ । ଓଃ ! କି ବିକଳ ଚିତ୍କାର ! ହାଃ ହାଃ, ମୋର କ'ଣ ଯାଏ ! ଏ ହୃଦୟ ଆଉ ସେ କଣ୍ଠରେ କାନ୍ଦି-ଉଠେ ନାହିଁ—ଏ କ୍ରନ୍ଦନ ତ ଅଘୋରୀର କଣ୍ଠର ମଧୁର ସଙ୍ଗୀତ ।

ନେପଥ୍ୟେ—ଶୈବ୍ୟା—

ଗୀତ

ଆହା ରେ ଧନ !
ନୟନ ସାର, ଜୀବର ଜୀବନ ମୋର,
ଦୁଃଖିନୀ ରଙ୍କରତନ ।
କହ ମଳୟ ପବନ   କାହିଁ ମୋ ଜୀବ ଜୀବନ !
କାହିଁ ମୋର ମଣିହାର,   କହରେ ବନ ଗହନ । ୧ ।

ହରିଶ୍ଚନ୍ଦ୍ର—ଏ କିଏ ? ଥୟ ହୁଅ ହୃଦୟ । ଚଣ୍ଡାଳର ଦାସତ୍ୱ ସ୍ୱୀକାର, ଶ୍ମଶାନର ଶବ ସତ୍କାର, ଆଜୀବନ କଦନ୍ନ ଭୋଜନ, ଚଣ୍ଡାଳର କ୍ରୀତ ମନ । ଏ ପୁଣି କିଏ ? ତୋର ଚମକି ଉଠିବାର ତ କାରଣ ନାହିଁ । କିଏ ଜଣେ କାନ୍ଦେ । କେଉଁ ହତଭାଗିନୀର ହୃଦୟ ଛିନ୍ନ ହୋଇଅଛି; ହେଲା । ସେ ତ ସବୁଦିନ ହୁଏ, ନିତି ତ ହୁଏ । ତାହା ତ ହଜାର ସହସ୍ର ହୁଏ ଆଉ ହେଉଛି, ତୁ ଫେରୁ ଚମକଉଠୁ କାହିଁକି ? ସେଥିରେ ଯାଏ ଆସେ କ'ଣ ? ତୋର ଅଛି କ'ଣ ?

ଶୈବ୍ୟା—ଆହା ହା ! ନିଧି ! ନିଧିରେ ! ଉଃ, ସତେ କଅଣ ମୋତେ ଭସାଇଦେଇ ଗଲୁରେ ? ଅନ୍ଧୁଣୀର ଶେଷ ଜୀବନର ଯଷ୍ଟି ଖଣ୍ଡିକ ମଧ୍ୟ ଗଲା । ଆହା ହା !

ହରିଶ୍ଚନ୍ଦ୍ର—ତାହା ଯାଏ ରେ ଅଭାଗିନୀ ! ଯାଏ, ସମସ୍ତଙ୍କର ଯାଏ । ଏ ଜଗତ ବିଷମ ସ୍ଥଳ । ଏଠି କଞ୍ଚା ଯାଏ, ଆଉ ପକ୍ୱ ଫଳ ଶେଷକୁ ରହେ । ତା ଯାଏ, ସେ ଏକା ତୋର ନୁହେଁ ।

ଶୈବ୍ୟା—ବାପ ରେ ! ନା—ଶୋଇ ପଡ଼ିଛୁ ନିଧି ମୋର ! ଫୁଲ ତୋଳି ଆସି—ଓଃ, ହୃଦୟରେ ! ଧନ ରେ ମୋର ! ଏ କଣ ହେଲା ? କୁଆଡ଼େ ଗଲୁ ! ବାପ ରେ ! ନିଧିରେ ! ଉଠ, ତୋତେ କୋଳ କରି ନେଇ ସବୁ ଦୁଃଖ ଭୁଲିଯିବି ।

ହରିଶ୍ଚନ୍ଦ୍ର—ହୁଁ, ସେ ଆଉ ଉଠିବ ରେ ହତଭାଗିନୀ ! ଏ ଯେ ଘୋର ନିଦ୍ରା । ଏ ନିଦ୍ରା ଆଉ ଭାଙ୍ଗିବାର ନୁହେଁ । ଏ ତନ୍ଦ୍ରାହୀନ ନିଦ୍ରା । ତନ୍ଦ୍ରା ନୁହେଁ । ଉଠିବ । ସୃଷ୍ଟି ପ୍ରଳୟ ପରେ ଥରେ ଉଠିବ । ହାୟ, ଅଭାଗିନୀ ! ପୁତ୍ରଶୋକରେ ପାଗଳ ହେଲୁ । ଏ ତନ୍ଦ୍ରା ନୁହେଁ, ନିଦ୍ରାର ଏକ ଶେଷ । ଶୋଇଛୁ, ଆଜି ସେ ଶୋଇଛି, ଆଉ ଚୂପ୍ କରି ଦିନେ ତୁ ମଧ୍ୟ ଶୋଇବୁ ! କିନ୍ତୁ ଦୁଃଖ ? ପ୍ରଭେଦ ? ତୋତେ କେହି ଉଠାଇବ ନାହିଁ···ଏହିଠାରେ ଶେଷ ।

ଶୈବ୍ୟା—ଉଠ ବାପା ! ତୋର ଏ ଆସନ ନୁହେଁ ! ଏ ଭୂମିଶଯ୍ୟା ତୋତେ ସାଜେ ନାହିଁ ବାପା ! କଣ କହେଁ ? ବାପ ମୋର କଣ ସତେ ନାହିଁ ? ହାଃ !

ହରିଶ୍ଚନ୍ଦ୍ର—ନାହିଁରେ । ଏହି ଆସନ । ପୁତ୍ରର ଏହି ଆସନ । ଏ ସାମାନ୍ୟ ନୁହେଁ । ଏ ଭୂମିଶଯ୍ୟା ! ସତ୍ୟ । ଶେଷ ଶୟନ । ମାଟିର ଦେହ ମାଟିରେ ଗଡ଼ିବ । ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ? ରଜା-ପ୍ରଜା, ଧନୀ-ଦରିଦ୍ର, ସ୍ୱରୂପ-କୁରୂପ, ଏହି ଆସନ-ଭାଗୀ । ସେ ଦୁଃଖ ନୁହେଁ ।

ଶୈବ୍ୟା—ଦୀନବନ୍ଧୁ, କେତେ ଦୁଃଖ ଶେଷରେ ଏ କଷ୍ଟ ମଧ୍ୟ ଦେଖିବାକୁ ହେଲା ! ବାପ ମୋର ତମର ସେବା ଫୁଲ ତୋଳୁତୋଳୁ ଏ ଦଂଶନ ! କଣ କହିବ ? ହରି ! କେବେ ଦେଖା ହେଲେ, ସେ ଚରଣ ଦର୍ଶନ କଲେ ଦାସୀ କଣ କହିବ ? କହିବ କଣ—ଧନ ନାହିଁ ? ଧନ ହଜି ଗଲାଣି, ଧନ କାହିଁ ଚାଲି ଗଲାଣି । ରଙ୍କୁଣୀର ନିଧି ! ଆହା ହା !

ହରିଶ୍ଚନ୍ଦ୍ର—ଓଃ, ଏ ଯେ—ତନ୍ତ୍ରୀର ଆଘାତ ! କିନ୍ତୁ ଅଭାଗିନୀ ? ମୁଁ ତ ଅତି ଗୋପନରେ ସେ ମରମର କ୍ଷୀଣ ତନ୍ତ୍ରୀଟିକି ଲୁଚାଇଥିଲି । ଦୀନବନ୍ଧୁ ! ଏ କଣ ? ଏ ପୁଣି କଣ କଲେ ? ଆଜି ବହୁଦିନ ଗତ—ସେହି ବିସ୍ମୃତ କଣ ମନେ ପଡ଼େ । ହୃଦୟ ଛିନ୍ନ ହୁଏ ! ମୁଣ୍ଡ ଭ୍ରମି ଯାଏ । ଏତେ ଦିନ ପରେ ନୟନରେ ନୀରବିନ୍ଦୁ ଫୁଟି ଉଠେ ।

ଶୈବ୍ୟା—ମା ଶୁଭଙ୍କରୀ ! ଶେଷଫଳ ଏହି ? କଣ ଥିଲି, କଣ ହେଲି । ପରିଶେଷରେ ପୁତ୍ରର ମୃତଶରୀର କୋଳରେ ଘେନି ଶ୍ମଶାନବାସିନୀ ! ବିଧାତା ! ଯା ପାପ ଆଖି । ଦେଖାଇବାର ଯେତେ ଦୃଶ୍ୟ ଅଛି, ସବୁ ଦେଖାଇଦେଇ ଯା । ଥିଲି କଣ, ଆଉ ହେଲି କଣ ? ସବୁ ଶେଷରେ, —ଆହା ହା ହା, ବାବୁରେ—ତୁ ମଧ୍ୟ ଗଲା କାଟିଦେଲୁ ? ତୋତେ ଦେଖି ସବୁ ଭୁଲିଥିଲି ।

ହରିଶ୍ଚନ୍ଦ୍ର—ଥିଲି କଣ, ଆଉ ହେଲି କଣ ? ସେଇ ତ । କିଏ ? ଏ ଜଗତରେ କଣ ଆହୁରି ଶୈବ୍ୟା ଅଛି ? ଆହୁରି ହରିଶ୍ଚନ୍ଦ୍ର ଅଛି ?

ଶୈବ୍ୟା—(ନେପଥ୍ୟେ) —ଗୀତ—

ଦୁଃଖିନୀ ରଙ୍କରତନ ନନ୍ଦନ ରେ,
ଜୀବନର ଜୀବନ ମୋର ।
ନିରେଖି ତୋ ଚନ୍ଦ୍ର ମୁଖ ଭୁଲିଥିଲି ସବୁ ଦୁଃଖ
ଅଭାଗିନୀ ଗଣ୍ଠି ଧନ ରେ ।
ରାଜସୁଖ ତୁଚ୍ଛ ମଣେ ଦେଖିଦେଲେ ତୋତେ କ୍ଷଣେ
ଗଲୁ କେଣେ କାଟି ଗଲା ତପତ ହୃଦ-ଚନ୍ଦନ ।

ହରିଶ୍ଚନ୍ଦ୍ର—ଢେର, ଢେ଼ର ଶୁଣିଛୁ, କିନ୍ତୁ ଚଣ୍ଡାଳ ହରିଶ୍ଚନ୍ଦ୍ର ! ଏହା ଯେ ତୋର ସଙ୍ଗୀତପରି ଲାଗେ । ମର୍ମ ବିଦାରି ହୁଏ । ନା—ଅୟି ହତ ହୃଦୟ । ବୁଝି ସୁଝି କର୍ତ୍ତବ୍ୟ କରିବାକୁ ଶିଖ । ଦେଖେଁ କିଏ ? (ପ୍ରସ୍ଥାନ)

---

## ସପ୍ତମ ଦୃଶ୍ୟ

ସ୍ଥାନ—ଶ୍ମଶାନ ।

(ମୃତପୁତ୍ର କୋଳରେ ଘେନି ଶୈବ୍ୟା ଓ ହରିଶ୍ଚନ୍ଦ୍ର ପ୍ରବେଶ)

ହରିଶ୍ଚନ୍ଦ୍ର—ଦେବି ! ଜାଣ ନାହିଁ ଏ ଶ୍ମଶାନର ଅଧିକାରୀ ଚଣ୍ଡାଳର ପଣ ଦେବାକୁ ହୁଏ ? ଦେଇ ଚାଲିଯାଅ । ମୁଁ ସତ୍କାର କରିଦେବି । ତୁମେ ସ୍ତ୍ରୀଲୋକ, ଦୁଃଖିନୀ ହେଲେ ମଧ୍ୟ ଦିନେ ସୁଖିନୀ ଥିବାପରି ବୋଧ ହୁଏ । ଯାଅ···

ଶୈବ୍ୟା—କିଏ ତୁମ୍ଭେ ?

ହରିଶ୍ଚନ୍ଦ୍ର—ଦେବି ! ମୁଁ ଏହି ଶ୍ମଶାନ ରକ୍ଷକ ଚଣ୍ଡାଳର ଭୃତ୍ୟ ମାତ୍ର । ଚଣ୍ଡାଳ ମୁଁ ।

ଶୈବ୍ୟା—କ୍ଷମା କର, କ୍ଷତ୍ରିୟ ସନ୍ତାନ, ମୁଁ ଚଣ୍ଡାଳକୁ ସ୍ପର୍ଶ କରାଇଦେବି ନାହିଁ । ନିଷ୍ଠୁରେ ! ଏ ଦୁଃଖିନୀ ମାମା, କଣ ତୋର ମୃତଶରୀର ଏହି ଜୀବନରେ ଦେଖିବାକୁ ମଧ୍ୟ ଭଗବାନ୍ ଇଚ୍ଛା କରିଥିଲେ ? ଦୟାମୟ ! ଆଉ କି ବିପରୀତ ଦୃଶ୍ୟ ଦେଖାଇବ ହରି ? କଣ ସମ୍ପୂର୍ଣ୍ଣ ହୋଇ ନଥିଲା ! ପରିଶେଷରେ ପିତୃତ୍ୟକ୍ତ ଦୀନ କ୍ଷତ୍ରିୟ କୁମାର, ଦିନେ ଯାହାଲାଗି ଶତ ଶତ କିଙ୍କର ସେବାରତ !··· ଆହା ହା ! (ମେଘଗର୍ଜନ)

ହରିଶ୍ଚନ୍ଦ୍ର—(ସ୍ୱଗତଃ) କ୍ଷତ୍ରିୟ କୁମାର ! ଆଉ ଶତ ଶତକିଙ୍କରର ସେବା ? ସେ ତ ମୋର ମଣି ପ୍ରଭୁ !···ଦେବ ! ଯାଙ୍କର କଣ ପିତା ଅଛନ୍ତି ? ଓଃ କି ନିର୍ମମ !

ଶୈବ୍ୟା—କ୍ଷମାକର ଚଣ୍ଡାଳ । ସେ ନିର୍ମମ ନୁହନ୍ତି, ବିଧିର ଶାସନ !

ହରିଶ୍ଚନ୍ଦ୍ର—(ସ୍ୱଗତଃ) ନିର୍ମମ ନୁହେ । ହଁ, ନିର୍ମମ ନୁହେଁ । ବିଧିର ଶାସନ । କିନ୍ତୁ ? ନା—ହରିଶ୍ଚନ୍ଦ୍ର ତ ନିର୍ମମ ନୁହେଁ । ନୁହେଁ ? ନୁହେଁ କିଏ କହେ ? ସେ ଯେ ଜୀବିତ ଅଛି । ପୁତ୍ର-ପତ୍ନୀ ହରାଇ ସେ ଯେ ଜୀବିତ ଅଛି । ଏ କଣ ତା'ର ରତ୍ନ ! କିଏ ? (ବିଦ୍ୟୁତାଲୋକ) (ପ୍ରକାଶ୍ୟେ) ଓଃ ଆଉ ଥରେ ଆଉ ଥରେ ବିଦ୍ୟୁତ୍ । ଥରେ ମାତ୍ର ଦେଖା ଦିଅ । ଜୀବନର ଧର୍ମ କର୍ମ ସମସ୍ତର ପ୍ରତିଦାନରେ ଥରେ ମାତ୍ର ଦେଖାଦିଅ, (ମେଘଗର୍ଜନ ଓ ପୁନଃ ବିଦ୍ୟୁତାଲୋକ) ଚିହ୍ନିଲି ରେ ହତଭାଗିନୀ ? ଏ ସେଇ ରତ୍ନ—ଏ ସେଇ ମଣି । ଶୈବ୍ୟା ! ଶୈବ୍ୟା ! ଶୈବ୍ୟା ! ଓଃ, ରୋହିତ କାହିଁ ? (ପତନ) ।

ଶୈବ୍ୟା—(ଚମକି ଉଠି) ବିଧି ! ଏ କି ଅଭିନୟ ! ଏ ସତ୍ୟ ନା ସ୍ୱପ୍ନ !
(ରାଜାଙ୍କ ମୁଖ ଫୁଙ୍କି ଦେବା ଓ ଉଠାଇବାର)

ହରିଶ୍ଚନ୍ଦ୍ର—ଛୁଅଁ ନା ମୋତେ, ମୁଁ ଚଣ୍ଡାଳ, ଚଣ୍ଡାଳର ନରକ ଦାସ !

ଶୈବ୍ୟା—କିନ୍ତୁ ଶୈବ୍ୟାର ପତି ! ଦୟାମୟ ! କ୍ଷଣକ ନିମିତ୍ତ ଏ କି ଲୀଳା ? ପ୍ରଭୁ ! ନାଥ ! ମୋତେ ମୋ ନିଧି ସହିତ ଏକବେ ଯିବାକୁ ଅନୁମତି ଦିଅନ୍ତୁ !

ହରିଶ୍ଚନ୍ଦ୍ର—ଦର୍ପାନ୍ଧ ବିଶ୍ୱାମିତ୍ର ! ଆସ, ଏହିଠାରେ ଋଣ ସଂଗ୍ରହ କର । ଜାହ୍ନବୀର ଅତଳ ଗର୍ଭରେ ଋଣ

ସଂଗ୍ରହ କର । ପ୍ରିୟେ ! ଥାଅ ତୁମ୍ଭେ । ତୁମ୍ଭ ପ୍ରଭୁଙ୍କଠାରୁ ଅନୁମତି ନ ନେଇ ଆସି କପଟରେ କ୍ରୀତ ଜୀବନ ହରାଇବାକୁ ବସିଛ ? ମହାପାପ !

ଶୈବ୍ୟା—ପୁଣ୍ୟର ବହୁତ ଫଳ ପାଇଲାଣି । ଆଉ ଭୋଗିବାକୁ ଚାହେଁନା, ପ୍ରଭୁ ! ଏଇ ମେଘ, କମି ଆସିଲା । ପରଦ୍ୱାରେ ଅରୁଣିମା ହୋଇ ଆସେ । ଆଉ କ ମୁଖରେ ଜଗତର ଦୁଃଖ ବଦନ ଦେଖିବ ପ୍ରଭୋ ! ଆହା ହା !

ହରିଶ୍ଚନ୍ଦ୍ର—ଶୈବ୍ୟା ! ଆଉ କଣ ଅଛି ? କ୍ରୀତଦାସ, କ୍ରୀତଦାସୀ, ଶବଦାହ ନିମିତ୍ତ କର ପର୍ଯ୍ୟନ୍ତ ଦେବାକୁ ଅସମର୍ଥ । ଆଉ ଭାବିବାର କଣ ? ଚାଲ ଚିତା ପ୍ରସ୍ତୁତ କରି ତିନିହେଁ ସେଥିରେ ଝାସଦେବା ।

ଶୈବ୍ୟା—ପ୍ରଭୁ ! ଅଭାଗିନୀର ମଧ୍ୟ ସେହି ଇଚ୍ଛା । ପ୍ରଭୁ ତେବେ ଚିତା ପ୍ରସ୍ତୁତ କରନ୍ତୁ ।

ହରିଶ୍ଚନ୍ଦ୍ର—(ନିକଟରୁ କାଷ୍ଠାହରଣ ଓ ଅଗ୍ନି ଉଦ୍ଦୀପନ) ପ୍ରିୟେ ଶୈବ୍ୟା ! ଆସ, ଇହଜନ୍ମର ଭେଟ ସାଙ୍ଗ କରିଦେବା । ଆଉ କ ପ୍ରୟୋଜନ ?

ଶୈବ୍ୟା—ଦୀନବନ୍ଧୁ ! କେତେ ଆଶା ଥିଲା—ଅକାଳେ ସବୁ ଶେଷ । ନାଥ ! ଚାଲ (ତିନିବାର ଅଗ୍ନି ପ୍ରଦକ୍ଷିଣ କରି ପୁତ୍ରକୁ ଅଗ୍ନିକୁ ନେବାର ଉଦ୍ୟମ ଓ ଶବ ଅଗ୍ନି ନିକଟ ଥୋଇ ଡେଇଁ ପଡିବାକୁ ଉଦ୍ୟତ)

(ହଠାତ୍ ଚଣ୍ଡାଳ ପ୍ରବେଶ)

ଚଣ୍ଡାଳ—(ଦୂରରୁ) ଶାନ୍ତ ହୁଅ ମହାରାଜ ! ଶାନ୍ତ ହୁଅ, ଶାନ୍ତ ହୁଅ···(ଧାଇଁଆସି ହସ୍ତ ଧାରଣ) (ବିଶ୍ୱାମିତ୍ର ଓ ଶୈବ୍ୟାର କ୍ରେତା ବ୍ରାହ୍ମଣର ପ୍ରବେଶ)

ଉଭୟେ—ଶାନ୍ତହୁଅ । ଶାନ୍ତ ! ଶାନ୍ତ ! ଶାନ୍ତ !

(ଚଣ୍ଡାଳ ହସ୍ତ ଛାଡ଼ି ଦଣ୍ଡାୟମାନ)

ହରିଶ୍ଚନ୍ଦ୍ର—(ଶୋକ ଗଦ୍‌ଗଦ ସ୍ୱରରେ) ତପୋଧନ ! ଆପଣଙ୍କର କଣ ଆହୁରି ଯାତନା ଦେଖିବାକୁ ବାକିଅଛି ? ରାଜପଦ, ରାଜଭୋଗ, ସମସ୍ତ ହରାଇ ପରିଶେଷରେ ଚଣ୍ଡାଳ ବେଶ, ଚଣ୍ଡାଳର ଦାସତ୍ୱ, ଚଣ୍ଡାଳର କର୍ମ; ଆଉ ରାଜରାଣୀ ଶୈବ୍ୟା ପରାନ୍ନପାଳିତା ଦାସୀ । ଆଉ, ଆଉ, ବିଷ ବିଦୀର୍ଣ୍ଣ ହୁଏ, କଣ କହିବ ?—ଓଃ ଏହି ସମ୍ମୁଖରେ—ଏ ଦଗ୍ଧ ଜୀବନହ୍ୱଦୟର ଆଶାତରୁ କୁମାର ସର୍ପାଘାତ ଦଂଶିତ । ନା, ଗୁରୁ, ମୋର ଆଉ କ ପ୍ରୟୋଜନ ? ଶେଷରେ ମୋ କାର୍ଯ୍ୟ ମୋତେ ଟିକିଏ ସୁଖରେ କରିବାକୁ ଦିଅନ୍ତୁ । କ୍ଷମା ଦିଅନ୍ତୁ । କ୍ଷମା କରନ୍ତୁ ।

(ପଦତଳେ ପତନ)

(ବିଶ୍ୱାମିତ୍ର ହରିଶ୍ଚନ୍ଦ୍ରଙ୍କୁ ଉଠାଇ ନେଲେ)

ବିଶ୍ୱାମିତ୍ର—ଶାନ୍ତ ହୁଅ ମହାରାଜ !

ଚଣ୍ଡାଳ—ହରିଶ୍ଚନ୍ଦ୍ର ! ତୁମ୍ଭେ କ୍ରୀତଦାସ ସତ୍ୟ । କିନ୍ତୁ କାହାର କ୍ରୀତଦାସ ? ଚଣ୍ଡାଳର ? ନା—ନୁହେଁ । ଧର୍ମ ଏଡ଼େ ନିର୍ମମ ନୁହେଁ ଯେ, ତୁମ୍ଭଙ୍କୁ ଚଣ୍ଡାଳର କ୍ରୀତଦାସ କରିବ । ଦେଖ ହରିଶ୍ଚନ୍ଦ୍ର ! ଭଲକରି ଚିହ୍ନ । ମୁଁ ଅଗ୍ନି । ତୁମ୍ଭଙ୍କୁ ପରୀକ୍ଷା କରିବା ନିମିତ୍ତ ଆବିର୍ଭୂତ । ଆଉ ବିଶେଷ ସୁଖୀ ହେଲି, ତୁମ୍ଭେ ଅକାତରେ ସେ ଯେ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ । ତୁମ୍ଭପ୍ରତି ଅନେକ କଠୋର ବ୍ୟବହାର କରିଛୁ । କ୍ଷମାଦେବ ।

ହରିଶ୍ଚନ୍ଦ୍ର—(ପ୍ରଣାମ କରି) ଦେବ ! ପ୍ରଣାମ ଚରଣେ । ଦାସ ନ ଜାଣି ଚରଣରେ ଅପରାଧୀ; କିନ୍ତୁ ପ୍ରଭୁ ! ପୁଷ୍ପହୀନ, ଫଳହୀନ ତରୁର ଆଉ କ ପ୍ରୟୋଜନ ' ସମ୍ମୁଖରେ ଓହୋ ହୋ··· (ଲୋତକ ମୁଞ୍ଚନ)

ବିଶ୍ୱାମିତ୍ର—ଶାନ୍ତ ହୁଅ, ଏଥି ଲାଗି ଚିନ୍ତା କର ନାହିଁ । ଏ ସମସ୍ତ ତୁମର ଧର୍ମ ନିଷ୍ଠାର ପରୀକ୍ଷା ମାତ୍ର । (ଶାନ୍ତିଜଳ ସେଚନ)

ରୋହିତ—(ନିଦ୍ରାରୁ ଉତ୍‌ଥିତ ପ୍ରାୟ) ମାମା ! ମାମା ! ଏ କିଣ ? ମୁଁ କେଉଁଠି ? ମାମା ! ବାବା !

ରାଜା ଓ ରାଣୀ—( ଉଭୟେ କୋଳକୁ ନେଇ ) ବାବା ! ଆଉ ଥରେ—ଆଉ ଥରେ ଡାକ ! ଆଉଥରେ ଡାକ ବାବା ! (ମୁଖ ଚୁମ୍ବନ)

ବ୍ରାହ୍ମଣ—ହରିଶ୍ଚନ୍ଦ୍ର ! ମା ଶୈବ୍ୟା ! ମୁଁ ମଧ୍ୟ ତୁମର ପରୀକ୍ଷା ନିମନ୍ତେ ଆସିଥିଲି । ମୁଁ ଧର୍ମ । ବଡ଼ ପ୍ରୀତ ହୋଇଅଛି । ମା ! ତୋ ପ୍ରତି ଓ ତୋ'ର ସ୍ନେହର ରୋହିତ ପ୍ରତି ଏ ବ୍ରାହ୍ମଣ ବଡ଼ ନିଷ୍ଠୁର ବ୍ୟବହାର କରିଛି । କ୍ଷମା ଦିଅ ମା ! ଧର୍ମ ଆଜି ତୁମର ଅଟଳ ନିଷ୍ଠାରେ ମୁଗ୍ଧ ।

(ହରିଶ୍ଚନ୍ଦ୍ର, ଶୈବ୍ୟା ଓ ରୋହିତର ପ୍ରଣାମ କରଣ)

ବିଶ୍ୱାମିତ୍ର—ହରିଶ୍ଚନ୍ଦ୍ର ! ମୁଁ ଅତ୍ୟନ୍ତ ଆନନ୍ଦ ଉପଭୋଗ କରିଛି । ମୋପରି ନୃଶଂସ ବ୍ୟବହାର କେହି କରିନାହିଁ କିମ୍ବା କରିବ ନାହିଁ, କିନ୍ତୁ ପରିଶେଷରେ ବିଶ୍ୱାମିତ୍ର ପରାଜିତ; ତାଙ୍କୁ କ୍ଷମା ଦିଅ । ଧର୍ମର ଅଗ୍ନି ପରୀକ୍ଷା ନିମିତ୍ତ ଏ ସମସ୍ତ ମୋର କାର୍ଯ୍ୟ । ବଡ଼ ପ୍ରୀତ ହେଲି । ଯାଅ, ଉତ୍କଣ୍ଠିତ ପ୍ରଜାମାନଙ୍କୁ ପୁଣି ପିତୃସ୍ନେହରେ ଅଭିଷିକ୍ତ କର । ଆଉ ମୋର ତପର ଧର୍ମ ବଳରେ ତୁମ୍ଭେ ଓ ତୁମ୍ଭ ପତ୍ନୀ ଉଭୟେ ଦୀର୍ଘାୟୁ ଲାଭକରି ସ୍ୱଦେହେ ସ୍ୱର୍ଗବାସ କର । ତୁମର ତ୍ୟାଗ, ତୁମର ନିଷ୍ଠା, ତୁମର ସତ୍ୟ ରକ୍ଷା ବଳରେ ତୁମେ ବିଶ୍ୱାମିତ୍ରର ହୃଦୟ ଜୟ କରିଅଛ ।

ଅଗ୍ନି—ସାଧୁ ! ସାଧୁ ! ସାଧୁ ! ବିଶ୍ୱାମିତ୍ର ।

ଧର୍ମ—ଏହି ଯେ ବିଶ୍ୱାମିତ୍ରଙ୍କ ପରି ସାଧୁ ହୃଦୟର ପରାଭବ ସ୍ୱୀକାର । ସାଧୁ ବିଶ୍ୱାମିତ୍ର ।

ବିଶ୍ୱାମିତ୍ର—ଧର୍ମ ! ଲଜ୍ଜା ନାହିଁ ? ପରାଭବ ? କାହା ନିକଟରେ ପରାଭବ ? ବିଶ୍ୱାମିତ୍ର ତ୍ରି-ଜଗତରେ କାହାରିଠାରୁ ପରାଜୟ ସ୍ୱୀକାରକରିନାହିଁ । ଧର୍ମର ଏହା ପରୀକ୍ଷା ମାତ୍ର ।

ଧର୍ମ—ଧର୍ମ ନିକଟରେ ପରାଭବ ମାନହାନିର ଲକ୍ଷଣ ନୁହେଁ । ବିଶ୍ୱାମିତ୍ର; ତୁମ୍ଭ ତପଃର ଧର୍ମବଳରୁ ଆଜି ହରିଶ୍ଚନ୍ଦ୍ର ସସ୍ତ୍ରୀକ ଅକ୍ଷୟ ସ୍ୱର୍ଗବାସୀ । କାରଣ ବିଶ୍ୱାମିତ୍ର ପରମ ଧାର୍ମିକ । ବ୍ରହ୍ମଚ୍ଛେଦ-ତୁଚ୍ଛକାରୀ ରାଜରାଣୀର ପତିଭକ୍ତିରେ ବାରବାର ମୋହିତ ଓ ସ୍ତମ୍ଭିତ ହୋଇ ମୃତବତ୍ସର ଜୀବନ ଦାନ କଲ—ତୁମ୍ଭେ ଧର୍ମର ମର୍ଯ୍ୟାଦା ବୁଝିଛ । ହରିଶ୍ଚନ୍ଦ୍ରଙ୍କର ରାଜଭୋଗ ଛଡ଼ାଇ ଘୋର କଷ୍ଟ-ସହିଷ୍ଣୁ କରାଇ ତାଙ୍କର ଧର୍ମବଳ ପରୀକ୍ଷା କରିଛ; କାରଣ ତୁମ୍ଭେ ଧର୍ମର ଦାମ୍ଭିକ ନାୟକ ଆଉ ପରିଶେଷରେ ମୁକ୍ତକଣ୍ଠରେ ଧର୍ମ ନିକଟରେ ପରାଭବ ସ୍ୱୀକାର କଲ, କାରଣ ତୁମ୍ଭେ ବ୍ରହ୍ମର୍ଷି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏକ ମୁଖରେ ଆଜି ବ୍ରହ୍ମର୍ଷି ବିଶ୍ୱାମିତ୍ରଙ୍କର ଜୟଗାନ କରେ ।

ଅଗ୍ନି—ବ୍ରହ୍ମର୍ଷି ବିଶ୍ୱାମିତ୍ର । କଠୋର ତପସ୍ୟା ବଳରେ ତୁମ୍ଭେ ଆଜି ବ୍ରହ୍ମଦର୍ଶୀ । ତୁମ୍ଭେ ଆଉ ରାଜର୍ଷି ନୁହେଁ । ହରିଶ୍ଚନ୍ଦ୍ରଙ୍କୁ ପରୀକ୍ଷା କରିଛ, ସେ ତାଙ୍କର ଭାଗ୍ୟଲିପି । ପରମ-ଧାର୍ମିକ ରାଜଦମ୍ପତି କେବଳ ଯେ ରାଜ-ଐଶ୍ବର୍ଯ୍ୟ, ରାଜଭୋଗ, ପରିତ୍ୟାଗ କରିଛନ୍ତି ତାହା ନୁହେଁ । ଦୀନହୀନ ଭାବରେ ନିଜର ଧର୍ମନିଷ୍ଠାର ଚୂଡ଼ାନ୍ତ ପରୀକ୍ଷା ଦେଇ ସେମାନେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏ ପରୀକ୍ଷାର ନିମିତ୍ତ ମାତ୍ର ଆପଣ ସିନା । ଏଥି ଲାଗି ଦୁଃଖ କରିବାର କିଛି ନାହିଁ । ଆପଣ ଧର୍ମଧ୍ୱଜା-ଧାରୀ ପରମ ସାଧକ । ଆଉ ମହାରାଜ ହରିଶ୍ଚନ୍ଦ୍ର ଧର୍ମ ନିକଟରେ, ଅଗ୍ନି ନିକଟରେ ପରୀକ୍ଷିତ । ଏ ସମସ୍ତ ସତ୍ୟର ମୂଳରେ ବିଶ୍ୱାମିତ୍ରଙ୍କର ପବିତ୍ର ମନୋବୃତ୍ତି ପରିସ୍ଫୁଟ । ତେଣୁ ତ୍ରିପୁରରେ ଆଜି ବିଶ୍ୱାମିତ୍ର ରାଜର୍ଷି

ନୃହନ୍ତି, ସେ ଧାର୍ମିକପ୍ରବର ବ୍ରହ୍ମର୍ଷି ରୂପେ ପ୍ରତିଷ୍ଠିତ ।

ବିଶ୍ୱାମିତ୍ର—(ଅବନତ ମସ୍ତକରେ) ସତ୍ୟ । ସତ୍ୟ । ସତ୍ୟ ! ବିଶ୍ୱାମିତ୍ର ମୁକ୍ତକଣ୍ଠରେ ସ୍ୱୀକାର କରେ ଧର୍ମ ଅଛି, ଧର୍ମର ବଳ ଅଛି । ଧର୍ମର ପ୍ରଭାବ ଅଛି ।

**ଯତୋଧର୍ମ ସ୍ତତୋଜୟଃ ।**

(ସମସ୍ତେ ଉଚ୍ଚକଣ୍ଠରେ)—

ଦାନବୀର ହରିଶ୍ଚନ୍ଦ୍ରଙ୍କର ଜୟ !

ଧର୍ମବୀର ହରିଶ୍ଚନ୍ଦ୍ରଙ୍କର ଜୟ ।

**ଧର୍ମୋରକ୍ଷତି ଧାର୍ମିକଂ ।**

( ଯବନିକା ପତନ )



୯

## ୧୯୩୭ ସାଲକଥା

'ପ୍ରତିଶୋଧ' ମୋର ପ୍ରଥମ ସାମାଜିକ ନାଟକ ଲେଖା । ସେତେବେଳକୁ ମୋର 'ସାକ୍ଷୀଗୋପାଳ ନାଟ୍ୟ ସଙ୍ଘ' ନାମକ ରାସଦଳର ବନବିହାର, ପ୍ରୀତିସୁଧାକର, କଣେଇ ଚମ୍ପୂ ଓ ଗୀତଗୋବିନ୍ଦ ପ୍ରଭୃତି ଗୀତ ବହୁଳ ନାଟକମାନ ଅଳ୍ପବୟସ୍କ ବାଳକମାନଙ୍କଦ୍ୱାରା ଅଭିନୀତ ହେଉଥାଏ । ହଠାତ୍ ଦିନେ ଗୋଟିଏ ସାମାଜିକ ନାଟକ ଲେଖିବାକୁ ମନହେଲା । ଲେଖିଲି ଏଇ ପ୍ରତିଶୋଧ ନାଟକଟି । ବାଙ୍କାବଜାରରେ ୬ଅଳ୍ପିଆଁଙ୍କ ଘର ପାଖେ ଏ ନାଟକ ପାଲଟଣା ଓ ପାଲଘେରା ଏକ ରଙ୍ଗମଞ୍ଚରେ ଅଭିନୀତ କରାଇଲି ସେହି ମୋର ବାଳକ କଳାଶିଳ୍ପୀମାନଙ୍କୁ ନେଇ । ସେଥିରେ ଯୋଗ ଦେବାକୁ ଡାକିଲି ମୋର ଅନ୍ତରଙ୍ଗ ବନ୍ଧୁ ସାଧୁବାବୁଙ୍କୁ । ନିମାଇଁ ସିଂହ ଓ ମହେଶ୍ୱର ପଣ୍ଡା ପ୍ରଭୃତିଙ୍କୁ ଯୋଗ ଦେବା-ପାଇଁ ଡାକିଲି ମଧ୍ୟ । ପରୀକ୍ଷାମୂଳକ ଭାବେ ଏ ନାଟକ ପରଖିବାକୁ ବସିଥାଏଁ । ନାଟକ ଏବଂ ଅଭିନୟ କିନ୍ତୁ ଲୋକରେ ଆଦର ପାଇଲା । ଏହି ନାଟକଟି ଭୂରି ରାତି ଅଭିନୀତ ହେଲା । ଏହାର ପରେ ପରେ ରାସଦଳ ଭାଙ୍ଗି, ଓଡ଼ିଶାରେ ଥିଏଟର ଗଢ଼ିଲି । ଗୋଟାଏ କିଛି ନୂଆ କରିବାର ଅଭିଳାଷ ମୋର ସବୁଦିନେ ଥାଏ । 'ପ୍ରତିଶୋଧ' ନାଟକ ମୋତେ ସାମାଜିକ ନାଟକ ଲେଖିବାରେ ସାହସ ଦେଇଛି । ପରୀକ୍ଷା କରୁଥିଲି, ମୋଦ୍ୱାରା ସାମାଜିକ ନାଟକ ଲେଖି ହେବ କି ନାହିଁ ।

—କାଳୀଚରଣ

## ପ୍ରତିଶୋଧର ଶିଳ୍ପୀବୃନ୍ଦ

### ପୁରୁଷ

ବାସୁଦାସ—ଶ୍ରୀ ସାରଦା ପ୍ରସନ୍ନ ଦଳବେହେରା (ସାଧୁବାବୁ) [ପ୍ରଥମରାତି]
—ଶ୍ରୀ ନିମାଇଁ ଚରଣ ସିଂହ [୨ୟ ରାତି]
ଗୁଣ—ଶ୍ରୀ ଦୁର୍ଲ୍ଲଭ ଚନ୍ଦ୍ର ସିଂହ    ବାଙ୍କ—ଶ୍ରୀଦୀନବନ୍ଧୁ ଦାସ (ଟୀମା)
ରମୁ—ଶ୍ରୀ ଲୋକନାଥ ସିଂହ    ଅବଧାନ—ଶ୍ରୀ ମହେଶ୍ୱର ପଣ୍ଡା
ମଦନ— ଧଡ    ଗ୍ରାମବାସୀ—ସୁଶୀଲ ଓ ଫକା

### ସ୍ତ୍ରୀ

କୁସୁମ—ହରିହର ରାଉତ (ପ୍ରଥମ ରାତ୍ର)    —ଲକ୍ଷ୍ମୀ (ଦ୍ୱିତୀୟ ରାତ୍ର)
ମାତା—ବାଞ୍ଛାନିଧି ସାହୁ (ପ୍ରଥମ ରାତ୍ର)    —ମେନା (ଦ୍ୱିତୀୟ ରାତ୍ର)

# ପ୍ରତିଶୋଧ

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

(ମାତାର କୁଟୀର--ଠାକୁରଙ୍କୁ ବେଶ କରୁଥିଲେ ମାତା)

(ଗୀତ)

ନନ୍ଦକୁଳ-ଚନ୍ଦ୍ର ! ଆସ ଶିଖି ପୁଚ୍ଛଧାରୀ
ଆସ ନୟନମଣି ଜୀବନଧନ କାନନଚାରୀ ।୦।
ଆରକ୍ତ ଧେନ, ମିନତି ଧେନ
ଜୀବନ ଯଉବନ ମୋ ଧେନ
ଘନବରନ ମନମୋହନ ଗୋପୀ ମାନହାରୀ ।୧।
ଯମୁନା ତଟ ବଂଶୀବଟ-
ନିକଟ ବନ ନଟନ ଶଠ
କପଟ ନଟବର ମୁକୁଟ କପଟ କଂସାରୀ ।୨।

(ଗୀତ ମଝିରେ ଗୁଣ ଆସି ଥରକୁ ଥର ମାତାକୁ ଦେଖୁଥିଲେ—ମାତାର ଅଲକ୍ଷରେ, ରମୁ ଆସିଲା—ମାତାଙ୍କୁ ଡାକନ୍ତି ସେ)

ରମୁ—ମାତା ମା ! ବୋଉ ଡାକୁଛି ।

ମାତା—(ଫେରି ଚାହିଁ) ରମୁ କରେ ! ବୋଉ ଡାକୁଛି ?

ରମୁ—ହଁ ।

ମାତା—କାହିଁକରେ ? ମୁଁ ତ ଠାକୁର ପୂଜାସାରିନେଇଁ, ଭୋଗ ବସେଇନେଇଁ, ଆଚ୍ଛା ଚାଲ—ଶୁଣିଆସେଁ ।
(ଉଠିଲେ)

---

## ଦ୍ୱିତୀୟ ଦୃଶ୍ୟ

(ପଥ । ଭିଖାରୁଣୀଟିଏ ଗୀତ ଗାଇ ଗାଇ ଓ କନ୍ଥା ଶିଲାଇ କରି କରି ଯାଉଛି)

(ଗୀତ)

ମୋର ମୋର ବୋଲୁ ତୋର କେ ରେ ? ।୦।
ଯେତେଦିନ ଗୃହ ରଥ କରୁଥିବ ବୋଲ
ପୁଅ ନାତି ଭାଇ ବନ୍ଧୁ ଲାଗିଥିବେ ଗୋଲ,
ବଳ ଗଲେ ଗଣୁଥିବୁ ଚୁଅ ଶେଣୀ ଘରେ । ୧ ।
ମୃଷା ଏକାଦଶୀ ଲାଗି ଘରେ ନାହିଁ ଧାନ
କଳୁଷି ହେଲେ ନ ମିଳେ ଦାମୁଡ଼ିଏ ଦାନ
ହଂସା ଉଡ଼େ, ଦାନା ଝଣା ଆଖି ପାଣି ଝରେ । ୨ ।
(ଗୀତ ଗାଇ ଗାଇ ଚାଲିଗଲା)

---

## ତୃତୀୟ ଦୃଶ୍ୟ

(ବାସୁଦାସଙ୍କ ଘର । ଡିଆଡ଼ିଏ ଖାଇବସିଥିଲେ; ପତରେ ଆଉ ବେଶି କିଛି ନ ଥିଲା—ପାଖରେ ଥିଲା ଗୁଣ)

ଗୁଣ—କିଛି ହେଲାନାହିଁ ଡିଅଡ଼ିଏ, ବହୁତ କଷ୍ଟରେ ତ ବାସୁଦାସଙ୍କୁ ମଙ୍ଗେଇ ଏତକ ହେଲା ।

ଡିଆଡ଼ି—ନାଇଁ ମନ୍ଦ କଅଣ ? ତାଙ୍କର ତ କରିବାର କଥା । କିଓ, ସେ ହେଲେ ତାଙ୍କର ପ୍ରଥମ ସ୍ତ୍ରୀ—ଲକ୍ଷ୍ମୀ । ତାଙ୍କ ଶ୍ରାଦ୍ଧ—ଏଥିରେ···

ଗୁଣ—ହଁ, ଏଥିରେ ତ ମୂଳରୁ ନାସ୍ତିକ, ବୋଇଲେ—ମଲା, ଗଲା; ତା'ର ପୁଣି ଗୋଟେ ଶ୍ରାଦ୍ଧ କ'ଣ ? ସେ କଅଣ ଆସି ଦେଖୁଛି ? ପାଞ୍ଚ ପୁର ଛଅ ସାଲ ଚାଲିଲା ଆଜିକି ଛିଆଡ଼ଏ, ଖାଇବାକୁ ନପାଇ ମରୁଛି ଭଉଣୀ ମୋର—ଯାର ଯୋଗୁଁ ।

ଛିଆଡ଼ୁ—ଆଉ ସେଗୁଡ଼ା ମନେ କରନ୍ତୁ ନାହିଁ ଗୁଣ ସାଆନ୍ତେ ! ଯାଆନ୍ତୁ, ଯାଆନ୍ତୁ—ଉଠନ୍ତୁ । ଚାରିଛଅ ଖଣ୍ଡ ପୁରି ଆଉ ଟିକଏ ଖିର ଆଣିଲେ ।

ଗୁଣ—ହଉ, (ଉଠିଗଲେ)

(ଛିଆଡ଼ଏ ଖାଉ ଥାଆନ୍ତି—ଆସିଲେ ବାସୁଦାସ)

ବାସୁ—କ'ଣ ସରନାହିଁ କି ପୁରେହିତେ ?

ଛିଆଡ଼ୁ—ନାହିଁ, ସରିଲା ଆମର ।

(ଗୁଣ ପୁରି ନେଇ ଆସିଲେ)

ବାସୁ—ଆରେ ଆରେ, ସେ କଅଣରେ ?

ଗୁଣ—ପୁରି ।

ବାସୁ—ପୁରି ? ଏତେ ପୁରି କଣ ହବ ରେ ? ଖାଇବ ବୋଲି ତ ଆଉ ଗିଳିବ ନାହିଁ । ଲୋକଟାକୁ ରୋଗୀ କଲେ କ ଣ ଫଳ ? ଯେତିକି ପେଟ ନାଁ—ସେ କଣ ଆଉ ଖାଇ ପାରିବେ ତାଙ୍କୁ ଦଉଚ ? ମିଛଟାରେ ନଷ୍ଟ ହେବ ଜିନିଷ । ଯା, ନେଇ ଯା—ଆଉ ବଙ୍କୁ ! ଆଣ—ପାଣି ଆଣ, ଆସନ୍ତୁ ଛିଆଡ଼ଏ । ଏଣେ ଧୋଇବେ ମୁହଁ ।

ଛିଆଡ଼ୁ—(ଉଠି) ଚାଲନ୍ତୁ ।

ବାସୁ—ବାଙ୍କୁକୁ ଡାକଦେ—ପତରଟା ନେଇଯାଉ ।

(ଛିଆଡ଼ୁ ଓ ଦାସେ ଗଲେ)

ଗୁଣ—ଜୀଅନ୍ତାରେ ନ ଖାଇ ମରିଚି ସେ—ତା ଶ୍ରାଦ୍ଧରେ ମଧ୍ୟ ଜଣେ ବ୍ରାହ୍ମଣଙ୍କୁ ମୁଠେ ପେଟ ପୂରାଇ ଦେଇ ହେଲାନାହିଁ, ଏତେ ଧନ ଥାଇ ! ଅପା ମରି ସ୍ୱର୍ଗରେ ଭୁ । ଅପା ! ଶପଥ କରୁଛି ଯାର ପ୍ରତିଶୋଧ······

(ଆଖି ଛଳଛଳ ହୋଇଗଲା)

---

## ଚତୁର୍ଥ ଦୃଶ୍ୟ

(ଦାଣ୍ଡ ମେଲା । ଚାଟଶାଳୀ ପିଲାଏ ଆସି ପାଠପଢ଼ି ବସିଲେ । ଅବଧାନେ ନ ଥିଲେ । କେତେଜଣ ପିଲା ବାଟି ଖେଳିବାରେ ଲାଗିଲେ)

ବଡ଼ଚାଟ—(ବେଗେ ଆସି, ଟିକଏ ଧମକେଇବାପରି) ଲାଗିଗଲ ସବୁ ବାଟି ଖେଳରେ ? ଆହ୍ୱାନେ ଆସନ୍ତୁ ଆଜି । ନାକବାଲ ଧରେଇବ ସମସ୍ତଙ୍କୁ ।

(ପିଲାମାନେ ପାଟିକରି ପଢ଼ି ବସିଲେ)

୧ମ—( ବଡ଼ଚାଟ ପ୍ରତି ) ମଧୁଆଇ, ଦେଖିଲ ଏଇ ଅଙ୍କଟା । (କାନରେ କଣ କହିଲା)

ବଡ଼ଚାଟ—ହଁ; (ଆଉ ଜଣକୁ) କରେ ! ଆହ୍ୱାନେ ତୋତେ ମଡ଼ୁଆ ଶାଙ୍କୁଳୀ କରି ଯାଇଥିଲେ ପରା ? ମଉଜରେ ବସି ଯାଇଛୁ ନାଁ ? ଆଗୁ, ଆଗୁ ।

(ପିଲାଟି ମଡ଼ୁଆ ଶାଙ୍କୁଳୀ କରିଲା)

୨ୟ—( ପେଟଚିପି ) ମଧୁଆଇ, ଦୁଇ—

ବଡ଼ଚାଟ—ନାହିଁ, ଆହ୍ୱାନେ ଆସନ୍ତୁ ।

୨ୟ—ଉହୁଁ, ଘର ଦୁଇ—ଲୁଗା ମାରା ହେଇଯିବ ।

ବଡ଼ଚାଟ—ତେବେ ଚୁପ ପକେଇ ଯା । ଚୁପ, ଶୁଖି ନ ଥିବ ଆସିବୁ । ନଇଲେ ଜାଣିଚୁ ତ ଆହ୍ୱାନଙ୍କ ପାଣି ବେତର କରାମତି ?

( ପିଲା ଚାଲିଗଲା )

ବଡ଼ଚାଟ—(ପଛରୁ ଡାକି) ଏ ରଘୁଆ, (ପିଲା ଫେରିଲା) ଦି' ଖଣ୍ଡ ଦୋକତା ଆହ୍ୱାନଙ୍କ ପାଇଁ ଆଣିଥିବୁ । ଆଉ, ମୋ ପାଇଁ ଗଣ୍ଡେ—(ଠାରିବା)

ରଘୁ—(ହସି) ଚିନାବାଦାମ ନାଁ ? ହଁ ଆମ ମେଲାରେ ଶୁଖୁଛି । ମା ନଥିବ କି, ଅଣ୍ଟିଏ ଆଣିଦେବି ।

ବଡ଼ଚାଟ—ହଉ ଯା ।

( ରଘୁ ଚାଲିଗଲା )

ବଡ଼ଚାଟ—ଆସ ପିଲାଏ ! ଗୋପୀଭାଷା ପଢ଼, ଆହ୍ୱାନଙ୍କ ଆସିବା ବେଳ ହେଲାଣି ।

(ସମସ୍ତେ ଏକାଠି ଗୋଲ ବୁଲି ବସିଲେ-ଜଣେ ପିଲା ଗାଇଲା ଆଉମାନେ ପାଳଧରିଲେ। )

କୃଷ୍ଣ କଥାଭାଳ ଗୋପୀ ସକଳ
ଗୁଣ ସୁମରି ହୁଅନ୍ତି ବିକଳ।
କାହୁଁ ଦାରୁଣ ଅକ୍ରୂର ଅଇଲା
କଂସ ଆଜ୍ଞା ବୋଲି ଘୋଟେ କହିଲା।
କୃଷ୍ଣ ଆସିବେ ବୋଲି ଗଲେ ଭଣ୍ଡି
ତାହା ଜାଣିଲେ କପାଁ ଦ୍ୟନ୍ତି ଗୁଡ଼ି।"

---

## ପଞ୍ଚମ ଦୃଶ୍ୟ

(ଗ୍ରାମପଥ । ବାସୁଦାସଙ୍କ ପୁଅ ରମା ଥାଳିଟିରେ ଅବଧାନଙ୍କ ଲାଗି ସଞ୍ଜା ନେଇ ଆସିଲା)

ବାସୁ—(ପଛରୁ ଡାକଲେ) ରମା, ରମା ! (ରମା ଅଟକିଗଲା—ବାସୁଦାସେ ଆସି ସଞ୍ଜା ଉପରୁ ଘୋଡ଼ଣୀ ଖୋଲି ଦେଖିଲେ) ଓହୋ । ହଇ ରେ, ରମା ! ଅବଧାନେ କେଇଜଣ କରେ ? ବାପ ବଡ଼ ଶିକ୍ଷା ପାଇଲା ପୁଅ ! ଏ ଦଶଜଣଙ୍କ ପାଇଁ ସଞ୍ଜା ବାଢ଼ି ଦେଇଛୁ କଏ ?

ରମା—ବୋଉ !

ବାସୁ—(ଖତାଇ ହୋଇ) ବୋ-ଉ- ? ହଁ, ଆଉ ପୁଣି କଏ ? ରାଣୀ ଘରର ଝିଣ୍ଟ୍ରିଅ । ବୋପା ଅଜା କାଳରେ ତ ସମ୍ପତ୍ତି ଦେଖିନାହିଁ, ଏଠି ଆସି ଧନ ଦୌଲତ ଦେଖି ଉଜାଡ଼ିକରି ଦେବାରେ ଲାଗିଛି । ଆରେ, କେତେ କଷ୍ଟରେ ମୁଣ୍ଡଝାଳ ଗୋଡ଼ରେ ମାରି ...ଧନ କୋଉଠୁ ଆସେ—ସେ ଜାଣିବ କାହୁଁ ? ହୁକୁମ ଚଲେଇବାରେ ଅଛି—ରାଣୀ ହୋଇଛି ! ଦିଶିଥିବ ପକ୍ଷ ବୋଲି କ'ଣ ମୁଣ୍ଡ କିଣିଛି ମୋର ? ଆଣ, ଆଣ—ଥୁଅ, ଏଣିକି ଆ (ରମା ସବୁରଖିଲା, ବାସୁଦାସ ନିଜ ହାତରେ ସବୁଥିରୁ ବେଶୀ ବେଶୀ କାଢ଼ି ମୁଠାଏ ଚାଉଳ ଓ ଅଳ୍ପ ଡାଲି ଇତ୍ୟାଦି ରଖିଦେଇ କହିଲେ) ନେଇଯା' । ହାରେ, ଖାଉଥା ଖଡ଼ା ଅବଧାନଙ୍କୁ ମିଳୁନଥିବ, କ'ଣନା—କଞ୍ଚା କଦଳୀ, ଆଳୁ, ଚା' ସାଙ୍ଗକୁ ବଡ଼ି—ବାଃରେ, ସବୁ ଘର ଲୁଟି ପଡ଼ୁଛି ମୋର—ନାଁ ? ଯାଯା — ପାଠ ପଢ଼ି ବାକି ପୁଅ ଯୁଗ ଓଲଟେଇ ପକେଇବ ? ଆଜି କାଲି ତ କେତେ ଓକିଲ, କେଡ଼େକେଡ଼େ ପାଠୁଆ କାଣୀକଉଡ଼ିକ ଦାନ୍ତ ନକୁଟେଇଲେଣି । ମା' କହୁଛି ପୁଅ ପାଠ ପଢ଼ିବ । ଶିଳ ଶିଳୁପଟା ଗଗନେ ଉଡ଼ୁଛନ୍ତି—ଶିମିଳି ତୂଳା କହୁଛି ମତେ ରଖ ! ଏଣିକି ଘରୁ ସଞ୍ଜା ଆଣିଲା ବେଳେ ମତେ ଦେଖେଇ କରି ଆଣିବୁ । (ରମୁ ଚାଲିଗଲା) ଓହୋ ! ଦେଖ ! ମୁଁ ଦେଖିବି ବୋଲି ବାଉପଟେ ପୁଅକୁ ପଠେଇଚ । ଆରେ, ମୋର ତ ଆଗପଛ ଚାରିଟା ଆଖି, ଇଏ କ'ଣ ମୋ'ଠାରୁ ବେଶୀ ଚତୁର ପଡ଼ିବ ? (ଚାଲିଗଲେ)

(ମଞ୍ଚ ଅନ୍ଧକାର ହୋଇଗଲା ଓ କିଛିକ୍ଷଣ ପରେ ଆଲୋକ ଜଳି ଉଠିଲା । ଦେଖାଗଲା ପିଲାମାନେ ଯୋରରେ ପାଠ ପଢ଼ୁଛନ୍ତି ରମା ପହଞ୍ଚିଲା ସଞ୍ଜା ଧରି-ସଞ୍ଜା ରଖିଦେଇ ପଢ଼ି ବସିଲା )

ଅବଧାନ—(ମଧୁପ୍ରତି) ମଧୁ, ସ୍ୟାଙ୍କୁ ସବୁ ସନ୍ଥ ଦେଇଚୁ ?

ମଧୁ—ଆଜ୍ଞା ।

ଅବ—ଆଜି ପାଳି ?

ମଧୁ—ମହାଜନ ଘର ।

ଅବ—ହଉ, ଭଲ । ଆଜି ଜାଣି ବୁଢ଼ା ଅବଧାନେ ମୁଠାଏ ସୁଖରେ ଖାଇବେ । କାହିଁରେ ରମା । ସଜ ଦେଖେଁ (ରମା ଥାଳ ଆଣି ଦେଲା ଓ ଅବଧାନେ ଦେଖି) କରେ ରମା ? ମୁଠାଏ ଚାଉଳ, ଚମୁଟେ ଡାଲି—ଯୋଡ଼ାଏ ପରିବା ? ସ୍ୟାଙ୍କୁ ମନଷ ଖାଇବେ ନା ପିମ୍ପୁଡ଼ି ଖାଇବେ ରେ ? ଏଠି ତ ସବୁ ଆଉ ଆଉ ରକମ ଥିବା ପରି ଲାଗୁଚି । ହେଇଟି ଘିଅ ଟିକ କଏ ପୋଛି ନେଇଚ । କଣ କଲୁ ? ବାଟରେ ପକେଇ ଦେଇ ଆସିଲୁ କରେ ?

ରମା—ନାଇଁ ଆଜ୍ଞା ପକେଇ ନାହିଁ ।

ଅବ—ଆଜ କଏ ସଞ୍ଜା ବାଡିଚ ?

ରମା—ବୋଉ !

ଅବ—ଆଉ କେବେ ତ ଏମିତ ହେଇନାଇଁ—ଆଜ ଏ କଣରେ ? ଅମେ କଣ ଉପାସ ରହିବୁଁ ଆଜ ? କରେ, ବୋଉ କଣ ଦିନକୁ ଦିନ ଭବ୍ୟ ପଣିଆ ଶିଖୁଛନ୍ତି କ ?

ରମା—ନାଇଁ ଆଜ୍ଞା ! ବୋଉ ଦେଇଥିଲା ବେଶୀବେଶୀ। ବାଟରେ ବାପା ତାକୁ ଦେଖି ସବୁଥିରୁ କାଢ଼ିନେଲେ ।

ଅବ—ଓହୋ ! ଚଣ୍ଡାଳ ! ନାଃ, ଆମର ଏ ବଡ଼ଲୋକ ଘର ପିଲା ପଢ଼େଇବା ନୋହିଲା ପଛେ । ମଧୁ, ପିଲାଙ୍କଠଉଁ ପାଠ ବୁଝି ଛୁଟି କରିଦେବୁ ।

ମଧୁ—ଆଜ୍ଞା !

ଅବ—ରମା ! ଧର୍, ସଞ୍ଜା ଧର୍, ଚାଲ୍ । ତମ ଘରକୁ ଚାଲ୍ । ତମ ବୋଉକୁ ପଚାରିବ—ଆଜ ସେ ସଞ୍ଜା ନା ଭିଖ ? ଚାଲ୍ ।

ରମା—(ସଞ୍ଜା ଧରି ଉଠିଲେ)

ଅବ—ହାରେ, ଲୁହା କଅଁଳ ହେଲାକୁ ବରଡ଼ କାମୁଡ଼ ଗୋଡ଼ଉଚ—ନାଁ ? ଚାଲ୍ । (ଦୁହେଁ ପ୍ରସ୍ଥାନ)

ମଧୁ—ଯଦୁ, ରଘୁଆ ! ସବୁ ପାଠ ହେଇଚ ?

ସମସ୍ତେ—ହଁ ।

ଯଦୁ—ମଧୁଆଇ, ଆମ କୋଳ ଗଛରେ ଯୋଉ କୋଳ ପାଚିଚ ରେ ! ଏତକବେଳେ ବା' ନ ଥିବ—ବଲକୁ ଯାଇଥିବ । ସେ ଆସିଲେ ଆଉ ନ ପଟେ । ଠେଙ୍ଗା ଧରି ଜଗି ବସିବ ।

ମଧୁ—ତୋ ମାଆ ?

ଯଦୁ—ସେ ତ ନଈକି ଯାଇଥିବ ଏତେବେଳେ ।

ରଘୁ—ମଧୁଆଇ, ଅବାନେ ଗଲେଣି, ଆଜ ପାଠ ସେତିକି ଥାଉ ମ । ଚାଲ୍ ଯିବା ।

ମଧୁ—ହଉ,ଯା'ରେ ପିଲେ—ଛୁଟି ।

(ପିଲାଏ ଗୋଳମାଳ କରି ଚାଲିଗଲେ । ମଧୁ, ଯଦୁ, ରଘୁ, ଅନ୍ୟ ବାଟରେ ଗଲେ)

(ଭିଖାରୁଣୀଟି ନେପଥ୍ୟର ବାଟରୁ ଗାଇ ଗାଇ ଆସିଲା)

(ପୂର୍ବ ଗୀତ ଅଂଶ)

(ଗୀତ)

ସେତେବେଳେ ମନେ ପଡ଼େ ତୋର କଳାବଉଁ
ଭୁଷୁଡ଼ି ପଡ଼ଲା କାନ୍ଥି ଠାଣ ନାହିଁ କଉଁ
କେ ଶୁଣିବ ଲେଡ଼ଗୁଡ଼ି କହୁଣୀକୁ ଗଲେ ?
ଅଡ଼େଇ ଦିନକୁ କଆଁ ବଡ଼େଇ ପକିଆଁ
ଧରମଶାଳାରେ ଭୁ'ଇ ଦି ଦିନ କୁଣିଆଁ
ବୋକଣ୍ଡ ବାନ୍ଧିଲେ ତୋତେ ପଣ୍ଟରେ କଏ ରେ ।୪।

(ଗାଇ ଗାଇ ଚାଲିଗଲା)

---

## ଷଷ୍ଠ ଦୃଶ୍ୟ

(ମହାଜନ ଘର । ମହାଜନପତ୍ନୀ କୁସୁମ ବସି ପଶିବା କାଟୁଥିଲେ । ପାଖରେ ମାତା ବସି ଗୀତ ଶୁଣାଉଥିଲେ । )

(ଗୀତ)

ମହି ନଇ ମେଘୁଆ ରାତି, ମେଲାଛୁ ମୁଁ ଦଉଡ଼ି ନାଆ
ମଲା-ଗଲା ନାହିଁ ମୋ ଡର, ନଜାଣେ କେ ମୋ ସାହା ।୦।
ଗଗନର ପଲନ ଦୋଳ, ଦୋଳଖେଳେ କି ରାଗିଣୀ
ଭାଷା ତା'ର ଅବୁଝା ମୋର, ସପନେ ଅଫୁଟା ବାଣୀ
ଗୋପନେ ମିଶେ ପ୍ରାଣେ, ଠାଣେ ସେ ତାନେ ତାନେ
କାନ ବୁଝେ, ମନ ବୁଝେନା,
ଅାଖି ଖୋଜେ ତାହାର ରାହା । ୧ ।

କୁସୁମ—ସତେ, ମାତା ! ତମ ଗୀତ ଶୁଣିଲେ ମନଟା ସଂସାରରୁ ଛାଡ଼ି ଦୂରକୁ ଚାଲିଯାଏ । କି ମିଠା ପୁଣି ତମ କଣ୍ଠଟି ।

ମାତା—କୁସୁମ ଅପା ! ଏଗୁଡ଼ାକ ତମର ସତ କଥା ନୁହେ ।

କୁସୁମ—କାହିଁକି ? ମୁଁ କଅଣ ମିଛ କହୁଛି ?

ମାତା—ନା, ମିଛ ନୁହେଁ ସେ, ତୁମେ ମୋତେ ସେତିକି ସୁଖ ପାଅ ବୋଲି, ତମ ଆଖିକି ମୋର ସବୁ ସୁନ୍ଦର । ନଇଲେ ମୋର ଯୋଉ ଗୀତ, ଯୋଉ କଣ୍ଠ, ଯୋଉ ଗାଇବା ! ଆହା, କାଉ ପରା ରାଇଜ ଛାଡ଼ି ପଳେଇବେ (କହି ହସିଲେ)

କୁସୁମ—ହଉ, ଭଲ ହେଲା । ମୋର ସେଥିରେ କି ଥାଏ ? କାଉ କ'ଣ ମ ? ମୁଁ ପରା କହିଲି ମନଷର ମନ ହବ ଘର ଦୁଆର ଛାଡ଼ି, ରାଇଜଛାଡ଼ି ବଣକୁ ଯିବାକୁ—ତମର ପର ହବାକୁ ।

ମାତା—ବାକି ଅପା ! ମନେ ରଖିଥା ମୋର ସେ ଭିକ୍ଷା ଝୁଲି ଆଶ୍ରା । ତୁମେମାନେ ପାଞ୍ଚ ଜଣ ଅଛ ବୋଲି ଦୁଃଖେ ସୁଖେ ଚଳି ଯାଉଛୁ । ଯପ ନା ତପ—ଧରମ ନା କରମ—କଣ ମୋର ଅଛି ? ତମର ସାଙ୍ଗେ ହେଲମେଲରେ ଦିନ ବାହାର ଯାଉଛି ।

କୁସୁମ—ଆଉ ହରିନାମ ବି ଗାଉଛ—ସେ କଥାଟି କହୁନା ? ?

ମାତା—ହୁଁ, ହରି,ହରି-ସେ କେଉଁଠି ! ମୁଁ କେଉଁଠି ? ବାଆଁକୁ ବତା ଦେବା କଥା ସେ—ଭିଖରି ଗୋଟେ ଭେଖ ସେ । ଝୁଲିମୁଣି, ମାଳତିଳକ--ସେ ସବୁ ପେଟ ପୋଷାର ଗୋଟେ ଫନ୍ଦି । ପେଟ ତ ଆଉ ମରି ଯାଇ ନାହିଁ ଅପା ! ପେଟ ଲାଗି ତ ସବୁ ନାଟ ।

କୁସୁମ—ବାକି କେଇଜଣ ତାକୁ ଛାଡ଼ି ରହିଛନ୍ତି ଭଲା ? ତାକୁ ନେଇ କେହି ଯେବେ ହରିଙ୍କି ଡାକି ପାରିଲା ତେବେ ସିନା···ଗା, ଗା; ଆଉ ଗୋଟେ ଗୀତ ଗା । ବାର ଜଞ୍ଜାଳ ଭିତରେ ତମ ଗୀତ ମୋ କାନରେ ସତେ ଅମୃତ ଢାଳିଦିଏ ।

ମତା—ହଉ, ଗାଉଚି ।

(ଗୀତ)

ଦୂର ବନ ଫୁଲରୁ ଆସେ ହସମିଶା ଅଜଣା ବାସ
ଛୁଆଁ ତାର ଭୁବନ ଭୁଲି ହରେ ମୋ ସବୁ ପରାଣ
ଦୁନିଆ ଭୁଲା, ଭୁଲେ—ମହୁଆ ଫୁଲ ଫୁଟିଲ,
ଆନମନେ ଅନାଇ ଥାଏଁ, ଝାଣିନିଏ ଫୁଟେଇ ବାଆ ।

(ରମୁ ପ୍ରବେଶ କଲା)

କୁସୁମ—କିରେ,ରମୁ ! ଏଡ଼େ ବେଗି କେମିତି ଗୁହାଳୀରୁ ଆଇଲୁ ? ଦିହ ଭଲ ନାହିଁକି ରେ ?

ରମୁ—ନା ବୋଉ, ଅବଧାନେ ଅସିଚନ୍ତି ।

କୁସୁମ—ହଉ ଡାକ, ତାଙ୍କୁ ଏଠିକି ଡାକ ।

ରମୁ—ଆହାନେ, ଏଣିକି ଆସନ୍ତୁ ବୋଉ ଡାକୁଚି ।

(ଅବଧାନେ ଫଗୁହାତେ ପ୍ରବେଶ)

ଅବଧାନେ—ମାଆ ସାଆନ୍ତାଣୀ ନିଜେ ବସି ପରିବା ଜୋଗାଡ଼ି ପକୋଉଚନ୍ତି ? ଲୋକବାକ ସବୁ କୁଆଡ଼େ ଗଲେ କି ?

କୁସୁମ—ନାଇଁ ଅବଧାନେ, ଲୋକବାକ ତ ନାହାନ୍ତି ଆମର । ଆଉ ମୋତେ ବି ଭଲ ଲାଗେ । ନିଜ କାମ ନିଜେ ନ ଦେଖିଲେ ପର ଲୋକ କାହିଁକି ଏତେ ନଜର ଦେବେ ? ଭଗବାନ ସଂସାରରଥ ଚଳାଉଥିବାତକ ମୁଁ କାହାକୁ ସାଥିକି ଖୋଜେ ନାହିଁ । ଆପଣେ ଏତେବେଳେ କୁଆଡ଼େ ?

ଅବଧାନେ—(ଫଗୁ ଫିଟାଇ) କ'ଣ କି ମା', ଆଜ ଅମ ପାଳି କଏ ବେଉଣ୍ଡ ଥିଲା କି ? ସେତ ଲକ୍ଷ୍ମୀହାତ ପରଶାପର ଲାଗୁ ନାହିଁ । ଦେଖିଲେ ।

(ଠାଆ ଠାଆ କରି ରଖିଲେ)

କୁସୁମ—(ଆଶ୍ଚର୍ଯ୍ୟ ହୋଇ) ସେ କଣ ? ଏତିକି ଗୁଡ଼ଉଳ, ଏତିକି ଡାଲି, ପରିବା ଜମା ନାହିଁ—ଯିଏ କଏ ପୋଛି ନେଲା ପରି ନେଇଛି ? ମୁଁ ତ ଏମିତି ଦେଇନାହିଁ ? କିରେ ରମୁ ! କ'ଣ ହେଲା ଏସବୁ ?

ରମୁ—(ନୀରବ)

କୁସୁମ—କଣ ବାଟରେ ହାତରୁ ପଡ଼ିଗଲା ? ମୋତେ ଆସି କହିଲୁ ନାଇଁ ?

ରମୁ—ନାଇଁ ବୋଉ, ପଡ଼ିନାଇଁ । ବାପା ମୋ ହାତରୁ···

(ହଠାତ୍ ବାସୁଦାସ ବିରକ୍ତ ହୋଇ ପହଞ୍ଚିଲେ)

ବାସୁ—ରମିବୋଉ, ଉଚ୍ଛନ୍ନ, ଉଚ୍ଛନ୍ନ କଲ ମୋତେ । ଦାଣ୍ଡ ଭିଖାରି ତ କରିବ ଜଣାଗଲଣି । ଯେମିତି ଘରର ଝିଅ ! ଛେଳ ପାଠିକି ପାନ ଗଲା—ପାନ ବୋଇଲା ମୋ ଜୀବନ ଗଲା । ଉଷେଇ ଦବ ତ ମୋତେ, ବସିଛ ଗଲା···

କୁସୁମ—କଥା କଅଣ ?

ବାସୁ—(ଅବଧାନକୁ ଦେଖି) ହେଇଟି ତ ସାଙ୍ଗେ ସାଙ୍ଗେ ଆସି ହାଜର । କଥାନାହିଁ ବାର୍ତ୍ତାନାହିଁ—ଲମ୍ବେ ଲମ୍ବେ ଆସି ଭିତର ଘର ଦୁଆର ମୁହଁରେ ! କଣ ହେ ଅବଧାନେ ? ଏଣେ କୁଆଡ଼େ ?

ଅବଧାନେ—କିଛି ନାହିଁ, ଆପଣଙ୍କ ସଞ୍ଜା ଦେଖାଇବାକୁ ଆସିଥିଲି ।

ବାସୁ—ହଁ, ରମିବୋଉ, ତୁମେ କଣ ମୋର ଏ ଧନ-ଦଉଲତକୁ ଗୋଡ଼ ମାଟି କରି ପାଇଲଣି ? କି କଷ୍ଟରେ, କୁଆଡ଼ୁ ଆସେ···ଅବଧାନ ଗୋଟେ ପେଟକୁ ସଞ୍ଜା ବାଡ଼ିଚ ? ହେଇଟି (ନିଜ ବୁଜୁଲି ଫିଟାଇ ଦେଖାଇ) ମୋ ପରି ଗୋଟେ ଲୋକର ପନ୍ଦର ଦିନର ଖୋରାକ ! ବୁଝିଲ ଅବଧାନେ, ପିଲା ପଛେ ଆମର ମୂରୂଖ ହବ—ତମଭଳି ଅବଧାନଙ୍କ ପାଖେ ପାଠ ପଢ଼ା ଆଉ ହେଇ ପାରିବ ନାହିଁ ।

ଅବ—ବୁଝିଲେ ଆଜ୍ଞା, ଏ ଧନ ମୁଁ ମଧ ଖାଇ ଜୀର୍ଣ୍ଣ କରି ପାରିବ ନାହିଁ, ରଖନ୍ତୁ । ଯେତକ ହେଲା···

ବାସୁଦେବ—କି ? ଗ୍ରେଟ ମୁହଁରେ ବଡ଼ କଥା ? ଯା-ଯା—ଯାଉଚୁ ନାଁ ଦେଖିବୁ ଫେର୍ ? ଆସି ଗୋଟେ ପାଲା ଲଗେଇଚ ? ଯା, ଯାଉଚୁ ନା ?···

କୁସୁମ—ମିଛରେ କାହିଁକି ବୁଢ଼ା ଅବଧାନଟାକୁ ଗାଳି ଦଉଚ ? ସିଦା ତ ମୁଁ ଦେଇଛି—ନ ହେଲେ ନ ଦବ । ମୋତେ କୁହ—ତାଙ୍କୁ କାହିଁକି ଅକାରଣଟାରେ ଗାଳି ଦଉଚ ? ସେ ଅସନ୍ତୁଷ୍ଟ ହେଲେ ଭଲ ହବ ତମର ? ଅବଧାନେ ହନ୍ତସନ୍ତ ହେଲେ···

ବାସୁ—(ଖତେଇ ହୋଇ) ହନ୍ତସନ୍ତ···ଫଳଲେ ଆମକୁ ଫଳୁ, ତମକୁ ତ ନୁହେଁ । ଯା,ଯା—ଗ୍ରେଟଲୋକ ଘର ଝିଅ, ବାଳଙ୍ଗି ଦେଖ ?

ଅବଧାନେ—ମା, ମୋଲାଗି କାହିଁକି ମିଛରେ ଗାଳି ଶୁଣୁଚ ? ମୁଁ ଅସନ୍ତୁଷ୍ଟ ହେଉନାହିଁ । ଯାଉଛି ମା, ଯେତକ ଗଙ୍ଗା ଗଲା—ସେତକ ଫଳ ପାଇଲା ।
(ପ୍ରସ୍ଥାନ)

ବାସୁ—(ଅବଧାନ ଗଲାପରେ) ବୁଝିଲ, ତମର ଏ ଉଞ୍ଚ ହାତ ମୋ ଘରେ ଚଳିବ ନାହିଁ ଆଉ । ସେମିତି ହେଲେ—ହଁ (ଗୁଲିଯାଉଥିଲେ ପୁଣି ଫେରି ଆସି) ହଁ, ରମିବୋଉ ! (ମାତାକୁ ଦେଖାଇ) ସେଇଟି କିଏ ?

ମାତା—ମୁଁ ଜଣେ ଅଭାଗିମା—ଭିକ୍ଷାକରି ଖାଏଁ ।

ବାସୁ—ବେଶ୍ ବାବା, ଠିକ୍ ଜୁଟିଛ । କେତେ ଭିଖ ନେଇଛ ? ଆମ ଲକ୍ଷ୍ମୀ ଠାକୁରାଣୀଙ୍କ ଅମାରଟା ? ବାଃ, ଭଲ ପନ୍ଥା ଧରିଚ ତ ଏ ବଅସରେ ।

କୁସୁମ—ତୁମେ ଯାହାକୁ ନାହିଁ ତାକୁ ଯାହା ତାହା କହିବାକୁ ଆରମ୍ଭ କରିଦେଲଣି ତ । ଭିଖ ମୁଠାକରେ ପେଟ ପୋଷେ ସେ—ହରି ନାମ ଗାଇ । ତାକୁ ପୁଣି ତୁମେ ଛଳେଇ କହୁଛ ? ଧନ କଅଣ ତମକୁ ସରଗ ନବ ?

ବାସୁ—ଆହା ହା, ମୁଁ ତ କିଛି ଅଭଲ କହିନାହିଁ ତାଙ୍କୁ । ବୋଇଲି ଏ ବୟସ, ଏ ରୂପ—ପୁଣି ଏ ଭିଖ ମଗା କାହିଁକି ? ଆଉ କ'ଣ ଅନ୍ୟ ବେଉସା ନାହିଁ ? ଏ ରୂପର ତ ଗୋଡ଼ତଳେ କଉଡ଼ି ।

ମାତା—ହରି, ହରି ! (କାନରେ ହାତ ଦେଲେ)

କୁସୁମ—ଦେଖ, ଧର୍ମ ଛୁଡ଼ନାହିଁ କହୁଚି । ପ୍ରଭୁ ଭୁଲ୍ କରି ହେଉ ବା ଠିକ୍ କରି ହେଉ, ତମକୁ ବହୁତ ଧନ ଦେଇଛନ୍ତି ସତ—ବାକି ଜାଣିଥାଅ, ଏଇ ଜନ୍ମଲାଗି କେବଳ । ଆସ ମାତା, ଏଣେ ଆସ । ଆ ରମୁ, ଛୁ ଛୁ··· (ଗୁଲିଗଲେ)

ବାସୁ—(ରାଗି) କ ? ମୋତେ ? ସ୍ୱାମୀ ମୁଁ—ମୋତେ ଅପମାନ ? ଆଚ୍ଛା···ଗୁଣଧର, ଗୁଣଧର !

ନେପଥ୍ୟେ—ଆଜ୍ଞା, ଆଜ୍ଞା !

(ବାସୁଦାସ ଚାଲିଗଲେ)

---

## ସପ୍ତମ ଦୃଶ୍ୟ

ପଥ

(ମାତା ଗୀତ ଗାଇ-ଗାଇ ଚାଲିଛନ୍ତି)

(ଗୀତ)

ଗଢ଼ିଲା କଣ୍ଟକେ ବିହି ମୃଣାଳେ,
ଫୁଟିଲା ପଙ୍କଜମା ପଙ୍କସରେ,
ବାସଭରା କେତକୀ ନୋହିଲା ଅଳି ଲାଗି
ଝୁରିଲା କରମାଖୀ ଅନାଦରେ । ୧ ।
ଶଶିରେ ଶଶରେଖା କା' ଲାଗି କଏ ଲେଖା
ଚଢ଼କ ଗୁହା ପୁଣି ଚପଳାରେ । ୨ ।
ଚାତକୀ ଆଶାଧାରା ଘନରେ ଭରା ପରା
ତା' ତନୁ ଜଳେ ରବି ଖର କରେ । ୩ ।
ତରଳ ଆଖି ତାରା କମ କଜ୍ଜ୍ୱଳ ଗିରା
ତା'ପୁଣି ଭାସେ ଚାରୁ ମୀରଧାରେ । ୪ ।

(ମାତାଙ୍କର ଗୀତ ମଧ୍ୟରେ ଗୁଣଧରର ଚାକର ବାଙ୍କା ପହଞ୍ଚିଲା—ହାତରେ ବାଦାମ, ମିଶ୍ରୀ । ମାତାଙ୍କୁ ଦେଖି ଟିକଏ ଛପି ଯିବାପରି ହେଲେ । ମାତା ତାଙ୍କୁ ଦେଖି ନ ଦେଖିବା ପରି ଗୀତ ଗାଇ ଗାଇ ଚାଲିଥାନ୍ତି । ପଛରେ ଛିଡ଼ାହୋଇ ଆଖି-ମୁଦି ଗୀତ ଶୁଣୁଥିଲା ବାଙ୍କା । ମାତା ଗାଇ ଗାଇ ଚାଲିଗଲେ—ମାତା ଯିବା ପରେ ଗୀତର ସୂରଧରି ନାଚ ନାଚ ଆଖି ଫିଟାଇଲା)

ବାଙ୍କା—(ଆଖି ଫିଟାଇ, ପୁଣି ଦଳି) ଆରେ, ଚଢ଼ଆ ଚମତ୍କାର ! ଆଃ, ଭଲ ପଟଟେ ଗଢ଼ିଥିଲା । ଠିକ୍ ଜାଲରେ ଧରା ଦେଇଥିଲା ଚଢ଼ଆ—କହିପାରିଲା ନାହିଁ ତାଙ୍କୁ ସାଆନ୍ତ ଖବର ଦେଇଛନ୍ତି—ଡ଼ାକ-ଛନ୍ତି ବୋଲି । ମାଇପି ଜାତ । ତାଙ୍କର ଲାଜ ଭାରି ବେଶୀ । ସେ କଅଣ ଆଉ ମତେ ଫିଟେଇ କହିଥାନ୍ତା ? ଇଶାରା—ଏଇ ତ ସେମାନଙ୍କ ଧରଣ । ଗଛକୁ ଦେଖାଇ, ମାଛକୁ ଦେଖାଇ କଥା କହନ୍ତି । ମୁଁ ଆସିବା ଜାଣି ସେ ପହଞ୍ଚିଥିବ ନିଶ୍ଚେ । ଯାଃ, ଭାରି ପଟ ଗୁଡ଼ାଇଲି । ସାଆନ୍ତ କେତେଥର ମୋତେ ସ୍ୱା କଥା କହିଲେଣି ଟି । ନୂଆବୋଉ ସାଆନ୍ତାଣୀ ନ ଥିଲେ ଏତେବେଳକୁ ଠିକ ପଞ୍ଜୁରୀରେ ପଶି ରହିଥାନ୍ତା ରାମ, ରାମ, ରାମ, ରାମ । ଆଃ, ଏତେ ବାଦାମ, ଏତେ ମିଶ୍ରୀ ! ରଙ୍କ ସଙ୍ଗେ, ଖାରଖାଏ—ଦିନ ପାଣି ପରି ଯାଏ । ଭଣେଇ ଧନ, ଶଳା ଭୋଜନ—ଝଣ୍ଡେ ହେଲେ ତାଙ୍କୁ ଯାଚ ପାରିଲି ନାହିଁ । କ ହୁତ ହୁଡ଼ିଲା—ଯାଃ-

ନେପଥ୍ୟେ—ବଙ୍କୁ, ବାଙ୍କା ରେ, ବାଙ୍କା—ଏ ବାଙ୍କ···

ବାଙ୍କା—(ଚମକି) ହେଇ, ଡକରା ପଡ଼ିଲା (ଚୁନକରି କହିଲା) ଆଜ୍ଞା ! (ତର ତର ହୋଇ ଚାଲିଗଲା)

---

## ଅଷ୍ଟମ ଦୃଶ୍ୟ

( ମେଳା ଦାଣ୍ଡ—କୁସ୍ତିପୋଷାକରେ ଗୁଣଧର ବାହାପୋଟ ମାରି ଆସିଲେ )

ଗୁଣଧର—ବଙ୍କୁ, ବାଙ୍କା—ବଦ୍‌ମାସ୍ । ସକାଳୁ ଯାଇଛୁ ବାଦାମ ମିଶ୍ରୀ ପାଇଁ ଯେ—ତେଣେ ଗଲା କ ମଲା ସେ ଜାଣେ । ଉଲୁ, ଗଧେଇା ଦୁମ୍ ( ଦଣ୍ଡ ମାରିବାରେ ଲାଗିଲେ—ପୁଣି ବଡ଼ ପାଟିରେ ଡାକିଲେ) ବାଙ୍କା ! ବେ ବାଙ୍କା !

(ବାଙ୍କା ଆଖି ମଳି ମଳି ପହଞ୍ଚିଲା—ହାତରେ ମିଶ୍ରୀ—ଖଣ୍ଡେ ପାଟିରେ)

ଗୁଣଧର—କବେ, ଏତେବେଳଯାଏ କଣ କରୁଥିଲୁ ? ଡାକିଲେ ଜବାବ୍ ନାହିଁ ? ବେକୁବ୍ ।

ବାଙ୍କା—(ପାକିଟରୁ ମିଶ୍ରୀ କାଢ଼ି ଲୁଗୁଇଧରି) ଜବାବ ଦେଇ ଦେଇ ତ ଆସୁଛୁ ଆଜ୍ଞା ! ଆପଣେ ତ ଦମ୍ ବନ୍ଦ କରି କସରତ୍ କରୁଥିଲ, ଶୁଣିବ କେମିତି ?

ଗୁଣଧର—ଆବେ ଆଖି ମକୁଛୁ କାହିଁକି ? କ'ଣ ପୋକ ପଡ଼ିଲା ?

ବାଙ୍କା—ନାହିଁ ଆଜ୍ଞା ! ଆଖିପରା ଦରବ । ସେମିତି କଥା କହନ୍ତୁ ନାହିଁ । ପୋକ ନୁହଁ—ଚଢ଼େଇଟା !

ଗୁଣଧର—ଖୁବ ବଦମାସ୍ ତୁ । ଆବେ, ବାଦାମ ମିଶ୍ରୀ ?

ବାଙ୍କା—ଆଣିଛୁ ଆଜ୍ଞା ।

ଗୁଣଧର—ଯା, କୁଣ୍ଡିବାଡ଼ି ଆଣି ଦେଣ୍ ।

ବାଙ୍କା—ଆଜ୍ଞା, ଗୋଟେ କଥା···

ଗୁଣଧର—ଯା, ବୋଲି କହୁଛି, ଫେର୍ ମୁହଁ ଉପରେ ଜବାବ୍ ? ଯା, ଆଗେ ଯା ।

ବାଙ୍କା—ମ, ଏତେ ଖପା କାହିଁକି ? ତମରି ଭଲ ପାଇଁକି ନା···

(କହି ଚାଲି ଯାଉଥିଲା)

ଗୁଣଧର—(ଡାକିଲା) ବାଙ୍କା, ଶୁଣ୍, ଶୁଣ୍ ··

ବାଙ୍କା—(ଫେରି ଆସିଲା)

ଗୁଣଧର—କ'ଣ କହୁଥିଲୁ ?

ବାଙ୍କା—ନାହିଁ ଆଜ୍ଞା, ସେଇ ମାଚା କଥା···ସାଉତ ଆଗେ କୁଣ୍ଡିବାଡ଼ି ଆଣିବ ପରା ? ଆଣେ—

ଗୁଣଧର—ନା ନା, ଆଗେ କହ···କ'ଣ ଖବର ଆଣିଚୁ ।

ବାଙ୍କା—ଆସିଲେ କହିବ ଆଜ୍ଞା, କୁଣ୍ଡିବାଡ଼ ଆଗେ ଆଣେ । (ପ୍ରସ୍ଥାନୋଦ୍ୟତ)

ଗୁଣଧର—ଆରେ, ମୁଁ କହୁଚି କ'ଣ, ସେ କରୁଚି କ'ଣ ?

ବାଙ୍କା—(ଫେରି) ଆଜ୍ଞା, କୁଣ୍ଡିବାଡ଼ ନଆଣିଲେ ଯେ ଉତ୍ତର ହେଇଯିବ । ଫେର୍ ବୁଢା ସାଆନ୍ତେ ହାବୁଡ଼ିଯିବେ ।

ଗୁଣଧର—ନାହିଁ ନାହିଁ, କହ ଆଗ; ତୁ ମାଚାକୁ ଦେଖିଲୁ ?

ବାଙ୍କା—(ହସି ମୁଣ୍ଡ ହଲାଇ ସମ୍ମତି ଜ୍ଞାପନ କଲା)

ଗୁଣଧର—(ବିରକ୍ତ ହେବାପରି) ଏଁ ?—ତା'ପରି ?

ବାଙ୍କା—ହଁ, ପରା କହିବଟି ସା'ନ୍ତେ ?

ଗୁଣଧର—ତା'ପରେ ?

ବାଙ୍କା—ବାଦାମ ଦେଲି, ମିଶ୍ରୀ ଦେଲି ।

ଗୁଣଧର—କ'ଣ କହିଲୁ ?

ବାଙ୍କା—କହିବ ଆଉ କଅଣ ? ଆପଣେ ଦେଇଛନ୍ତି ବୋଲି କହିଲି ।

ଗୁଣଧର—(କୁଣ୍ଢାଇ) ବାଙ୍କା, ମେରି ଦୋସ୍ତ ବାଙ୍କ୍ମନ୍, ଛବ୍‌ତୋ ବଡ଼୍ଗ୍ଗ ଜରୁର···ଗୂନବାବୁକା ଐସା ନୌକର ହୋନା ଚୁହିଏ, ଐସା ବୁଦ୍ଧିମାନ ହୋନା ଚୁହିଏ । ଆଓ ମେରି ଦୋସ୍ତ··· (ଆଲିଙ୍ଗନ)

ବାଙ୍କା—(ସହି ନ ପାରି) ମଲି ମଲି, ମଲି ଲୋ ବୋପା, ସାଆନ୍ତ ! ସେ କହିଚ···ସେ କହିଚ ମୋତେ··· ଆସିବ ବୋଲି । ମୋତେ ଛାଡ଼ । ମୋତେ ଛାଡ଼ । ଆଉ ଦିନେ ନାହିଁ—

ଗୁଣ—ଅଲବତ୍, ଯରୁର୍ । ବାଃ ମେରି ଦୋସ୍ତ ବାଙ୍କ୍ମନ୍ ! (ବାଙ୍କା ଚିତ୍କାରକରିବା ସମୟରେ ବାମୁଦାସେ ଗୁବ ପେନ୍ଥା ସହ ପ୍ରବେଶ)

ବାସୁ—ଏ କ'ଣ, ଏ କଅଣ ? ଆରେ ମାରନା ସେଟାକୁ ରେ । ଆରେ ଗୁଣ···

(ଦୁଇ ଜଣଙ୍କୁ ଛଡ଼ାଇଲେ)

(ବାଙ୍କା ଥରୁଥାଏ)

ବାଙ୍କା—(ଭୟରେ) ସାଆନ୍ତେ ରଖ, ସାଆନ୍ତେ ରଖ । ନାଁ ଲେ ବାପ, ଆଉ ଦିନେ ନାହିଁ ।

ବାସୁ—ଆଚ୍ଛା ଆଚ୍ଛା, ଅରେ କଅଣ ?

ଗୁଣଧର— ନାଁ, କଛୁ ନାହିଁ ଭଉଣେଇ । କଥା କ'ଣ କି, ଆମରି ତ ଧନ ଦୌଲତର ଦୁନିଆଁ ।

ତମ ବସ୍ୟସ ପେ୍ସ—ଶତ୍ରୁ ଙ୍କେର୍ । ଗ୍ରେର ଅଛୁ, ଚଣ୍ଡିକଟା ଅଛୁ—ମୁଁ ଏଇ ଯେ ବନଗାନ୍ତ ମେହନତ୍ କର କପଟରତ୍ କରୁଛୁ···(ବାଂଶ ଦଣ୍ଡ ମାଣ) ପହେଲମାନ୍! କାହିଁକି ? କେହି ଆସିଲ ତ ଚଟ୍ ଧଇଲ । ତାକୁ ସେଇଆ ଶିଖେଉଥିଲି । ଗ୍ରେର ଆସିଲେ କେମିତ ଧରବୁ—ଯାବ, ଯାବ ଶିଖେଉଥିଲି ।

ବାସୁ—କରେ ବାଙ୍କା, ଏ ତ ଭଲ କଥା । ସତକଥା । ତୁ ତ ଜାଣୁ, ଏ ଘରେ ଘରଣୀ ସେ, ଗ୍ରେରଣୀ ସେ । ଘର ସବୁ ଲୁଟି ପଡ଼ୁଛୁ ! ପର ଧନ କର ପାଇଛୁ ସେ । ସେମିତ ଘରର ଝିଅ ! ଏଇ ଦେଖୁନୁ ଯେସବୁ ଟଙ୍କା, ସୁନା, ରୁପା, ଧାନ ଅମାର—କିଏ ଜଗାରଖା କରବ ଆଉ ? ଆଚ୍ଛା ଶୁଣ୍ ଶୁଣ୍ । ରମା ଘରେ ନାହିଁ ? ଫେର୍ ଗୃହାଳୀକି ଗଲାଣି କ କଣ ? ମୁଁ ତା ପାଠପଢ଼ା ବନ୍ଦ କଲି—ନେହିଲ । ଦନୁଟାଏ ଭଲ ମୋ କଥା ମାନ ଗୃହାଳୀ ବନ୍ଦ କରଥା'ନ୍ତା ? ଗଲୁ, ଧର ଆଣିବୁ ତାକୁ । ମୁଁ ଯାଏ—ଗ୍ରବଟା ତେଣେ ଘରେ ପକେଇ ନାହିଁ । (ଦାସେ ପ୍ରସ୍ଥାନ)

ଗୁଣ—ଆଚ୍ଛା, ଦେଖୁଛୁ ତାକୁ ।

ବାଙ୍କା—ନା ଲୋ ବାପ, ଆଉ ନାହିଁ, ଆଉ ନାହିଁ । (ଗ୍ରଲଗଲ ଉତରକୁ)

ଗୁଣ—ମେର ଦୋସ୍ତ ବଙ୍କ୍ମନ—ବାଙ୍କେଲାଲ୍, ଆରେ ବାଙ୍କାଗ୍ରନ—ମେରେ ବାଙ୍କେ ଛେଲା—(କହି କହି ଗ୍ରଲଗଲେ—ଗାଇ ଗାଇ) ବାଙ୍କେ ଛେଲା, ନଜରଆ ଦିଖାଏ ଯାଯ୍···

---

## ନବମ ଦୃଶ୍ୟ

(ଠାକୁର ଘର । ରମା ବୋଜ ଗାଧୋଇସାର ଠାକୁର ପୂଜା କରିବାକୁ ବାସନ ଇତ୍ୟାଦ ସଜାଇ, ଧୂପ ଲଗାଇ ଧୂପ ଦେବାର ଯୋଗାଡ଼ କର ଗଲବସ୍ତ୍ରର ମୁଣ୍ଡିଆ ମାରୁଥିଲେ । ପଛୁଞ୍ଚିଲେ ବାସୁଦାସ)

ବାସୁ—ରମିବୋଉ, ମୁଁ ଏ ଘରର କୁକୁର ନା ମାଙ୍କଡ଼ ?

କୁସୁମ—(ଫେର ଗ୍ରହିଁଲେ ମାତ୍ର)

ବାସୁ—ନାହିଁ ନାହିଁ, କ'ଣ ବୋଲି ତମ ମନକୁ ପାଉଛ ?

କୁସୁମ—(ଉଠି) ଏ କଥା କାହିଁକି ?

ବାସୁ—କାହିଁକି ? ମୋ କଥାର କଛୁ ମୂଲ୍ୟ ନାହିଁ ?

କୁସୁମ—କେମିତ, କୋଉ କଥା କିଏ ତମର କେତେବେଳେ ତଳେ ପକାଇଲା ?

ବାସୁ—କୋଉ କଥା ମୋର ରହୁଛି ?

କୁସୁମ—କଥାଟା କ'ଣ କହୁ ନା ?

ବାସୁ—ରମାକୁ ପୁଣି ଗୃହଶାଳୀକି ପଠେଇଲା କିଏ ? ମୁଁ ପରା ମନା କରଥିଲି ?

କୁସୁମ—ହଁ ।

ବାସୁ—ହଁ ତ, ପୁଣି ଗଲା କେମିତ ?

କୁସୁମ—ଗୃହଶାଳୀକି ଯାଇ ନାହିଁ ତ—

ବାସୁ—ଆଉ କ'ଣ ପୁଅ ଯାଇଛୁ ରୋଜଗାରକୁ ? ବିଦେଶ ? ଭୁଜନ କର ଗୃହାଳୀକି ପଠେଇ-ଦେଇ—ପୁଣି ମିଛ ?

(ଗୁଣଧର ରମାର କାନ ଧର ପହଞ୍ଚେଇ ଦେଲା)

ଗୁଣ—ହେଇଟି ସାର, ନଅ ତମ ପୁଅକୁ ।

ବାସୁ—ତାଙ୍କ ମା'କୁ ପଚାଅ—କ, କ ଗୋ ! ସଅ ଯାଉଥିଲି ? କୁଆଡ଼େ ଯାଇଥିଲୁ କ ପୁଅ ?

ଗୁଣ—ଅବଧାନଙ୍କୁ ଭେଟି ଦେବାକୁ ।

ବାସୁ—ଭେଟି ? ଭେଟି କ'ଣ ?

ଗୁଣ—ଟଙ୍କା, ଅବଧାନଙ୍କୁ ଯାଇଥିଲି ଦେବାକୁ ଟଙ୍କା ?

ବାସୁ—ଟଙ୍କା ? କ ଟଙ୍କା ?

କୁସୁମ—ତା'ର ତ ପାଠପଢ଼ା ବନ୍ଦ କଲ—ବୁଢ଼ା ଅବଧାନର ପାଠପଢ଼ା ଦରମା ବାକି ଥିଲା । ସେଇ ଟଙ୍କାଦେଇ ପଠେଇଥିଲି ! ପିଲା ତ ମୂରୁଖ ହବ ଗଲା, ଆଉ କ'ଣ ବୁଢ଼ା ଅବଧାନଙ୍କର ନିଶ୍ୱାସ ତା' ଉପରେ ପଡ଼ଲେ ଭଲ ହେବ ?

ବାସ—ନିଶ୍ୱାସ ? ଚଡଲା ପାଣିରେ ବହୁତ ଘର ପୋଡ଼ିଗଲାଣି । କେତେ ଟଙ୍କା ଶୁଣେ ?

କୁସୁମ—ଟଙ୍କାଟାଏ ।

ବାସୁ—ଓହୋ, ଟଙ୍କାଟାଏ ? ମୁଁ ଶହେଟଙ୍କା ଲଗାଇଲେ ମାସକୁ ଟଙ୍କାଟାଏ ଆସୁନାଇଁ ହାତକୁ । ପୁଣି ସରଳ କରି କୁହ—ହେଇଗଲା ଟଙ୍କାଟାଏ କୋଉଠୁ ଆଣିଲ ?

କୁସୁମ—ମୋ ପାଖରେ ଥିଲା ।

ବାସୁ—ଥିଲା ? କୋଉଠୁ ଥିଲା ? ସ୍ୱେଚ୍ଛେଇ କର ତ ? ଏଇ ସମ୍ପତ୍ତିରୁ ମୋର ? ନା, ବାପଘରୁ ଆଣିଥିଲ ? ବାପସମ୍ପତ୍ତି ? କଅଣ ଖଣ୍ଡିଆ ଚୂଲ ନା ପଥର କୁଣ୍ଡି ବକ ? ନାଇଁ ନାଇଁ, ହୁଡ଼ିତ ମୁଁ । ଗୁଣ ଭଉଣୀ ମାଲଦନୁ ମୋ ଘରକରଣା ଯାଉଛି । ଛାଡ଼; ଆଜଠୁଁ ତମକୁ ଖନ୍ଦାଶାଳ ଛଡ଼ା ମୋ'ଘର ସବୁ ମନା; ଘରଣୀ—ନା ସବୁ ସମ୍ପତ୍ତି ଲୁଟି କରିବାକୁ ସ୍ୱେ ଚୋ-ର-ଣି ! ଗୁଣ !

ଗୁଣ—ଆଜ୍ଞା !

ବାସୁ—ଗୋଟେ ଗୋଟେ ଏଇ ପିଲାଟାକୁ ଜଗିଥିବୁ । ନେ, ଚାବି ନେ; ଘରଦ୍ୱାର; ଧାନଅମାର—ସବୁ ତୋର, ଜଗାରଖା କରୁଥା'; ଆଜଠାରୁ ଏସବୁ ତୋ ମାରଫତ୍ । ଭାଇ ତୁ ମୋର, ପୁଅ ତୁ ମୋର, ଶଳା ତୁ ମୋର; ଘରକୁ ଘରଣୀ ତୁ ମୋର । ମୋର ଆଉ କେହି ନାହିଁ—ଯା—

(ଚାବି ଥୋଲ ପକେଇଦେଇ ବେଗରେ ଚାଲିଗଲା)

କୁସୁମ—(ଛଳ-ଛଳ ଆଖିରେ ଠାକୁରଙ୍କ ପାଖେ ଗଳବସ୍ତ୍ର ହୋଇ ପଡ଼ିଗଲେ) ମା' ଗୋ ! ମା'—

( ପଟ୍ଟପତନ )

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

( ବାସୁଦାସଙ୍କ ଦାଣ୍ଡ ଘର । ଗୁଣଧର ନିଜର ବେଶପ୍ରତି ଦୃଷ୍ଟିଦେଇ ନିରାଶରେ ଦୀର୍ଘନିଶ୍ୱାସ ପକାଇଲେ )

ଗୁଣ—ଜୟ ରାଧେ, ଜୟ ରାଧେ, ଜୟ ରାଧେ—ଆହା, ହା—

(ଗୀତ)

ସେ ଯେ ମୋ ଅଧା ଜୀବନ,
ତା' ବିନା ବିଫଳ ମୋର ଭରା ଯୌବନ ।୦।
ମୁଣ୍ଡ ମୁଁ, ସେ ଗଣ୍ଡି ମୋର—
ମୁଁ ବଳଦ, ସେ ପଘା ଡୋର ।
ମୁଁ ସିନା ପେଟ, ସେ ଭୋକ; ଭୁରି ଭୋଜନ ।୧।

ମାତା, ମାତା, ଆହା ହା, ଘୁଣ୍ଟ ଚରିବାକୁ କହିଲେ ଚରି ଦେଖାଇ ଦେବି, ମୁଁ ଚୋ'ରି । ରାଣ ଅଛି, ମୁଁ ତତେ ଘରି ସୁଖ ପାଏଁ । ନିଷ୍ଟେ, ନିଷ୍ଟେ ତିନବାର ନିଷ୍ଟେ—ଜୟ ରାଧେ, ଜୟ ରାଧେ ଆହା, ହା !—

( ବାଙ୍କା ପ୍ରବେଶକରି ମାତାଙ୍କର ଆସିବା ସଙ୍କେତ ଠାରଦ୍ୱାରା ଜଣାଇ ଦେଲା )

ବାଙ୍କା—ସାଆନ୍ତେ ! ସେ ଆସୁଛୁ ଯାଉଛୁ ।

ଗୁଣ—(ତରତର ହୋଇ) ବେଶ୍, ବେଶ୍ ବାଙ୍କମନ । ବାଃ, ବାଃ, ନେ ଲଡ଼ୁ ଖାଇବୁ । (ଟଙ୍କାଟିଏ ଦେଲେ) ଯା—

(ବାଙ୍କା ଚାଲିଗଲା—ମାତା ପ୍ରବେଶ)

ମାତା—ମୋତେ ଡକାଇଥିଲ ? କାହିଁକି ?

ଗୁଣ—ଏଁ, ହଁ ଡାକୁଥିଲି ?

ମାତା—କାହିଁକି ?

ଗୁଣ—ମୁଁ, ମୁଁ ଭଲପାଏଁ—ତୁମକୁ ଭଲପାଏଁ । ଖୁବ୍ ବେଶୀ । (ଦୁହେଁ ନିକଟସ୍ଥ ହେବା)

ମାତା—ମୁଁ ତ ତୁମକୁ ଉଣା ଭଲ ପାଏ ନାହିଁ ।

ଗୁଣ—ଏଁ ? ଆହା ହା ! ରାଧେଶ୍ୟାମ, ରାଧେଶ୍ୟାମ — କିନ୍ତୁ ମାତା ମତେ ବଡ଼ କଷ୍ଟ ଲାଗେ ତମର ଏଇ ବେଶ ଦେଖିଲାକ୍ଷଣି ।

ମାତା—ମୁଁ ଭିକାରୁଣୀ ଯେ—ସେ କଥା ତ ଜାଣ । ମୋର ଆଉ କି ବେଶ ଥାଆନ୍ତା ?

ଗୁଣ—ଅହା ହା, ରାଧେ ରାଧେ ! ଆହୁରି କଷ୍ଟ, ଆହୁରି କଷ୍ଟ—ତୁମେ ଭିକାରୁଣୀ, ଆଉ ରାଜରାଣୀ କିଏ ? ବାମନଦାସଙ୍କର ଏଇ ଅଚଳାଚଳ ସମ୍ପତ୍ତି । ସବୁର ତ ମାଲିକ ଗୁଣଧର । (ଚାବି ଦେଖାଇ) ଦେଖିଲ ଏ କଅଣ ? ବୁଢ଼ା ହିନା ସଞ୍ଚିବା ମାଲିକ—ଭୋଗ କରିବ ତ ଏଇ ଗୁଣଧର । ଭଉଣୀ ମୋର,— ବୁଢ଼ାର ଆଗ ଘରଜା—ଖାଇବାକୁ ମୁଠେ ନ ପାଇ, ଶେଷରେ କଷଟାଇ ମଲା । ଆଉ ଏଇ ଘରଜାଟା ମୁଣ୍ଡରେ ତ ପେଶୁ ଉଡ଼ିଲଣି ।

ମାତା—କେମିତି ?

ଗୁଣ—( ଚାରିଆଡ଼କୁ ଚାହିଁ ) ଗୁପ୍ତ କଥା, ଖୁବ୍ ଗୁପ୍ତ । ଏଇନେ ଏସବୁ ଲୋକଙ୍କୁ ପଡ଼ନାହିଁ । ବୁଢ଼ା ଆଉ ଗୋଟିଏ କନ୍ୟା ଖୋଜି ବୁଲିଲଣି । ମୋ ଉପରେ ଭାର । ଯାକୁ ବାହା ହେବାକୁ କରିବ । ପଡ଼ ମୁଠେ ମୁଠେ ଦେଇ ଗୁହାଳ ଝଟାଇବ । ଧାନ କୁଟାଇ କୁଟାଇ ଆଖିରୁ ମାରିବ । ଏଇ କାଲି, ନାଇଁ ପଅରି ଦିନ ବାହା । ସବୁ ତ ମୋ'ର ହାତରେ । ଗୋଟେ କାହାକୁ ମଙ୍ଗେଇ ପାରିଲେ ହେଲା । ତାର ବି ଉପାୟ ହଉଛି—ତାର ବି ଉପାୟ ହଉଛି ।

ମାତା—ବାହାଘର ପୁଣି କେବେ ?

ଗୁଣ—କାଲି-ପଅରି । ନଇଲେ ବଡ଼ ଯୋର, ଆଉ ଦିନ ଦଶ-ପନ୍ଦର । ଏଇ ତ ? ବୋହୁଘର ନଣାଙ୍ଗା ବୁଢ଼ାକୁ ଜୋର ଧରିଛି । ତା'ପର·· ତା'ପର ? ବୁଝୁଛ ତ—ମାଲିକ କିଏ ? (ନିଜକୁ ଠାରି)

ମାତା—(ହସି) ସତେ ? ଆଜ୍ଞା ବାମନଦାସଙ୍କୁ ଏକାଳେ ଝିଅ ଦଉଛି କିଏ ?

ଗୁଣ—ସେ ଗୋପରେ ବଡ଼ ରା । ହଉଛି ହଉଛି—ତା'ର ବି ବାଟ ହଉଛି । ବନ୍ସୀ ପଡ଼ କଣ୍ଠାରେ ମାଛ ଟଣା ହେଲେ, ଜାଣିବ ।

ମାତା—ଭଲ କଥା । ଆମର କି ଥାଏ ? ସେଥିରେ ସିନା ତମର ସୁଖ । ଆମେ ତ ଯୋଉ ଦୁଃଖୀ ଭିକାରୁଣୀ··ସେଇ ଦୁଃଖୀ ଭିକାରୁଣୀ । ଭିକ ମୁଠାକ ଆମ ଜୀବନ ।

ଗୁଣ—ଅହା ହା, ରାଧେ, ରାଧେ—ଏକଥା କିଏ କହିଲା ? ଏସବୁ କି ମୋର ପାଇଁ ଯୋଗାଡ଼ ? ଧର୍ମ, ଧର୍ମ ଜାଣନ୍ତି । ସତ କହୁଛି, ବୁଢ଼ାର ବାହା ପରେ ପରେ ମୁଁ ତାର ବାଟ ଠିକଣା କରିନେବି । କହିଲି ପରା—ମୁଁ, ମୁଁ; ମୁଁ ତମର···

ମାତା—ଯାଃ—

ଗୁଣ—( ହାତ ଧରିବାକୁ ଗଲେ । ମାତା ପୁଞ୍ଜିଗଲେ ) ଏଇଟା ବାଟ ଘରଟା ପରା ! (ଗୁଣ ପଛକୁ ପୁଞ୍ଜିଗଲା ଓ ମାତାକୁ ଗୋଟିଏ ହାର କାଢ଼ିଦେଲା) ମାତା ! ମାତା ! ସତ କହିବ ନା ?

ମାତା—କହିବି ।

ଗୁଣ—ତୁମେ ମୋତେ ଭଲ ପାଅ ?

ମାତା—ଏଁ ? ତମର ଆଉରି ସନ୍ଦେହ ?

ଗୁଣ—ନାଁ ନାଁ, ଅହା ହା, ରାଧେ ରାଧେ ।

(ହଠାତ୍ ବାମନଦାସ ପୁଳାଏ କାଗଜନେଇ ପ୍ରବେଶ)

(ମାତା ଚାଲିଗଲେ)

ବାମ—ଗୁଣ, ହେଇଟି ଦେଖ୍, କେତେ ହେଲଣି ତା'ର ?

ଗୁଣ—(ଟିକିଏ ଅପ୍ରତିଭ ହୋଇ ) ଦିଅ । (ନେଲେ)

ବାମ—ଏ ମାତା ଏଠି କଅଣ କରୁଥିଲା ରେ ?

ଗୁଣ—ହେଇ ତ ଆମର ଅସଲ ଯନ୍ତ୍ର । ବୁଝିଥିଲ ମଦନ ଦାସ ଭଉଣୀଟି କେମିତି ? ସୁନ୍ଦର କି ନାହିଁ ।

ଏମାନେ ସବୁଆଡ଼େ ଯିବା-ଆସିବା କରନ୍ତି ନା, ଜାଣିଥିବ ତାଙ୍କୁ । ସବୁ ବୁଦ୍ଧି ତା'ପରେ ଚେଷ୍ଟା କରିବା ଯିନା ? ନୋଇଲେ ପଛରେ କାଳୀଟାଏ କ କୋଚଣ୍ଟାଏ···

ବାସୁ—(ହସି) ଚୋର ତ ଭାରି ସୂଚକ ଦେଖିଲି । ଟଙ୍କା ହୁସିଆର ତୁ । ଆରେ, ତୁ ନ ଥିଲେ କ'ଣ ମୋର ସାହସ ହୁଅନ୍ତା ଅଉ ଥରେ ବାହା ହବାକୁ ? ହଉ, ହଉ ତୁ କ'ଣ କରୁଚୁ କର୍ ।

ଗୁଣ—ଦାମକୁ ତ ପଗଡ଼ ଆଣିବାକୁ ପଠେଇଛୁ—କରିବ ଆଉ କଣ ? (କାଗଜ ଦେଖି)ମୂଳ ଅସଲକୁ ନେଲା ୩୦୦ । ଚୁରି ବର୍ଷରେ ଦେଇଛୁ ଦଫେ ୧୦୦, ଦଫେ ୧୫୦, ଦଫେ ୩୦, ଦଫେ ୧୦୦, ପୁଣି ଦଫେ ୧୫୦ । ଗାଏ ପାଞ୍ଚଦଫକୁ ୫୩୦—ଏଇ ତ ! ଚକ୍ରବୃଦ୍ଧି ପ୍ରମାଣେ ତା ଉପରେ ଆଉ ପାଞ୍ଚ ଶହ ବାକି ଅଛି । ଭଉଣୀ ଦବାକୁ ହବ ତାକୁ । ନୋଇଲେ···(ବାହାଷ୍ଫୋଟ ମାରି)ସ୍ପେ ଗୁଣଧର ଦାସେ । ନନ୍ତ କୁସ୍ତି କସରତ ବାଲା—ଛପର୍ ଫାଡ଼୍ ଦେଙ୍ଗେ ।

ବାସ—ବାଃ, ଭାରି ହେମନ୍ତ୍ ଚୋର ଏକା ? ଦେ, କଅଣ କରୁଚୁ କର୍ । (ପ୍ରସ୍ଥାନ)

ଗୁଣ—(ବାସୁ ଚାଲପରେ) ହୁଁ, କଅଣ କରୁଚୁ—ମା ? ଯାହା ଥିଲୁ ତତେ ସେଇଆ କଲେ ଯାଇ ଗୁଡ଼ିବ । ପଡ଼ିଛୁ ବୁଢ଼ା ଗୁଣଧରର ହାବୁଡ଼େ । ମାତାଟା ଥିଲା—ମନେ କରିଥିଲି ବୁଢ଼ା କଅଣ ସନ୍ଦେହ କରିବ । ଦେଇଛୁ ବୋଝେଇ । ବୁଢ଼ା ତ ବାହା ହବାକୁ ପାଗଳ । ତାକୁ ନିଦ ନାହିଁ, ଭୋକ ନାହିଁ, ଶୋଷ ନାହିଁ । ସାବାସ୍, ଏଇମିତି ଚଟକା ବୁଦ୍ଧି ଥିବା ଲୁହ । ବାଦାମ ମିଶ୍ରି, କସରତ୍ ଆଉ କୁସ୍ତି—ଇଙ୍କ ସଙ୍ଗେ, ଶିର ଖାଏ ।

(ତାଳମାରି ଗ୍ଲାଲଲେ)

---

## ଦ୍ୱିତୀୟ ଦୃଶ୍ୟ

ବାସୁଦାସଙ୍କ ଘର-ଅଗଣା

(ଶଙ୍କିତ ମନରେ ମଦନ ଦାସ ଆସିଲେ)

ମଦନ—(ଚିନ୍ତିଏ ଭାବି) ନାଃ, ମୁଁ ଭୁଲ କରିଚୁ ବିଶ୍ୱାସ କରି । ସେତିକିବେଳେ ଦଲିଲଟା କାଢ଼ିନେଇ-ଥିଲେ ହୋଇଥାନ୍ତା । ପରେ ଆସିଲେ ନେଇଯିବ ବୋଲି କହିଲି ହନ୍ତୁ, ମନରେ କେମିତି ପାପ ଛୁଇଁଛି । ଧନ ପଦାରଟା ତ ଯାଇନାହିଁ, ହଠାତ୍ ଏ ପିଆଦା ହାତରେ ତଲବ୍ ଶୁଣି ଛାତିଟା ଦାଉଁକିନା ହେଲା । କଥାଟା କଅଣ ? ବାସୁଦାସ ଏଡ଼େ ଭଲ ଲୋକ ନୁହେଁ ଯେ ଦଲିଲଟା ଫେରାଇ ଦବାକୁ ମତେ ଡାକିଛି । ହରି, ତୁମ ଇଚ୍ଛା, ଯାହା କରୁଛ କର । ( ନେପଥ୍ୟକୁ ଗ୍ୱହିଁ )କିଏ କବାଟ ଫିଟାଇଲା ? ଦାସେ ? ନା-ଏ ଗୁଣଧର । ଦୁର୍ଗା, ଦୁର୍ଗା । ଦିହଟା କେମିତି ଶୀତେଇ ଉଠେ ମୋର । କଅଣ କପାଳରେ ଅଛି ! ଜୟ ମା ଦୁର୍ଗା···

ଗୁଣ—(ଅଧବାଟରୁ ହସ ହସ ହୋଇ) ଆସନ୍ତୁ ଆସନ୍ତୁ ନା—ଏ ଅଧବାଟରେ ଠିଆହୋଇ ରହିଲ ଯେ ଦେ, ମହିଷପରି ।

ମଦନ—(ଭୀତ ସ୍ୱରରେ)ନା, ଯାଉଛୁ ତ । କେହି ନଥିଲେ ଦୁଆରେ ନାଁ; ବୁଲୁଥିଲି, ଆପଣଙ୍କ ଅପେକ୍ଷାରେ ।

ଗୁଣ—ଆସନ୍ତୁ ନା-ଭିତରକୁ ଆସନ୍ତୁ ।

ମଦନ—ଆଜି ପୁଣି ତଲବ କାହିଁକି ମୋତେ ?

ଗୁଣ—ଆଃ, ସବୁବେଳେ ଆପଣଙ୍କର ସନ୍ଦେହ ଗଲା ନାହିଁ ? ଭଲ ନାହିଁ, ମନ୍ଦ ନାହିଁ, ସ୍ନେହ ନାହିଁ ସୋହବତ୍ ନାହିଁ ।

ମଦନ—ଦୁର୍ଗା, ଦୁର୍ଗା—ମୁଁ କଅଣ ସେକଥା କହୁଛୁ ? କାହିଁକି ଡକରା; ସେ କଥା ପଚାରିବାରେ କଅଣ ଅଛି ?

ଗୁଣ-କିଛୁ ନାହିଁ ଯେ ··ଆପଣଙ୍କ ପଶ୍ଚରବାଟାରୁ ସନ୍ଦେହ ଟିକିଏ ଲାଗିଲା । ସେଇଥିପାଇଁ ଏକଥା କହିଲି । ଆସନ୍ତୁ, ଭିତରକୁ ଆସନ୍ତୁ । ବସ୍ ନାହିଁ, ଉଠ୍ ନାହିଁ । ଖାଲି କଥା କଅଣ ? ଆରେ ବଙ୍କୁ ! ପାଣି ଆଣି ଦେ, ପାଆ ପଖାଳ ଦେ ସାଆନ୍ତଙ୍କର । (ବାଙ୍କା ପାଣିଆଣି ପହଞ୍ଚିଲା)—ଦେ ପାଆ ପଖାଳ ଦେ ।

ମଦନ—(ହାତରୁ ନେଟା ଛଡ଼େଇ) ନାଇଁ ନାଇଁ, ମୁଁ ଆପେ ଧୋଇ ଆସୁଛି ।

(ଢାଳ ନେଇ ଭିତରକୁ ଗଲେ)

ଗୁଣ—(ବାଙ୍କାକୁ ଡାକି ଚୁନ ଚୁନ କହିଲେ) ଦେଖ୍, ବାଙ୍କମନ, ତୁ ଟହଲ ମାର, ଆଉ ଯେମିତି କେହି ନ ଆସେ—ଆମେ ଘରକୁ ଯାଇ ଫେରିବାଯାଏ । (ମଦନ ଆସିଲେ) ଚାଲନ୍ତୁ, ଭିତରେ ଭିଡେଇ ଅଛନ୍ତି ।

ମଦନ—ଯିବର ହଅନ୍ତୁ ।

ଗୁଣ—ନାଇଁ ନାଇଁ, ଏ ଘର କାହାର କି ? ଆପଣ ଭିତରକୁ ଆସନ୍ତୁ ନା ।

ମଦନ—ଦୁର୍ଗା, ଦୁର୍ଗା ! ଚାଲନ୍ତୁ । (ଦୁହେଁ ଚାଲିଗଲେ)

ବାଙ୍କା—ମତଲବଟା ତ ଭଲ ପରି ଲାଗୁନାହିଁ ? କ୍ୱାଇଁ ସାଆନ୍ତ ଆସିଲା ପରି ପାଆ ଖୋଳି, ମାଇନ ? କ'ଣରେ କଥା କଅଣ ? ହେଇଟି ଦେଖନ ତ କାଲିଯାଏ ଝିଅଟିଏ ଏଇ ଲୋକଟା ଟଙ୍କା ଗଣି ଦେଇ-ଯାଇଚ, ମାଇନ ନାଇଁକି ଥାଇନ ନାହିଁ । ଆଉ ଆଜ ନେଗୋଟାଏ ଜଣ ଆପଣାର ହେଇଗଲା ? କଅଣ ନାଁ ? ଘର କାହାର କି ବୋଲି ଚରଚା ହଉଚ ? ଅଚ୍ଛା, ଅଚ୍ଛା, ଲୋକଟା ଭିତରେ ରହିଗଲେ ଆସି ହୁକୁମ ମାନ ପହରା କରେଁ ତ । (ଭିତରକୁ ନୋଟା ଥୋଇବାକୁ ଗଲା । ଅଳ୍ପ ସମୟ ପରେ ଗୋଟାଏ ଭଙ୍ଗାଘୋଟା ଠେଙ୍ଗା କାନ୍ଧରେ ପକାଇ ଆସି ଦୁଆରେ ପହରା ଦେଲା ।

(ଏତିକିବେଳେ ଆସି ପହଞ୍ଚିଲା ମାଡା)

ବାଙ୍କା—(ମାଡାକୁ ବାଧା ଦେଇ) ଆଜ ଆଉ ଲମ୍ଭେ ଲମ୍ଭେ ଭିତରକୁ ମାଡ଼ିଯିବା ପାଇଁ ହୁକୁମ ନାଇଁ ଧନମଣି ! ଟାନ୍ଦ୍ରଣେ ଆଗକୁ ନ ବଳ । ବଳଲେ, (ଠେଙ୍ଗାକୁ ଦେଖାଇ) ହୁଁ ।

ମାଡା—କରେ କାହିଁକି ?

ବାଙ୍କା—ଗୁଣ ସାଆନ୍ତଙ୍କ ମନା ।

ମାଡା—କରେ ! ସାଆନ୍ତ କଣ ମତେ ଯିବାକୁ ମନା କରିଛନ୍ତି ?

ବାଙ୍କା—ନା, ତମକୁ ଏକା ନୁହେଁ, କେହିତ ଯିବେ ନାହିଁ । ଏ ଘଡ଼ିକ ଶୂନ୍—ସବୁ ଶୁନ୍‌ସାନ୍ । ଆଜ ଏଇନେ ଟୁମ୍‌ସୁମ୍ ହିନ ।

ମାଡା—କଥା କଣ ରେ ବାଙ୍କୁ ?

ବାଙ୍କା—କେଜାଣି କଥା କ'ଣ । ଆଉ ଜଣେ କିଏ ମଦନ କି ମୋହନ ବୋଲି ଆସିଛି ଯେ, ସାଆନ୍ତ ତା' ସଙ୍ଗେ ଗୋପନ କଥା ହଉଚନ୍ତି । ଘର ଖାତିର୍, ଘର ମାଇନ ଚାକୁ ।

ମାଡା—ଆରେ ମରଦଙ୍କୁ ସିନା ମନା; ମୋତେ କଅଣ ମନା ? ଆମର କି ଥାଏ ସେଥିରେ କହନା ? ଭିଖ ମୁଠାକର ଜୀବନ ଅମର । ମୁଁ ଚୁନହୋଇ ଚାଲିଯିବି ।

ବାଙ୍କା—ବାକ ଯାଆନ୍ତେ ତ କହିଛନ୍ତି, କାହାରିକି ଛାଡ଼ିବ ନାହିଁ ।

ମାଡା—ଭଲ କଥା, ତୁ ଆଖି ମୁଦି ଠିଆ ହୁଅ । ତୋ ଦେଖନ୍ତେ ତ କେହି ନଗଲେ ଗଲା ।

ବାଙ୍କା—ବାଃ, ବେଶ୍ କଥା । ମାଇପି ଲୋକଙ୍କର ଏକା ଘର ବୁଦ୍ଧି—ଘର ପସନ୍ଦ । ନଇଲେ ଗୁଣସାଆନ୍ତେ କି ତମ ପାଇଁଲେ ପଡ଼ନ୍ତେ ? ମୁଦିଲି ତେବେ, ଏକ, ଦୁଇ, ତିନ ( ଆଖି ମୁଦିଲା—ମାଡା ଧୀରେ ଧୀରେ ଭିତରକୁ ଗଲା )

ବାଙ୍କ—(ଅଖି ମେଲାଇ) ନାଃ, କେହି ଯାଇ ନାହିଁ । ମୁଁ ଜଗିବାବେଳକୁ କେହି ଯାଇ ନାହିଁ (ଟହଲିଲା) ଟିକଏ ଆରାମ କରେଁ । (ବସିଲା ଗୋଟିଏ କରରେ)

(ପ୍ରବେଶ କଲେ ଗୁଣଧର)

ଗୁଣ—ବାଙ୍କା ! (ବାଙ୍କା ଚମକି ଠିଆ ହେଲା) ଶୋଇ ପଡ଼ିଥିଲୁ କରେ ଆଖିମୁଦି ?

ବାଙ୍କା—ନାଁ ତ । ଖାଡ଼ା ପହରା (ଠେଙ୍ଗାଉଞ୍ଚାଇ)

ଗୁଣ—କେହି ଆସି ନାହାନ୍ତି ତ ?

ବାଙ୍କା—କାଉ କୋଇଲି ବି ନାହିଁ । ମୋ ପହରାଟି ?

ଗୁଣ—ହଁ, ବୁଝି ଖବରଦାର୍ । ଭିତରେ କଥା ହେଉଛନ୍ତି । କେହି ଯେମିତି ଆସି ନ ଶୁଣେ । ବୁଝିଲୁ ?

ବାଙ୍କା—ହଁ ଆଜ୍ଞା, ମୁଁ ଚେଙ୍ଗା ଅଛୁ । (ଗୁଣ ଚାଲିଗଲା)

---

## ତୃତୀୟ ଦୃଶ୍ୟ

ପଥ

(ମାତା ଗାଇ ଗାଇ ପ୍ରବେଶ)

ଦୁନିଆଁରେ ଜନ ସଞ୍ଜ-ନୂଆ ବାହାଘର
କୁସୁମ ଭ୍ରମର ବଣ, ମଳୟ-ପରାଗ ଅବା
ଚାରିଆଡ଼େ ବସନ୍ତେ ରଙ୍ଗ କାରବାର । ୧ ।
ଦିନ ଭୁଲେ ରାତି ବଣ, କଜ୍ଜଳ-ଚନ୍ଦ୍ରକ ଶୋଭା
ତାରା-ବୃନ୍ଦ ବାହାଘର, ସବୁ ଖେଳଘର । ୨ ।

ହସ ସଙ୍ଗେ କାନ୍ଦ ବଣ, ସବୁଠାରୁ ମନ ଲେଉ
ଏ ବଣରେ କେଉଁ ଲାଗ ଚମରୁ ଅମର । ୩ ।

(କାହାକୁ ଦେଖି ଡରଡରହୋଇ ଚାଲିଗଲା)

ମଦନ—(ଚନ୍ତିତ ଭାବରେ ପ୍ରବେଶ କଲେ) ଇଶ୍, ଭାବିପାରୁ ନାହିଁ କପରି ଭୁଲିର ଭୁଲ ! ଆଗରେ ପଛରେ— ଦୁଇ ପଟରେ ଅଖି ଚମରି । ବିଶ୍ୱାସ ? ଜୀବନରେ ଚମରି ବୋଧହୁଏ ସେକଥା ଲେଖା ନାହିଁ । ନଇ ବାସୁ ଦାସକୁ ବିଶ୍ୱାସ କରି ସବୁ ତ କରିଥିଲି ମୁଁ ? ଆଜି ସେ ପୁଣି ଜିଦ୍ ଧରିଛି ମୋ ଭଉଣୀକୁ ବାହାହେବ । ରଣୀ ମୁଁ । ସବୁ ଟଙ୍କା ଅସୁଲ ପାଇବାପରେ ମଧ୍ୟ ପୁଣି ପାଞ୍ଚଶହ ଟଙ୍କା ବାକି । ଋଣ ପରିଶୋଧ ଲାଗି ଆପଣାର ଭଉଣୀକୁ ବଳି ଦେବାକୁ ହେବ ବାସୁଦାସକୁ । ନାଁ ନାଁ-ମୁଁ କଦାପି ତା' କରିପାରିବି ନାହିଁ; ବରଂ ବିଷ ଖାଇ ମରିବି ପଛେ । (ଟିକଏ ରହି) ମାଆ, କି ଅପରାଧ କରିଥିଲି ତୋର ମୁଁ ? କାନଗୋଇ ବଂଶର ଭିଟାମାଟି ଉଚ୍ଛନ୍ନ କଲୁ ମାଆ ! ତୋର ଇଚ୍ଛା— -ଦୁର୍ଗା, ଦୁର୍ଗା··· (ଲୁହ ପୋଛିଲେ)

(ମାତା ପ୍ରବେଶ କଲେ)

ମାତା—(ପରିଚିତାଭଳି ହସି) ମଦନବାବୁ, ଭାବୁଛ କଅଣ ଆଉ ବସି ?

ମଦନ—(ଆଶ୍ଚର୍ଯ୍ୟ ହୋଇ) କିଏ ମାଆ ତୁମେ ?

ମାତା—ମୁଁ ଯିଏ ହୁଏଁ—ତୁମେ ଚିହ୍ନି ନାହିଁ ମୋତେ । ଆଗ କୁହନା—ତୁମେ ଭାବୁଚ କଅଣ ?

ମଦନ—ମୁଁ ଭାବୁଛି ବୋଲି କେମିତି ଜାଣିଲ ?

ମାତା—ଛି ଛି, ମରଦ ପୁଅ ତୁମେ, ଭଗବାନ ତୁମକୁ ବୁଦ୍ଧି ବିବେକ ଦେଇଛନ୍ତି । ସେ କି କେବେ ନିଷ୍ଠୁର ହୋଇପାରନ୍ତି ? ବାପ କି ପୁଅକୁ କେବେ ଅଣଦେଖା କରିପାରିବ ? ନାଁ ନାଁ, ତୁମେ କିଛି ଭାବ ନାହିଁ । ସବୁ ଠିକ୍ ହୋଇଯିବ । ଭୁଲଠାରେ ଭାବ, ମନ ଖରାପ କର ନାହିଁ ।

ମଦନ—ନ ଭାବି ତ ଆଉ ମୋର ଗତି ନାହିଁ ମା !

ମାତା—ଗତି ? ଅଛି ଅଛି—ଖୁବ୍ ଅଛି ।

ମଦନ—ଢେର୍ ଆଉ ଖୁବ୍—ଦ'କଥା ଭିତରେ ଭିଟା ଆଉ ମାଟି—ସେ ତ ଉଚ୍ଛନ୍ନ ଗଲା ବୋଲି ଜାଣ । ବାଳ ମନ୍ଦିରର ମୁଁ, ଭଉଣୀ ଲୀଳା ଆଉ ବୋଉ । ଏଇ ତ ? ମୋର ଅଳ-ଅଜ ସେମାନେ ମଧ୍ୟ ଖବର ପାଇ କାଲି ବା ପଅର ଦିନ ଗଲେ, ବାସୁ ଦାସ

ଆନନ୍ଦରେ ବସି ହଉ ଲୀଳାର ପୋଡ଼ା ପାଉଁଶକୁ ।
ଏଇ ତ ଭଗବାନଙ୍କର ଇଚ୍ଛା ? ଏଇଆ ତ ତାଙ୍କର
ମୋ ପ୍ରତି ବରାଦ୍ ?

ମାତା—ମିଛ କଥା । ତୁମେ ତାଙ୍କୁ ଭୁଲ୍ ବୁଝିଛ ।

ମଦନ—ଭୁଲ, ମୋର ଭୁଲ ।

ମାତା—ହଁ, ତୁମର ଭୁଲ ।

ମଦନ—ଏଟା କ'ଣ ତେବେ ସ୍ୱପ୍ନ ନୁହେଁ ? ଟାଣ ଖରାରେ ଦେହ ପୋଡ଼ିଜଳି ଯାଉଛି । ଏ କଅଣ ସତ୍ୟ ନୁହେଁ ? ମୋର କ'ଣ ତେବେ ଚେତା ନାହିଁ ?

ମାତା—ହଁ, ଏ ସ୍ୱପ୍ନ—ସତ ନୁହେଁ । ତୁମେ ଜାଗ୍ରତ । ଏସବୁ ଯେପରି ସତ, ଜଗତ ପିତାଙ୍କର ନିଜ ସନ୍ତାନ ଉପରେ କରୁଣା ବର୍ଷଣ ସେହିପରି ସତ୍ୟ । ତୁମେ ହିଁ ଭୁଲ ବୁଝୁଛ । ଆସ ଉଠ । ଘରକୁ ଆସ । କାଲି ଯାଇ ବାସୁଦାସକୁ ଜବାବ ଦିଅ ଯେ, ବିବାହ ଦେବାକୁ ତୁମେ ସ୍ଥିର କରିଛ ।

ମଦନ—ଏ ଜବାବ ଦେବି, ମୁଁ ?

ମାତା—ହଁ, ତୁମେ ଦେବ । ଏଥିରେ ଭାବିବାର କିଛି ନାହିଁ । ଆସ, ମୋ ସାଙ୍ଗରେ ଆସ, ମୁଁ ତୁମକୁ ଟାଣ କରି ଗଢ଼ି ଦେଉଛି ।

ମଦନ—(ଉଠି) ମା ଦୁର୍ଗା, ଯାହା ଇଚ୍ଛା ତୋର···

ମାତା—ଚାଲ, ତୁମକୁ ମୁଁ ଘରକୁ ବାଟ ବତେଇଦେଇ ଆସେଁ ।

ମଦନ—(ଯାଉ ଯାଉ) ତୁମେ କିଏ କହିଲ ନାହିଁ ତ ମାଆ ?

ମାତା—ଜାଣିବ । ପଛେ ଜାଣିବ, ଆସ ।

(ଉଭୟେ ଚାଲିଗଲେ)

---

## ଚତୁର୍ଥ ଦୃଶ୍ୟ

(କଟକର ଏକ ପାର୍ଶ୍ୱ)

ଗୁଣ—(କୁସ୍ତି ପୋଷାକରେ ଦଣ୍ଡ ମାରୁମାରୁ) ବାଙ୍କା ! ବଙ୍କୁ ! ବେ ଓଲୁ ! ବାଦାମ୍ କ'ଣ କଲୁ ବେ ? ଆବେ ମିଶ୍ରି କାହିଁ ? ବଙ୍କୁ ? (ବିରକ୍ତ ହୋଇ ବସିପଡ଼ି) ନାଃ, ହବନାହିଁ—ଯେତେଟାଙ୍କୁ ଦେଖିଲି, ସବୁ ଏଇଆ—

"ଅଶ୍ୱ ପୃଷ୍ଠେ ଗଜାରୂଢ଼େ ଅଥବା ନରବାହାନେ
ତଥାପି ଜାନ୍ତି ମହାତ୍ମ୍ୟ ନ ତଷା ସନ୍ନନାପୁତେ" ॥

ବୋପାର ପୁଅ ତ ବାଙ୍କା—ବୋପାଙ୍କ ବରାବର ଧରିଚି । (ବାଙ୍କା ଧୀରେ ଧୀରେ କୁଣ୍ଡିବାଡ଼ ଧରି ପହଞ୍ଚିଲା) ବାଙ୍କା ବେ, ଶଳା ନମକହାରାମ୍ । ମର୍ ଶଳା, ମରଣ ହଉ ତତେ ( ବାଙ୍କା ପଛପଟୁ କାଶିଲା, ଗୁଣ ବୁଲିପଡ଼ି) କରେ ବାଙ୍କା ! ତୁ ଆସି କେତେବେଳୁ ପଛଆଡ଼େ ଛିଡ଼ା ହୋଇଚୁ ? ମୁଁ ତତେ ସାରା ସଂସାର ଖୋଜୁଛି । ବଙ୍କୁ କୁଆଡେ ଗଲା ? ବଙ୍କ୍‌ମନ ମୋର କାହିଁ ? (ବଙ୍କୁ ଗମ୍ଭୀର ହୋଇ ଠିଆହୋଇଥାଏ, ଗୁଣ ଆଦର କରି ମୁହଁ ପାଖେ ଅଧା ନାଚଲାପରି) ମୈଁ ତୋ ହାଗ୍ ଦୁନିଆଁ ଛୁଣ୍ଡି···ମେରେ ବଙ୍କ୍‌ମନ କହାଁ ରେ ?

ବାଙ୍କା—ହାଁ ହାଁ-ଥାଉ ବାବୁ ! ମୁଁ ଜାଣେ ତମ ପେରେମ୍ । ତମ ସୁଆଗ ରଖ । ତମ ଗୁଳକଣି ରଖ । ମୁଁ ସବୁ ଶୁଣିଛି ।

ଗୁଣ—ତା'କଣ ମୁଁ ଜାଣିନାହିଁ ? ମୁଁ ଟେରେଇ ଟେରେଇ ପଛକୁ ଚାହିଁ ଦେଖିଲି, ତୁ ଆସି ଛିଡ଼ା ହେଲୁ । ତୋତେ ଚିଡ଼ଉଇବାକୁ ସେମିତି ସବୁ ବାରକଥା କହିଲି ନାଁ । ତୁ ରାଗିଗଲୁ କି ବାଙ୍କ୍‌ମନ ? ତୁ ରାଗିଲେ ମତେ ଭାରି ଦରଦ୍ ଲାଗେ । ସେଇଥିକି ସେମିତି କହିଲି ନାଁ—ବାଃ, ତୁ କହୁଚୁ କଣ ନା ଗୁଳକଣି ରଖ ? ଆରେ ସେମିତି ହେଲେ ମୁଁ ରହିବି କେଉଁଠି ?

ବାଙ୍କା—ଥାଉ ଥାଉ ସାଆନ୍ତ ! ଏ କୁଣ୍ଡି ରଖ, ଠେଙ୍ଗା ରଖ ।

(ଗୁଣ ବାଙ୍କା କାନରେ ହାତପକାଇ)

ଗୁଣ—ଆଗ୍ରୁ ରଖ । ବାଙ୍କ୍ୟନ, ସତ କହନ ? ତୁ ମୋ ଉପରେ ରଗିଛୁ ? ରଗି ତ ନ ଥିବୁ ମୁଁ ଜାଣେ । ତେବେ ସତ କହନ···ରଗିଛୁ ? ହେଃ···ନାଁ, ସତ କହନ ?

ବାଙ୍କା—(ମୁହଁ ପୋଛ ଛୁଡ଼ାଇନେଲା)

ଗୁଣ—ଓଃ, ଶ୍ଲୋକଟା ଶୁଣି ରଗିଗଲୁ କି ? ସେଇଟା ଆମ ହେମ ଅଜା କହୁଥିଲେ । ସାଚପୁରୁଷ ବ ଜାଣନ୍ତି । ଆଜି ତ ନୂଆ କଥା ନୁହେଁ, ରଗିବାର ସେଥିରେ କ'ଣ ଅଛି ? ନେ, (ଅଣ୍ଟାରୁ କାଢ଼ି) ଏ ବକସିସ୍ । ଧ, ଯା—ତୋର ଯାହା ମନ—ଲଡ଼ୁ, ପୁରି···ଯାହା ମନ ତୋର ଖା' । ଯା, ବାଦାମ୍ ଚୋଟିଛୁ ?

ବାଙ୍କା—( ମୁଣ୍ଡ ହଲେଇଲା )

ଗୁଣ—ଦେଖ, ଫେର୍ ସେଇ ମୁଣ୍ଡହଲା । କଅଣ ଚଦୁଛୁ, ମୋତେ ମାରିବୁ ? କହିବୁ ତ ହଁ କି ନାଁ ?

ବାଙ୍କା—ହଁ ।

ଗୁଣ—ମିଶ୍ରି ? ଭାଙ୍ଗ ?

ବାଙ୍କା—ସବୁ ଆଣିଛ । ବାଟରେ ବଦୁର ଡଆଡ଼ୀ ସଙ୍ଗେ ଦେଖାହେଲା, ସେ ବି ଆସୁଚ ।

ଗୁଣ—ଆଚ୍ଛା ଅଚ୍ଛା, ଅସୁ ଆସୁ । ବଦମାସ୍ ଭଙ୍ଗଡ । ତାକୁ ଏଇନେ ହାତଛଡ଼ା କଲେ ସୁବିଧା ନୁହେଁ । ଲୋକ ମେଇଟାର ପ୍ରକୃତି ଭାରି ଖରାପ । ବୋଲହୋଞ୍ଜି—ଏପାଖ-ସେପାଖ । ତାକୁ ବିଶ୍ୱାସ ଯିବୁ ନାହିଁଟି । ମାତା କଥା ତାକୁ କହୁ କହୁଛୁ କି ?

ବାଙ୍କା—ନାଇଁ ସାଆନ୍ତ ! ମୁଁ ତ ତାକୁ ବଦୁର କହେଁ ବୋଲି ମୋ ଉପରେ ସେ କଉମଡ଼ । ଆଜ ମୁଁ ଭାଙ୍ଗ କିଣିଲାବେଳେ ଦେଖି, ପାଚିରୁ ଲଳ ବୋହିଲା କି କ'ଣ ତାର, ସେ ମୋତେ କଥା କହୁଚ ।

ଗୁଣ—ପିଲାଦିନରୁ ତାର ସେଇ ବଦୁର ବୋଇଲେ ଚଡ଼ବାଟା ଗୁଡ଼ ଗଲନାହିଁ । ବୋପା ଅର୍ଦ୍ଧ ପଥ ଶ୍ରାଦ୍ଧ କର ଚଳୁଥିଲା, ପୁଅ କଟାସ୍ୱାମାତ୍ର ଗନ୍ଧାଯୋଡ଼ ପିନ୍ଧିଲାଣି । ଜମିବାଡ଼ ବ କିଛୁ କରୁଛ ପରା ! ନାଁ ?

ବାଙ୍କା—ଜାଣିନା ସାଆନ୍ତ, ସବୁ ତା ଘରଣୀ କୁହୁପାରୁ । ଜମିଦାର ଘର ବଡ଼ ଗୁମାସ୍ତାର ପରା ଗୋଟାକ-ଯାକ ସେ । ଘର ଯେଉଠୁ··(ଭିତରକୁ ଅନାଇଁ) ଆସୁଚ, ଆସୁଚ ଅଜ୍ଞା ! କିଛୁ ନାଇଁ, ଖାଲି ଭାଙ୍ଗ ଚୋପାକୁ ଆଶାକରି ଆସିଥିବ ସେ । ଭୁନି ହ ଭୁନି ହ ସାଆନ୍ତ ।

ଗୁଣ—ଅରେ ଭୁନି ହ ! ଗୋଠାଟା; ମୁଁ ତା'ର ଖାଏଁ, ନା ଟାରେଁ ? କାଲି ଯୋଗୀ ମୁଣ୍ଡରେ ଜଟ । ଦେଖାଅ ସେ ମୂର୍ତ୍ତିଙ୍କୁ ଦେଖେଇବ । ଅମକୁ ? ଦେଖିବୁ ଥା, ତାଲୁ ମୁହେଁ ମୁହେଁ ପଗ୍ଗର ଦଉଚ ।

(ଡଆଡ଼ୀ ପ୍ରବେଶ କଲେ)

ଡଆଡ଼ୀ—(ହସି) ବାଃ, ସାଆନ୍ତଙ୍କର କୁଣ୍ଡିବାଡ଼ ସାଥେ ସାଥେ । ହାଁ, ଯା ନା ସେ ଗରାଖପଣିଆ, ମାଲ କେତେ ଆସିବା ହେଇଚ ଅଜ୍ଞା ?

ଗୁଣ—ହାଁ, ତୋଲ ପୁରା ।

ଡଆଡ଼ୀ—ତେବେ ଆମ ଆଡ଼କୁ ଦଅଯାଉ । ଆଜ ଡଆଡ଼ୀଏ ଯୋନି ଘାଟି ଡଆର କରଦିଅନ୍ତୁ—ଦେଖିବେ କେମିତି ଜମିବ ଗୋଲ୍‌ପି···

ଗୁଣ—ହଉ ହଉ, ଦେଖାଯିବ ତମ କାମଟା । ବାଙ୍କୁ ! ଦେ, ଡଆଡ଼ୀଙ୍କ ଅଡ଼କୁ ବଢ଼ା ।

(ବାଙ୍କା କୁଣ୍ଡିବାଡ଼ ଇତ୍ୟାଦି ଥୋଇଦେଲା)

ଡଆଡ଼ୀ—ମ, ମ, ଏତ ପ୍ରଣବ ଅଶୁଦ୍ଧ ! କରେ ବାଙ୍କୁ ? ହାଁ ଛତରଟାଏ ଭୁ । ଜଳ କାହିଁ ? ହଇରେ, ତମେ ଯେବେ ଏ ମାମଲା ବୁଝିବ, ହଉତଲେ ଅଉ କଙ୍କଡ଼ା ଗୋଟେଇବ କିଏ ? ଅରେ ଏ ଗୁଣ ସାଆନ୍ତଙ୍କୁ ଭୁ ନଯୋଗ ? ଯା·· ଯା···

ବାଙ୍କା—ଏକା ଉଆଡ଼ୀଏ ମୁହଁ ସମାଳ କଥା କହ । ପଦେ କହିଲେ ଥାନ ଗୁଡ଼ା ପଚଳେଇବ । ମୁଁ ସବୁ ଜାଣେ । ମୁଁ ବାଙ୍କାଟି—ଏଲଖ ନୁହେଁ—ଜାଣିଥା ।

ଗୁଣ—ସତେ ସତ ଉଆଡ଼ୀଏ, ତୁମେ ପିଲଟି ଦିନରୁ ଏଇ ବଦୁର ବୋଲି କହିଲେ ଚଡ଼ କାହିଁକି ଭଲ ? ସତ କହିବ, ପିଲାଦିନେ କ'ଣ ବଦୁର ଗଛର କରୁ କରୁ ଧବା ପଡ଼ିଥିଲ ନା ବଦୁର ଯୋଉ ପନ୍ଥାରୁ ଜନ୍ମ ତୁମେ ସେଇ ଘରୁ ଜନ୍ମ ? ସତ କହିବଟି ?

ଉଆଡ଼ୀ—ଯା-ଯା, ସାଆନ୍ତ ! ତୁମେ ବ ସେଇ କଥା ଗୁବ ପଚ୍ଚରୁଛ ? ବାଜେ କଥା ସେଗ୍ଡ଼ାକ । ଆମ ଗାଁ ଲୋକ ଯେମିତି ଜାଣୁନା, ସେ ପଦେ କହିଲେ ମୁଁ ପଦେ କହେଁ । (ଭାଙ୍ଗ ଫିଟାଇ) ଯା' ବାଙ୍କ ! ଜଳ ଆଣ ।

(ବାଙ୍କା ଗୁଲଗଲା)

ଗୁଣ—ଉଆଡ଼ୀଏ ! ଗୋଟେ ଅସଲକର ପାଗ ବନା' ଆଜ ।

ଉଆଡ଼ୀ—ଯେ ତ ହବ, ସ୍ୟା ଉପରକୁ ?

(ବାଙ୍କା ପ୍ରବେଶ)

ବାଙ୍କା—ତା ଉପରକୁ ବଦୁର··· (କହି ଗୁଲଯାଉଥିଲା)

ଉଆଡ଼ୀ—ଯା ଯା, ଚଷୋଡ଼ । ଦେବଟି କୁଣ୍ଡିବାଡ଼ରେ ମୁଣ୍ଡକୁ ଠେଙ୍ଗାଏ । ମୋତେ ରଗଉଚ୍ ?

(ବାଙ୍କା ଗୁଲଗଲା, ହସି ଗୁହିଁଦେଇ)

ଗୁଣ—ଉଆଡ଼ୀଏ, ଯାଃ—ତୁମେ ସେଇ ପିଲାଦିନର କଥା ଛୁଉଚ ? ତା' କଥାରେ ଗୋଟେ ଚେଡ଼ିଚ ? ଆସି ଏତେ ହେଲ, ଗାଁରେ ସତ-ମିଛରେ ଗୋଟେ ମାମଲତକାର ବନଲ—ଧେତ୍, ଛାଡ଼, ହଁ, କଣ କହୁଥିଲ ?

ଉଆଡ଼ୀ—ନାଇଁ ଗୁଣସୋଆନ୍ତ, ଦେଖ ତା' ଅକଲ । ଆମକୁ ଭଲ ପ୍ରମାଣ ଖାତିର ନାଇଁ ଏ ଛତରଖିଆର ! ହଁ, କଥା କ'ଣ କ ? ଭାଙ୍ଗ ପଛକୁ ଭୋଜନ—

(ଭାଙ୍ଗ ପ୍ରସ୍ତୁତରେ ବସି)

ଗୁଣ—ଆଗ୍ରୁ ଆଗ୍ରୁ, ଆଗେ ଭାଙ୍ଗ ହଉ, ଭୋଜନ କଥାଟା ବୁଝିବା ।

ଉଆଡ଼ୀ—ଆଃ, ଏ ଯେ କଥା—କରଣ ସାଆନ୍ତଙ୍କ ଲାଏକ୍ । କ'ଣ କ ସାଆନ୍ତ ! ଯେ ହେଲା ଦେବଭୋଗ୍ୟ ଚଜ—ଜାଣି ନାହାନ୍ତ କ ? (ଘୋଟ୍ ଘୋଟ୍) ବୋଇଲ—"କୁଣ୍ଡିମଣ୍ଡଳ ପୟୋନିଧି ମଧ୍ୟ
ଦଣ୍ଡ ମନ୍ଦର ଗିରି ଭ୍ରମଣ୍ଡନ୍ତୁ ।
ତହିଁ ଜାତ ବିଜୟାମୃତ ସାରଂ
ଲେହିନରେ ସକଳ ଭୂଷୁର ବର୍ଗାଃ ॥"

ଗୁଣ—ହଁ ହଁ, କ'ଣ ହେଲା ?

ଉଆଡ଼ୀ—ପାଠ ବୋଇଲ—କୁଣ୍ଡିମଣ୍ଡଳ ସମୁଦ୍ର ମଧ୍ୟରେ ଯେ ଠେଙ୍ଗା ହେଲା ମେରୁ ପର୍ବତ, ବିଜୟା ହେଲା ଅମୃତ ।

ଗୁଣ—(ହସି ହସି) ହଁ,
"ସେ ମକରନ୍ଦ ପାନ କରି
ଆନନ୍ଦେ ବୋଲ ହରି ହରି ।

(ଦୁହେଁ ହସିବା ସମୟରେ ବାଙ୍କା ପହଞ୍ଚିଲା)

ବାଙ୍କା—ସାଆନ୍ତ, କଏ ଜଣେ ଆପଣଙ୍କୁ ଡାକୁଚ ।

ଉଆଡ଼ୀ—ଆଃ, ଏଇଥିପାଇଁ ମୁଁ କହୁଥିଲ ଗୋଟେ ଅରସିକେଷୁ ଟେ···

ଗୁଣ—କରେ, କଏ ଡାକୁଚ, ଜାଣିନୁ ?

ବାଙ୍କା—ନାଁ, (ମୁହଁରେ ଠାରି କହିଲା) ମା-ତା—

ଗୁଣ—(ଆଗ୍ରହ ସହକାରେ) ଆଗ୍ରୁ ହଉ, ଗୁଲ । ମୁଁ ଦେଖି ଆସୁଚ । (ବାଙ୍କା ଗୁଲଗଲା) ଉଆଡ଼ୀଏ, ତୁମେ ଘୋଟୁଥା, ଘଡ଼ିଏ କ'ଣ ଏ ଘରେ ମରିବାକୁ ଫୁରୁସତ୍ ଅଛୁ ? (ଉଠିଲେ)

ଉଆଡ଼ୀ—ସତ ସତ, ବଡ଼ ଘର—ବଡ଼ କଥା । ହଉ ସାଆନ୍ତ, ମୁଁ ଠିକଣା କରେଁ । ପିଆଜୁ ସ୍ୟା ସାଙ୍ଗଟା ଯେମିତି ଅଣା ହେଇଥିବ ।

ଗୁଣ—(ଯାଉ ଯାଉ) ହଁ ହଁ ।

ଉଆଡ଼ୀ—(ଘୋଟୁ ଘୋଟୁ ଗୁଚଆଡ଼କୁ ଗୁହିଁ ତୋକେ ପିଇ) ଆଃ, ଆସିବା ବେଳକୁ ସବୁ ସାଫ୍ କରି

ଦେଇଥିବ । କଟରେ, ଏତେ ପରିଶ୍ରମ କରି ଘୋଷୁଛି, ସେ ବ୍ରାହ୍ମଣ ଝାଳ—ଶୁଦ୍ଧ କପାଳ ? ଏ ନ ହୁଏ ବାବା ! (ଘୁଙ୍ଗ ଗୁଣ୍ଠ୍ ଗୁଣ୍ଠ୍) ଲେମ୍ବରେ ସକଳ ଭୂସରୁ ବର୍ଷା । ଲେମ୍ବରେ ସକଳ ଭୂସର ବର୍ଗା ।

---

## ପଞ୍ଚମ ଦୃଶ୍ୟ

(ଘଷିବୋଝ ସଜାଡ଼ୁଥିଲେ କୁସୁମ । ଗାଁ'ର ଆଉ ଜଣେ ସ୍ତ୍ରୀଲୋକ ଆସି ପହଞ୍ଚିଲା—କମାରଘର ବୋହୂ ସେ, ନାଁ ତା'ର ରତମା)

ରତମା—ଅପା ସାଆନ୍ତାଣୀ କ'ଣ କରୁଛନ୍ତି ?

କୁସୁମ—କିଏ ଲୋ ? ରତମା ! ଦେଖୁଛୁ ତ, କ'ଣ କରିବି ଆଉ ?

ରତମା—ହଁ ଅପା, ଜନମ ସିନା ବାପ ମା' ଦେଇଛନ୍ତି, ହେଲେ କରମ ତ ଦେଇନାହାନ୍ତି ! ସେ ପୋଡ଼ାମୁହାଁକୁ ଦଇବ ଏକା ନ ସହୁ । କାଲି ସେମିତି ଗୁବଥୋଲ୍ ହଲେଇ ହଲେଇ ଆମ ସାଇ ଦାଣ୍ଡବାଟେ ଯାଉଥିଲା । ବୋହୂଟା ମୋର ଗାଡ଼ିଆ କୂଳେ କଂସା ଦ'ଖଣ୍ଡ ଧୋଇବାକୁ ବସିଚି—ଆଉ ଦେଖ ତା' ନାଗରପଣିଆ ? ନଈଆ ଆମର ଶାଳରୁ ତତଲ୍ ଚୂମୁଟାଟା ନେଇ ଦଉଡ଼ିଲାବେଳକୁ ପଳେଇ ଆସିଲାଣି । ନଇଲେ କାଲି ସେଇଠି ପାଇଥା'ନ୍ତା ଯେ ପାନେ !

କୁସୁମ—ସ୍ୱାଙ୍କର ତ ସେଇ ହେଇଚି ଶିଖ ।

ରତମା—ନୋହିଲେ ଘଷି ବିକି ତମ ଦିନ ଯା'ନ୍ତା ଅପା ? ଲକ୍ଷ୍ମୀଙ୍କି ଯେମିତି ଆଡ଼େଇ ଦେଇଚ, ସେଇମିତି କରମ ଫାଟିବ ଯେ !

କୁସୁମ—ନାଇଁ ରତମା, ଭଲରେ ଥାଆନ୍ତୁ ସେ । ମୋ ଦୁବଟି ଦାରୁ ହଉ, ସେ ମଣିଷ ହେଲେ ମୋ' ଦୁଃଖ ଯିବ ନାଇଁ ଯେ ! ହଁ, ସନତ ମା' ଷଠି ଦୁହେଇ ତାକୁ ଚାହିଁବେ ? ସେ ମଣିଷ ହବ ? ଜୀବନଟା ତା'ର ପାଇଁ ଧରିରଖିଛି ସିନା !

ରତମା—ହଁ, ସୁନା ବାଙ୍କେ ଥିଲେ କଉଡ଼ି, ତାକୁଇ କଇଲ୍ଣ କରୁଛନ୍ତି । କଳାପଡ଼ କାଠି ଦ'ଖଣ୍ଡିରେ ରହିଲଣି ପିଲାଟା । ରମୁ ବୋଲି ତାକୁ କହିବ କିଏ ? ପୋଡ଼ାମୁହାଁ ମାମୁଁ ହେଇଚି ତା'ର—କଂସ, କଂସ ମାମୁଁ ।

କୁସୁମ—ପାଠପଢ଼ାକୁ ମନା, ଅବଧାନଟାକୁ ଦରମା ନ ଦେଲେ କେମିତି ପଢ଼ିବ ଭଲ ? ମୁଁ ତ ଘରର ପୋଇଲୀଠୁଁ ହୀନ । ବେଳ ସହଳରେ ମୁଠେ ଖାଇବାକୁ ତ ପାଉ ନାହିଁ ସେ । ପୋଡ଼ା ମୁଢ଼ୀ ଗଣ୍ଡାକୁ ଭାଗଜନ ନୁହେଁ ମୁଁ । ଆଉ ତା' ଦୁଃଖ କଥା କାହିଁକି କହୁଚୁ ?

ରତମା—ହଁ, ସତେ ଜଗନ୍ନାଥ ଚାହିଁବେ—ଫେର୍ ଏଇ ଆଖିରେ ଦେଖିବା । ଯାଉଚି—ଦିନେ ଦ'ଦିନେ, ଘଡ଼ିଏ ପହଡ଼େ ଆସି ତମ ପାଖେ ବସି ନ ଗଲେ ଅପା, ପେଟଟା ଯେମିତି ପୂରେ ନାହିଁ । ଟେଣେ ଘର ଗୋଟାକର ପାଇଟି । ସେ କ'ଣ ବସେଇ ଦଉଚି ନହଲରେ କୋଉଠି ? ନଅ'ଏ ଛ'ପଇସା—ଦ' ଦିନର ।

କୁସୁମ—ଆଜି ଏ ଘଷିତକ ନେଇ ଯା—ଯା'ହା ହବ କାଲିକି ଦବୁ ।

ରତମା—( ଘଷି ଟୋକେଇ ଉଠେଇ ) ଯାଉଛି ହେ ଅପା ସାଆନ୍ତାଣୀ ! ଟୋକେଇଟା କାଲି ନେଇ ଆସିବି । ଥା । (ଚାଲିଗଲା)

କୁସୁମ—ହଉ । (ଦୀର୍ଘ ନିଶ୍ୱାସ ପକାଇ ଉପରକୁ ଚାହିଁ ବସିପଡ଼ିଲେ) ଆଉ ପାରୁ ନାହିଁ । ଭାଙ୍ଗିଗଲାଣି ବଳ—କେତେ ସହିବି ମା ? ମା'ଗୋ ଦୟାମୟୀ ! ଶେଷକୁ ଦାନା ମୁଠାକ ଅଭାବ କଲୁ ମା ? ପୁଅ ବୋଲି

ଖଣ୍ଡେ ଦେଇ ମତେ ବାନ୍ଧି ରଖିଛୁ ମା—ନୋଇଲେ
ତୋ'ର ଚରଣ ତଳେ କୋଉଦିନୁ···
(ମାରବରେ ମୁଣ୍ଡିଆ ମାରଲେ)

ରମୁ—(ପଛରୁ ଦଉଡ଼ିଆସି ପିଠିରେ ନାଉ ହେଲା) ବୋଉ, ଖେଳ—

କୁସୁମ—(ଉଠି ଆଖି ପୋଛି ରମୁକୁ କୋଳକୁ ଆଣି) ଆ ଆ, ମୋ ବାପା ! ନେ, ଏ ପଇସା ଦି'ଟା ନେ—ମାତା ମା'କୁ କହିବୁ ଭୁଜା କିଣିଦେବ ।

ରମୁ—(କୁଣ୍ଠିତ ହେବାପରି) ବୋଉ, ତୁ କାନ୍ଦୁଥିଲୁ ?

କୁସୁମ—ନାଇଁରେ ବାପା, ଆଖିରେ ପୋକଟେ ଗୁଣ୍ଡ ପଡ଼ିଗଲା ଯେ···(ରମୁକୁ କାଖେଇ ଚୁମା ଦେଲେ)

(ମାତା ହସି ହସି ଗାଇ ଗାଇ ପହଞ୍ଚିଲେ)

(ଗୀତ)

ଟାଣଖରା ପରୁଚାଲି ରେ—ନପାଣିଆ ଟାଙ୍ଗରଭୂଇଁ,
ଆଖିବାଟେ ଜକୁଜକିଆ—ଉଡ଼ିଯାଏ ଏ ବାଟ ଚାହିଁ ॥୦॥
ତଳ ତାଡ଼ ଉପର ତତ—ପେଟ ତାଡ଼ ଫାଟିଯିବ ତୁଣ୍ଡ,
ଆଉ ତେଣେ ଦୟାମାୟା—ଆହା ପଦ କାହାର ନାହିଁ ॥୧॥
ଖାଇଁମରା ଦେହଟା ମୋର—ପାଦ୍ମଶ୍ଳୁ ନାହିଁ ତ ବଳ
ଏ ମୁଲକେ ଗଛବୃଛ—ଆଶରାକୁ ନାହିଁ ଛାଇ ॥୨॥
ଥିଲାତକ ସବୁ ମୋର—ପଡ଼ିଗଲେ କିଏ ତୋର,
ଘୁଡ଼ିଗଲା ବାସିଦିନ—କିଏ କାହା ପୁଅ ଭାଇ ? ॥୩॥

ରମୁ—ହେଇଟି ବୋଉ, ମାତା ମା' ଆସିଲେଣି ।

ମାତା—ମୋତେ ଖୋଜୁଥିଲ କି ଅପା ?

କୁସୁମ—ହଁ ଭଉଣୀ, ରମୁ ଖେଳ କଲଣି ବୋଲି ନଗେଇଲା ଯେ, ଯୋଗକୁ ରତମୀ ଦକ୍ଷି ପଇସା ଦେଇ ଯାଇଥିଲା ଏଇନେ—ଅକ୍ଷେତିକୁ ଦଇବ ସାହା ।

ମାତା—ଏ କଥାରେ କଅଣ ଟିକିଏ ମିଛ ଅଛି ? ଆ'ରେ ବାପା ରମୁ, ତୋ ପାଇଁ ମୁଁ ଖଜା ଆଣିଛି ।

ରମୁ—(କୁଣ୍ଠିତ ହୋଇ) କାଇଁ ?

କୁସୁମ—ମାତା ! କାହିଁକି ଭଲ ତୁମେ···

ମାତା—ଅପା, ତୁନି ହ । ପୁଅଟେ ଜନମ କରିଛ ବୋଲି, ପୁଅ ସୁଆଗ ଏକା ତମକୁ ଜଣା—ରମୁଟି ଏକା ତମରି ପୁଅ, ନାଁ ?—ଆଉ ଦିନେ ଏମିତି କହିବ ତ ଫେର୍······(ରମୁକୁ କାଖେଇନେଇ ଚାଲିଗଲେ)

କୁସୁମ—(ମାତା ବାଟରେ ଚାହିଁ ଲୁହ ଝରାଇ) ମା'ଗୋ ! ଏତେ ସ୍ଥାନମାନଙ୍କରେ ବି ତୋର ଦୟା ଅଳ୍ପ ନୁହେଁ ତ ?
(ଲୁହ ପୋଛୁଲେ)

ମାତା—(ନେପଥ୍ୟରୁ) ଅପା ! ଏଣିକି ଟିକିଏ ଆସିଲ, ଶୁଣିଯାଅ ।

କୁସୁମ—(ପୂର୍ବପରି) ଯାଉଛି ।
(ଚାଲିଗଲେ)

---

## ଷଷ୍ଠ ଦୃଶ୍ୟ

(ଗୁଣ ହାତରେ ତାଳପତ୍ର ଚିଠାଉ)

ଗୁଣ—ଆଲ୍ଲା ସବ୍ ଦେତା ତୋ ଛପର୍ ଫାଡ଼କେ । ଯେତେବେଳେ କର୍ମ ପଡ଼େ, ଫଳ ଏମିତି ମିଳେ । ଯୋଉଥିରେ ହାତ ଦେଲ ସବୁ ସୁନା । ମଦନ ମହାନ୍ତି ସେଦିନ କୁନ୍ଥ କୁନ୍ଥ ହୋଇ ଗଲା । ଭାବିଲି, ଶଳାକୁ ଦେଖିଲି—ଏଣୁ ମାଇଲେ ଗୋ-ହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା । ଭଉଣୀକୁ ଚାହିଁବ, ନା ସାତପୁରୁଷ ଭିଟାମାଟିକୁ ଚାହିଁବ ? ଖବର ଦେଇଚି—ଭଉଣୀକୁ ଦେବାକୁ ରାଜି । ଏଥର ଗୁଣର କପାଳ ଖୋଲିଲା । କୁସୁମଟାର ବୁଦ୍ଧିସୁଦ୍ଧି ଅଛି । ହସିଆର ମାଇପି । ଗୁଣର ଘର ପଶିଲା ନାହିଁ ଚା'ପ ଖେ । (ନେପଥ୍ୟକୁ ଚାହିଁ) ଏଇଟା ଆସୁଛି, ଅସୁ । ଯେବେ ମୋ ହାତରେ ପଡ଼ିଲା ତ ଭଲ, ନଇଲେ ଗୁଣଧର ପୁଣି କଦର ଖେଳ ବୁଢ଼ାପାଇଁ ଚତୁର୍ଥ ବନ୍ଦୋବସ୍ତ କରିନେବାକୁ ଭିଡ଼ କଅଣ ? ଦାସ ବୁଢାକୁ ଆଜ ଖୁସ୍ କରିଦେବ । ବାଙ୍କା ! ବାଙ୍କୁ ! ବଙ୍କିମ୍ !—

(ଅନ୍ତରାଳରୁ 'ଆଜ୍ଞା' କହି ବାଙ୍କା ପଳାଉଥିଲା)

ବାଙ୍କା—ସାଆନ୍ତ, ଆମ ଘରବାଟେ ମାଠା ଏଇନେ ବାହାରି ଆସୁଛି । ଏଇବାଟେ ଯିବ । ଡାକିବି ?

ଗୁଣ—ଅରେ ଆରେ, ପଚାରୁଚୁ ? ଯା, ଯା, ଯା— ଘେରିକି ମାଡ଼ ପଚାରନ୍ତି ? ଆଜି ତ ପୁନିଅଁ ରାତିରେ ସମୁଦ୍ର ଢେଉ ହାବୁ ଡୁବୁ—ହାବୁ ଡୁବୁ । ଉଚ୍ଛୁଳୁଛିରେ ଖାଲି ପ୍ରେମ । ଡାକ୍ ଡାକ୍—ଖାଲି ଡାକ ନୁହେଁ ରେ, ଏକଦମ—(ଗୀତ ବୋଲିବା ଭଳି) ବାଟ ଜଗି ଘାଟ ମାଗେ—ବୁଝିଲୁ ।

ମାଠା—(ନେପଥ୍ୟେ)

(ଗୀତ)

ଘୋର ଘନ ବାଦଲ    ଦାମିନୀ ଝଲମଲ
ଭରି ଉଠେ ସଦ୍ଧ ବାରିଧାରେ,
ବିଜୁଳି ଉଠେ ଚମକି    ହେଉଛି ରହିବି କି
ପିଆରା କି ତା'ର ନ ନିବାରେ ॥
ଜୀବ ତାରି ନବଘନ    କରୁ ଶିଳା ବରଷଣ
ପଡ଼ୁ ପଛେ ମସ୍ତକେ ବଜ୍ର,
ପଥର କରିଛି ହୃଦି,    ଅଡ଼ି କି ମନେ ଶେ ଖାଡ଼ି
ବରିଛି ତ ତେଜି ମାନ ଲାଜ ॥
ଉଦି ନବ ସୁନ୍ଦର,    ପୂର୍ଣ୍ଣ ସୁଧାକର
ପୁଣି ଶୁଭ୍ର ଚନ୍ଦ୍ରମା ରାଜେ,
କାଳ ନିଶା ଗତ,    ଶୁଭ୍ର ଦିନ ଆଗତ,—
କୁଞ୍ଜେ ମୁରଲୀ ପୁଣି ବାଜେ ॥

( ଗୁଣ ଧ୍ୟାନମଗ୍ନ ଥିବାପରି ଶୁଣୁଥିଲେ । ବାଙ୍କା ପଛରେ ଛିଡ଼ାହୋଇ ହସି ହସି ନାଚୁଥିଲା । ଗୀତ ସରିଗଲା ପରେ ଗୁଣ ସାଷ୍ଟାଙ୍ଗ ହେଲାପରି ଝାଡ଼ଝୁଡ଼ ହୋଇପଡ଼ିଲେ )

ଗୁଣ—ବାଙ୍କା !

ବାଙ୍କା—ସାଆନ୍ତ ।

ଗୁଣ—ଆହା ହା ।

ବାଙ୍କା—ଆହା ହା···

ଗୁଣ—(ନିଃଶ୍ୱାସ ମାରି) ହାଇରେ ହାଇ, କି ମିଠା ରେ ? ଯେମିତି ମହୁ !

ବାଙ୍କା—ଆଜ୍ଞା ହଁ, ଗଲବର୍ଷ ଆମ ବାଡ଼ି ପଟ ବଡ଼ ବୁଢ଼ା ବରଗଛ କୋରଡ଼ରେ ସେଇ ବାଘୁଆ ମହୁ, କି ମିଠା ! ଓହୋ, ହୋ !—

ଗୁଣ—ଭୁଲି ପାରୁନାହିଁ ରେ ବଙ୍କୁ !

ବାଙ୍କା—ଭୁଲି ହବ ନାଇଁ ସାଆନ୍ତ ।

ଗୁଣ—ଜୟ ରାଧେ, ଜୟ ରାଧେ ।

ବାଙ୍କା—ଜୟ ରାଧେ, ଜୟ ରାଧେ ।

ମାଠା—(ଗାଇ ଗାଇ ପ୍ରବେଶ ହେଲେ ଓ ଚାଲିଗଲେ) (ତାକୁ ପିଛୁଳି ପରି ଗୁଣ ଓ ବଙ୍କୁ ଛିଡ଼ା ହୋଇଥିଲେ, ଗୋଟିଏ କଡ଼ରେ । ମାଠା ଚାଲିଗଲାବେଳକୁ ଗୁଣ ବାଙ୍କୁକୁ ଡାକିଲେ )

ଗୁଣ—ବଙ୍କୁ, ଗଲାରେ ଗଲାରେ ଗଲାରେ—

ବାଙ୍କା—ସାଆନ୍ତ ! ଧର, ସାଆନ୍ତ ଧର, ସାଆନ୍ତ ଧର ।

( ପଟ୍ଟପତନ )

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

(ବାଦୁଦାସଙ୍କ ବାଣପଟ ଘର—ମାଠା ଦଅଁଙ୍କ ମାଳା ଗୁନ୍ଥୁ ଗୁନ୍ଥୁ ଗୀତ ଗାଉଥିଲେ—ରମୁ ଖେଳୁଥିଲା ।)

(ଗୀତ)

ଫଟା ମୋ କୁନି ନାଆଟି ଭସାଇ ଦେଲି ଅଥଳ ଜଳେ
ହାବୁକା କିଏ ଦେଲାରେ—ନଉକା ବାହିବା ବେଳେ ॥୦॥
ପାଣି ତ କଳା ଭଉଁରି—କାତଟି ଘେଞ୍ଚିଆ ମୋର
ଆଗୁଆ ପିଟୁଛି ବାଆ—ଏ ଦାଉ କିଏ ସମ୍ଭାଳେ ? ॥୧॥
ବେବାଗିଆ ଅହ୍ଲଲଟା—ମାରୁଛି ବରଷା ଛଟା
ଡୋଙ୍ଗି ମୁହେଁ ପଡ଼ୁଛି ନାଆ—ଜୀବନର ସଞ୍ଜବେଳେ ।୨ ।
ହାତ ନିଏ କୋଳ ମାରି—ସଭିଏଁ ହେଲେ ଉଗାରି
ବୁଡ଼ିଲା ବୁଡ଼ିଲା ଭେଳା—ସୁଖ ସାଥୀ କାହିଁ ଗଲେ ? । ୩ ।

ମାତା—କିରେ ରମୁ, ବୋଉ କ'ଣ ତୋର ଆଜି ନଈକୂଳଯାକ ପାଣି ଗାଧୋଉଛି କିରେ ? କୋଉ ପହରୁ ଗଲାଣି···ମୁଁ ଯାଉଛି । କହିଦବୁ ବୋଉକୁ ତୋର, ମୋର ଡେରି ଠାକୁର ନଡ ସର ନାହିଁ ।

ରମୁ—ରହୁନ, ବୋଉ ଏଇନେ ଆସିବ ନାହିଁ କି !

ମାତା—ନାହିଁ ରେ ବାପା, ପଛେ ଆସିବ । ତୁ ଦାଣ୍ଡକୁ ଯିବୁନାହିଁ । ଏଇଠି ଖେଳୁଥା ବସି । (ପ୍ରସ୍ଥାନ)

ରମୁ—(ଖେଳୁଥିଲା । ବାସୁ ଓ ଗୁଣ ଆସି ପହଞ୍ଚିଲେ)

ବାସୁ—କିରେ ଟୋକା ! ତୋ ବୋଉ କାହିଁ ?

ରମୁ—ଗାଧୋଇ ଯାଇଛି ।

ବାସୁ—ହଁ, ଗଧ ପହଉ଼ ଭାଙ୍ଗିଥିବ ବେଳ ଘଡ଼ିକ । କିସ କାମ ନା ଦାମ ? ପଡ଼ି ତ ମିଳୁଛି । ଗିଳିଥା ଗିଳିଥା ଆଉ ଦିନ କେଇଟା ।

ଗୁଣ—ଚାଲୁ, ବୋଉକୁ ଡାକି ଆଣିବୁ—ଚାଲୁ ।

( ରମୁ ଯିବାକୁ ଉଦ୍ୟତ ହେଲାବେଳେ, କୁସୁମ ଓଦାଲୁଗା ଓ ଡାଳେ ପାଣି ନେଇ ପହଞ୍ଚିଲେ )

ଗୁଣ—ଅପା, ଆଜି ଏତେ ଉଚ୍ଛୁରରେ କିଣ ଗାଧୋଇ ଯାଇଥିଲୁ ମ ! ଠାକୁର ପୂଜା କରିବୁ କେତେବେଳେ ଆଉ ?

କୁସୁମ—ଲୁଗା ଗୁଡ଼ାକ ମଇଳା ହୋଇ ପଡ଼ିଥିଲା ଯେ, ଖାରରେ ସିଝେଇ ଥିଲି, ତାକୁ କାଚୁ କାଚୁ ମଠ ହେଲା ।

ବାସୁ—ରମୁବୋଉ, ଗୋଟିଏ କଥା ଭାଳିବାକୁ ଆସିଥିଲି—

କୁସୁମ—କିଣ କହ ।

ବାସୁ—ତୁମେ ଘରେ ଲୁଗା ଡାଳ ରଖିଦେଇ ଆସ । ଗାଧିଆ ଲୁଗାରେ କେତେ ଠିଆ ହେବ ?

(କୁସୁମ ପ୍ରସ୍ଥାନ କରି ସେଇଠି ଡାଳ ଥୋଇଦେଇ)

କୁସୁମ—ଏଇଠି ଥାଉ ।

ବାସୁ—କ'ଣ କଥା କି···ଆସି ଷାଠିଏ ହେଲା । ଧରମ ନାହିଁ କରମ ନାହିଁ, ଅଜାଡ଼ି ଅରଜି ତ ଦିହଟା ଗଲା । ବାପାଙ୍କର ଭୂଇଁ ତିନି ଗୁଣ୍ଠ ଥିଲା—ଘର ଡିହ ବୋଲନ୍ତେ ମୋଟେ ଛଅ ହାତ । ମୋ ଭାଗ୍ୟକୁ ହଳ ହଡା, ଧାନ ଅମାର । ଧନ ବୋଲିତ କୋଉଥିରେ ମା ଲକ୍ଷ୍ମୀ ଊଣା କରିନାହାନ୍ତି । କୋଳକୁ ମଧ ପିଲାଖଣ୍ଡେ ଦେଇଛନ୍ତି । ଗୁଣଟି ବି ପିଲାଟି ଦିନରୁ ଅଛି—ସବୁ ଜାଣି ଶୁଣି ଗଲାଣି । ହୁସିଆର୍ ସେ ସବୁଥିକି । ରଇତ ଖାତକ ସବୁ ସେ ବୁଝୁଛି । ଘରକୁ ତୁମେ, ଦାଣ୍ଡକୁ ସେ—ମୋତେ ଛୁଟି ଦିଅ ।

କୁସୁମ—କଥାଟା କଅଣ ମୁଁ ତ ବୁଝିପାରୁ ନାହିଁ ।

ଗୁଣ—କଥା କଅଣ କି ଅପା, ଭାଇଣେଇ ତୀର୍ଥଯାତ୍ରା କରିବାକୁ ମନ କରିଛନ୍ତି । ଗାଁ ଯାକ ବୁଝେଇ ସୁଝେଇ ଫାଟିଫୁଟି ଗଲେ । ମୁଁ ଯେତେ କହିଲି—ନ ହେଲା । ଏକା ଜିଦ୍ ଧରିଛନ୍ତି, ସେ ତୀର୍ଥ କରିବେ । ହବ ତ, ବର୍ଷେ ଛଅମାସ ରହି ଘରକୁ ଫେରିବେ । ହେଲେ ପୁଣି ଯିବେ । ପୁରୁଷୋତ୍ତମରେ ଏଥି ଭିତରେ ମୋତେ ନ କହି ନ ପୋଛି ଖଣ୍ଡେ ଘର କିଣିଛନ୍ତି । ସେଇଠି ରହି ଜଗବନ୍ଧୁଙ୍କ ଦର୍ଶନ କରି ଦିନ ନେବେ ।

ବାସୁ—ହଁ, ଏଇ କଥା—ଏଇ କଥା । ଆଉ କେତେ ଘାଣ୍ଟି ହେବ ? କାଳିଆ ମୁହଁ ଗୁହାଁ ଗୁହାଁ ବାକି କେତେଟା ଦିନ କଟିଯାଉ ଜଗବନ୍ଧୁ ! ଜଗବନ୍ଧୁ !

ଗୁଣ—ଯେ···ମୁଁ କହିଲି, ଅପାକୁ ପଚାର—ତା'ର ମତଟା କଅଣ ?

ବାସୁ—ଆରେ, ମୁଁ ଆଉ କାହାର ମତ ଶୁଣାଶୁଣିରେ ନାହିଁ ରେ ! ଡୋର ପଡ଼ି ଲାଗିଲାଣି, ଦିନରାତି ମୋତେ ସେଇ କାଳିଆ ଲୀଳା ଦିଶୁଚି । ହଁ, ଅପାକୁ ପଦେ ପଚାର, ତାହାଁକ ମୋର ମନା ନାହିଁ । ବାକି··· ଜଗବନ୍ଧୁ ! ଜଗବନ୍ଧୁ !

ଗୁଣ—ଅପା ! କିଣ କହୁଚୁ ?

କୁସୁମ—ଏ କଥାକୁ କିଏ ମନା କରିବ ? ଧର୍ମ କଥା—ମୁଁ ବାଧା ଦେଇ ଅଧର୍ମ କିଣିବି କାହିଁକି ?

ବାସୁ—(ହସି) ଶୁଣିଲୁ, ମୋ ଭାଗ୍ୟକୁ ଲକ୍ଷ୍ମୀଟିଏ ପଡ଼ି ।

ଗୁଣି—ତା'ର ତ ଦିନବାର ଝିଲିମିଳି—ତୁଳସୀ ଚଉରା । ବାର ଦିନେ ତେର ଉପାସ । ସେ ଆଉ କ'ଣ କହନ୍ତା ?

ବାସୁ—ମୁଁ ତତେ ଆଗରୁ କହୁନାହିଁ ?

କୁସୁମ—ଯାଅ ସେ, ଗୋଟେ କଥା ମୋର ଅଛି ।

ବାସୁ—କ'ଣ କୁହନା—କହନା ।

କୁସୁମ—ମାଉସୀ ଆମ ଘରକୁ ଆସିଛି ବୋଲି ଖବର ପାଇଥିଲି—ତମେ ଯିବ ତେଣେ, କେବେ ଫେରୁଛ ଜଣା ନାହିଁ ?

ଗୁଣି—ହଁ ଅବଶ୍ୟ ମାସ ଛଅଟା ଲାଗେ, ସେଇ ଅନୁସାରେ ଚୂଡ଼ା ଗୁଡ଼ଲ ସବୁ ବନ୍ଦ ହେଉଛି ।

କୁସୁମ—ତେବେ ମୁଁ ଟିକିଏ ହେଲେ ବାପଘର ଭିଟା ମାଡ଼ି ଆସନ୍ତି, ତୁମେ ଫେରିଲେ, ଆସିବି ।

ବାସୁ—ଭଲକଥା, ଭଲକଥା । ଏଠି କାହାକୁ ଅନେଇଁ ରହିବ ? ଯା—ବୁଲି ଆସ । ମୁଁ ତ ଆଜ ଏଇ ପାହାନ୍ତାରେ ଯିବାକୁ ଲଗ୍ନ ଦେଇଛି ଅବଧାନ । ତୁମେ...

କୁସୁମ—ମୋତେ ଆଗରୁ ବିଦା କରିଦିଅ—ବାଟ କେତେ ? ଉପର ଓଳି ବାହାରିଗଲେ ତ ସଞ୍ଜ ଘଡ଼ିକରେ ପହଞ୍ଚିଯିବି ।

ବାସୁ—ହଉ ତେବେ । ଗୁଣି, ପାଲିଙ୍କି-ବେହେରା ସଜାଇ କର, ମୁଁଆ ଉଖୁଡ଼ା କିଛି କରେଇ ଦେ, ତୋ ଅପାକୁ ବିଦା କରିଦେ ଆମେ ଯିବା ଆଗରୁ, ସାଙ୍ଗରେ କିଏ ଯିବ ?

କୁସୁମ—ହଁ ରମୁ ତ ଅଛି, ବାଟ କେତେ ? କଣ ହବ ଲୋକବାକ ?

ଗୁଣି—ନାହିଁ ନାହିଁ; ଲୋକବାକ ନ ଗଲେ କଥାଟା ଅସୁନ୍ଦର ହବ । ଘରୁଆ ଦି'ଟା ତ ଯିବେ । ଭଣ୍ଡାରି ଯିବ ।

ବାସୁ—ହଉ ତେବେ, ତୁମେ ତୁମର ସଜଡ଼ା ସଜଡ଼ି ହେଇପଡ଼ । ଯାଅ ।

( କୁସୁମ ଓ ରମୁ ପ୍ରସ୍ଥାନ )

(ବାସୁ ଘରଆଡ଼କୁ ଫେରିଁ ଗୁଣିକୁ କୁହନ୍ତି) ଗୁଣି ରେ ତୋ ନାଆଁ ସତରେ ଗୁଣି । ତୋର ଗୁଣ ଅଛି । ଏ ଫିକର ତ ମୋତେ ମୋଟେ ପଶିଟି ନ ଥାନ୍ତା ।

ଗୁଣି—କମିତି ? ସାଥେ ସାଥ ମଙ୍ଗିଗଲା—ନାଁ ?

ବାସୁ—ଖାଲି ମଙ୍ଗିଗଲା ? ଏକା ବାଡ଼ରେ ତିନିପକ୍ଷୀ । ଆମ କାମ ତ ହେଲା, ସେ କନ୍ଧ ପଗାର ପାର । ତା'ଘରେ ସେ, ଆମ ଘରେ ଆମେ । ଆରେ ଦଇବ ଦଉଡ଼ ମନସ ଗାଣ୍ଡ, ଯେଣିକି ଟାଣଇ ତେଣିକି ଯାଇ ।

ଗୁଣି— ବୋପାଧନ ! ଧଡ଼ ଶୁଖିଯିବ କେଇଟା ଦିନରେ । ଯାଉ, ଆମକୁ ପଟ ପଡ଼ିଲା ।

ବାସୁ—ବେଗେ ବେଗେ ଯିବାର ତା'ର ବନ୍ଦ କର । ଚନ୍ଦ୍ରକାନ୍ତ ଉଖୁଡ଼ା ଦି'ହାଣ୍ଡିକର, ବଡ ବଡ଼ ଦି'ଟା ହାଣ୍ଡି ଶଢ଼କର, କଦଳୀପତ୍ର ଭିଡ଼—ପଠା ତାକୁ । ଯାଉ ସେ । ହଁ, ପଇସା ଗୁରୁଅଣା ବାଟକୁ ଦେବୁ । ଯିବ କାମ ଛୁଣ୍ଡି ଏକାଥରେ ।

ଗୁଣି—ସଞ୍ଜ ଆଗରୁ ଗଲେ ମଙ୍ଗଳ । ସକାଳ ପୁଣି ମଦନ ଦାସ ଘର ସିଉକାର ନେଇ ବ୍ରାହ୍ମଣ ଆସିବେ । ତା ଆଗରୁ ଏତକ କାମ ସରୁ । ଆସ, ଦଇବ ଯେତେବେଳେ ଗୁହେଁ...

ବାସୁ—ହାଁ, ଏଇମିତି । ନାଁ-କଅଣ ?—

(ଦୁହେଁ ଚାଲିଗଲେ)

---

## ଦ୍ୱିତୀୟ ଦୃଶ୍ୟ

(ମାତାର ଘର)

ମଦନ—(ଦ୍ୱାରରେ) କିଏ ଅଛି ? ମୋହିନୀ ମାତା ଘରେ ଅଛ ?

ଭିତରୁ—କିଏ ?

ମଦନ—ମୁଁ ତ ମଦନ ।

ମାତା—ମଦନବାବୁ ?

ମଦନ—ହଁ ।

ମାତା—ଗଲ ।

ମଦନ—ବଡ଼ ବୁଦ୍ଧିମନ୍ତ ଏଇ ମୋହନ୍ତ—ସ୍ୱାର୍ଥ କ'ଣ ସ୍ୱାର ? କଛି ନାହିଁ ତ ! ବାସୁଦାସର ସ୍ତ୍ରୀକୁ ସୁଖ ପାଏ ସ୍ୱେ, ତା'ର ଲଗି ଚେଷ୍ଟା । ଆଉ ତ କଛି ଲଭ ନାହିଁ ମାତା'ର ।

ମାତା—(ହସ ହସ ମୁହଁରେ ପହଞ୍ଚିଲା) କଏ, ମଦନ ବାବୁ, ମୋର ଟିକଏ ଉତ୍ତର ହୋଇଗଲା ଆସୁ ଆସୁ । କଣ ମନେ ମନେ ଭାବୁଥିଲ ?

ମଦନ—ତମର କଥା—କେଉଁଡ଼ ନିଃସ୍ୱାର୍ଥପର ତୁମେ ! ବାସୁଦାସପର ମଣିଷକୁ ଯେ'ଉ ବସୁନ୍ଧରା କୋଳରେ ଧରଛ, ତମପର ଦେବତାଙ୍କୁ ମଧ୍ୟ ତ ସେଇ ତ ଧରଛ ।

ମାତା—ଛି ଛି, ସେମିତି ଗୁରେ କହ ମୋର ଅକାରଣରେ ପ୍ରଶଂସା କରବ ନାହିଁ । ହଁ ତମକୁ ଗୋଟାଏ କଥା କହିବାକୁ ଡକେଇଥିଲି ।

ମଦନ—କହ ।

ମାତା—ଆଜ ତମର ସ୍ୱୀକାର ସମ୍ମତି, ନା ?

ମଦନ—ହଁ ।

ମାତା—ଏଣେ ଆମର ସବୁ ଠିକ୍ । କୁସୁମ ଅପା କାଲଠୁଁ ଗଲାଣି ବାପଘରକୁ । ତମର ଫେର୍ ଠିକ୍‌ଠାକ୍ କଲଣି ତ ?

ମଦନ—ଯେମିତି କହିଥିଲ, ସେମିତି ସବୁ କରଛ ।

ମାତା—ବାସୁଦାସେ କ'ଣ କଛି ଟଙ୍କା ଦେଲେ ?

ମଦନ—ମୁଁ ତ କହିଲି, ଢ' ପିଠି ଲଟେଇ ଯେବେ ··· କରବ—କର । ଗୁଣ ପାଟ-ମୁହପାଇଁ ପଚିଶଟଙ୍କା ଦେଇଛି । କଅଣ ହାତେ ହାତେ କଛି ଜନଷ କଣିକର ପଠେଇଛି ଏକାବେଳେ । ଆଉ ପାଞ୍ଚଟଙ୍କା ବାହାର ଖରଚକୁ ଦେଇଛ ।

ମାତା—ଗୁଣ ବୋଧହୁଏ ବାହାଯାଇନୀ ହୋଇ ଯାଉନାହିଁ ?

ମଦନ—କାରଣ ?

ମାତା—ଘର ଜଗିବ କଏ ? ଦାସ କାଲ ପଅର ତାଙ୍କ ଚାଷଗାଆଁକୁ ଯାଇ ସେଠି ରହିବ । ବାହାଘରଟା ଗୁପ୍‌ଚୁପ୍‌ରେ ହଉଛ କ ନା । ତୁମେ ଗୋଟିଏ କାମ କରବ । ଦଲାଲଟାକୁ ଯେମିତ ଦାସ ତା ସାଙ୍ଗରେ ସେଠିକ ନଏ, ସେକଥା ପକାଇ ଦେଇଥିବ । ସେଇଟାକୁ ସେଠି ଫାଡ଼ଦେବାକୁ ହେବ, ତମ ହାତେ ହାତେ ।

ମଦନ—ଦେଖେଁ, ଗୁଣକୁ କହେଁ ।

ମାତା—ଗୁଣକୁ କାହିଁକ ? ଏକାବେଳେ ବାସୁଦାସକୁ କୁହ । ତମ ଗାଆଁ ଜମିଦାରଙ୍କୁ ଆଉ ତମ ବଡ଼ ବାପାଙ୍କୁ ସବୁ କହିଚ ତ ? ଖୁବ୍ ସାବଧାନ—ଯେମିତ ସବୁକଥା ଗୁପ୍ତରେ ହୁଏ । ଦାସବୁଢ଼ା ତମ ଦୁଆରେ ପହଞ୍ଚ ହାତଗଣ୍ଠିଟା ପଡ଼ବାଯାଏ···

ମଦନ—ହଁ, ସେତକ ତ କଥା (ନେପଥ୍ୟକୁ ଚାହିଁ ମାତାପ୍ରତି) ଅନେଇଁଲ । ସେଇଟା ଗୁଣ ଚାକର ବାଙ୍କା ନା ?

ମାତା—(ଚାହିଁ) ଯାଅ, ଯାଅ । ତୁମେ ଚାଲିଯାଅ ମୋ ଘର ଭିତରକୁ । ସେଇଟା ଉଣା ଲୁଚେଁ—ତା'ଠୁ ଅନେକ କଥା ମିଳିବ । ମୁଁ ବୁଝିନେବ ସବୁ ତା' ପାଖରୁ । ତୁମେ ବାହାର ଯାଅ, ତୁମେ ବାହାର ଯାଅ···

(ମଦନ ଶୀଘ୍ର ଘର ଭିତରକୁ ଚାଲିଗଲେ—ବାଙ୍କା ଖଣ୍ଡିଏ ଚାଲକା ପଡ଼ି ପଡ଼ି ଚାଲିଯାଉଛି)

ବାଙ୍କା—ବାପ ଅଜାକାଳେ ବାଇଦନାଇଁ—ବାଇଦ ଶବଦ ଶୁଣିବ କାହିଁ ? ଏସବୁ କ ଚଜ କେଜାଣି ? ନାଆଁରୁ ତ ମୁଁ କଛି ବୁଝିପାରୁନାହିଁ । ଅନେକ ଥର ଗୁଣ ସାଆନ୍ତଙ୍କ ଚାଲକା ନେଇଛି । ବାଦାମ ନୋଇଲେ ମିଶ୍ରି—ନୋହିଲେ ମିଛିଦାନା । କେବେ ବା ଚନାଚୁର୍, ସେଉଁଦିନ ବଲିଛ ଚାହା ଚାଲେ । ଏସବୁ ତ ଦନେ ନାହିଁ ନା କାଲେ ନାହିଁ ।

ମାଠା—( ପଛରୁ ) କ ରେ ବଙ୍କ୍ କରେ ?

ବାଙ୍କା—( ଫେରିଚାହିଁ ) ହଁ, ମାଠା !

ମାଠା—କୁଆଡ଼େ କ ରେ ଏତେବେଳେ ? ତୁ ତ ଷଣ୍ଢର କାକର‌ରେ ଭାସୁଛୁ । ବୁଢ଼ା ସାଆନ୍ତଙ୍କ ବାହାଘର ପରା ?

ବାଙ୍କା—ହଁ ମାଠା । ଆଜି ପରା କନ୍ୟାଘର ବେଶରୁ ଆସିବ । ଜାଇଁ ଦେଖା—କେତେ ଯୋଗାଡ଼ ଲାଗିଛି ।

ମାଠା—କ'ଣ ସବୁ ହଉଛି ରେ ?

ବାଙ୍କା—ଢେର, ଢେର—ବହୁତ କଥା ମାଠା ! ଏଇତ ଗୋଟାଏ ତାଲିକା ନେଇ ବଜାରକରି ବାହାରିଛୁ ଯେ—ନାଆଁ ସବୁ ମତେ ଜଣାନାହିଁ । ଏସବୁ ପରା ହେଲା ବୁଢ଼ାକାଳ ବାହାଘର ରକମ—ସବୁ ନୂଆ କସମର ଚିଜ ।

ମାଠା—କଅଣ କଅଣ—କହିଗଲୁ, କହିଗଲୁ ଦେଖି ; ଶୁଣିବା ହେଲେ ଠିକଏ ।

ବାଙ୍କା—ଆଁ-ପମଟମ, ଦେଖ ଯେ ଏସେନ୍‌ସନ, ଅତଡ଼ବୋଜା, କଲପ, ଭୃସିଲଣି, ଏଇସବୁ ଜିନିଷ, ଯାଏଁ, ବଜାରରେ ଖୋଜେ—କେଉଁଠି ମିଳୁଛି କେଜାଣି । ଶୁଣ ସାଆନ୍ତ କହିଲେ ହରିସାହୁ ନୂଆ ଦୋକାନ ଖୋଲିଛି, ସବୁ ସେଇଠି ମିଳିବ । ସେ ଚିଠା ରଖି ଦେଲେଇଦେଲେ ପଇସା ପାଇବ । କହୁଛି ଭଲ ଏ ନାଆଁରୁ ବୁଝିଲ ମାଠା ?

ମାଠା—ନାହିଁ ତ ରେ ବଙ୍କୁ ! (ମୁଣ୍ଡ ହଲାଇଲେ ହସି)

ବାଙ୍କା—ହାଁ, ମୁଁ ଜାଣେ ପରା । ଏ'କଅଣ ଯାହାର ତାହାର ତାଲିକା ? ଅଙ୍ଗରେଜ ପଢ଼ୁଆ ଆମ ଗୁଣ ସାଆନ୍ତଙ୍କ ତାଲିକା ପରା ? ବୁଢ଼ା ବାହାଘରେ ଲାଗେ—ଟୋକା ବାହାଘରେ ଏ ଚିଜ ଲୋଡ଼ା ନାହିଁ ।

ମାଠା—ଠିକ୍ ଠିକ୍, ଆଉ ତମ ସାଆନ୍ତଙ୍କ ବାଦାମ, ମିଶ୍ରି, ସିଦ୍ଧି ?

ବାଙ୍କା—ଛି ଛି, ସେ ସବୁ ଆଉ କହୁଛ ଅଛି କ ? ସାଆନ୍ତଙ୍କର ଆମର କଳାସ ପରମ୍‌ଶନ ହେଇଗଲାଣି ପରା ? ସୁବ ଥୋଲା କମରକୁ ଅଇଲାଦନୁ ବାଦାମ, ମିଶ୍ରି ଆଉ ସେ ସିଦ୍ଧି—କେବେ କେମିତି ଆସେ, ଏବେ ଖାଲି ବଲାତ ଗୁହା ।
( ହାତରେ ପିଇବାଭଳି ଠାରି )

ମାଠା—ବଲାତ ଗୁହା ପୁଣି କେମିତି ରେ ?

ବାଙ୍କା—ବୋତଲରେ ଥାଏ, ର'ଙ୍ଗ ରଙ୍ଗ ତାର—ଛକା ବୋତଲ, ତା'ସାଙ୍ଗକୁ ମିଆଁ ସାଇର ସେ ଦାଡ଼ିଆ ନନାଘର ମାମୁଁ ନାଟ, ଆଃ...

ମାଠା—ସତେ ? ଭଲ, ଭଲ, ଆଉ ତୋ'ର ଫେର ?

ବାଙ୍କା—ମୋର ଆଉ ଫେର୍ କଅଣ ? ସେଇ ପରସାଦ ଟୋପିଏ ଟୋପିଏ.. ପଡ଼ିଲେ ପଡ଼ିଲେ ଟିକଏ କେମିତି କେମିତି ଲାଗୁଥିଲା । ଏବେ ସାଆନ୍ତଙ୍କର ଅଧେ ହେଲେ ମୋର ଫାଳେ । ସତେ ମାଠା, ଭାରି ମଉଜଆ ଜିନିଷ ସେ । ପେଟକୁ ଗଲା ତ ଜବାବ୍ ଦେଲା । ଖୋଦ୍ ବାପାକୁ ତ ଶଳାବୋଲି କହିବାକୁ ମନ ହେବ । ସିଦ୍ଧି ? ଆରେ ରାମ ରାମ, ଗାଉଁଲା ନିଶାଟା । ସ୍ୱେ କଅଣ ? ଜବାନ୍—ମରଦ । ବୁଢ଼ା ସାଆନ୍ତ ବାହାଘରକୁ ସାଆନ୍ତ, ବଗିଦ ଅଛି ଯେ, ଧନେ ତମକୁ ଡାକିବେ । ନିମନ୍ତ୍ରଣ ଦେବେ ! ଭୋଜି ହେବ, ନାଚ-ତାମସା ହେବ । ଅଛି ଅଛି, ଆମ ସାଆନ୍ତଙ୍କର ବଗିଦ ଅଛି ଯେ । ଡୋକ ଦେଲେ ତମର ତ ଗଙ୍ଗା ସ୍ନାହାନ । ଜଡ଼ୁବୁଡ଼ୁ ହୋଇ ଏକାବେଳେ ଝିଲମାଲି ଧରି ମନ ହରି-ନାଆଁରେ ମଜ ରହିବ । ଭାରି ମଜା ମାଠା, ଭାରି ମଜା । ସବୁସାଜ ସୁଖ ତ ସେଇଠି । ନାଚ, ଗୀତ, ମଉଜ, ସବୁ ମନେପଡ଼େ ସେଇ ପରସାଦ ଟିକେ ପାଇଦେଲେ ।

ମାଠା—ବେଶ୍ ବେଶ୍, ପାଶୋର ଦବୁ ନାହିଁ ମତେ ବାକ । ବୁଢ଼ାସାଆନ୍ତ ତମର ଗଲେ ବାହାର ନିଶ୍ଚେ ଡାକିବେ ତ ମତେ ?

ବାଙ୍କା—ନମସ୍କାର ନମସ୍କାର, ଏକଥାରେ ଆଉ ଚିକଏ ହେଲା ଅଛି ?

( କଡ଼ କଡ଼ ବାଙ୍କା ଚାଲିଗଲା— ମାତା ତାଙ୍କୁ ଗୁହାଁ ହସୁଥିଲେ)

---

## ତୃତୀୟ ଦୃଶ୍ୟ

( ପଥ—ବଡ଼ ଗଣ୍ଠିଲିଟିଏ ନେଇ ତଆଡ଼ୀଏ ଘର କଷ୍ଟରେ ଚାଲିବାପର ଆସୁଥିଲେ )

ତଆଡ଼ୀ—ବାପ୍, ବାପ, ଏକାକଥା—ଏକାକଥା । ଚରଣେ ପାଇଲେ ସିଏ-ଉରଣେ ପାଇଲେ ସିଏ । ଓଃ, ଦୋପଟ ଋଦ୍ରଘରେ ମସୁ ଟାଣ ଦକ୍ଷିଣା । ମୋ ଜଜମାନ ଗୁଡ଼ିକ ସମସ୍ତେ ଯେବେ ବର୍ଷକେ ଥରେ ଦ'ଥର ଏମିତି ଉବଲ ଋଦ୍ର ହଉଥାଆନ୍ତେ, ତଆଡ଼ୀଆପଣେ ବ ତଆଡ଼ୀଆଣୀଙ୍କ ଜାକଜମକଟାଙ୍କୁ ଜମାଟକରି ରଖୁଥାନ୍ତେ । ଓଃ, ବଡ଼ ଓଜନ (ଫିଟାଇ ଖାଉଖାଉ) ଅନ୍ତେ ବଢ଼ୁଚି ସନ୍ତୋଷ । ବୋଝ ନ ପାରିବାରୁ ସିନା ସବୁତକ ନେଉନାହିଁ । ନୋହିଲେ ମୋ'ର କଅଣ ତଆଡ଼ୀଆଣୀଙ୍କ ପାଖେ ସ୍ନେହ ନାହିଁ ନା ଶରଧା ନାହିଁ ? କଛୁ ଓଜନ ଏଇଠୁ କମୁ । ବାଟସାକ କମେଇ କମେଇ ଆସୁଛି ଯେ, ତେବେକେ କମିବାକୁ ନାହିଁ । ମନେ ହଉଛି ଯେମିତି ଓଲଟି ଓଜନ ବଢ଼ୁଛି । ସେଇ ଶଜ ତ । ପେଟକୁ ଗଲେ ଓଜନ କମୁଛି । ପିଠିରେ ପଡ଼ିଲେ—ବୋପା ଲେ ! ଉଠାଏ କଏ ? ଘରକୁ ନବାକଥା ତ ଦୂରେ ଅଛି । ଚରଣେ ପାଇଲେ ଯାହା-ଉରଣେ ପାଇଲେ ସେଇଆ । (ଫିଟାଇ କଛୁ ଖାଇଲେ) । ସ୍ତେ କଅଣ ? ରସଗୋଲା ! (ପାଟିରେ ପକାଇ) ଶପ୍-ପିର୍ । ଦାନ୍ତରେ ଶପ୍ ଆଉ ରସଟି ପିର୍ । (ନେପଥ୍ୟକୁ ଅନାଇଁ) ଜଣେ କଏ ଏଣେ ଆସୁଛି । (ଗଣ୍ଠିଲି ବାନ୍ଧ) ଅଖିରେ ପଡ଼ିଲେ ପୁଣି ନାନା କଥା । ଖଣ୍ଡିଆ ବନା କ କଣ ?

ବନା—(ଆସିଲା) କଏ ତଆଡ଼ୀଏ ତ ? କ ଓ ଘରଦୁଆର ମୁହଁଟାରେ ବସି କଅଣ ଏମିତି ବନ୍ଧାବନ୍ଧ ଚାଲିଛି ?

ତଆଡ଼ୀ—ଆହେ, ଏଗୁଡ଼ାକ ବାନ୍ଧିଥିଲି ଯେ, ଫିଟିଗଲା । ସେହେତୁ ବନ୍ଧାବନ୍ଧ କରୁଛି ହୋ !

ବନା—ଆଜ କୋଉଠି ଥିଲ କହେ ଉଦା ଭୋଜନ ?

ତଆଡ଼ୀ—ଆହେ ଆମକଥା ଭଲ ପଚ୍ଚୁଚ ? ବାସୁଦାସଙ୍କ ଘରେ ଗୋଟାଏ ସ୍ୱୀକାର—ନା ନା ଶୁଭ ପଡ଼ିଲା ଯେ, ତାଙ୍କର ଘରେ ଖାଇପିଇ ଦନ ପନ୍ଦରକୁ ଏତେକ ବାନ୍ଧ...

ବନା—ବାସୁଦାସ ଘରେ ?

ତଆଡ଼ୀ—ହଁ,...ଆମ ଜଜମାନ ସେ । ଦେଲାହାତ, ଦେଲାହାତ ।

ବନା—ହଁ, କର୍ଣ୍ଣଙ୍କ ପରି ! ଜଣା ଅଛି, ଜଣା ଅଛି ହେ ।

ତଆଡ଼ୀ—ମ, ଆମେ ହେଲୁ ତାଙ୍କ କୁଳ-ପୁରୋହିତ ।

ବନା—କୁଳ-ପୁରୋହିତ ନୁହେଁ ଯେ, ପ୍ରେତ ତୁମେ । ଯା, ଯାଃ, ବାସୁଦାସ-ମହୁମାଛି । ସେଠୁ ପୁଣି ଧନ ?

ତଆଡ଼ୀ—ଆହେ, ନ ଦେଖି ଏମିତି କହୁଚ କାହିଁକ ? ଅଜ ଏ ବ—ଖିରି ପୁରୀ, ଅମାଲୁ, ପାଳୁଅମଣ୍ଡା ରସଗୋଲା...

ବନା—ଅହେ, ନାଆଁ ଶୁଣିଛ ନା କେବେ ପାଟିରେ ବାଜିଛି ?

ତଆଡ଼ୀ—ଖାଲି ହାତ ଶୁଙ୍ଘିଲେ ପେଟ ପୁରିଯିବ ହୋ । ଶୁଙ୍ଘ । (ହାତଟା ବନା ନାକରେ ଦେଲେ)

ବନା—( ହାତ ଛଡ଼ାଇ ) ଆହେ ହେଇଥିବ, ତୁମେ ଖାଇଲ ନାଁ, କାହାକୁ ଘଗକଲ ? ଖାଇଲ ପିଇଲ ତୋଲେ, ଫେର୍ ଘରକୁ ବାନ୍ଧ ଆଣିଲ ବୁନ୍ଦୁଳାଟାଏ । ସ୍ୱଜାଣ୍ଡ ପରହଂସ୍ୱକ ପଦ ! ଅମର ଏତେ ସାଙ୍ଗଟେ ତୁମେ ଯେ, ଆମକୁ ଖବର ଟିକଏ ଆଉ ଦେଲ ନାହିଁ !

ତଆଡ଼ୀ—ଆସ୍ତ ଆସ୍ତ, ଏକା ମାଘକେତ ଶୀତ ଯାଉନାହିଁ ।

ବନା—ହଉ ହଉ, ମନେ ରଖିଥା ଟିକଏ । (ଚାଲିଗଲା)

ଛଆଡ଼ୀ—ଓ ଗଲା ହେ' କାଳ । ଚମ୍ପୀ, ଆଲୋ ଚମ୍ପୀ । ଅଲୋ ଝିଅଟ ଟିକଏ ପଡାକୁ ଅ'ସିଲୁ ।

ନେପଥ୍ୟେ—କଣ ଭଙ୍ଗ ନଶାଟା ଉବୁକେଇ ଯାଇଛି କ ?

ଛଆଡ଼ୀ—ଆରେ ଆଗ୍ଘ ଲୋକ ତ ! ଏଗୁବ ନଅ, ମୋର ଯେ ଆଉ ବଳ ପାଉନାହିଁ ।

ନେପଥ୍ୟେରୁ—ରଖ ରଖ । ତମ ଅରଜନ ଗୁବ ରଖ । ପିଆଡେ ଶାଳୀମାଇପକୁ ଦବ, ଯା ।

ଛଆଡ଼ୀ—ଶୁଣ ଶୁଣ ମ । ଏ ଶୁଣ···ଏଇ ତ ! ଖାଲି ରାଗ, ରୁଷା···

(ଛଆଡ଼ୀଏ କହୁ କହୁ ଆସିଲେ)

ସ୍ତ୍ରୀ—କଅଣ କ ଏମିତି ଅଧ ବାଟରୁ ଡାକବା ପଡ଼ୁଛୁ ?

ଛଆଡ଼—ମ, ଚମ୍ପୀ କୁଆଡେ ଗଲା କ ? ତୁମେ କଅଣ ପାରିବ ?

ସ୍ତ୍ରୀ—ହଇଏ ସତେ ତ । ମୁଁ ବୋଇଲି ଟାହୁଲ କରୁଥିବ । ଏଗୁବ କେମିତି ବୋହିକରି ଆଣିଲ ସତେ ? ଆହା ହା, ବଡ଼ ବାଧା ହୋଇଥିବ ତ ? ଆହା ହା ।

ଛଆଡ଼ୀ—ଆହା ହା ।

ସ୍ତ୍ରୀ—ଫେର୍ ଟାହୁଲ ?

ଛଆଡ଼ୀ—ନା ଗୋ, ଟାହୁଲ ନୁହଁ ?

ସ୍ତ୍ରୀ—ଆଉ ଅହା କଲ ?

ଛଆଡ଼ୀ—ତୁମେ ଯେ ଆହା ହା କଲ ।

ସ୍ତ୍ରୀ—ମୁଁ କଲି ତମ ଦୁଃଖ ଭଲ ।

ଛଆଡ଼ୀ—ମୁଁ ବ ତ ସେଇଥି । ତୁମେ ଯେ ମୋର ଲହୁଣୀ ପିଣ୍ଡୁଳା, କେମିତି ଏତେ ବାଟ ଟେକି ନବ, ହେଇଥିକି ଆହା କଲି ।

ସ୍ତ୍ରୀ—ଓଃ ଏଇକଥା ? (ଟେଣ୍ଡିଗ ଉଠାଇଲେ)

ଛଆଡ଼ୀ—ହିଁ ହିଁ, ସେଇକଥା (ଗଣ୍ଠିଲି ଭିତରୁ ବଡ଼ା ଗଙ୍ଗି ରସ ବୋହିଗଲା) ଆହା'ହା, କ କଲ କ କଲ ? ପାଳୁଅଖିର, ପୁଷ୍ଟ—ଟିକଏ ସଳଖରେ ଧରି ନ ନେଇ ବଡା ଗଙ୍ଗି ବୁହାଇ ଦେଲ ? ଏତେ ବାଟରୁ ଆଣିଥିଲି ଯେ—ଆହା ହା···

(ଛଆଡ଼ୀଙ୍କ ସ୍ତ୍ରୀ ଗଣ୍ଠିଲି ମୁଣ୍ଡେଇ ଚାଲିଥାନ୍ତି—ତାଙ୍କ ପଛେ ପଛେ ଛଆଡ଼ୀ ଗଣ୍ଠିଲିରେ ହାତ ପୋଛି ଜଭରେ ଚାଟି ଚାଟି)ଆହା-ଆହା (କହୁଥାନ୍ତି) ପ୍ରାପ୍ତି ମାତ୍ରେଣ ଭୁକ୍ତବ୍ୟଂ—ପ୍ରାପ୍ତି ମାତ୍ରେଣ ଭୁକ୍ତବ୍ୟଂ···

---

## ଚତୁର୍ଥ ଦୃଶ୍ୟ

( କକ୍ଷ—ଗୁଣ, ବାଙ୍କା ଓ ବାସୁଦାସ )

(ବାଙ୍କା ହାତରେ ଦର୍ପଣ, ପାନଆ ଇତ୍ୟାଦି ପ୍ରସାଧନ ସାମଗ୍ରୀମାନ ଧରିଥିଲା । ଦାସେ ପ୍ରେମ ଗଦ୍‌ଗଦ । ଗୁଣ ତାଙ୍କ କଥାରେ ଜୁଆଣ ଦଉଥିଲା)

ଗୁଣ—ସତ କହିବ ନା ଭଣେଇ ? ତମକୁ ଆଉ ସେ ବାସୁଦାସ ବୋଲି ଏଥର ଚିହ୍ନି ହଉ ନାହିଁ । କରେ ବଙ୍କୁ ?

ବାଙ୍କା—ଆଜ୍ଞା ସା'ନ୍ତ—କାହା ବୋପାର ବଳ ? ଜଭ ଓପାଡ଼ ଦେବ ନାହିଁ । ଆମ. ବୁଢ଼ା ସାଆନ୍ତଙ୍କୁ କଏ ଯେବେ ଆଉ ପଚିଶ ବର୍ଷର ବୁଢ଼ା ବୋଲି କହିବ ।

ଗୁଣ—ଶୁଣିଲ ତ ଭଣେଇ ?

ବାଙ୍କା—ଶୁଣିବେ ଅଉ କଣ ? ହାତ ଶଙ୍ଖା ତ ଦରପଣ—ଆଉ ବଣିଆ ସାଙ୍ଗରେ ଚୁଟି ଧରାଧର ଯାଏଁ ଯିବ କାହିଁକି ? ଦିଶୁ ନାହିଁ ବୁଢ଼ା ସାଆନ୍ତେ ! (ଦର୍ପଣ ଦେଖାଇଲେ)

ଗୁଣ—ଦୁର୍ବେ—ଗଧ, ପୁଣି ବୁଢ଼ା ସାଆନ୍ତଙ୍କୁ ବୁଢ଼ା ସାଆନ୍ତ, ବୁଢ଼ାସାଆନ୍ତେ ଡାକିଲୁ ?

ବାଙ୍କା—ଥକିଲୁ, ହୁଡ଼ିଲେ ସାଆନ୍ତ (କାନମୋଡ଼ ହୋଇ) ଏଇ ମୋଡ଼ ହଉଚ ଗୁରୁକାନ । ଏଇଥର ଭେଣ୍ଡିଆ ସାଆନ୍ତ ବୋଲି ଡାକିବ । ନୋଇଲେ ଜ୍ୱାଇଁ ସାଆନ୍ତ ବୋଲି କହୁଥିବ ।

ଦାସ—ସତରେ ଗୁଣ, ମୁଁ ତ ମତେ ଚିହ୍ନିପାରୁ ନାହିଁ ! ଏ ଅମଳରେ ନ ହେଲା କଅଣ ରେ ? ଖାଲି ଜୀବନଟା କେହି ଦେଇପାରୁ ନାହିଁ ସିନା ! ନୋହିଲେ ବାକି ଆଉ କିଛି ନାହିଁ । ଦେଖିଲୁ—ତୁମ ଗୋଟାଏ ହେଲେ ଧୋବଲା ହୋଇଅଛି ଆଉ ?

ବାଙ୍କା—ସବୁ କଳା, କି ଚକ୍‌କଣ—ଯେମିତି କିଏ ମହଣ ବୋଳିଛି !

ବାସୁ—ଦାନ୍ତଟା ଟିକିଏ ଅସଜ ଲାଗୁଛି ।

ଗୁଣ—ସେ ସହିଯିବ ଯେ, ଦିନ ଦି'ଗୁଟା ଟିକେ ସହିଗଲାଯାଏ ଯାହା ଅସଜ ଅସଜ ଲାଗିବ ।

ବାସୁ—ଆମ ଯିବାର ସବୁ ବରାଦ କରିଛୁଟି ଗୁଣ ?

ଗୁଣ—ସବୁ—ସବୁ କରିଛି । ବୃଷ ଘରଟାକୁ ଧଉଳେଇ ସେଠି ଖଟପଲଙ୍କସବୁ ସଜେଇ ଦେଇଛି । ଆଜି ତ ତୁମେ ସେଠିକି ଯିବ, ଗଲେ ବଳେ ଦେଖିବ ନାହିଁ ? ମୁଁ ଦିନକ ପାଇଁ ଯିବି । ତମ ଦୋଳମୁକୁଟ ଦେଖି ଆଉ ତମକୁ ପାଲିଙ୍କି ବାଡ଼ ଧରାଇଦେଇ ରାତାରାତି ଘରକୁ ଫେରିବି ।

ଦାସ—ହଁ, ରହି ପାରୁଛୁ ସେଠି କୋଉଠି ? ଏଠି ପୁଣି ଟଙ୍କା-ଟୋକର, ଖମାର-ଅମାର, ଧନ-ଦରବ—ଚୋର, ଡ଼କେଇତ ଗୋଳ, ସେ ତ ଆମକୁ ଜଗିଁ ବସିଛନ୍ତି । ଆରେ ମଦନ ଦାସ କବଲା କଥା ପୁଣି କଣ ହବ ?

ଗୁଣ—ହବ କ'ଣ ଆଉ । ସେଠିକି ନେଇଥା, ବେଢ଼ ଉପରେ ପଢ଼ିଦେବ,—ସମସ୍ତେ ଜାଣିବାଭଳି, ଗୋଟେ ବଢ଼ିଆ କଥା ହେବ । ସେ ତ ଆମର ବନ୍ଧୁ ହେଲା । ସାତ ପୁରୁଷକୁ ବନ୍ଧୁବାନ୍ଧ ପୁଣି ଗୋଟାଏ ଅଡ଼ୁଆ ଥିବ କାହିଁକି ?

ଦାସ—ହଁ, ଆମ କଥା ତ ରହିଲା—ଆଉ ଗୋଟେ କଅଣ ?

ଗୁଣ—ଖାଲି ରହିଲା ? ଗଣ୍ଡା କଡ଼ା ସବୁ ତ ପାଇଲେଁ ।

ବାଙ୍କା—ସାଆନ୍ତ, ମୁଁ ଯିବିନାଇଁ ?

ଗୁଣ—ହଁ ଯିବୁ, ବାକି ଫେରି ଆସିବୁ ମୋ ସାଙ୍ଗରେ । ରହିବୁ କେମିତି ?

ଦାସ—ନାଃ—ଏଠି କିଏ ଗୁଣ ପାଖରେ ? ଆରେ ଏତେ ଘରଦ୍ୱାର, ଜଣକୁ ଦି ଜଣ ନ ଥିଲେ ପୁଣି ଚଳିବ କେମିତି ?

ବାଙ୍କା—ହଉ, ବାହୁଡ଼ି ଆସିବି ଫେରେ ସାଆନ୍ତ, ବାକି ବାହାଘର ଖିରିପିଠା ଛାଡ଼ି ଆସିବାକୁ ମୋର ମନ ହଉନାହିଁ ।

ଗୁଣ—ପେଟ୍ ତୁ, ତୁ ତ ଖିରିପିଠା ଖାଇବୁ ? ଆମର ସେଦିନ ୯ଠି ଗୋଟେ ଭୋଜିଭାତ କରିବା, କଣ କହୁଛ ଭଉଣେଇ ?

ଦାସ—ହଉ ହେଲା—ଯାହା ଲାଗିବ କର, ବାକି ଜଗି-ରଖି ଖରଚକୁ ଦେଖିବ । ଏତେବେଳେ ସ୍ୱରଅଡ଼ ନଅଣ୍ଟିଆ ବେଳ । ତେଣେ ବାହାଘରଟି ଦି ପିଠି ଲଗେଇ, ଟଙ୍କା ଦୁଇ ତିନୋଟିରେ ଏଠାକାମ ଚଳେଇ ନବ; ବୁଝିଲୁ ଗୁଣ !

ଗୁଣ—ହଁ, ତା' ନୁହେଁ ତ କଅଣ ? ଦି ତିନ ଟଙ୍କା ଯଥେଷ୍ଟ ।

ଦାସ—ରମୀ ବୋଉର କିଛି ଖବର ପାଇଲୁ ?

ଗୁଣ—ଆଉ ଖବର କଣ ? ସେ ତ ମାଉସୀକି ଦେଖିବେ ବାପଘରେ ।

ବାଙ୍କା—ହଁ ସାଆନ୍ତ, ଗଲାବେଳେ ପରା ମୋର ମନ ହେଉଥିଲା, ପଦେ କହି ଦିଅନ୍ତି—

"ପଥ ଶୁମର ପିତା ଘର ଯିବ,
ଆଉ ଅଯୋଧ୍ୟା ମନେ ନ କରିବ ।"

ଦାସ—(ହସି) କହିଲୁ ନାଇଁ, କହିଲୁ ନାଇଁ ?

ବାଙ୍କା—ଛାଡ଼ ସାଆନ୍ତ, ଦିନେ ହେଲେ ତ ସେ ଖାଉଦାଣୀ ଥିଲେ । ତଳକୁ ଉପରକୁ ଅନାଇଁ ଚୁପ୍ ରହିଲି । (ନେପଥ୍ୟେ ଶଙ୍ଖଧ୍ୱନି)

ଗଣ—ଭଉଣେଇ, ମଦନ ଦାସ ଘର ନବନ୍ଧ କୁଣିଆ ଆଇଲେ କି କଅଣ ? ତୁମେ ଘର ଭିତରକୁ ଯାଅ ।

ବାଙ୍କା—ହଁ ବୁଢ଼ା ସାଆନ୍ତେ—(ଜିଭ କାମୁଡ଼ି) ଏ ଜ୍ୱାଇଁ ସାଆନ୍ତେ ଆଜ ପଦାକୁ ଆସି ତାଙ୍କ ଘର ସାଙ୍ଗେ କଥା ହବାଟା ବଢ଼ି ନୁହେଁ ।

(ବାସୁ ଦାସ ଚାଲିଗଲେ)

ଗୁଣ—ବାଙ୍କୁ, ଶୁଣିଲୁ ? ଶଳା ବୁଢ଼ା କହୁଛି ଘ ତିନି ଟଙ୍କାରେ ଖରଚ ଚଳାଇ ଦିଅ । ହଇ ରେ, ଏ ବୁଢ଼ାଟାକୁ ଏକାଳେ କନ୍ୟା ଦିଅନ୍ତା କିଏ ? ଗୁଣର କରାମତିରୁ ସିନା ?

ବାଙ୍କା—ନେ'ଇଲେ ଝାଡ଼ୁ ମାରନ୍ତେ ଟି ବାହା ନାଁ ଶୁଣିଲେ ।

ଗୁଣ—ହଉ ସେ ଯାଉ । ଆସିବାବେଳକୁ ଦେଖିବ । ଚାଲ ତ ଗୁଣ ହାତରେ—ଚାଲ ।

ବାଙ୍କା—ହଁ, ବୁଢ଼ା, ସାଆନ୍ତ ଆସି ଦେଖୁଥାଉ ସବୁ—ଶତଂ ଫାଙ୍କ, ଶତଂଫାଙ୍କ···

ଗୁଣ—ଅଖା ଧୋଉଥିବ, ଗୁଣ ଗାଉଥିବ । କରେ ଟମୋ ପରଶ୍ରମର ମୂଲ କିଏ ଦବ ?

ବାଙ୍କା—କିଏ ଦବ ? କଛି ନାହିଁ ଆଜ୍ଞା ! ମାତାକୁ ମୁଁ କହୁଛି ଖେଳକଥା । ଅସଲ କଥା—ମଉଜ କର ବୁଢ଼ା ଫେରିବା ବେଳକୁ···ସବୁ ଶତଂ ଫାଙ୍କ···

( ପଟ୍ଟପତନ )

---

### ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

( କୁଟୀର-ବେଦିଉପରେ ବର ବେଶରେ ବସିଥିଲେ ବାସୁଦାସ—ଦୂରରେ ବିବାହ ବାଜଣା ବାଜୁଥାଏ । ବେଳେବେଳେ ଶଙ୍ଖ, ହୁଳହୁଳି ଶୁଭୁଥାଏ; ଯିବା ଆସିବା କୋଳାହଳ ଲାଗିଥାଏ )

ଦାସେ—(ତିଆଡ଼ିଙ୍କୁ) ଆଉ କେତେ ଅନେଇଁ ବସିବା ତିଆଡ଼ୀଏ ? ଅଧେ କମଁ ସାର ବେଦୀ ଉପରେ ବସି ରହିବା ସିନା ? କହୁନା, ବେଗେ କନ୍ୟା ଆଣନ୍ତୁ । ଲଗ୍ନବେଳ ଗଡ଼ିଗଲେ କଅଣ ଭଲ ହେବ ?

ତିଆଡ଼ୀ—( ବଡ଼ ପାଟିରେ ) ହଇ ହେ ଅବଧାନେ; ଲଗ୍ନବେଳ ଗଡ଼ିଯିବ ସିନା ? କନ୍ୟା ଆସିବାକୁ ଉଛୁର ହେଉଛି କିଆଁ ?

(ପ୍ରବେଶ କଲେ ମଦନ)

ମଦନ—ନାହିଁ ପୁରୋହିତେ; ଡେରି କ'ଣ କି—ତେଣେ କନ୍ୟା ପରା ସଜ ହଉଛି ? କଥା ପଦକେ ସବୁ ତୁଟିଯିବ ଏଇ ବେଦୀ ଉପରେ ଗଲା, ଆପଣ ତ ଜାଣନ୍ତି ସବୁକଥା—ଅମେ ଯେମିତି ବାସୁଦାସଙ୍କ କଥା ରଖି, କନ୍ୟାଟିକି ଦେଉଛୁ; ଆମର ତାଙ୍କର ଯେଉଁ ଗୋଳମାଳ ଟିକିକ ଅଛି, ସେତକ ଆଉ କାହିଁକି ଥିବ ? ମନରୁ ସେତକ ଢାଳିଗଲି ଭାଙ୍ଗିଦେବା ଭଲ ।

ତିଆଡ଼ୀ—ଏଇଟା ତ ଦାଣ୍ଡକଥା—ସଫା ସଫା ହେଇଯିବା ଭଲ । ସାତପୁରୁଷିକ ବନ୍ଧୁ ! ସେଥିରେ ଗୋଟାଏ ଆଉ କେଁ ରହିବ କିଆଁ ?

ଦାସେ—କଅଣ ସେ ଦଲିଲ କଥାଟି ?

ମଦନ—ଆଜ୍ଞା ଆଜ୍ଞା ।

ଦାସେ—ତାକୁ ତ ମୁଁ ସାଙ୍ଗରେ ଆଣିଛି; ହେଇଟି ।

(ବଢ଼େଇଲେ)

ତିଆଡ଼ୀ—ଯାହା କଥା ହେଇଗଲା, ସେଥିରେ କି ଆଉ ଗୋଟେ ଦୋ-ଦୋ ପାଞ୍ଚ ଥାଏ । ଦାସଙ୍କ ବଚନ—ପଥର ଗାର । ସ୍ୱେ କ'ଣ ଟୁଙ୍କୁଣିବନିଆ କେଉଣ୍ଟି ମାଛ କି ମଦନ ବାବୁ ? (ଦଲିଲଟି ଦାସଙ୍କ ହାତରୁ ଆଣି ଶର ଦେଇ) ହେଇଟି ଚିରିଦେଲି ।

ମଦନ—ମୁଁ କଅଣ ତା କହିଲି ? ସେମିତି ଭାବିଥିଲେ ସାଙ୍ଗେ ସାଙ୍ଗେ ତାଙ୍କ କଥାରେ ହଁ ଭରିଥାନ୍ତି ? କଥାଟା ! ଗୋଟେ ସେମିତି ହେଇଥିଲା ଯେତେବେଳେ ମନେକରି ଦେଲି ସିନା ! ତାଙ୍କର କାଗଜ, ତାଙ୍କର ଧନ; ଏବେ ସେ ନେଇ ରଖିଯାଆନ୍ତୁ ।

ତିଆଡ଼ୀ—ଗଲେ ଗଲେ, ତେଣେ ଭିତରଆଡ଼େ ଟିକିଏ ତନ୍ଦି ଲଗେଇ ଦେବେ ।

ମଦନ—ଜାଣୁନା ତିଆଡ଼ୀଏ ମାଇପିଙ୍କ କଥା ? ତାଙ୍କର ସବୁଥିରେ ମଠ । ଯାଉଚ ମୁଁ, ତାଙ୍କୁ ଟିକିଏ ତରତର ନ କଲେ ଏଣେ ଲଗ୍ନବେଳ ଗଡ଼ିଯିବ ।

ତିଆଡ଼ୀ—ହଁ ହଁ, ତୁରନ୍ତ—ତୁରନ୍ତ ।

(ମଦନ ଗୃହଗଲେ)

ଦାସେ—ତିଆଡ଼ୀଏ, କଥାଟା କେମିତି ହେଲା ? ଏଁ ?

(ହସିଲେ)

ତିଆଡ଼ୀ—ହେଲା ? ଏକଥା ଫେର ପଚାରୁଛନ୍ତି ? ସମସ୍ତେ ଧନ୍ୟଧନ୍ୟ କହିବେ—କଅଣ ନା ଏତେ ଟଙ୍କାର ହେଣ୍ଡନୋଟ ଦାସେ ଛାଡ଼ିଦେଲେ ।

ଦାସେ--ଆଚ୍ଛା ତିଆଡ଼ୀଏ, ଅନା ଅନା, ଗୃହଦ୍ୱାର ପାଖେ ଆମକୁ ଥର ଥର ତାଙ୍କ ସାଇ ମାଇପେ ଆସି ଗୃହିଁ ଛନ୍ତି ।

ତିଆଡ଼ୀ—କିଛି ନାଇଁ, କିଛି ନାଇଁ, ଆପଣଙ୍କ ବରବେଶ ଦେଖିବାକୁ ଆସିଛନ୍ତି । କଅଣ ରୂପ ନା ଗୁଣ ? କୋଉଥିରେ ଊଣା ଯେ ? କଣ ଭାବିବେ ସେମାନେ ?

ଦାସେ—ନାଇଁ, ଖାଲି ଟିକିଏ ଆମ ବୟସ···

ତିଆଡ଼ୀ—ଯା ଯା, ବାଉ ନା କଖାରୁ ? କଅଣ ବୁଢ଼ା ବୋଲି କହୁଛନ୍ତି ? ନୋଉଥିରୁ, ଦାନ୍ତ ବାଳ—କଣ ନାହିଁ ?

ଦାସେ—ସେଇକଥା—ସେଇକଥା । ବାଳ ଗୁଣ ଆମର ଷୋଳ ସମର୍ଥଟାଏ । କଓ, ମୁଁ ପରା ମୋତେ ଚିହ୍ନି ପାରିଲି ନାହିଁ ହୋ । ସେ ଯେତେବେଳେ ବାଳକୁ କଳା କରିଦେଲା । ଦାନ୍ତ, ଦପାଟି ଖଞ୍ଜିଦେଇ, ମୁହଁରେ ଆଉ···ସେ କଅଣ ଗୋଟେ ବାସନା ଚିଜ ବୋଲି କହିଲା—ଭଣେଇଁ ଏଥର ଦର୍ପଣରେ ଦେଖ ତମ ରୂପକୁ···ଅଃ···

ତିଆଡ଼ୀ—କିଏ ଚିହ୍ନିବ ଯେ—ଆପଣ ଚିହ୍ନି ନ ପାରିଲେ ବୋଲି କହୁଛନ୍ତି ?

ଦାସେ—ଏବେ କେତେ ଭଲା ବୟସ ଆମର ପସନ୍ଦ କରିବେ ଲୋକେ ?

ତିଆଡ଼ୀ—ଏଇ ପଚିଶ-ଛବିଶ ଭିତରେ ହେବ ।

(ନେପଥ୍ୟରୁ ହୁଳହୁଳି ଓ ଶଙ୍ଖ)

ଦାସେ—ଏଇ ଅଇଲା, ବୋହୂ ଅଇଲା ବୋଧେ ।

ତିଆଡ଼ୀ—ହଁ, ଆପଣ ଟିକିଏ ସଜାଡ଼ି ହୋଇ ଗୁଣ୍ଡିରେ ବସନ୍ତୁ । (ଦାସେ ସଜାଡ଼ି ହୋଇ ବସିଲେ, ପରେ ମହିଳାମାନଙ୍କ ସହିତ ନବବଧୂ ପ୍ରବେଶ କଲେ—ଦାସେ ଚଞ୍ଚଳମନା ହେଲେ—ବୋହୂକୁ ବେଦୀରେ ବସାଗଲା—ତିଆଡ଼ୀଏ ଝପ ସଜାଡ଼ି ବେଦୀ ଆଡ଼େଇ ବସିଲେ—ମଦନ ଆସି ପାଖରେ ବସିଲେ—ହୋମ ଆରମ୍ଭ ହେଲା)

ତିଆଡ଼ୀ—ଓଁ ମଙ୍ଗଳଂ ଭଗବାନ୍ ବିଷ୍ଣୋ ମଙ୍ଗଳଂ ମଧୁସୂଦନଂ···

ଗ୍ରାମଲୋକ—( କେତେଜଣ ଗ୍ରାମଲୋକ ଆସି ପାଟିକରି କହିଲେ ) ପୁରୋହିତେ ଆପଣେ ! ରହ, ରହ—ଆମର ପଦେ କଥା ଅଛି ।

ତିଆଡ଼ୀ—ହଉ ହଉ, କଅଣ କହିବାହଉ ?

ଜଣେ—କଥା କ'ଣ କି, ଜାତିରେ ଭଲ ହେଲେ ହବ କ'ଣ—କର୍ମ ତ ହୀନ । ଆମର ଶାକାହାରେ ଦନ କଟିବାକୁ ଠକ୍‌ଠାକ୍ । ସବୁଥିକି ସେଇଥିପାଇଁ ଆମର ଡର । ଜ୍ୱାଇଁ ସାଆନ୍ତଙ୍କୁ ଆମେମାନେ ଗୋଟେ କଥା କହିବାକୁ ଆଇଲୁଁ । ସେତ ବଡ଼ଲୋକ, ଲକ୍ଷ୍ମୀପୁତ୍ର— ସାଧବ, ଆମେମାନେ ସିନା ଗରିବ ମାତ୍ର କଥାରେ ଅଛୁ, 'ହୀନ ସେବା ନ କର୍ତ୍ତବ୍ୟଂ'।ପଦେ ଆମର କହିବାକୁ ଅଛି ।

ଅନ୍ୟ—କହିବାର କ'ଣ—ସଳଖ କଥାରେ ମାଗିବାର ବୋଲି—ବୋଲ । ବଡ଼ଲୋକ ସେ, ବିଧାତାତାଙ୍କୁ ବଡ଼ଲୋକ କରିଛନ୍ତି ।

ତିଆଡ଼ୀ—ହଁ ହଁ, ସୁନାମୁହିଆର ହାତରୁ ଗୁଡ଼ପଡ଼େ ଖାଇଲେ ବି ସହି । କଣ କୁହନ୍ତୁ ।

ଜଣେ—କ'ଣ କି,—ଲୋକଙ୍କ କଥା ତ । କିଏ ଆମର ସତ ମିଛ ବାରିଛି ? କିଏ କିଏ କହୁଛନ୍ତି ଜ୍ୱାଇଁଙ୍କର ଆମର ପୁଅଟିଏ ଅଛି । ହଁ, ପରିବାର

ଅଛନ୍ତି ସେ କଥା ତ ଅମେ ଜାଣୁ । ବାକ ଏଇ ପିଲଟି କଥା···

ତିଆଡ଼ୀ—ଯେ, ଆପଣ କଅଣ କହୁଛନ୍ତି ?

ଦାସେ—ବୁଝିବା ହେଲେ ଆଜ୍ଞା ! ମାନଲେ ଦିଅଁ, ନ ମାନଲେ ପଥର । ପୁଅ କଅଣ, ଘରଣୀ କଅଣ—ବୋଲର ନ ହୋଇ ବୋଲଣୀର ହେଲାକୁ ତ ଆମେ ନୂଆଘର କରିବାକୁ ବସିଛୁ ।

ଜଣେ—ସେଇ କଥା, ସେଇ କଥା ସିନା !

ଅନ୍ୟଜଣେ—ଆପଣ ତ ଆଉ ତାଙ୍କୁ ତ୍ୟଜ୍ୟପୁତ୍ର କରିନାହାନ୍ତି । ଭବିଷ୍ୟତ ବୋଲି ଗୋଟେ କଥା ତ ଫେର ଅଛି । ଆମ୍ଭମାନଙ୍କର କହିବାର କଅଣ କି ଗୋଟିଏ ତ୍ୟଜ୍ୟପୁତ୍ର ଲେଖା ଆପଣ ଲେଖିଦିଅନ୍ତୁ । ଆଉ ଆପଣଙ୍କ ଔରଷରେ ଆମ୍ଭର ଏଇ କନ୍ୟାର ଗର୍ଭଜାତ ସନ୍ତାନ ଯେ ହେବ, ସେ ଆପଣଙ୍କ ପିଣ୍ଡର ମାଲିକ ହବ । ଏଇତକ ଆପଣ କରିଦିଅନ୍ତୁ ।

ଦାସେ—ସେଥିକି ଆମେ ରାଜି ଅଛୁଁ—କାଲି ସେ କଥା ଦେଖିବା ।

ଜଣେ—ବୁଝିଲେ ଆଜ୍ଞା, ଆମେମାନେ ଲେଖାଲେଖି କରି ଠିକ୍‌କରି ଆଣିଛୁଁ । ଖାଲି ଆପଣଙ୍କର ସନ୍ତକ ଲୋଡ଼ା ।

ଦାସେ—ଥରେ ପଡ଼ିଥିଲେ ସିନା ହୋଇଥାନ୍ତା ।

ଜଣେ—ପଢ଼ନ୍ତୁ, ଦେଖନ୍ତୁ । (କାଗଜ ବଢ଼ାଇ ଦେଲେ)

ଦାସେ—(କାଗଜ ଦେଖି ନିରେଖି ଗୁହିଁ ଚଷମା ଅଭାବରୁ ପଢ଼ିନପାରି ତିଆଡ଼ୀଙ୍କ ଆଡ଼କୁ ଅନାଇଲେ) ତିଆଡ଼ୀଏ, ପଢ଼ିଲ ପଢ଼ିଲ ।

ଅନ୍ୟଜଣେ—ନାଇଁ ନାଇଁ, ଆପଣ ନିଜେ ପଢ଼ନ୍ତୁ । ପଞ୍ଚଆତ୍ମା ବୋଧହେଉ । ପୁରୋହିତେ ପଢ଼ିବେ କଅଣ ?

ଅନ୍ୟଜଣେ—ଜ୍ୱାଇଁ ଆମର କଣ ବୁଢ଼ା ହୋଇଛନ୍ତି କି ପଢ଼ିପାରୁ ନାହାନ୍ତି ? ଚଷମାଟା ଆଣିଦେବ ?

ତିଆଡ଼ୀ—ବୁଢ଼ା ? କି ବୁଢ଼ା ହୋ ? ଦାନ୍ତ ବାଳ ଜକ ଜକ—ବୁଢ଼ା ?

ଜଣେ—ଆଉ ସ୍ୱାଙ୍କୁ ତାଙ୍କୁ ଦେବାର ଲଭ କଅଣ ? ନିଜେ ପଢ଼ନ୍ତୁ, ଦେଖନ୍ତୁ ।

ଦାସେ—( ହସି ) ନାଇଁ ନାଇଁ, ଚଷମା ଆମର ଲୋଡ଼ା ହୋଇନାହିଁ ଏଇନେ, କହିଲି ତିଆଡ଼ୀଙ୍କୁ ବଡ଼ ପାଟିରେ ପଢ଼ିଲେ ସମସ୍ତେ ଶୁଣିଥାଅନ୍ତେ ।

ଜଣେ—ସମସ୍ତେ ବୋଲି ତ ଏଇ ଆମେ କେତେ ଜଣ—ଆମେ ସବୁ ତ ଜାଣିଛୁଁ । ପଢ଼ନ୍ତୁ, ଆଉ କଅଣ ? ସେଇ କଥା ତ ଲେଖା ହୋଇଚି । କେବଳ ଆପଣଙ୍କର ସନ୍ତକଟା ଦର୍କାର—ଟିପଟା ଦର୍କାର । ହେଇଟି କଲମ । ( କଲମ ବଢ଼ାଇଲେ )

ତିଆଡ଼ୀ—ଆଉ ପଢ଼ୁଛନ୍ତି କଅଣ ? ସେଇଯା ତ ଲେଖା ହୋଇଥିବ । ଚେଣେ ଲଗ୍ନବେଳା ଗଡ଼ିଯାଉଛି । ଥରେ ଖାଲି ଆଖି ପକେଇ ଦିଅନ୍ତୁ ଗଲା ।

ଗ୍ରାମବାସୀ—ବୁଝିଲ ପୁରୋହିତେ, ଏଣିକି ସେ ଘର ଆମର ହେଲା । ଆମେ କଅଣ ତାଙ୍କର ଅଣହିତ ଗୁହୁଁଛୁ ନା ଗୁହିବୁଁ ? ଲେଖା ସେଇ ଅନୁସାରେ···

ତିଆଡ଼ୀ—ହଁ, ତା’ ନୁହେଁ କଣ ? ଝିଅ ଦେଇ ପୁଅ ପାଇବା କଥା ଇଏ ।

ଜଣେ—ଆହା ହା, ପୁଅ—ପୁଅ ତ ନୁହେଁ ସେ—ଆମ କୁଳଦିଅଁ । ଘରର ସଞ୍ଜବତି—ଦେବତା ।

ବାସୁ ଦାସେ—( କଲମ ଧରି ) କୋଉଠି ସନ୍ତକ ଦେବ ?

ଜଣେ—( ଦେଖାଇ ) ଏଇଠି ଏଇଠି ।

( ବାସୁଦାସ ସନ୍ତକ ଦେଲେ )

ଅନ୍ୟ—( କାଳିଧରି ) ହେଇଟି ଜ୍ୱାଇଁ କାଳି । ଟିପଟା ଏଇଠି ।

( କହି, ଟିପଧରି କାଗଜରେ ମାଡ଼ିଦେଲେ)

ଜଣେ—ବୁଝିଲ ତିଆରୀଏ, ଏଇ କଥାଟା ତାଙ୍କର-ଆମର ଲକ୍ଷେ ଟଙ୍କା । ଏ ଦଲିଲ ଦସ୍ତାବଜ ଗୁଡ଼ାର ବାଆକୁ ବଚା ସିନା ! ( ଦଲିଲ ନେଲେ )

ତିଆରୀ—ହଁ, ତା’ନହେଁ କଣ ? ହଉ କାର୍ଯ୍ୟ ବଢ଼ୁ ।

ଜଣେ—କିଛି ନାହିଁ, କିଛି ନାହିଁ ଆପଣ ହାତ ଗଣ୍ଠି କରନ୍ତୁ । ବରବନ୍ୟାଙ୍କ ଦୋଳମୁକୁଟ ଦେଖି ଆମେ ଚକ୍ଷୁ ପବିତ୍ର କରିବୁଁ ।

ତିଆରୀ—( ଉଭୟଙ୍କର ହସ୍ତଧର ମନ୍ତ୍ର ପାଠ କଲେ—ଅନ୍ତରାଳରୁ ଶଙ୍ଖ ହୁଳହୁଳି ବାଦ୍ୟ ଶୁଭୁଥାଏ )

---

## ଦ୍ୱିତୀୟ ଦୃଶ୍ୟ

(ପଥ)

ଗୁଣ—ଦେଖ ବାଙ୍କ ! ସେ କାଳ କଥା ଆଉ ନାହିଁ । ସେତେବେଳେ ଗୁଣ ଥିଲା, ଗୁଣ—ଆଜ ସେ ଗୁଣବାବୁ । (ଗୁଡ଼ାଏ ଥାନ ଦେଖାଇ)ଏ ଅଚଳାଚଳ ସମ୍ପତ୍ତି—ଯଖର ଧନ—ଏ ସବୁର ମାଲିକ ମିଷ୍ଟର୍ ଗୁଣସୁନ୍ଦର ଦାସ ସାମନ୍ତ । ବୁଝିଲୁ ?

ବାଙ୍କା—( ମୁଣ୍ଡ ହଲାଇ ସମ୍ମତି ଜଣାଇଲା )

ଗୁଣ—ସେଥିପାଇଁ ତୋତେ ଆଦବ୍ କାଇଦା ଜଗି ଚଳିବାକୁ ହେବ । ତୋତେ ଯେ ନୂଆ ଦରସ୍ ଦେଇଛି, ତାକୁ ସବୁବେଳେ ପିନ୍ଧି ଚଳୁଥିବୁ । ଇଏ ପଗାଳ କରିଆ ଲୁଗା—ପାଣି ଗାମୁଛା, ଆଉ ନଚଳେ । ବୈଠକଖାନାରେ ବସି ମୁଁ ଡାକିବି—ଏ·· ବଏ, ତୁ କହିବୁ—ଖୁବ ଜୋରରେ କହିବୁ—‘ହଜ୍‌ର’ । ଆସି ସଲାମ ଦେବୁ । କେମିତି ଜାଣୁଚ ? ହେଇ ଏନା—(ସଲାମ କରିବତେଇଲା) ଯା’—ଥରେ ସେମିତି କର ।

( ବାଙ୍କା ଗ୍ଭଲିଗଲା )

ଗୁଣ—ଏ, ବଏ ?

ବାଙ୍କା—( ଦୌଡ଼ିଆସି କହିଲା ) ଆଜ୍ଞା !

ଗୁଣ—( ବାଙ୍କା କାନ ଧରି ) ଗଧ, ସୁଅର୍ । ମୁଁ ତୋତେ କ’ଣ କହିଥିଲି ? ଏତେ ବେଗେ ଭୁଲିଗଲୁ ? ଖାଇବାକୁ ଏମିତି ପାଶୋର ଦଉ କି ?

ବାଙ୍କା—ମୁଁ ତ କିଛି ଭୁଲ କରିନାହିଁ ।

ଗୁଣ—ଫେର୍ ଗାଲୁ ?

ବାଙ୍କା—ନାଇଁ ଆଜ୍ଞା, ଆପଣ କହିଥିଲେ ବୈଠକ-ଖାନାରେ ବସି ମୋତେ ଡାକିବେ । ମୁଁ ସେଠୁ ଦରସ୍ ପିନ୍ଧି ଆସି କହିବି···

ଗୁଣ—କ’ଣ କହିବୁ ?

ବାଙ୍କା—ସେଇକଥା ସେଇଠି କହିବି ନାଇଁ ନା—ମୋର ମନେ ଅଛି ଯେ ।

ଗୁଣ—ମନେକର ମୁଁ ବୈଠକଖାନାରେ ବସିଛି ।

ବାଙ୍କା—ନାଇଁ ଆଜ୍ଞା ।

ଗୁଣ—ଚୁପ୍ କର । ହଁ, ମୁଁ ବସିଛି ।

ବାଙ୍କା—ହଉ, ହଁ ବସିଛନ୍ତି ।

ଗୁଣ—ଆଉ ମନେକର ମୁଁ ତତେ ଡାକିଲି ।

ବାଙ୍କା—ହଁ, ମନେ କରନ୍ତୁ ମୁଁ କହିଲି ।

ଗୁଣ—ଆଚ୍ଛା ମନେ କଲି । ଯା—ଖାନା ରେଡି ?

ବାଙ୍କା—ରେଡି ।

ଗୁଣ—ଦାମ ସାମଲ, ନବୀନ ଦାସ—ଏମାନଙ୍କୁ—ଯା ଖବର ଦେବୁ କି ଆଜ ରାତିକି ସାଆନ୍ତଙ୍କ ବୈଠକଖାନାରେ ଖାନା-ପିନା, ଗାନା-ବାଜଣା ହେବ, ଆସିବେ—ଯା, ଗୁହିଁ ରହିଲୁ କ’ଣ ?

ବାଙ୍କା—ନାଇଁ; ଦୋକାନକୁ ଯିବି ନାଇଁ ?

ଗୁଣ—ହଁ ।

ବାଙ୍କା—ଯେଇ ବାଟରେ ଏକାବେଳେ କାମସାର ଯାଆନ୍ତି···

ଗୁଣ—ଆଚ୍ଛା ଆଚ୍ଛା—ହ’ଟା ପୁଚ—ବୁଝୁଲୁ ତ ?

ବାଙ୍କା—ଆଜ୍ଞା ।

ଗୁଣ—ଆଚ୍ଛା, ଚାଲ ।

(ବାଙ୍କା ଗୀତ ଗାଇ ଗାଇ ଗ୍ଭଲିଗଲା)

(ଗୀତ)

ଏ ମଧୁ ଯାମିନୀ ତଳେ—ଚନ୍ଦ୍ରମା ନୟନ ଖେଳେ ।୦।
ଫୁଲ ଝୁଲେ, ଅଳି ବୁଲେ
ପିକ ବୋଲେ, କୁହୁକୁ—କୁଞ୍ଜ ଦୋଳେ
ଆକାଶ ଆଜି କବିତା ଭରା
ଗୋଲାପେ, ଗୋଲାପେ ତଳେ ହୋର ଖେଳା,
ମରମେ ମିଶାନା ଶରମର ଘୃଣା
ମେଲ ଆଖି, ଅନା ସଖି ! ମଧୁ ମାଖି
ନଭ ତାରକା ମେଳେ
କୁଙ୍କୁମ ଚନ୍ଦନ ବାସ ଭରା ରେ
ଆସ ସାଥୀ, ସୁଖେମାତି, ପାନ୍ଥସାଥି
ପ୍ରୀତି ଅଧର ଖେଳେ । ୧ ।

---

## ତୃତୀୟ ଦୃଶ୍ୟ

[କୁଟୀର]

(ଗୀତ)

ବାଙ୍କ—ଆକାଶେ ଚନ୍ଦ୍ର ହସେ
ମନ୍ଦ ହସେ ଫୁଲରାଣୀ,
ଭ୍ରମର ପ୍ରାଣ ଖୋଲି
ଗୁଞ୍ଜରେ ପ୍ରୀତି କାହାଣୀ । ୧ ।
ଜାଗିଛି ନଣୀସାରା ଆଖିରେ ତ ନିଦ ନାହିଁ
ଏକାକି କୁଆଁ ତାରା କାହାର ପଥ ଚାହିଁ ?
ଏ ନଣି ପ୍ରେମଝର
ଧାରା ତା'ର ଅସର
ଏ ନଣି ପ୍ରହାଏନା—ଶୁଣେ ମରମର ବାଣୀ ।୨।

ମାତା—କିଏ ରେ ? ବଙ୍କୁ ନା ?

ବାଙ୍କା—(ଆନନ୍ଦରେ ହସିଲି ଖାଲି)

ମାତା—କରେ ହସିଲୁ ତ ଖାଲି—କଥା କହୁ ନାହିଁ, ଭାରି ହସ ତ !

ବାଙ୍କା—ହସିବି ନାହିଁ ନା ? ତୁମେ ହସନ୍ତ ନାହିଁ ? ମୁଁ ହସୁଛି—ତୁମେ ବି ହସନ୍ତ—ତୁମେ ବି ଏମିତି ଆନନ୍ଦ ହୁଅନ୍ତ ।

ମାତା—ଆରେ କଥାଟା କହିଲେ ସିନା...

ବାଙ୍କା—(ସୁରଧର ନାଚ ବାପରେ) ଆକାଶେ ଚନ୍ଦ୍ର ହସେ
ମନ୍ଦ ହସେ ଫୁଲରାଣୀ...
ଆଉ ? ହସିବି ନାହିଁ ? ହସିବି, ହସିବି—ଶହେଥର, ହଜାର ଥର—ପାଞ୍ଚଶ ଥର ହସିବି । (ହସି) ଅଲବତ୍ ହସିବି ।

ମାତା—ହସ ବାବୁ ହସ । ହେଲେ କଥାଟା ଟିକିଏ କହ, ଶୁଣେ ।

ବାଙ୍କା—ଆଗୁ କହନା ମାତା, ଭାଗ୍ୟଟା ମୋର ସଲଖ କି ବଙ୍କା ?

ମାତା—ନା, କିଏ କହିଲା ତୋ ଭାଗ୍ୟଟା ବଙ୍କା ? ମିଛ, ମୁଁ କହେ ସଲଖ ।

ବାଙ୍କା—(ପୁଣି ହସି) ସେଇଆ ତ ମୁଁ ଜାଣେ—ଆଉ ଯୋଉ ଲୋକେ ମୋତେ କହନ୍ତି ବଙ୍କା...

ମାତା—ସେ ବୋକା ।

ବାଙ୍କା—ଠିକ୍, ମୁଁ ସଲଖ । ମୋ ନାଆଁ ଆଉ ବାଙ୍କା ନୁହେଁ—ମୋ ନାଆଁ ସଲଖା । ତା' ନୋହିଲେ ଠିକ୍ ହଜିଲା ବଳଦ ଖୋଜିଲାଠି ମିଳନ୍ତା ?

ମାତା—ତେବେ କଅଣ ମୋତେ ଖୋଜିବାକୁ ବାହାରିଥିଲୁ ?

ବାଙ୍କା—ଆଉ ? ଅଜି ଆମର ପରା ବୁଢ଼ା-ଏ...ବଡ଼ ସାଆନ୍ତଙ୍କ ବାହାଘର ମରଗୁ । (ବୋତଲ ଦେଖାଇ) ସାଆନ୍ତେ ତୁମକୁ ଅନାଇ ବସିଛନ୍ତି—ଖବର ଦେଇଛନ୍ତି । ନାଚ, ଗୀତ ତାମସା—ଧୂମ ଉତ୍ସବ ଆଜି ରାତି—ଆଉ ଆଜି ରାତି କି ସତେ ପାହିବ ? ଭରି ଖୁସି ଅଛି ମୁଁ—ଭରି ଫୁର୍ତ୍ତି ।

ମାତା—ଆଉ କିଏ କିଏ ଆସୁଛନ୍ତି ?

ବାଙ୍କା—ବହୁତ ଲୋକରେ ମୂଷା ମରେନାହିଁ—ଜାଣ ତ ? ଦୁଇତିନ ଜଣ ମୋଟେ—ମାଲ ତ ଏତିକି । ସ୍ବାକୁ

ଅନାଇ ଯୋଗାଡ଼ । ସାଆନ୍ତେ କହୁଛନ୍ତି, ତୁମେ ଯେମିତି ହଉ, ସଞ୍ଜସଞ୍ଜ ଆମ ଘରକୁ ଯିବାକୁ । ମୁଁ ଆସି ଡାକିନେବ ଯେ; ଯାଏଁ ମୁଁ—ବହୁତ କାମ ମୋର ତେଣେ । ସାଆନ୍ତଙ୍କୁ କଅଣ କହିବ ?

ମାଲତୀ—କିଛି ନାହିଁ—ଯିବ ।

ବାଙ୍କା—ବାଃ, ଅଜ କର୍ମରେ ମୋର ବକ୍‌ସିସ୍ ଥୁଆ । ଏକ ଦୁଇ ନୁହେଁ-ଏକଦମ୍ ପଞ୍ଚଅଣ୍ଟଙ୍କା ଧରି ବସିବ । ନ ଦେଲେ ବଙ୍କ୍‌ମନ ଆଜ ଧରା ନ ଦଅନ୍ତି । ହସ, ହସ ମାଲତୀ ! ଖୁବ୍ ଜୋରରେ । ମୋର ଆଜ ଭାଗ୍ୟ ଫିଟିଛି, ଫିଟିଛି ।

( ଗାଇଗାଇ ପ୍ରସ୍ଥାନ । ମାଲତୀ ପଛେ ପଛେ ଗଲେ)

---

## ଚତୁର୍ଥ ଦୃଶ୍ୟ

(ଗୁଣ ବସି ଥରକୁ ଥର ମୁଣ୍ଡ କୁଣ୍ଡାଉଥିଲା—ପାଖ Tableରେ ଥୁଆ ହୋଇଥିଲା ଗୋଟିଏ ବୋତଲ ଓ ଗ୍ଲାସ—ତା' ପାଖକୁ ଗୋଟିଏ ଲଣ୍ଠନ—ଗୁଣ ମାଲତୀକୁ ଅପେକ୍ଷାକରି ବଡ଼ ଅଧୀର ହୋଇ ପଡ଼ିଥିଲା—ରୁମାଲରେ ବନ୍ଧା ହୋଇଛି ଗୁଡ଼ିଏ ଗହଣା—ସେଗୁଡ଼ିକ ଖୋଲି ଥରକୁ ଥର ଦେଖୁଥିଲା—ହାତରେ ପୁଳାଏ ଗୁବଥୋଲା··· ବ୍ୟସ୍ତହେବେ ଗୁଣୁ ଗୁଣୁ ଗୀତଗାଇ ଘରଭିତରୁ ବାହାରକୁ ଓ ବାହାରୁ ଭିତରକୁ ଯିବା ଆସିବା କରୁଥିଲା)

ଗୁଣ—ବାଙ୍କୁ, ବାଙ୍କୁ !

ବାଙ୍କ—ଆଜ୍ଞା ! (କହି ଆସିଲା)

ଗୁଣ—କିରେ ? ତୁ କହିଥିଲୁ କି ?

ବାଙ୍କ—ଆଉ ? କହିଲି-ଜବାବ ନେଲି···

ଗୁଣ—ତେବେ ଏତେ ଡେରି ?

ବାଙ୍କ—ଆସୁଥିବ—ଟିକିଏ ବାଟଘାଟ ନିଜନ ହେଲେ ତ ଫେର୍···

ଗୁଣ—ଦାମବାବୁ ହେଣ୍ଡିକାଙ୍କୁ ?

ବାଙ୍କ—ଯେ ବ ଆସିବେ ।

ଗୁଣ—ଦେଖ୍‌ନା, ମାଲତୀ ଆସିଲା କି ?

(ବାଙ୍କ—ଗ୍ଭଲିଗଲା । ଗୁଣ ପୁଣି ଗୁଣୁଗୁଣୁ ହୋଇ ଗୀତ ଗାଇଲା । କିଛି ସମୟପରେ ଅଣନିଶ୍ବାସୀ ହୋଇ ଦୌଡ଼ି ଦୌଡ଼ି ଆସିଲା )

ଗୁଣ—କ'ଣ ରେ ? ଏ କଅଣ ?

ବାଙ୍କ—(ଧଇଁସଇଁ ହୋଇ) ସାଆନ୍ତ···

ଗୁଣ—ଆରେ ଏମିତି କାହିଁକି ହଉଚ୍ ?

ବାଙ୍କ—ଦଉଡ଼ିକରି ଯାଇଥିଲି, ଅଣନିଶ୍ବାସୀ ହେଇଗଲି ।

ଗୁଣ—ଆଇଲା ?

ବାଙ୍କ—ହଁ ।

ଗୁଣ—ଡାକ୍ ତେବେ । ଡାକଦେଇ ବାହାର କବାଟ କିଳିଦେଇ ଘରେ ଶୋ । ଯା, ତୋର ଆଉ କିଛି କାମ ନାହିଁ ।

ବାଙ୍କ—ହଉ । (ଗ୍ଭଲିଗଲା)

ଗୁଣ—( ପୁଣି ମୁଣ୍ଡ କୁଣ୍ଡାଇଲା । ଆସିଲେ ମାଲତୀ ) ଆସ, ଆସ । ତମରି ଏ ଘର । ଲାଜ, ଡର—ଏ ସବୁ କଅଣ ? ବସ, (ହାତଧରି ବସାଇଲା) ଏତେ ଡେରି ?

ମାଲତୀ—ବାଟ ନିଶୂନ ହେଲେ ତ ?

ଗୁଣ—( ଗହଣା ପୁଟୁଳା ଦେଖାଇ ହସି ହସି ) ହଁ ହଁ, ଆଶା ନ ଥିଲା ମୋର ଏଡ଼େ ଭାଗ୍ୟ ହେବ ବୋଲି । ଦେଖିଲ, ଦେଖିଲ—ଏସବୁ ତମ ମନକୁ ପାଉଛି କି ନାହିଁ ?

ମାଲତୀ—କଅଣ ?

ଗୁଣ—ଏଇ ସାମାନ୍ୟ ଅଳଙ୍କାର । (ରୁମାଲ ଫିଟାଇଲା)

ମାଲତୀ—ଏଗୁଡ଼ାକ କାହିଁକି ଭଲ···ଏତେ ଖର୍ଚ୍ଚ କରି···

ଗୁଣ—ଖରଚ ? ଖରଚ କଅଣ ? ବନ୍ଧକୀ ମାଲ ଏମିତି କେତେ ପଡ଼ିଛି—ବୁଡ଼ିଛି । ବାସୁଦାସଙ୍କଠୁ ଜନକ ଫେରପାଇବା, ଭୋଗିବା । ତୁମର ଯାହା ଖୁସି, ବାଛି ନିଅ । (ଟେବୁଲ ଉପରେ ଥିବା ଗୁବ ଦେଖାଇ) ଗୁବ ତ ମୋ ହାତେ । ଆସ, ମୁଁ ବାଛିକରି ପିନ୍ଧାଇଦେବି । (ମାତାଙ୍କ ହାତ ଧରିଲେ)

ନେପଥ୍ୟେ—(କବାଟ ବାଡ଼ିଆ ଶବ୍ଦ)

ମାତା—(ଚମକି) ଏତେ ରାତିରେ କିଏ କବାଟ ବାଡ଼ୋଉଛି ?

ଗୁଣ—ସେ ଯେ ହଉ, ଆମର କଅଣ ଅଛି ।

ମାତା—ଶ୍ୱେର କି କଅଣ ?

ଗୁଣ—ନାଁ-ଶ୍ୱେର ? ଏଡ଼େ ହେମନ୍ତ ?

ମାତା—(କାନେଇ) ଶୁଣ—କାନା । ମୋତେ ଭାରି ଡର ମାଡ଼ୁଛି । ଏଇ ଶୁଣ ( ଗୁଣକୁ ଠାରିଦେଇ, ଗୁବଥୋଇଛି ତା ଅଲକ୍ଷରେ ଧରିଲେ)

ଗୁଣ—ଆଗୁ, ମୁଁ ଦେଖୁଛି । ବାଙ୍କୁ, ବାଙ୍କୁ !

ମାତା—ସେ କ'ଣ ଆଉ ଏତେ ରାତିରେ ଚେଇଁଥିବ ? ବଙ୍କୁ, ବଙ୍କୁ—ଶ୍ୱେର, ଶ୍ୱେର—

ଗୁଣ—ସେ କଅଣ ବଞ୍ଚିଛି ? ଆଗୁ, ମୁଁ ତାକୁ ଉଠାଉଛି । (ଘର ଭିତରକୁ ଗୁଲିଗଲେ)

ମାତା—(ତାଲା କାଢ଼ି ଗୁବ ବନ୍ଦ କଲେ । ଗହଣାକୁ ବାନ୍ଧିବାରେ ଲାଗିଲେ)

ଗୁଣ—(କବାଟରେ ଧକ୍କାମାରି) ମାତା, ମାତା—କବାଟ ଫିଟାଅ ।

ମାତା—(ଆଲୁଅ ଲିଭାଇଦେଇ) ଶ୍ୱେର ପଶିଯିବେ—ସେଇ ଘରେ ଥାଅ, କୁସୁମ ଅପା ଆସିବାଯାଏ ।

(ପଟ୍ଟ ପତନ)

---

## ପଞ୍ଚମ ଅଙ୍କ—ପ୍ରଥମ ଦୃଶ୍ୟ

[ଗୀତ ଗାଇ ଗାଇ ମାତାର ପ୍ରବେଶ]

(ଗୀତ)

ତୁମେ ଯାହା କହ ନୂଆ ମୁଁ ବୋଲେ ତା' ଶାଣ ଦିଆ
ତୁମ ଆଖି ଦେଖେ ନୂଆ—ପାଶୋରା ଯାହା । ୦ ।
ଜାଣି ଭୁଲେ ବୋଲି ପ୍ରୀତି ନୂଆ ଶଶି ହସେ ନିତି
ଅଳି ଭୁଲେ ଫୁଲେ ବୋଲି ନିତି ଫୁଟେ ନୂଆ ନୂଆ ।୧।
ପାଶୋରେ କୋଇଲି ବୋଲି ବସନ୍ତ ଆସଇ ଫେରି
ତୁମେ ଭୁଲ ପ୍ରେମ ଗୁପ୍ତ ମରଣରେ ଖୋଜ ତାହା ।୨।
ଢେଉ ଭୁଲେ ଜଳ-ଖେଳା ଭସାଏ ସାଗର ବେଳା
ପୁରୁଣାରେ ମାଜ ବୋଲା ଦୁନିଆଁରେ ନୂଆ ଯାହା ।୩।

(ମଦନର ପ୍ରବେଶ)

ମଦନ—ନମସ୍କାର, ନମସ୍କାର ! ଓହୋ, କେତେ ଯେ ମୁଁ ତୁମକୁ ଖୋଜିଲିଣି—ତା'ର ସୀମା ନାହିଁ । କେତେବେଳେ, କେଉଁ ଯାଗାରେ—କେମିତି ଯେ ତୁମେ ଥାଅ, ଦେବତା ହେଲେ ବି ଜାଣି ପାରିବେ ନାହିଁ ।

ମାତା—(ହସି) ଦୁନିଆର ଯେ ଦାସୀ, ତାର ବାସର ପୁଣି ଠିକଣା କ'ଣ ? ତାକୁ ଅବସର ବା କାହିଁ ? ତା' କାମରେ ଛୁଟି ନାହିଁ,—ମିଳିବ ସେଦିନ ଯାଇ ଛୁଟି—ଏକାବେଳେ ତା'ର ଛୁଟି ସେଦିନ... ଦାସୀର ସେଇଦିନ ଛୁଟି ମିଳିବ ।

ମଦନ—ଦାସୀ ? କାହାର ଦାସୀ ? କିଏ ଦାସୀ ? ମା' ଯେପରି ପୁଅର—ଭଉଣୀ ଯେପରି ଭାଇର... ସେହିପରି ତ ମାତା ? ତା' ନ ହୋଇଥିଲେ ମଦନର ଆଜି ଭିଟାମାଟି ଉଚ୍ଛନ୍ନ ଯାଇ ପଥର ଭିକାରି ହୋଇ ଥାଆନ୍ତା ସେ । ଆଉ ପତିବ୍ରତା କୁସୁମ ଦୁଗ୍ଧପୋଷ୍ୟ ଶିଶୁଟିକୁ ନେଇ ମଥାପିଟି ହେଉଥାନ୍ତା ଅଜି ।

ମାତା—ଥାଉ ଥାଉ, ବୃଥା ପ୍ରଶଂସାରେ ଲାଭ ନାହିଁ କିଛି ।

ମଦନ—ବୃଥା ପ୍ରଶଂସା କଲି ବୋଲି କେହି କହିଲେ ତା'ର ପାପ ହେବ ମାତା ! ଅଜ ଦୁନିଆରେ ଭେକଧାରିଣୀ ଏଇ ମା'ଠାକର ଯାହା ଗତି, ମୋର ମାତା ତ ତାହା ନୁହେଁ—ମୋର ମାତା ଧନ ଦରଦ୍ର, ଆତୁରର ମାତା । ଯେ ଜାଣେ, ଯେ ଦେଖେ—ସେ ବୁଝେ ସିନା !

ମାତା—କହିଲି ତ, ସେସବୁରେ ଲାଭ ନାହିଁ କିଛି, କାମର କଥା କହ ।

ମଦନ—ସବୁ ତ ସରିଛି । ମୋ ଦଲିଲ ଫଡ଼ାଗଲା, ଆଉ ସେ ଦଲିଲ ବି ଲେଖାଲେଖି ହୋଇ ରହିଥିଲା । ଶେଷରେ ଦାସବୁଢ଼ାଙ୍କୁ ଅଦୃଶ୍ୟ । ବେଘାଉପରେ ଟିପଚିହ୍ନ, ସନ୍ତକ ସବୁ କରେଇ ନିଆଗଲା—ହସ ଲାଗୁଥାଏ ମୋତେ । ତାଙ୍କୁ ଚଷମା ଦର୍କାର ହେବ କି ବୋଲି ପଚାରିବାରୁ ସେ ପୁଣି ବୟସ ଚାହାଁ ପଡ଼ିଯିବା ଭୟରେ ଚାଳିଶା ନ ଧରିଥିବା କଥାଟା ପ୍ରକାଶ କଲେ ।

ମାତା—ଏ'ତ ଭଲ ହେଲା । ଆମର ସୁବର୍ଣ୍ଣ ସୁଯୋଗ, ତା'ପରେ ?

ମଦନ—ତା'ପରେ ଆଉ କଅଣ ? ସୁନା ପିଲାଟି ପରି ଟିପ ଦେଇଦେଲେ, ଦସ୍ତଖତ ଦେଇଦେଲେ ଥଏଁ ଥଏଁ ।

ମାତା—ଏଣେ ଗୁଣ ବି ତାଙ୍କ ନିଜ କୋଠିରେ କଇଦୀ । ରହିଥିଲା ମୋ' ହାତରେ ।

ମଦନ—କେମିତି ? ଆଶ୍ଚର୍ଯ୍ୟ !

ମାତା—ଅନେକ କୌଶଳରେ । ପରେ ସେସବୁ—କାଲି ପରା ଚଉଠି ? ତା'ର ବିବାଦ ଫେର୍ କ'ଣ କରିଛ ? ବର-କନ୍ୟା ଭେଟ ହେବେ ତ ପୁଣି !

ମଦନ—ନିଶ୍ଚୟ । ଆଉ ମୁଁ ତମକୁ ଖୋଜି ଆସିଲି କାହିଁକି ? ଦାସଙ୍କୁ ତାଙ୍କ ଘର୍ଥ ଯାହାକୁ ବଦାୟ ନ କରିବାଯାଏଁ ମୁଁ ନିଶ୍ଚିନ୍ତ ନୁହେଁ । ତୁମେ ନ ଗଲେ ଏସବୁ କିଏ କରିବ ?

ମାତା—ବାକି ତେଣେ ଯେ ମୋ ହାତରେ ଦୁଇଟି ଜୀବ ବନ୍ଦୀ । ଗୁଣ ତାଙ୍କ ଘରେ, ବଙ୍କୁ ଆମ ଘରେ, କଣା ଥାଉ ଯିବଣି ଏତେବେଳକୁ ଗୁଣର । ଆଚ୍ଛା, ତୁମେ ଘରକୁ ଚାଲ, ମୁଁ ଟିକିଏ ଥାଉକରି ଆସୁଛି । ବର-କନ୍ୟା ବିଦାୟଟା କରିଦିଅ ତୁମେ ଆଗେ ।

ମଦନ—ଭଲ କଥା ।

ମାତା—ମୁଁ ସେଇଠି ଦାସଙ୍କ ଷୋଡ଼ଶବାସରେ ପହଞ୍ଚିଥିବି—ଚାଲ ।

ମଦନ—ହଉ ।

(ଉଭୟେ ବିପରୀତ ଦିଗରେ ଗଲେ)

---

## ଦ୍ୱିତୀୟ ଦୃଶ୍ୟ

(ବାସର ଘର—ବାସୁଦାସ ଓ କୁସୁମ)

ବାସୁ—ଶୁଣ ତେବେ, ଘର-ଦ୍ୱାର; ଟଙ୍କା-ଟୋକର ସବୁର ହେଲ ମାଲିକ ତୁମେ । ତୁମେ ଲୁଚକରି ନୂଆବୋଉ ହୋଇ ବସିଲେ ଆଉ ଚଳିବା କେମିତି ? ଜଗରଖା ନ କଲେ ଅଚଳାଚଳ ସମ୍ପତ୍ତି ମୋର କିଏ ସମ୍ଭାଳିବ ? ସେଇଥିପାଇଁ ତ କୁସୁମକୁ ଆଉ ତା' ପୁଅକୁ ଘରୁ ନିକାଲି ଦେଲି; ଚିନି ପାଞ୍ଜିରୁ ଗଲେ ସେ । ଆଜଠୁଁ ତୁମେ ହେଲ ଘରର ମାଲିକାଣୀ । ଗୁଣଠୁଁ ଆଣି ଚାବି ନେଇଛଟା ତୁମ ଜିମା କରିଦେଲେ, ମୁଁ ନିଶ୍ଚିନ୍ତ । ଆସ, କଥା କହ । ଇଏ ଲାଜ-ଫାଜ ଥାଉ । କଉ ବସ ।

(କାନ ଟାଣିଲେ)

ନେପଥ୍ୟେ ବାଙ୍କା—ସାଆନ୍ତ, ସାଆନ୍ତ ! ବେଗେ ଟିକିଏ ବାହାରକୁ ଆସ । ଘର ବୁଡ଼ିଲା ଢେଣେ ।

ବାସୁ—ଦେଖୁନ୍ତୁ, ରାତି ଅଧରେ ବ ଚରନାଇଁ । ଏ ଘରେ ଗୋଟେ କିଏ ଆସି ଡକା ପକାଇଲାଣି । କାହାର ଗୋଟେ ଘର ବୁଡ଼ିଗଲାଣି । ଛୁଙ୍କିବାକୁ ଭଲ ଚର ଅଛି ମୋର ?

(ହଠାତ୍ ରମୁ ଆସିଲା)

ରମୁ—ବାଙ୍କା କାହିଁକି ଦୁଆରେ ଡାକୁଛି ବାପା ।

ବାସୁ—( ଅଶ୍ରୁର୍ଯ୍ୟ ହେବାପରି ବରକ୍ତରେ ) ବାପା, ବାପା ! ତତେ ଏଠିକି ଆଣିଲା କିଏ ? ନକଲ; ନକଲ । ( ଚଣ୍ଡି ଧରି ବାହାର କରିଦେବାକୁ ଉଦ୍ୟତ ହେବାବେଳେ ମାତାର ପ୍ରବେଶ )

ମାତା—ଖବରଦାର୍ । ଟିପ ଛୁଅଁ ନାହିଁ ତା'ଦେହରେ କହୁଛି । ଭଲ ହବ ନାହିଁ ।

ବାସୁ—ଚୁପ୍ । ମୋ ଘରେ ପଶି ପୁଣି ମୋତେ ଧମକ୍ ? କିଏ ସେ ଅଛ ରେ ? ମାଗିଖାଇର ପୁଣି ଗୃହର ଦେଖ !

ମାତା—ତମପରି ପାପୀ ନ କରି ଭଗବାନ ମତେ ଜନ୍ମେ ଜନ୍ମେ ମାଗିଖାଇ କରନ୍ତୁ । ମୋର ଆନନ୍ଦ ସେଥିରେ; କିନ୍ତୁ ସାବଧାନ କରିଦେଉଛି—ଛୁଆ ଦେହରେ ଟିପ ଛୁଇଁପାରିବ ନାହିଁ ତୁମେ ।

ବାସୁ—ଯା ଯା, ଛତରଖାଇ—ତୋତେ ଏଠିକି ଆସିବାକୁ କହିଲା କିଏ ? ମୋ ଘରକୁ ଆସି ମୋତେ ଧମକ ? ଆଚ୍ଛା, ତୁ କଅଣ କରିବୁ କର । ଦେଖୁଛି ମୁଁ ସେ ଛୁଆକୁ ତା ଚଣ୍ଡି ନ ଶପିଦେବ ଯେବେ···

( ଟାଣିଲାବେଳକୁ ରମୁ କାନ୍ଦିଉଠିଲା—ବୁଢ଼ାର ନବବିବାହିତା ପତ୍ନୀ ତାକୁ କୋଳକୁ ଟାଣିନେଲା । ବାଙ୍କା ପଦାସ୍ଥ ମୁଣ୍ଡ ବାଡ଼େଇହେଲା)

ବାଙ୍କା—(କାନ୍ଦି) ସାଆନ୍ତ ! ଢେଣେ ଘର ବୁଡ଼ିଲା । କାଲି ରାତିରେ କିଏ ଦୁଇଗୁରିଟା ଆସି ଗୁଣ ସାଆନ୍ତଙ୍କୁ ବାନ୍ଧିକରି ଘରେ ପକେଇ, ଗୃହ ଛଡ଼େଇ···

ବାସୁ—( ବାଧା ଦେଇ ) ଆରେ, କଣ କହୁଛୁ—କଣ କହୁଛୁ ? ଘର ଲୁଟି ହେଲା ମୋର ? ଆଜି ଆସି ଖବର ଦେଉଛୁ ?

ବାଙ୍କା—ମୋତେ ତ ବାନ୍ଧି ରଖିଥିଲେ ସାଆନ୍ତେ ! ଦେହ ମୁଣ୍ଡ ଆଉ କଣ୍ଟ ଅଛି ମୋର ? ଅନାଁଅ, ଯୋଉ ମାଡ଼···

ବାସୁ—ଆରେ ମାଇଲା ଫେର୍ କିଏ ରେ ? କାହା ଜିଭରେ ଏତେ ହାଡ଼ ?

ମାତା—ଦୈବ—ଦୈବ ଜିଭରେ । କପାଳକୁ ଧନ ତୁମର ଅଛି ବୋଲି କଅଣ ସେ ତୁମକୁ ଡର ଚଳିବ ? ଧନ ମଦନ ଦାସର ନୁହେଁ ସେ—ଟଙ୍କା ଥରଥର କରି ସୁଝି ବୃଢ଼ାବରକୁ ବାହାଦବ ଭଉଣୀକି ତା'ର ।

ବାସୁ—ଚୁପ୍, ହାରମଯାଦୀ ଟୋକା । (ଧରି ପକାଇଲେ)

କୁସୁମ—(ହାତ ଛଡ଼ାଇ ହଠାତ୍ ମୁହଁରୁ ଓଢ଼ଣା ଖୋଲି) ଇଏ କଣ ? ସ୍ତ୍ରୀଲୋକ ଦେହରେ ହାତ ଦେଉଛ ? ଛାଡ଼ ।

ବାସୁ—(ଫେରି) ତୁ ଫେର୍ ମୋତେ କଥା କହିବାକୁ··· (ଗୃହିଁ) କିଏ ?

ମଦନ—(ଆସି) ସେ ମୋର ଭଉଣୀ; କୁସୁମ ଅପା । ତମ ଘରର ଧନ—ଯାହା ଯୋଗୁଁ ତମେ ବଞ୍ଚି ରହିଛ—ଚିହ୍ନି ଚିହ୍ନ ।

ମାତା—ପୁଷ୍ପରହ ବାସୁ ଦାସେ ।

ବାସୁ—ଏଁ ! ଏସବୁ କି ଷଡ଼ଯନ୍ତ୍ର ? ଇଏ କଅଣ ?

ମାତା—ଷଡ଼ଯନ୍ତ୍ର ନୁହେଁ···ପ୍ରତିଶୋଧ ।

ମଦନ—(ଦଲିଲ ଦେଖାଇ) ଆଉ ଇଏ ମୋର ପ୍ରତିଶୋଧ । ଏହି ଦଲିଲ ବଳରେ ତୁମର ସବୁ

ସମ୍ପତ୍ତିର ମାଲକ ରମୁ । ମାତା ମାହାଫିସ କୁସୁମ ଅପା । ଭଗବାନ ରକ୍ଷା କଲେ । ତୁମେ ଆଉ ମୋ ପର ଉତ୍ତୀର ସର୍ବନାଶ କରିପାରିବ ନାହିଁ ।

ବାସୁ—ତୁ···ମଦନ ଦାସ ? ତୁ ପୁଣି···

ମାତା—ତୁନ ହୁଅ ଦାସେ । ଶୁଣ—(ଗୃହ ଦେଖାଇ) ଏଇ ଗୃହ ତୁମ ଗୁଣଧର ଶାଳକଙ୍କୁ ଦେଇଥିଲ ।

ଆଜିଠାରୁ ଘରର ମାଲକାଣୀ ଜମା ରହିଲା । ଇଏ ମୋର ପ୍ରତିଶୋଧ ।

(କୁସୁମଙ୍କ କାନରେ ବାନ୍ଧିଦେଲେ )

ବାଙ୍କା—( ପିଠି ଦେଖାଇ ) ଆଉ ସାଆନ୍ତେ ! ନୂଆ ସାଙ୍ଗରେ ପଡ଼ି ଅଗ୍ନି ଦେବତା ମାଡ଼ ଖାଇଲେ ସିନା ! ଇଏ ମୋର ପ୍ରତିଶୋଧ । ହେଁ, ହେଁ ।

(କାନ୍ଦି ଉଠିଲା)

ବାସୁ—(ସମସ୍ତଙ୍କୁ ଜଳ ଜଳ ଅନାଇଁ, ମୁଣ୍ଡରେ ହାତ ଦେଇ ବସିପଡ଼ି) ଓହୋ !

— ଯ ବ ନି କା ପ ତ ନ —



## ପଦେ କଥା

ଗାର୍ଲ୍‌ସ୍କୁଲ୍ ମୋର ପ୍ରଥମ ସାମାଜିକ ନାଟକ ଲେଖା । ଉତ୍ତରୋତ୍ତର ଏ ଖଣ୍ଡି ମୁଁ ମୋର ଓଡ଼ିଶା ଥିଏଟର୍ସର ଅଭିନେତା ଓ ଅଭିନେତ୍ରୀମାନଙ୍କଦ୍ୱାରା ପ୍ରଥମେ କଟକରେ ଅଭିନୀତ କରାଏଁ । ଓଡ଼ିଆ ସାମାଜିକ ନାଟକ ଏତେ ଲୋକ ମନୋରଞ୍ଜକ ହୋଇ ଫୁଟି ପାରିବ, ଏ ଆଶା ମୋର ନ ଥିଲା । ସେଥିଲାଗି ମୁଁ ମୋର ସଂଘର ଅଭିନେତା ଓ ଅଭିନେତ୍ରୀମାନଙ୍କ ନିକଟରେ କୃତଜ୍ଞ । ଏ ଉଦ୍ୟମକୁ ସଫଳ କରିବାକୁ ମୋର ସୋଦର ପ୍ରତିମ ବାଲ୍ୟବନ୍ଧୁ ଶ୍ରୀଯୁକ୍ତ ଚକ୍ରଧର ମିଶ୍ର ବି· ଏ· ଓ ଶ୍ରୀ ମଧୁସୂଦନ ମହାନ୍ତି ବି· ଏ·, ସର୍ବତୋଭାବେ ମୋତେ ସାହାଯ୍ୟ କରିଛନ୍ତି । ସେମାନଙ୍କୁ ଧନ୍ୟବାଦ ଦେବାର କ୍ଷମତାପର୍ଯ୍ୟନ୍ତ ମୋର ନାହିଁ । ତାଙ୍କ ଋଣ ପରିଶୋଧ କରିବା ସୁବିଧା ସମ୍ଭବତଃ ମୋର ଏ ଜନ୍ମରେ ହେବ ନାହିଁ ।

ନାଟକଟିର ଅଭିନୟ ଦେଖି ଓଡ଼ିଶାର ମାନ୍ୟବର ପ୍ରଧାନମନ୍ତ୍ରୀ କ୍ୟାପଟେନ୍ ମହାରାଜା ସାହେବ, ପାରଳା-ଖେମୁଣ୍ଡି, ସରକାରଙ୍କ ଜରିଆରେ ମୋତେ ପରମ ଉତ୍ସାହିତ କରିଅଛନ୍ତି । ତାଙ୍କୁ ମୋର ଅନ୍ତରର ଗଭୀର କୃତଜ୍ଞତା ଜ୍ଞାପନର ଅବସର ଅବଧି ପାଇନାହିଁ । ପରିଶେଷରେ ଏ ପୁସ୍ତକର ପ୍ରକାଶ ଲାଗି ଉତ୍କଳ ସାହିତ୍ୟ ସମାଜର ସଂପାଦକ ସାହିତ୍ୟ-ପ୍ରାଣ ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଉଦ୍ୟମ ଲାଗି ମୁଁ ତାଙ୍କୁ ସାଧୁବାଦ ଅର୍ପଣ କରୁଅଛି ।

କଟକ — ବିନୀତ

୧୩ । ୧୦ । ୪୬ — **ଲେଖକ**

## ପାତ୍ର ପରିଚୟ

### —ପୁରୁଷ—

ସାଗର—ଜମିଦାର କାହ୍ନୁଚରଣଙ୍କ ପୁତ୍ର—ଶ୍ରୀ ଦୁର୍ଲ୍ଲଭଚନ୍ଦ୍ର ସିଂହ

ରସିକ—ସାଗରର କଲେଜ ସହପାଠୀ—ଶ୍ରୀ ସାମୁଏଲ୍ ସାହୁ (ବାବି)

କାହ୍ନୁ ଚରଣ—ମର୍ଦ୍ଦରାଜପୁର ଜମିଦାର—ଶ୍ରୀ ରାଧାନାଥ ମହାନ୍ତି

ଛାମୁକରଣ— (ଗୁମାସ୍ତା) —ଶ୍ରୀ ପ୍ରିୟନାଥ ମିଶ୍ର

ପୁରାଣ ପଣ୍ଡା— —ଶ୍ରୀ ହରିହର ରାଉତ

ଆନନ୍ଦ—(ଗାର୍ଲ୍‌ସ୍କୁଲ୍ ଚପରାସି)—ଶ୍ରୀ କୃଷ୍ଣଚନ୍ଦ୍ର ପାଣ୍ଡେ

ନଟିଆ—ଚୌଧୁରୀ ଶ୍ରୀ ବୀରେନ୍ଦ୍ର ନାଥ ମିଶ୍ର

ନଡିଆ—ଚୌଧୁରୀ ଶ୍ରୀ ବଳରାମ ମିଶ୍ର

ଅମଲା—ଶ୍ରୀ ବଂଶୀଧର ମହାପାତ୍ର

ସମାଜ ହିତୈଷୀ, ଜମିଦାରଙ୍କ ପାର୍ଶ୍ୱଚର, ମଦନ ବାବୁ, ଭୃତ୍ୟ, ଗ୍ରାମବାସୀ ଓ ମେସ୍ ମ୍ୟାନେଜର ଇତ୍ୟାଦି ।

### —ସ୍ତ୍ରୀ—

ରେଣୁ—ଗାର୍ଲ୍‌ସ୍କୁଲ୍ ଛାତ୍ରୀ—ଶ୍ରୀମତୀ ମାନଦା ସୁନ୍ଦରୀ ଦାସୀ (ମେନା)·

ବେଳା—ଶ୍ରୀମତୀ ଲକ୍ଷ୍ମୀପ୍ରିୟା ଦେଈ । ନୟନା—ଶ୍ରୀମତୀ ସୁମତୀ ଦେବୀ

ସାଗର ବୋଉ—ଶ୍ରୀମତୀ ଶୈଳବାଳା ଦାସୀ (ଖୁକି)

ସଜ୍ଜାକର—ଚୌଧୁରୀ, ବୀରେନ୍ଦ୍ରନାଥ । ସହକାରୀ—ସୁଶୀଲ, ଶଶିକାନ୍ତ, ଯଦୁନାଥ ।

ରୂପକାର—ନରେଶଚନ୍ଦ୍ର ସର୍କାର ଓ ସୁଧୀରଚନ୍ଦ୍ର ସର୍କାର ।

ସୂଚକ—ଶ୍ରୀ ରାଜକିଶୋର ମହାନ୍ତି

## କବିଚନ୍ଦ୍ର କାଳୀଚରଣଙ୍କ
## ଓଡ଼ିଶା ଥିଏଟର୍ସ ସଂଘର ଅଭିନବ ଅବଦାନ
## 'ଗାର୍ଲସ୍କୁଲ'

କଟକ ତା ୧୪ । ୨ । ୪୨

ଆଜ ରାତ୍ରି ୯ଟା ବେଳେ ରାମଚନ୍ଦ୍ର ଭବନରେ ସାହିତ୍ୟ ସପ୍ତାହ ମଞ୍ଚରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ "ଓଡ଼ିଶା ଥିଏଟର୍ସ" ସଂଘ କବିଚନ୍ଦ୍ରଙ୍କ ଅଭିନବ ଅବଦାନ ଗାର୍ଲସ୍କୁଲ ଅଭିନୟ କରିଥିଲେ । ମାନ୍ୟବର ଶିକ୍ଷାମନ୍ତ୍ରୀ କବି, ପଣ୍ଡିତ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ଦୃଶ୍ୟର ପଟ୍ଟ ଉନ୍ମୋଚନ କରି ଓଡ଼ିଶା ଥିଏଟର୍ସ ସଂଘର ଶୁଭ ଦେଇଥିଲେ । ରାୟ ବାହାଦୁର ଶ୍ରୀଯୁକ୍ତ ଭିକାରୀଚରଣ ପଟ୍ଟନାୟକ, ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ, ଶ୍ରୀଯୁକ୍ତ ଚୌଧୁରୀ ରାଧାନାଥ ମିଶ୍ର, ଶ୍ରୀ ହରିକିଶୋର ଦାସ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ଏତେ ଦର୍ଶକ ଉପସ୍ଥିତ ଥିଲେ ଯେ ସେମାନଙ୍କୁ ସ୍ଥାନ ଯୋଗାଇବା କଷ୍ଟକର ହୋଇଥିଲା । ନାଟକଟି ଆମୂଳଚୂଳ ଉପଭୋଗ୍ୟ ହୋଇଥିଲା ଏବଂ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ ଯୁବତୀଙ୍କ ଜୀବନର ଅବିକଳ ଆଲେଖ୍ୟ ପ୍ରଦାନ କରିଥିଲା । କେବଳ ଉପଭୋଗ୍ୟ କହିଲେ ଠିକ୍ ହେବନାହିଁ, ଏହା ଏକାଧାରରେ ଶିକ୍ଷାପ୍ରଦ ମଧ୍ୟ ଥିଲା । ରେଣୁ, ବେଲା, ନୟନା, ସାଗର, ରସିକ, ଜମିଦାର ଓ କଟକୀ ଗୁଣ୍ଡା ଭୂମିକାରେ ବାହାରିବା ଅଭିନେତା ଓ ଅଭିନେତ୍ରୀମାନେ ବିଶେଷ କୃତିତ୍ୱ ଦେଖାଇଥିଲେ । ସମସ୍ତେ ସଦ୍‌ବଂଶର କନ୍ୟା ଓ ବନ୍ଧୁ ବୋଲି ଓଡ଼ିଶା ଥିଏଟର୍ସ ପକ୍ଷରୁ ଶ୍ରୀ ବାଳମୁକୁନ୍ଦ ଦାସ ବି, ଏଲ, ଘୋଷଣା କରିଥିଲେ । ରାତ୍ରି ସାଢ଼େ ଗୋଟାଏ ବେଳେ ଅଭିନୟ ଶେଷ ହୋଇଥିଲା ।

"ଦୈନିକ ଆଶା"

## କଳା ଅନୁଷ୍ଠାନ ଓ ମହାରାଜା

ଗତ ୨୭ ତାରିଖ ସନ୍ଧ୍ୟାରେ କାଳୀବାବୁଙ୍କ ପ୍ରତିଷ୍ଠିତ ଓଡ଼ିଶା ଥିଏଟର୍ସ 'ଗାର୍ଲସ୍କୁଲ' ନାଟକ ଅଭିନୟ କରିଥିଲେ । ଓଡ଼ିଶାର ପ୍ରଧାନମନ୍ତ୍ରୀ ପାରଳାର ମାନ୍ୟବର ଗଜପତି ମହାରାଜା, ଜିଲ୍ଲା କଲେକ୍ଟର, ଶିକ୍ଷା ବିଭାଗୀୟ ଡିରେକ୍ଟର ଓ ଅନ୍ୟାନ୍ୟ ବିଶିଷ୍ଟ ଲୋକେ ଅଭିନୟ ଦେଖିବାକୁ ଯାଇଥିଲେ । ମାନ୍ୟବର ମହାରାଜା ନାଟକ ଅଭିନୟରେ ମୁଗ୍ଧ ହୋଇ ଥିଏଟର ଦଳକୁ ହଜାରେ ଟଙ୍କା ଦାନର ପ୍ରତିଶ୍ରୁତି ଦେଇଛନ୍ତି । ଇତିପୂର୍ବେ ମାନ୍ୟବର ମହାରାଜା ବାଣପୁରର ପ୍ରସିଦ୍ଧ ଅନ୍ନପୂର୍ଣ୍ଣା ଥିଏଟର ଦଳକୁ ପାଞ୍ଚଶହ ଟଙ୍କା ଦାନ କରି ନାଟ୍ୟ ଦଳକୁ ଉତ୍ସାହିତ କରିଥିଲେ ।

"ନବୀନ"

## ଗାର୍ଲସ୍କୁଲ ନାଟକ ଅଭିନୟ

କଟକ, ତା ୨୨ । ୨ । ୪୨

କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ସ ଦଳ 'ଗାର୍ଲସ୍କୁଲ' ନାମକ ସାମାଜିକ ନାଟକ ପାଞ୍ଚ ରାତ୍ରି ହେଲା ଅଭିନୟ କରୁଛନ୍ତି । ଓଡ଼ିଆରେ ଏ ସାମାଜିକ ନାଟକର ଅଭିନୟ ବେଶ୍ ଭଲ ହୋଇଛି ଏବଂ ଏ ଅଭିନୟ ଦେଖିବାକୁ ବହୁତ ଲୋକ ଏବଂ ଧନୀ ଜମିଦାର ଯାଉଛନ୍ତି ।

"ସମାଜ"

## PARLA MAHARAJA'S GIFT
TO "ORISSA THEATRES"

Cuttack, April 28.

The Hon'ble Maharajah Saheb of parlakimedi, Premier, witnessed the drama "Girls' School" by Kavichandra Kali Charan Patnaik which was put on boards in the pandal of the Orissa Theatres on the 15th night of the performance. The Hon'ble premier was pleased to donate Rs. 1000 to the Orissa Theatres.

NEW ORISSA

## OPENED BY HON'BLE PT. G. MISRA

The Hon'ble Pandit G. Misra accompanied by Messrs J. Mangaraj and Parliamentary Secretary Mr. Peary Shankar Ray opened on Saturday (14-2-1442) night at the Sâhitya Saptaha pandal in the compound of the Sriramachandra Bhaban. "The Orissa Theatres" of Kavichandra Kalicharan patanaik, who staged his new social play "Girls' school" on the occasion for the first time.

Rai Bahadur B. C. patanaik, messrs Bichhanda Charan patnaik, Choudhuri Radhanath Misra, Birakisore Das and other distinguished invitees were also present.

The Hon'ble panditji who was garlanded amidst applause raised the curtain of the very first scene with his own hands.

The play was a grand success from the beginning to the end and presented a lively picture of the life of our new fangled youths and school going girls. There was a large number of spectators for all of whom accommodation could not be provided. The actors and actresses, all of whom belong to respectable families, acted their parts ably.

NEW ORISSA Cuttack, Feb 16

## ଓଡ଼ିଶା ଥିଏଟର୍ସକୁ ଦାନ

କଟକ, ତା ୨୬ । ୪ । ୪୨

କାଲି ସନ୍ଧ୍ୟାରେ କାଳୀବାବୁଙ୍କ ଓଡ଼ିଶା ଥିଏଟର୍ସ ଗାର୍ଲସ୍କୁଲ ନାଟକ ଅଭିନୟ କରିଥିଲେ । ପ୍ରଧାନ ମନ୍ତ୍ରୀ ପାରଳାର ମହାରାଜା, ଜିଲ୍ଲା କଲେକ୍ଟର, ଶିକ୍ଷାବିଭାଗ ଡିରେକ୍ଟର ପ୍ରମୁଖ ଦେଖିବାକୁ ଯାଇଥିଲେ । ମହାରାଜା ଓଡ଼ିଶା ଥିଏଟର୍ସକୁ ହଜାରେ ଟଙ୍କା ଦାନର ପ୍ରତିଶ୍ରୁତି ଦେଇଛନ୍ତି । ଶିକ୍ଷାବିଭାଗ ଡିରେକ୍ଟର ଶ୍ରୀଯୁକ୍ତ ତ୍ରିପାଠୀ ପଚିଶ ଟଙ୍କା ଦାନ କରିଛନ୍ତି ।

"ସମାଜ"

## ଓଡ଼ିଶା ଥିଏଟର୍ସକୁ ଦାନ

କଟକ, ତା ୨୬ । ୪ । ୪୨

କାଲି ସନ୍ଧ୍ୟାରେ କାଳୀବାବୁଙ୍କ ଓଡ଼ିଶା ଥିଏଟର୍ସ ଗାର୍ଲସ୍କୁଲ ନାଟକ ଅଭିନୟ କରିଥିଲେ । ପ୍ରଧାନମନ୍ତ୍ରୀ ପାରଳାର ମହାରାଜା, ଜିଲ୍ଲାକଲେକ୍ଟର, ଶିକ୍ଷାବିଭାଗ ଡିରେକ୍ଟର ଦେଖିବାକୁ ଯାଇଥିଲେ । ମହାରାଜା ଓଡ଼ିଶା ଥିଏଟର୍ସକୁ ହଜାରେ ଟଙ୍କା ଦାନର ପ୍ରତିଶ୍ରୁତି ଦେଇଛନ୍ତି । ଶିକ୍ଷାବିଭାଗ ଡିରେକ୍ଟର ଶ୍ରୀଯୁକ୍ତ ତ୍ରିପାଠୀ ଟ ୨୫ ଦାନ କରିଛନ୍ତି ।

"ଦୈନିକ ଆଶା"

## ଦ୍ୱିତୀୟ ସଂସ୍କରଣ ସମ୍ବନ୍ଧେ—

ଗାଲସ୍କୁଲ ନାଟକ ଅଭିନୟର ଅପାଶୋରି ଦେଖଣାହାରିଏ ଏବେ ବି ଥୋକେ ଅଛନ୍ତି । ଯେ ହେଲି ଓଡ଼ିଶା ଥିଏଟର୍ସର ପହିଲିପରଶା ନାଟକ । ଗୋଟିଏ କିଛି 'ନୂଆ କରିଯାଉ' ଏ କଳ୍ପନା କାହିଁକି ପ୍ରାୟ ସବୁବେଳେ ମଥାକୁ ଆସିବାଟା ମୋର ଏକ ବଦଭ୍ୟାସ । ଗାର୍ଲସ୍କୁଲ ନାଟକର ଅଭିନୟ ପ୍ରଦର୍ଶନ ପୂର୍ବରୁ କଟକ ସହରରେ ଗୋଟିଏ ନାଟକ ଖୁବ୍ ବେଶୀ ୨।୩ ରାତି ଚାଲୁଥାଏ । ଗାର୍ଲସ୍କୁଲ ଅଭିନୀତ ହେଲି ୧୨୦ ରାତି । ଶ୍ରୀରାମଚନ୍ଦ୍ର ଭବନର ଉତ୍ତର ପାଖେ ଶ୍ରୀମତୀ ସରଳା ଦେବୀ ଲଗିପଡ଼ି ସାହିତ୍ୟ ସପ୍ତାହ ପାଳିବାକୁ ଚାଳଘରଟିଏ ତୋଳାଇଥିଲେ । ଏଇ ସାହିତ୍ୟ ସପ୍ତାହ ପାଳନ ପରେ ପହିଲେ ଗାର୍ଲସ୍କୁଲ ମଞ୍ଚସ୍ଥ କରିଯାଇଥିଲି ସେଇଠି । ଛପା ହୋଇଥିଲି ମଧ୍ୟ ନାଟକଟି । ସେ ଖଣ୍ଡି ସେଇ କାଳୁ ପଡ଼ି ରହିଥିଲି ଅଲୋଡ଼ା ଅଖୋଜା ହୋଇ । ଏବେ ଦିନେ, ( ଏଇ ଅକ୍ଷୟ ତୃତୀୟାର ଦିନେ କି ଦି'ଦିନ ଆଗରୁ ) ମୋର ପରମ କଲ୍ୟାଣୀୟ ସନ୍ତାନକଳ୍ପ ଶ୍ରୀମାନ୍ ବୀର ( ବୀର କିଶୋର ଦାସ—ପ୍ରୌଢ଼ ଶିକ୍ଷା ପୁସ୍ତକ ଓ ବହୁ ସମାଲୋଚନା ପୁସ୍ତକର ଲେଖକ ) ସାଥୀ ମହଲର ମାଲିକ ଶ୍ରୀ ରାଧାଶ୍ୟାମଙ୍କୁ ସଙ୍ଗରେ ଘେନି ମୋ ପାଖେ ପହଞ୍ଚିଲେ । ସେ ଦୁହେଁ ଗାର୍ଲସ୍କୁଲର ନୂଆ କଳେବର ପାଇଁ ମନସ୍ଥ କରି ବହିଟି ପ୍ରକାଶ କରାଇଛନ୍ତି । ଯେତେବେଳେ ଯାହାର, ଯେମିତି, ଯାହା ହେବାର ଥାଏ, ହୁଏ ସିନା !

ପ୍ରୁଫ୍ ଦେଖା କାମ ଯୋଗୁ ବାଧ ହୋଇ ବହିଟିକୁ ଏଥର ପଢ଼ିବାକୁ ପଡ଼ିଲି । ବହିଟି ଏବେ ମଧ୍ୟ,—ଅନ୍ତତଃ ସହୃଦୟ ଗ୍ରାହକଙ୍କ ଦୃଷ୍ଟିରେ—'ଜରଦ୍‌ଗବ' ବୋଲି ପରିତ୍ୟଜ୍ୟ ହେବାଭଳି ବିଗୁରି ପାରୁନାହିଁ ।

ଶ୍ରୀମାନ୍ ବୀର କିଶୋର ମୋଠୁଁ ବଳି ଧୈର୍ଯ୍ୟରୁ ଜରଦ୍‌ଗବ ହୁଅନ୍ତୁ—ଜଗନ୍ନାଥଙ୍କ ଚରଣରେ ଏ ମୋ ମନଭିତର ପ୍ରାର୍ଥନା । ଆଉ ଶ୍ରୀ ରାଧାଶ୍ୟାମଙ୍କୁ ସାଧୁବାଦ ଜଣାଉଛି ।

ଶିବବିବାହ ।
ଜ୍ୟେଷ୍ଠ ୧୩ଦିନ ୧୩୫୭ ସାଲ

ବିନୀତ
**ଲେଖକ**

# ଗାର୍ଲ୍‌ସ୍କୁଲ

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

[ଗାର୍ଲ୍‌ସ୍କୁଲ ସାମନା ରାସ୍ତା—ସ୍କୁଲ ଛୁଟିଘଣ୍ଟା ବାଜିଲା । ଅନ୍ଧୁଣୀ ଭିକାରୁଣୀ ଗାଇ ଗାଇ ରାସ୍ତାର ଏକ ଧାରରେ ଚାଲିଛି । କେତେ ଗଲାଆସିଲା ଲୋକ ଯା'ଆସ କରୁଛନ୍ତି । ଗେଟ୍‌ରେ ଚପରାସୀ ବସିଥିଲା । ]

ଅନ୍ଧୁଣୀ—

(ଗୀତ)

ଦୁନିଆଁ-ଦ୍ୱାରେ ଅନ୍ଧ ସିନା ମୁଁ
ନାହିଁ ନୟନ ତାର
ଦିବସ ରାତି ଦୁଃଖ ତାତି
ନାହିଁ ନୟନ ତାର—
ହେ ଦାତା, ହେ ଦୁଃଖହାରୀ,
ହେ ନିଧନ ସାଥି !
ଧରମଶାଳା—ଏ ଦୁନିଆଁ
ଧରମ ଧରେ ଧାରା ॥
(ଗାଇ ଗାଇ ଚାଲିଗଲା)

---

## ଦ୍ୱିତୀୟ ଦୃଶ୍ୟ

[ଗାର୍ଲ୍‌ସ୍କୁଲର Common room, ସ୍କୁଲ ବନ୍ଦ ହୋଇଗଲାଣି—ପାଖ ଘରୁ ନାନା ପ୍ରକାର ସଙ୍ଗୀତ ଶୁଭୁଛି । ଏଇ ସମୟରେ କୋଠରୀ ଭିତରକୁ ଆସିଛି ବେଲା,—ଅଯତ୍ନ ପ୍ରକ୍ଷିପ୍ତ କେଶବାସ, ହାତରେ 'ସହକାର' ମାସିକ ପତ୍ରିକା । ସେ ମନ ଲଗାଇ ପଢ଼ି ପଢ଼ି ଆସୁଛି । ]

ବେଲା—

ବାସନ୍ତ ପୂର୍ଣ୍ଣିମା— ନିଶିଥେ ସେଦିନ
ଫାଟିପଡୁଥାଏ ଶୋଭା ଜୁଆର,
ନିସର୍ଗ ସୁନ୍ଦରୀ ସତେ କି ଖୋଲୁଛି
ସାଇତା ଯେତେକ ଶିରୀ ସମ୍ଭାର ।
ତାରା ବୁଟା ଖଞ୍ଜା— ନେଳୀ ବନାରସୀ-
ପାଟଶାଢ଼ୀ ପିନ୍ଧି କିଏ ସେ ସତେ,
ବିଜନ ବିପିନ— ମୋହନ ମୁରଲୀ
ଶୁଣୁଥାଏ କାନ ଡେରି ଉଷତେ ?
ଅଦେଖା, ଅଚିହ୍ନା କିଏ ସେ ପ୍ରିୟ ଗୋ,
ଢାଳିଦେଲା କାନେ ପ୍ରୀତି-ମନ୍ତର,
କୋଟିଏ ପୁଲକ- ଚୁମ୍ବନ ପରଶି
ଅଜଣାରେ ଘାରି ଦେଲା ଅନ୍ତର ?
ଅଦେଖା କୁସୁମ ସୁବାସ ଲଭି ଗୋ,
ବଣ ଅଳି ସରି ପରାଗ ପାଶେ,
କାନ ମନ ଧାଏଁ ସତେ ଗୁଏଁ ଗୁଏଁ
ଅଦେଖା ପ୍ରିୟର ମିଳନ ଆଶେ ।

(ପଡ଼୍ ପଡ଼୍ ଖଣ୍ଡେ ଚୌକି ଟାଣି ବସିପଡ଼ି, ଗୋଟିଏ ଦୁଇଟା ଧାଡ଼ି ଦୁଇ ତିନ ଥର ପଢ଼ି ପଢ଼ି କହିଲା)
ଫାଇନ୍—ସୁନ୍ଦର !

[ରେଣୁ ଏତିକ ବେଳେ ପଛରୁ ଆସିଛି । ବେଳାର ତାକୁ ନଜର ନାହିଁ । ବେଳା ଫାଇନ ବୋଲି କହି ଲେଖାଟାକୁ ଖୁବ୍ ପସନ୍ଦ କଲାବେଳେ, ରେଣୁ ତା'ର ଗୋଟିଏ କାନ ଧରି ଟିକିଏ ଝିଙ୍କାଇ ଦେଲା । ]

ବେଳା—(ଚମକି, କାନ ଛଡ଼ାଇ) ଓଃ !

ରେଣୁ—(ହସି, ଆଉ କାନ ଧରି) 'ଫାଇନ୍' ।

ବେଳା—ଆରେ, ତୁ ?...

ରେଣୁ—ଦେଖି କଅଣ ଇମିତି ଫାଇନ୍ ? ଭାରି ତ ବିଭୋର ହୋଇ ପଢ଼ୁଥିଲୁ, ଏକଦମ୍ ଜ୍ଞାନ ନାହିଁ ! ଚାଞ୍ଚଟାବେଳେ ଗୋଟେ ବସି ପଢ଼ୁଛୁ ! ଓଃ, କି ମନଯୋଗୀ ଛାତ୍ରୀ ! ଆ...ନାଁ, ବୁଲିଯିବା ।

( ବହିଟାଣି, ଉଠାଇଲେ )

ବେଳା—(ହାତ ଛଡ଼ାଇ) ତୁ ଚାଲ୍ ଆଗରେ, ମୁଁ ଏଇଟା ଶେଷ କରିଦେଇ ଯାଉଚି ।

ରେଣୁ—ଆ ନାଁ, ଭାରି ତ ଲେଖା ! କଣ ଶୁଣେ ? କାହାର ?

(ବହି ଛଡ଼ାଇବାକୁ ଚେଷ୍ଟା କରି ବିଫଳ ମନୋରଥ ହେଲେ)

ବେଳା—"ଅଦେଖା ପ୍ରିୟ"—ଲେଖକ ସାଗର ମୋହନ ଦାସ । ବସ୍ ନାଁ—ବାସ୍ତବିକ ଭାରି ସୁନ୍ଦର ।

ରେଣୁ—କିଏ ରେ ? ଲେଖକ ନା ଲେଖା ?

ବେଳା—ଦୁହେଁ ।

ରେଣୁ—ଓଃ, ଲେଖକ ବି ? ତେବେ ତ ସେ କେବେ ଅଦେଖା ପ୍ରିୟ ହୋଇ ନ ପାରେ ।

ବେଳା—ଅର୍ଥାତ୍ ?

ରେଣୁ—ଅର୍ଥାତ୍ ତୋର ଦେଖା ପ୍ରିୟ—ଚହ୍ଲା ଗ୍ବେର ।

ବେଳା—ଧେତ୍, ଭଦ୍ରଲୋକ ବିଷୟରେ...

ରେଣୁ—ମୁଁ ଜାଣେ । ତେବେ ଏଇତକ ଜାଣି ନ ଥିଲି ଯେ, ଇତି ମଧ୍ୟରେ ସେ ଭଦ୍ରଲୋକ ଅଦେଖା ପ୍ରିୟ କେବେ ହେଲେ ।

ବେଳା—ମାନେ ?

ରେଣୁ—ମାନେ, ଅନେକ କିଛି । ରୂପସୀ ଯୁବତୀର ପ୍ରିୟ ହେବା ମାନେ...ସେ ବହୁତ କଥା ।

ବେଳା—ଭାରି ଦୁଷ୍ଟ ତୁ । ଲେଖାରୁ ଯେ ଲେଖକର ଅନେକ କିଛି ଧରାପଡ଼େ, ଏଇଟା କ'ଣ ତୁ ସ୍ୱୀକାର କରୁନା ତା' ହେଲେ ?

ରେଣୁ—ନିଶ୍ଚୟ କରେଁ । ଆଉ ମୁଁ ଜାଣେ, ସାଗରବାବୁ ଭଲ ଲେଖକ । ଅବଶ୍ୟ ଏଇ ଲେଖାଟିର କଥା ସ୍ୱତନ୍ତ୍ର ।

ବେଳା—ଏଇଟି କିନ୍ତୁ ଖୁବ୍ ସୁନ୍ଦର ।

ରେଣୁ—ନିଶ୍ଚୟ ସୁନ୍ଦର ।

ବେଳା—ତୋର ଖାଲି ଥଟ୍ଟା, ଓଃ ! ଦେଖିନା ଏଇ ଲାଇନଟି—"ଅଦେଖା କୁସୁମ ସୁବାସ ଲଭି ଗୋ, ବଣ ଅଳି ସରି ପରାଗ ପାଶେ..."

ରେଣୁ—(ବହି ବନ୍ଦକରି) ବେଶ୍, ବେଶ୍, ମୁଁ ଜାଣେଁ । ମୋର ଜଣେ ବନ୍ଧୁଙ୍କ ସଙ୍ଗେ ତାଙ୍କର ଖୁବ୍ ଆତ୍ମୀୟତା ଅଛି । ସାଗର ବାବୁଙ୍କର ବହୁତ ଲେଖା ମୁଁ ଦେଖିଛି—ସୁନ୍ଦର ଲେଖନ୍ତି । ବେଶ୍ ଭିତରି ଭାବ ଥାଇ—ପ୍ରାଣ ଥାଇ । ତୁ ଉଠିଲୁ, ଯିବା ।

ବେଳା—(ବହିଟା ଦେଖୁ ଦେଖୁ) ଆଚ୍ଛା, ତୁ ଚାଲ—ମୁଁ ଠିକ୍ ତୋ ପଛେ ପଛେ ଯାଉଛି ।

ରେଣୁ—ଅର୍ଥାତ୍ ତୁ ଚାହୁଁ, ମୁଁ ଆଗରେ ଗଲେ ତୁ ଆଉ ଟିକିଏ ତୋର ଅଦେଖା-ପ୍ରିୟ ସଙ୍ଗରେ ଗୋପନ ଆଳାପଟା ଜମେଇଁନବୁ । କିନ୍ତୁ ସେକଥା ହେବ ନାହିଁ । ତୋ ଅଦେଖା ପ୍ରିୟ (ବହି ଛଡ଼ାଇ) ମୋ ହାତରେ...ବୁଝିଲୁ ?

ବେଳା—ଆରେ, ଦେ' ନାଁ ।

ରେଣୁ—ଉଠିଆ, ଫିଲ୍ଡ୍ (field)କୁ ଚାଲ । ସେଇଠି ତୋର ପ୍ରିୟଦର୍ଶନ ହେବ ଯେ, ଉଠ, ଆ ।

( ହସି ହସି ଆଗେଇଗଲା )

ବେଳା—ଆରେ, ଏଡ଼େ ଦୁଷ୍ଟ ନା ତୁ ! ଦେ—ବହିଟା ଦେ ନାଁ... । (ଚାଲିଗଲା ପଛେ ପଛେ)

## ତୃତୀୟ ଦୃଶ୍ୟ

[ ଛକୁ ଖାଁ ଲେନ, ପ୍ରଗତି ମେସ ସମ୍ମୁଖସ୍ଥ ଗଳିରାସ୍ତା । ରାସ୍ତା କଡ଼ରୁ ପ୍ରଗତି ମେସକୁ ପଥ ବୋଲି ଜଣାଇ ଦେବାକୁ ହାତର ନିର୍ଦ୍ଦେଶ ଚିହ୍ନ ଥାଇ ଖଣ୍ଡେ ସାଇନ୍‌ବୋର୍ଡ ମରାହୋଇଛି । ମେସ ଭିତରୁ ଗୋଳମାଳ ଶୁଭୁଛି ନାନା ପ୍ରକାରର । ଗଳି ଭିତରେ କେତେ ପ୍ରକାରର ଫେରିବାଲା ଚାଲୁଛନ୍ତି, ମେସ୍‌ର ଦୁଆର ମୁହଁବାଟ ଭିତରେ ଗାଉଥିଲା ରସିକ । ]

(ଗୀତ)

ରୂପ ନଗରୀ ଏ ମନ ବେପାରୀ,
ପ୍ରେମସଉଦା କରି ଭୁ
ଏ ବଜାରେ ସେର ତରାଜୁ ନାହିଁ,
ମନେ ମନ ଭରି ଭୁ ॥ ୦ ॥
ଦୁ'ଦିନିଆଁ ଏ ଦୁନିଆଁ—
ପ୍ରେମ-ବନ୍ଧନ ପ୍ରେମ-ଛାୟା
ପ୍ରେମ କାୟା—ପ୍ରେମ ମାୟା,
ପ୍ରେମ ବନ୍ଧନେ ପରି ଭୁ ॥ ୧ ॥
ଆଖି ଆଖି ପ୍ରେମ ସାକ୍ଷୀ
ଅନ୍ତରେ ଭୁ ପ୍ରେମ ମାଖି
ଅନ୍ଧକାରେ, ଆଲୋକ ରେ—
ପ୍ରେମ ପନ୍ଥା ଧରି ଭୁ । ଆରେ···

[ଗୀତ ମଝିରେ ଗାର୍ଲସ୍କୁଲ ଚପରାସୀ ଆନନ୍ଦ ଆସିଛି । କେତେବେଳପରେ ଦ୍ୱାରରେ ଛିଡ଼ାହୋଇ ଡାକୁଛି]

ରସିକ—ପ୍ରେମ ପନ୍ଥା ଧରି ଭୁ—

ଆନନ୍ଦ—ବେହେରା, ବେହେରା !

ଭିତରୁ—କିଏ ?

ଆନନ୍ଦ—ମୁଁ ତ ଆନନ୍ଦ—ଗିରଲଇସ୍କୁଲ ଚପରାସୀ ।

ଭିତରୁ—ହଁ, କାହାକୁ ଖୋଜୁଛ ?

ଆନନ୍ଦ—ରସିକବାବୁ ଏଠି ଥାଆନ୍ତି ପରା ?

ଭିତରୁ—କଅଣ ଦର୍କାର ?

ଆନନ୍ଦ—ଚିଠି ଅଛି ।

ଭିତରୁ—ରସିକ ! ରସିକ ! ତୋର ଚିଠି କଅଣ ଆସିଛି, ନେଇଆ ବାହାରୁ ।

ରସିକ—(ଆସି) ଆରେ, ଆନନ୍ଦ, ତୁମେ ?

ଆନନ୍ଦ—( ନମସ୍କାର କରି ହସି ) ହେଡ଼ମଣି ଚିଠି ଦେଇଚେନ ।

ରସିକ—( ଚିଠି ନେଇ ) ହଉ, ଆସ ତୁମେ [ ଚିଠି ପଢ଼ିଲା । ଆନନ୍ଦ ନମସ୍କାର କରି ଚାଲି ଯାଉଥିଲା, ପଛରୁ ଡାକ ଶୁଣି ପୁଣି ଫେରି ଆସିଲା ]

ରସିକ—ଆଉ ଶୁଣ ଆନନ୍ଦ,
(ମନିବ୍ୟାଗ ଫିଟାଇଖାଉ, ଗୋଟିଏ ସିଉକି ଥିବାର ଦେଖି ଟିକିଏ ଭାବି, ଆନନ୍ଦକୁ ବଢ଼ାଇଦେଇ କହିଲା) ନିଅ, ବାଟରେ ଚା-ପାନ ଖାଇକରି ଯିବ । ଆଉ କହିବ, ସେ ଯାହା କଥା ଲେଖିଛନ୍ତି, ମୁଁ ଏଇ ତାଙ୍କ ପାଖକୁ ବାହାରିଲି ।

ଆନନ୍ଦ—ଆଜ୍ଞା । (ଚାଲିଗଲା)

[ ରସିକ ପୁଣି ଚିଠି ପଢ଼ି ତା ଭିତରୁ ଖଣ୍ଡେ ରୁମାଲ କାଢ଼ି, ବାର ବାର ଦେଖି ଗୁଡ଼ି ପକେଟରେ ସଜାଇ ରଖିଲା । ଚିଠିଟି ପୁଣି ଲଫାପାରେ ରଖି ଚାଲି ଚାଲି ହୋଇ ମେସକୁ ଚାହିଁ ଚାହିଁ ବାହାରିଲା ଯିବାକୁ ]

ମେସ ଚାକର—ବାବୁ, ଆପଣ ବାହାରକୁ ଯାଉଛନ୍ତି ? ( ଭିତରୁ କହିଲା )

ରସିକ—କାହିଁକି ?

ଚାକର—ମେନେଜର ବାବୁ କହିଲେ, ମେସ୍ ଖର୍ଚ୍ଚଟା···

ରସିକ—ଆଚ୍ଛା, ମୁଁ ଫେରେଁ । ଗୋଟେ ଜରୁରି କାମରେ ବାହାରକୁ ଏଇନେ ଯିବାକୁ ହେବ ମୋତେ ।

ଚାକର—ଆପଣଙ୍କର ଫେରୁ ଫେରୁ କେତେ ଡେରି ହେବ । ବଜାର କରିବାକୁ ଉଚ୍ଚୁର ହେଲେ ତେଣେ ବାବୁମାନେ ରଗିଡ଼ ଉଠିବେ ।

ରସିକ—ମେନେଜର ବାବୁଙ୍କୁ କହିଦେ, ସେ ଚଳାଇ ଦେଇଥାନ୍ତୁ ଆଜକ ।

ମେନେଜର—( ଆସି ) ସେ ଚଳାଚଳର କାମ ନାହିଁ ଆଜ ରସିକ ବାବୁ ! ଆଜକ ମିଶାଇ ୭ଟା ପାଳ ହେଲା ଆପଣଙ୍କ ଉପରେ । ଧାର ଅନେକ ହେଲାଣି । ୧୭।୧୮ ଟଙ୍କା ଆପଣଙ୍କ ଉପରେ ବାକି । ଟଙ୍କାଟା ଦେଇ, ସୁଅାଡ଼େ ଯା'ନ୍ତୁ । ନୋଇଲେ···

ରସିକ—( ରାଗି ) ନୋଇଲେ ?···

ମେନେଜର—ମାନେ···

ରସିକ—ମାନେ ? ମାନେ କଅଣ ? କଅଣ ଆପଣ କହିବାକୁ ଚାହାନ୍ତି ?

ମେନେଜର—ଆଉ ସୁବିଧା ହେବ ନାହିଁ ।

ରସିକ—ମାନେ ?

ମେନେଜର—ବେଶି ବୁଝିବାକୁ ଚାହାନ୍ତି ?

ରସିକ—ହଁ, ଶୁଣେ ।

ମେନେଜର—ମାନେ, ମୋତେ ବାଧ୍ୟହୋଇ ଆପଣଙ୍କର ମିଲ୍ ବନ୍ଦ କରିବାକୁ ପଡ଼ିବ ।

ରସିକ—ଅଃ, ଯୋଉ ତ ମେସ ! ଯାହାତ ଖାଇବା ପିଇବା ! ଏଇମିତି ତ ମିଲ ପଡ଼ ମାସକେ ୨୮ ଦିନ ଏକାଦଶୀ । ବାକି···

ମେନେଜର—ତେବେ ବାକି ଟଙ୍କାଟା ଦେଇ ଆପଣ ଅନ୍ୟତ୍ର ଦ୍ୱାଦଶୀ ପାଳନା କରିପାରନ୍ତି ।

ରସିକ—ବେଶ୍ ତାଇ ହେବ । ତା ବୋଲି, ମୁଁ ଗୋଟେ ଜରୁରି କାମରେ ଅନୁକୂଳ କରି ବାହାରି ପଡ଼ୁଛି, ଫେରିଯାଇ ଟଙ୍କାଟା ଏଇନେ ନ ଦେଲେ ଆଉ ଚଳିବ ନାହିଁ ! ଏ ଗ୍ରେଟ୍‌ମେନ୍‌କ କାରବାର ମୁଁ ପସନ୍ଦ କରେ ନାହିଁ । ବୁଝିଲେ ?

ମେନେଜର—ଅଚ୍ଛା, ଆପଣଙ୍କ ବଡ଼ଲୋକଟା ମୁଁ ଦେଖିନେବି । (ରାଗି, ଚାଲିଗଲେ)

ରସିକ—ଧନ୍ୟବାଦ୍ ! ବେଶ୍—ତା'ଇ ହବ । ( ପ୍ରସ୍ଥାନ କରୁ କରୁ ) କିନ୍ତୁ ତାର ବହୁତ ଡେରି, ବୁଝିଲେ ?

---

## ଚତୁର୍ଥ ଦୃଶ୍ୟ

[ ସାଗରର ବସା—ଟେବୁଲ୍ ଉପରେ ଗୋଟିଏ ନାତିଦୀର୍ଘ ଆରଶୀ । ସାଗର ତା ସାମନାରେ ଠିଆ ହୋଇ, ଲେଖା ଦେଖି ଦେଖି ପଢ଼ିବାକୁ ଲାଗିଲା ଗୋଟିଏ ସଦ୍ୟପଠିତ ଅଭିଭାଷଣ । ପାଠ ମଧ୍ୟରେ ରସିକ ଅସି କେତେବେଳେ ପଛରେ ଠିଆ ହୋଇ, ସାଗରର କାର୍ଯ୍ୟ ଲକ୍ଷ୍ୟ କରୁଛି—ସେ କଥା ସେ ଆଦୌ ଜାଣିନାହିଁ । ]

ସାଗର—My dear sisters ! ଓଃ I am sorry, ପ୍ରିୟ ଭଗିନୀଗଣ ! ପରିବର୍ତ୍ତନଶୀଳ ଜଗତ । ଆମ୍ଭମାନଙ୍କର ପୂର୍ବପୁରୁଷଙ୍କର କାଳ ଆଉ ନାହିଁ । ଆଜ ଖାଦ୍ୟ ସମସ୍ୟା ଅତ୍ୟନ୍ତ ଗୁରୁତର । ତେଣୁ କେବଳ ପୁରୁଷର ସାମର୍ଥ୍ୟ ସମାଜ ପରିଚାଳନା ପକ୍ଷେ ଯଥେଷ୍ଟ ନୁହେଁ । ରମଣୀର ସାହଚର୍ଯ୍ୟ, ନାରୀର ଦାନ, ଆପଣମାନଙ୍କର ସାହାଯ୍ୟ ପ୍ରତି କ୍ଷେତ୍ରରେ ଏକାନ୍ତ ଆବଶ୍ୟକ । ଏ ଜୀବନ-ମରଣର ମହାସମରବେଳେ ଆପଣମାନେ ପଛଘୁଞ୍ଚା ଦେଲେ ଆଦୌ ଚଳିବନାହିଁ । ଦେଶର ସମୃଦ୍ଧି ଉନ୍ନତିକଳ୍ପେ ଆପଣମାନଙ୍କର ସହାନୁଭୂତି ସର୍ବଥା ବାଞ୍ଛନୀୟ ।

(ପଛପଟରୁ ରସିକ ତାଳିମାରି କହିଲା—ହିଅର୍ ହିଅର୍ ! )

ସାଗର—କିଏ ?

ରସିକ—(ପରିହାସରେ ମୁଣ୍ଡ ଝୁଙ୍କାଇ) ରସିକ—ସା'ର !

ସାଗର—(ହସି) ଅଭଦ୍ର !

ରସିକ—କଳ୍ପ ଭଦ୍ର ! ଏ ବକ୍ତୃମାନ୍ତ ନାରୀଶିକ୍ଷା-ବବର୍ଦ୍ଧିନୀ ସମିତି ପାଇଁ ନାଁ କଅଣ ?

ସାଗର—ନିଶ୍ଚୟ । ମୋତେ ଆଜ ପ୍ରିଜାଇଡ କରିବାକୁ ପଡ଼ିବ । (ଘଡ଼ି ଦେଖି) ମାତ୍ର ଘଣ୍ଟାଏ ସମୟ ।

ରସିକ—Good ! (ଟେବୁଲ ଖୋଜି) ଅଭଦ୍ର ! vernacular, ସିଗାରେଟ୍ କ'ଣ ଖଣ୍ଡେ ହେଲେ ରଖିଛ ?

ସାଗର—(Case ଦେଇ) ଅଛି, ଖୋଜିଲେ ତ ପାଇବୁ । ଏଇ !

ରସିକ—ବେଶ୍ ! Thanks !

( ସିଗାରେଟରେ ନିଆଁ ଲଗାଇ, ସେଇ ଜଳନ୍ତା କାଠିଉପରେ ଲେଖା ବକ୍ତୃତାଟି ଧରିଲା )

ସାଗର—(ଛଡ଼ାଇ) ଆରେ ରେ ! ଏଇଟା ବଜାଗୀତ୍‌ଟାଏ ନାଁ କଅଣ ? Meettingର Address ଟା ଯେ ସେଇଟା ।

ରସିକ—ଜାଣେ—(ପୁଣି ଟାଣି ଆଣି, ଆଉ ଗୋଟିଏ ଦିଆସିଲି ଲଗାଇ, ଜାଳି, କାଗଜକୁ ପୋଡ଼ିବା ବେଳେ) Dam your metting—ନାରୀଶିକ୍ଷା-ବବର୍ଦ୍ଧିନୀ ! No time, Look here !

(ରୁମାଲ ଓ ଚିଠି ପକେଟରୁ କାଢ଼ି ଧରିଲା ଓ ସାଗର ପଢ଼ି ଦେଖିଲା)

ସାଗର—ଓଃ, ଏ ସେଇ ନାଆଁ ରେ ?

ରସିକ—ହଁ, ହଁ, ସେଇ ।

ସାଗର—ବେଶ୍ ତ, ତୁ ଯା ।

ରସିକ—ତୁ ଯା' ? ଗଧ ! ଏଇଟା କାହା ନାଆଁ ? ତୋର ଯେ ଯିବାର କଥା । ଏଇ ପଢ଼ "ତମର ବନ୍ଧୁ ସାଗର ବାବୁଙ୍କ ସାକ୍ଷାତ କରିବାକୁ ମୋର ଜଣେ ବନ୍ଧୁ ମଧ୍ୟ ଅପେକ୍ଷାରେ ଅଛନ୍ତି । ଯେପରି ହେଉ, ତାଙ୍କୁ ସାଙ୍ଗରେ ଆଣିବେ । ମୋର ଅନୁରୋଧ ତାଙ୍କୁ ଜଣାଇବେ ।"

ସାଗର—ଏଇଟା କ'ଣ ସୁନ୍ଦର ହେବ ରସିକ ?

ରସିକ—ମାନେ ?

ସାଗର—ମୋର ଯିବାଟା ?

ରସିକ—ଅସୁନ୍ଦର ଯେ କାହିଁକି ହେବ, ମୁଁ ତ ବୁଝି ପାରୁନାହିଁ । ତୁ କଅଣ ମନେ କରୁଛୁ, ମୁଁ ସାଙ୍ଗରେ ଥାଉ ଥାଉ, ତୋର ସେଠି କିଛି ବିପଦର ଆଶଙ୍କା ଅଛି ? ମୋଟେ ନାହିଁ । ଆମେ ଭିନ୍ନ ଭାବରେ କାର୍ଡ ଦେବା । ସେସବୁ arrangement ରେଣୁ କରିନେଇଥିବ । ଭାବିବାର କିଛି ନାହିଁ—ଚାଲ । ଜଣେ ତୋତେ ଅପେକ୍ଷା କରିଛି, ଆଉ ତୁ ଏଡ଼େ ମୂର୍ଖ ଯେ ଏ ସୁଯୋଗ ହରାଇ ବସିବୁ ? କହ ନା, ଏମିତି ମୌକା କାହାକୁ ଜୁଟେ ? ତୋର ନ ଯିବାଟା ହିଁ ବଡ଼ ଅନ୍ୟାୟ ।

ସାଗର—ଅପରିଚିତ ଅବସ୍ଥାରେ ସେଠିକି···

ରସିକ—ରେଣୁର ତ ତୁ ଅପରିଚିତ ନୁହଁ । ସେଦିନ ତୋତେ ସିନେମା ହଲ୍‌ରେ ପରିଚୟ କରାଇ ଦେଇଛି । ବାକି ଆଉ ଜଣେ ମାତ୍ର ।

ସାଗର—ବେଶ୍, ସେ ତ ଅପରିଚିତା ?

ରସିକ—ଜନ୍ମ ସଙ୍ଗେ ସଙ୍ଗେ କାହାର ପରିଚୟ ନ ଥାଏ ରେ ଉଲୁ ! ପରିଚୟ କରିନେବାକୁ ହୁଏ । ବିଶେଷତଃ ସେ ତୋତେ ଦେଖା କରିବାକୁ ଚାହେଁ, ତୁ ତ ନୁହଁ । ଉଠ୍, ସେସବୁ ଆପତ୍ତି ତୋର ଶୁଣାଯିବ ନାହିଁ । ତୋତେ ଯିବାକୁ ହିଁ ହେବ ।

ସାଗର—କିନ୍ତୁ ଏଣେ ଯେ meeting ଟା ?

ରସିକ—କିନ୍ତୁ ସା'ର ! ତେଣେ ଯେ meeting ଟା ?

ସାଗର—ତା' ତ ବୁଝୁଛି, କିନ୍ତୁ···

ରସିକ—ଧୁତ୍ ତୋର କିନ୍ତୁ, ଏଟା କୁଆଡ଼େ B.A. ପଢ଼ୁଛି—ଆଗେ କୋଉଟା ଦର୍କାର ? ପଢ଼ ତ ଚିଠି ଖଣ୍ଡିକ । (ଚିଠି ଦେଲା)

ସାଗର—(ପଢ଼ି) ସନ୍ଧ୍ୟା ସାତଟାରେ ଦେଖା କରିବାକୁ ଲେଖିଛୁ ।

ରସିକ—ଆରେ, ଲେଖିଛୁ ନୁହେଁ—ଜଣେ ନୁହେଁ ଦୁଇଜଣ—ତେଣୁ କହ—ଲେଖିଛନ୍ତି—ବହୁବଚନ। ଉପରକୁ ଯେତକ ଯେତକ ପଢ଼ି ପଢ଼ି ଯାଉଚ୍, ତଳୁ ତେତକ ତେତକ ପୋଡ଼ ପୋଡ଼ ଖାଉଚ୍ ବୋଧହୁଏ । ବ୍ୟାକରଣ ବି ଭୁଲିଗଲୁ ! ପଣ୍ଡିତେ କହିଛନ୍ତି ଏକରୁ ଅଧିକ ହେଲେ ବହୁବଚନ । ଗଧ !

ସାଗର—ଓଃ, ଗୁରୁଜୀ ! many thanks ।

ରସିକ—(ଚିଠି ରଖି) ଅବ୍ ଚେଲାଜୀ, ଚଲୋ ! ଭାରି ତ ନାଗରିକାବବର୍ଦ୍ଧିନୀ ସମିତି ! Dam it ! ଦେ, ତୋର ସେଇ ଦରପୋଡ଼ା addrese ଟା ପଠାଇଦେ—ଲେଖିଦେ Sorry, ହଠାତ୍ ଅସୁସ୍ଥ ହେବାରୁ ଯୋଗ ଦେଇ ପାରିଲି ନାହିଁ । କ୍ଷମା ଦେବେ । ଏ ପ୍ରଗତି ଯୁଗରେ 'Sorry' ବୋଲି ଯେଉଁ ଶବ୍ଦଟା—ତା'ର ବହୁତ ଇଜ୍ଜତ । ଜଣକୁ ଶଳା, ଚୋର, ଛୋଟା ବୋଲି ଗାଳିଦେଇ 'I am sorry' କହିଦେଲେ—ସବୁ ଦୋଷ କଟିଯାଏ, ଜାଣୁ ?

ସାଗର—କିନ୍ତୁ ଗୋଟେ ମିଛକଥା···

ରସିକ—କିନ୍ତୁ ମିଛ ତ ନୁହେଁ ମୋଟେ । ତୁ ତ ପ୍ରକୃତରେ ଅସୁସ୍ଥ—ଭୟାନକ, ଅତ୍ୟନ୍ତ, ଖୁବ୍ ଅସୁସ୍ଥ । Really. ମୁଁ ମାପ ଯନ୍ତ୍ରଟା ଭୁଲି ଆସିଛି—ନୋହିଲେ ଠିକ୍ ତୋର ହୃଦର palpitationଟାର ଉର୍ଦ୍ଧ୍ୱ କେତେ—ଦେଖି କହି ଦିଅନ୍ତି ଯେ ଅପ୍ରତ୍ୟାଶିତ ଭାବରେ ଜଣେ ଶିକ୍ଷିତା ଯୁବତୀର call ପାଇ ତୋ'ର ମନର ଗତି ଏଇକ୍ଷଣିକା କଅଣ ! ଆରେ ଏ ରୋଗ ଅତି ଭୟାନକ ! ଏକ ପ୍ରକାର ହିଷ୍ଟିରିଆ ।

ସାଗର—( ଟେବୁଲରେ ମାରି ) ବଜାରି !

ରସିକ—ବହୁତ ଅଚ୍ଛା, ପରଦାବାଲୀ ! ( ଘଡ଼ି ଦେଖି ) Now, please hurry up—ଘୁରୁଚଟା କାହିଁ ରେ ତୋର ?

ସାଗର—କଅଣ ଦର୍କାର ଅଛି ?

ରସିକ—ହିଁ, ତୋ'ର ଲୁଗା ଯାମା ଦେବ—ବେଶ ବଢ଼ିବ ଯେ !

ସାଗର—ଦୂର୍ ନେ—ଏଇମିତି ଚଳିଯିବ ।

ରସିକ—ତା କି ହୁଏ ଧନ ! ନୂଆ ଦେଖା ଯେ ! କ୍ଲିନ୍ ଶେଭ, କୁଞ୍ଚିଲୁଗା, ଗିଲକରା ପଞ୍ଜାବୀ, ସ୍ନୋ, ସେଣ୍ଟ—ଆରେ, କିଏ ଖୋଜେ ପାଏଁ ନା, ଅଥଚ ତୋର ଭାଗ୍ୟ ଯେ, ତୁ ଓଲଟା ନିମନ୍ତ୍ରଣ ପାଉଛୁ !

ସାଗର—ଧେତ୍, କହନା ଆଗେ, କଅଣ କରିବା ।

ରସିକ—କଅଣ meetting କଥା ? ଅଚ୍ଛା—ଦେ, ମୁଁ କରିଦଉଛି—ତା'ର ବାଟ ( addressଟାକୁ ଭାଙ୍ଗି ଗୋଟେ ଲଫାଫାରେ ରଖି, ଗୋଟିଏ ଚିଠି ଲେଖିସାରି ) ଦେ, ଗୋଟେ ଦସ୍ତଖତ୍ କଲୁ ।

ସାଗର—( ପଢ଼ି ଦସ୍ତଖତ୍ କରି ) ସେଇଠୁ ?

ରସିକ—ବାସ୍, ମୁଁ ଏଟା ନେଇ ଯାଉଛି, ଦେଇ ଆସିବି । ତୁ ଟିକିଏ ତୋ ଗାଧୁଆ ପାଧୁଆ ସାର୍ । ନେଅଟ୍ ଲୁଗାଟେ ପିନ୍ଧି ପକା, ଆଉ କିଛି ଚାନ୍ଦ କାଢ଼ । କିଛି love present ନେବା ତ ଦର୍କାର । କାଢ଼···

ସାଗର—କେତେ ?

ରସିକ—କାଢ଼ ତିରିଶଟା ଖଣ୍ଡେ ।

ସାଗର—ଆରେ ରାମ ବୋଲ । ମୋ ପାଖରେ ବୋଧେ ଜମା ୩। ୪ ଟା ଟଙ୍କା ଥିବ । ବାପାଙ୍କ ପାଖକୁ ଚିଠି ଦେଲି, wire ବି କଲି । ନାଁ ଟଙ୍କା—ନାଁ ଯବାବ୍ ।

ରସିକ—ଚିଠି ତ ଗଲା ଗଲା । ଅନ୍ତତଃ ଭଦ୍ରତା ଖାତିରରେ ତାରର ବି ଗୋଟେ ଯବାବ୍ ନାହିଁ ?

ସାଗର—କିଛି ନାହିଁ । ଚୁପ୍ ।

ରସିକ—Back date, vernacular ! ନାଲ ବଗଡ଼ା ଚଢ଼ା ! ବୁଝିଲୁ ? ଖୁଁଟଶାଳୀ ଛଡ଼ା ତ ସ୍କୁଲ ଦୁଆରମୁହଁ ଦେଖି ନାହାନ୍ତି । ଜଣେ ଜମିଦାର ପିଲା—College student,—B.A. ପଢ଼େ ଭଲ, ଟଙ୍କାର ଅଭାବ ହେଲେ ସେ ମୁହୂର୍ତ୍ତେ ଚଳିପାରେ, ଏଇ ଟାଉନ୍‌ରେ ? ଫେର୍ କଅଣ କରାଯିବ ଏଇନେ ?

ସାଗର—ସେଇଆ ତ !

ରସିକ—ମୋର ତ ମୁଣ୍ଡରେ ବଜ୍ର ପଡ଼ିଲା ! ଆରେ ମୋ କଥା ଭଲ ଶୁଣ୍ । କିନ୍ତୁ ତୋର ଯେ ଗୋଟାଏ ଅନୁସନ୍ଧାନ ଅଛି । ତୁ ଗୋଟେ···ଖାଲି ହାତଟାରେ, ବିଶେଷତଃ ରେଣୁ ମୋ'ଠାରୁ ଅନେକ ବାର ଶୁଣିଛି, ତୁ ଜଣେ ଜମିଦାର ପିଲା ବୋଲି ।

ସାଗର—ଆଚ୍ଛା, ତୁ ଏବେ ନାଁ ( ମୁଦି କାଢ଼ି ) ଏଇଟା ନେ, ଯା । ଏଟାକୁ ବନ୍ଧକ ରଖି କିଛି ଟଙ୍କା ଯୋଗାଡ଼ କର । ଗୋଟେ ଭଲ ବ୍ରୁଚ୍ ଆଉ ଗୋଟେ ମୁଦି ତେଣୁ ଏକାବେଳେ ଆଣିଥିବୁ—ତା' ପରେ ଦେଖାଯିବ ।

ରସିକ—( ମୁଦି ନେଇ, ଦେଖି ) କିନ୍ତୁ, ଏଟା ପରା ତୋର ବାପାଙ୍କର ପ୍ରେଜେଣ୍ଟ୍ ମୁଦି ? ଦାମୀ ପଥର ବସା···

ସାଗର—ବେଶ୍, ତୁ ଏଥିକୁ ରାଧବଣା ପାଖେ ବନ୍ଧକ ରଖି, ଟଙ୍କା ଷାଠିଏଟା ଆଣ—ପଚିଶଟା ଟଙ୍କାରେ ଗୋଟେ ମୁଦି ଆଉ ଗୋଟେ ବ୍ରୁଚ୍ କଅଣ ହବ ନାହିଁ ?

ରସିକ—ବେଶ୍ ହବ —

ସାଗର—ଯା'ନା, ସେଇଆ କର । ବାକି ଦଶଟା ଟଙ୍କା ଖରଚ ପାଇଁ ଥାଉ । ଫେର ଟଙ୍କା ଆସିଲେ, ମୋର ମୁଦିଟା ଫେରାଇ ଆଣିବୁ । ଆଉ କଅଣ ?

ରସିକ—ହଁ, ସେମିତି ହେଲେ ହେବ ।

ସାଗର—ତେବେ ଆଉ କଅଣ ? ଯା—ମୁଁ ବି ଯାଇଁ କାମ ସାରେ । ଚଇଁଆ ! ଟିକିଏ ଚଇଁଆକୁ ଡାକି କହିଦେଇ ଯା'ଆ ତ ଚଳେ ପାଣି ଠିକ୍ କରୁ । ଆଉ, ଏ ଚିଠିଟା ବି ନେଇ ଯା ।

ରସିକ—ଓଃ, ତୋ Address ଟା ! ବେଶ୍, ବାଟରେ ମୁଁ ସେଟା ଦେଇଯିବି—(Address ଟା ନେଲା )

ସାଗର—କିନ୍ତୁ ଦେଖ୍ ! ମନେକର ଯେମିତି···

ରସିକ—ହଁ ମ ( ଚାଲି ଯାଉ ଯାଉ ) ଚଇଁଆ !

ସାଗର—ଚଇଁଆ !

( ଗାମୁଛା ଇତ୍ୟାଦି ଧରି—ଗୀତ ଗାଇ )

ଚଇଁଆ—( ଆସି ) ଆଜ୍ଞା !

ସାଗର—( ସ୍ଥିର ହେବାକୁ ବସି ) ମୁଁ . ଖିଅର ହୋଇସାରି ଯାଉଛି । ତୁ ପାଣି ଠିକ୍ କର ।

( ଗୁଣୁ ଗୁଣୁ ଗୀତ ଗାଇଲା—ଚଇଁଆ ଚାଲିଗଲା )

---

## ପଞ୍ଚମ ଦୃଶ୍ୟ

### ହଷ୍ଟେଲର ଗୋଟିଏ ବଖରା

[ ବେଳା ଖଣ୍ଡିଏ ଚଉକି ଘର ଭିତରୁ ଆଣି ବାରଣ୍ଡାରେ ପକାଇ ପଙ୍ଖା ଖଣ୍ଡିଏ ଧରି ବସି ହେଉ ହେଉ, ବହିଟି ମେଲାଇ ପଢ଼ିଲା ] :—

କିଂ ଶୀକରୈଃ କ୍ଲମବିମର୍ଦ୍ଦିଭିରାର୍ଦ୍ରବାତଂ
ସଞ୍ଚାଲୟାମି ନଳିନୀ-ଦଳତାଳବୃନ୍ତମ୍ ।
ଅଙ୍କେ ନିଧାୟ ଚରଣାବୁତ ପଦ୍ମତାମ୍ରୌ
ସମ୍ବାହୟାମି କରଭୋରୁ ଯଥା ସୁଖଂ ତେ ॥

—ଅୟି କରଭୋରୁ କ୍ଲମ ବିମର୍ଦ୍ଦିଭିଃ ସନ୍ତାପ ହାରିଭିଃ ଶୀକରୈଃ ଅମ୍ବୁ କଣୈଃ ଆର୍ଦ୍ରଃ ଶିକ୍ତ ବାତଃ ଯସ୍ୟ ତଂଥାକ୍ତଂ ନଳିନୀଦଳ ତାଳ ବୃନ୍ତଂ ପଦ୍ମପତ୍ର ବ୍ୟଜନଂ, କିଂ ସଞ୍ଚାଲୟାମି ? ଉତ

ଅଥବା ପଦ୍ମବନ୍ତ୍ର ତାମ୍ରୌ ଉକ୍ତୌ ତେ ତବ ଚରଣୌ ଅଙ୍କେ ନୋଡ଼େ କଥାୟ ମାଞ୍ଚା ଯଥାସୁଖଂ ସମ୍ବାହୟାମି ॥

( ଝାଳ ପୋଛୁ, ପୁଣି ବନ୍ଧ ହୋଇ )

ଓଃ କି ଗରମ ! ବାବା ! ଛି, କିଛି ଭଲ ଲାଗୁନାହିଁ (ବହିଟା ବନ୍ଦ କରି ଘର ଭିତରକୁ ରଖି ଦେବାକୁ ଗଲା—ଇତି ମଧ୍ୟରେ ଆସିଛି ରେଣୁ)

ରେଣୁ—(ଦୂରରୁ ଡାକୁଛି) ବେଲା ! କଅଣ କରୁଛୁ ରେ ?

ବେଲା—କିଛି ନାହିଁ, ଏ ଗରମରେ କିଛି କରି ହେଉନାହିଁ । ପରୀକ୍ଷା ନିକଟ, ଶକୁନ୍ତଳାଟା ଧରି ବସିଲି ଯେ ଆଦୌ ମନ ଲାଗିଲା ନାହିଁ, (କହି କହି ଆଉ ଖଣ୍ଡେ ଚୌକି ଘରୁ ଆଣି ଆସିଲା । )

ରେଣୁ—ଆରେ, ମୁଁ କଅଣ ଆଣି ପାରି ନଥାନ୍ତି ? ଥାଉ ଥାଉ, ଦେ (ଚୌକି ଛଡାଇ; ନିଜେ ପକାଇ) ବସ୍ ! ସତେ, ଏବର୍ଷ ଯେ ଗରମ ! ଦ୍ୱିପହରର କେଇ ଘଣ୍ଟା ତ ଯେମିତି କାଳ ! କିଛି କାମ କରିବାକୁ ମନ ହେଉନାହିଁ । ମୋର ତ ପଢ଼ାପଢ଼ି ଏକା ବେଳକେ ଗାଧୋଇ ଗଲାଣି । (ବନ୍ଧ ହେଉଥାଏ)

ବେଲା—ଧରି ବସିଲି ଶକୁନ୍ତଳାଟା—ମନ ହେଲା ନାହିଁ, ଏଇ ପରି ରଖିଦେଇ ଆସିଲି ।

ରେଣୁ—ଆଚ୍ଛା, ଦେଖି ତ, ବୋଧହୁଏ ଏ ଖଣ୍ଡି ପଢ଼ିବାକୁ ତୋର ମନ ହେବ । (ଚିଠି ଖଣ୍ଡିଏ ଦେଖାଇଲା)

ବେଲା—(ପଢ଼ି) ଏ ତୋର ଚିଠି ବୋଧହୁଏ ?

ରେଣୁ—କେମିତି ଅନୁମାନ କରୁଛୁ ?

ବେଲା—ତୋ'ରି ହୋଇପାରେ, ତୋ'ରି ନାଁ ?

ରେଣୁ—ହୋଇପାରେ (ଦରଦର ହସି)

ବେଲା—ରସିକ ମୋହନ ! ଏ ଭଦ୍ରଲୋକଟି କିଏ ରେ ?

ରେଣୁ—ଜଣେ ବି.ଏ. ଛାତ୍ର । ଆମ ଗ୍ରାମ ପାଖର, ଆମରି ଜାତି ମଧ୍ୟ ।

ବେଲା—(ହସି) ତା'ପର ?

ରେଣୁ—ତା'ପର ସବୁଦିନେ ପଢ଼ା, ଖାଲି ଉପରର ଚାଲ ଦେଖି ସେପରି କରି ବସିଲୁ ଯେ !

ବେଲା—ତୋର ଚିଠିଟା, ମୁଁ ପଢ଼ିବି ?

ରେଣୁ—ଖାଲି ମୋର ନୁହେଁ, ତୋର ବି ।

ବେଲା—ମାନେ ?

ରେଣୁ—(ଗୋଟିଏ ଧାଡ଼ି ଦେଖାଇଲା )

ବେଲା—ମୋର ତ ପରିଚୟ ନାହିଁ ଭଦ୍ରଲୋକଟି ସଙ୍ଗରେ ।

ରେଣୁ—କିନ୍ତୁ ମୋ ସଙ୍ଗରେ ତ ଅଛି ।

ବେଲା—ତା ମାନେ ?

ରେଣୁ—ମାନେ—ଯେ ଯେ ବସ୍ତୁ ଅର୍ଥାତ Things which are equal to same thing....

ବେଲା—ଦୁଷ୍ଟ ନାଁ କଅଣ ? କଥାଟା ଖୋଲି କହ ।

ରେଣୁ—ମାନେ, ରସିକବାବୁ ମୋର ବାଲ୍ୟବନ୍ଧୁ ଏବଂ ସୁଜାତି, ସଦ୍‌ବଂଶଜ, ସୁପୁରୁଷ ଯୁବକ । ବି. ଏ. ପଢ଼ନ୍ତି...

ବେଲା—ତା'ପର ?

ରେଣୁ—ତା'ପର ମୋ ସହିତ ବେଶ୍ ଆଳାପ ଅଛି ।

ବେଲା—ଏବଂ ? ...(ହସିଲା)

ରେଣୁ—ମୋର ବନ୍ଧୁ ! ଅତି ଅନ୍ତରଙ୍ଗ ବୋଲି କହିଲେ ଚଳେ । ଆଉ ବିଶେଷ କଥା କିଛି ଜାଣିବାର ଇଚ୍ଛା ଅଛି ?

ବେଲା—ନିଶ୍ଚୟ ଅଛି ।

ରେଣୁ—ଆମେମାନେ—ମାନେ—ଆମେମାନେ ଅର୍ଥାତ ଆମେ ଦୁହେଁ ପିଲାଦିନର ସାଥୀ—ଖୁବ୍ ପିଲାଟି ଦିନରୁ । ମୋର ସେତେବେଳେ ବୟସ ୭।୮ ବର୍ଷ – ଏକାଠି ପଢ଼ୁଥିଲୁଁ । ଦିନେ ଦୁହିଁଙ୍କ ଏକାଠି ଖେଳୁ ଥିବାର ଦେଖି ତାଙ୍କ ବାପା ଉଭୟଙ୍କର...

ବେଲା—ବୁଝିଲି । ତା ହେଲେ କହିବାକୁ ହେବ—ଭଦ୍ରଲୋକଟି ଶ୍ରୀମତୀ ରେଣୁ ଦେବୀଙ୍କର—ଡ୍ୟାସ୍ ଡ୍ୟାସ୍ । Good news.

ରେଣୁ—ବାଃରେ, ଏଇଥିପାଇଁ ପରା ମୋତେ କହୁଥିଲୁ ମୁଁ ଦୁଷ୍ଟ ? ତୋତେ ଜମା ଦୁଷ୍ଟାମି ଜଣାନାହିଁ, ଦେଖିଲୁ ।

ବେଲା—କିନ୍ତୁ ଏ ତ ମୋର ଦୁଷ୍ଟାମି ନୁହେଁ । ଅଜଣା ଅଶୁଣା ଘରରେ, ଗୋଟେ ଅନ୍ଧାରିଆ କୁଅ ଭିତରେ ଡେଇଁ ପଡ଼ିବାଟା କଅଣ ଭଲ ? ଏ ତ ଭଲକଥା—ତୁ ତାଙ୍କୁ ଜାଣୁ—ସେ ତୋତେ ଜାଣନ୍ତି, ସୁଖର ଜୀବନ ତୁମେମାନେ ଗଢ଼ିନେବ ।

ରେଣୁ—ଚୁପ୍, ସେସବୁ ଫାଜଲାମି ଛାଡ଼୍ । ଶୁଣ ଆଗେ କଥାଟା—ସେ ଆଜି ଆସୁଛନ୍ତି ।

ବେଲା—ମାନେ ? ହଷ୍ଟେଲକୁ ?

ରେଣୁ—ହଁ, କିନ୍ତୁ ଏକା ନୁହନ୍ତି ।

ବେଲା—ତେବେ ?

ରେଣୁ—ତାଙ୍କର ଆଉ ଜଣେ ଅନ୍ତରଙ୍ଗ ବନ୍ଧୁ ସନ୍ନିତ, ଯାହାକୁ ତୁ ଜାଣୁ ।

ବେଲା—ମୁଁ ଜାଣେ ? ମୋର ଜଣାଲୋକ ତ ଏଠି କେହି ନାହିଁ ।

ରେଣୁ—ଥିଲେ ?

ବେଲା—ନାହିଁ ତ ।

ରେଣୁ—ଯଦି କୁହେଁ—ଅଛି ।

ବେଲା—ଦେଖି କହିଲୁ ।

ରେଣୁ—ତୋର "ଅଦେଖା ପ୍ରିୟ"।

ବେଲା—ମୋର ତ ଭଦ୍ରଲୋକ ସାଙ୍ଗରେ ଆଦୌ ଆଳାପ ନାହିଁ ।

ରେଣୁ—ତା ତ ମୁଁ ଜାଣେ । ସେ ଯେ ତୋର ଅଦେଖା ଏବଂ ପ୍ରିୟ ।

ବେଲା—ଧେତ୍ !

ରେଣୁ—ନାହିଁ ବେଲା ! ସତେ, ସେ ଦୁହେଁ ଆସୁଛନ୍ତି । ମୁଁ ରସିକ ବାବୁଙ୍କୁ ତୋ କଥା ଅର୍ଥାତ ସାଗର ବାବୁଙ୍କ ସେ ଲେଖାଟା ପଢ଼ି ତୁ Appreciate କରିଥିବା କଥା ଲେଖିଥିଲି । ତେଣୁ ସେ ତୋ ସହିତ ଦେଖା କରିବାକୁ ଆସୁଛନ୍ତି ।

ବେଲା—କିନ୍ତୁ···

ରେଣୁ—ତୋ ପକ୍ଷରୁ ମୁଁ ତାଙ୍କୁ ଆସିବାକୁ ଲେଖି ଦେଇଛି ଯେ !

ବେଲା—ଏ ତ ଅନ୍ୟାୟ ! ଜଣେ ଅପରିଚିତ ଲୋକ ସଙ୍ଗେ ଦେଖା କରିବାଟା କଅଣ ସୁନ୍ଦର ହେବ ? ଆଉ ମୁଁ ତ ବୋଧହୁଏ ପାରିବି ନାହିଁ ।

ରେଣୁ—କଲେଜ୍‌ରେ ତିନିବର୍ଷ ଗଲାଣି, ତଥାପି ତୋର ସେହି ଠୋଲ୍ଲସିଆଁ, ସେଇ ମୁରୁଜପକା, ସେଇ କଣଭୁଆସୁଣୀ ହେବାକୁ ମନ ? ଏତେ ଲାଜକୁଳୀ ତୁ ? ଦେଖାକଲେ କଅଣ ମଣିଷ ମଣିଷକୁ ଖାଇଯାଏ ?

ବେଲା—ତା ନୁହେଁ, ତଥାପି ଅପରିଚିତ ଲୋକଙ୍କ ସଙ୍ଗେ, କି ଦର୍କାର ଦେଖା କରିବାଟା ?

ରେଣୁ—ମନୁଷ୍ୟ ମନୁଷ୍ୟ ସଙ୍ଗେ ପରିଚୟ ହେବାଟାରେ ପୁଣି ଦର୍କାର ଅଦର୍କାର ଗୋଟେ ବୁଝିବାକୁ ଅଛି ? ସେତିକ ନ ଥିଲେ ମନୁଷ୍ୟ ଆଉ ପଶୁ ସମାନ । ଛାଡ଼୍, ସେ ଯାହାହେଉ ତୋର ଭାଇ ବୋଲି ପରିଚୟ ଦେଇ ମୁଁ ତାଙ୍କୁ ଆସିବାକୁ କହିଛି । ଚାଲ୍, ଏଇ ତ ପ୍ରାୟ ସନ୍ଧ୍ୟା ହେଇଗଲା । ସେମାନେ ଆସି ଓଏଟିଙ୍ଗ୍ ରୁମ୍‌ରେ ଅପେକ୍ଷା କରି କାର୍ଡ଼ ପଠାଇବେ, ଉଠ୍ ।

ବେଲା—ମୋତେ ମାଫ୍ କର ।

ରେଣୁ—ଏଠି ମାଫଚୁପ୍ କିଛି ନାହିଁ । ଚୁପ୍ କରି ଚାଲ୍ । ଜଣେ ଭଦ୍ରଲୋକ ତୋତେ ଦେଖା କରିବାକୁ

ସ୍ୱତନ୍ତ୍ର, ଆଜି ତୁ ତୋ'ର ଓଡ଼ଣା ସନ୍ଧରେ ଲୁଚି ବସିବୁ ? ବାଃ ରେ ପାଠୋଇ ! ଗ୍ଭଲ୍, ଡ୍ରେସ୍ ହୋଇପଡ଼ । ଇସ୍, ଲାଜକୁଲୀ ଲତା !

ବେଲା—ଏ ତ ତୋର ଭାରି ଅନ୍ୟାୟ !

ରେଣୁ—ବାପାଙ୍କଠୁ ଯେଉଁଧନ ହାକମିଁଷା ଛଡ଼ାଇବୁ, ସେ ଧନ ଅନ୍ୟାୟ ନ୍ୟାୟ ବିଗ୍ଭର କରିବୁ, ଉଠ ।

ବେଲା—ଧେତ୍...

ରେଣୁ—ସେ ଧେତ୍ ଫେତ୍ ତୋର ଶୁଣିବ ନାଇଁ ମୁଁ — ଗୋଟାଏ ଭଦ୍ରଲୋକ ତୋର ସାକ୍ଷାତ୍ କରିବାକୁ ଏତେବାଟ ଆସୁଛି । ମଣିଷ କଅଣ ମଣିଷକୁ କାମୁଡ଼ି ଖାଏ ?

( କହୁ କହୁ ନେଇଗଲା )

---

## ଷଷ୍ଠ ଦୃଶ୍ୟ

[ ଅନ୍ଧୁଣୀ ଭିକାରୁଣୀ ଗୀତ ଗାଇ ଗାଇ ପଥରେ ଭିଖ ମାଗି ମାଗି ଗ୍ଭଲିଛି । ]

(ଗୀତ)

ରୂପ ମୋହେ ନ ଭୁଲେ ଭ୍ରମର
ମଧୁ ମୋହେ ମନ ଭୁଲେ ।
ସେ ଭ୍ରମର ଭୁଲେ ରୂପ ପିଆସୀ
ମଧୁ ଭୁଲେ ବନ ଫୁଲେ ॥ ୦ ॥
ଗ୍ଭନ୍ଦ ଜଣୀଥିମା, ତାରକା ହାର
ଗ୍ଭହିଁ ଗ୍ଭହିଁ ଭୁଲ ଝଙ୍କରେ ଭ୍ରମର
ପାହେ କଣି ମଉର ଧାରେ ।

[ ରସିକ ମୁନ୍ଦରଟିକୁ ଦେଖି ଦେଖି ଅନ୍ୟମନସ୍କ ଭାବେ ସେହି ବାଟେ ଗ୍ଭଲି ଯାଉ ଯାଉ ଭିକାରୁଣୀକି ଟିକିଏ ବାଟ ବଳିଗଲା ପରେ ଗୀତ ଶୁଣି ଶୁଣି ଫେରିଆସି ତାକୁ ଗ୍ଭହିଁଲା । ରୂପ ମୋହରେ ଟିକିଏ ଥମକି ଗଲା । Money bagରୁ ଦୁଇଟା ପଇସା ତାକୁ ଦେଇ, ପଗ୍ଭରିଲା ]

ରସିକ—ହାଁ ଲୋ, ତୁ ଭିଖ ମାଗୁଛୁ କାହିଁକି ?

ଭିଖା—ଭିଖାରୁଣୀ ବୋଲି ବାବୁ !

ରସିକ—ଏଡ଼େ ସୁନ୍ଦର ରୂପ ତୋର...

ଭିଖା—ମୁଁ ଅନ୍ଧୁଣୀଟା ବାବୁ ।

ରସିକ—ଜନ୍ମରୁ ତୁ ଅନ୍ଧୁଣୀ ?

ଭିଖା—ଆଗେ ଭଲ ଥିଲି । ପଛେ ଏମିତି ହେଲା ।

ରସିକ—କିଛି ପଢ଼ିଛୁ ?

ଭିଖା—ନାଁ ବାବୁ !

ରସିକ—ଅକ୍ଷର ବି ଚହ୍ନି ନାହୁଁ ?

ଭିଖା—କେମିତି ଚହ୍ନିବି ? ଆଖି ନାଇଁ ପରା !

ରସିକ—ଏଡ଼େ ସୁନ୍ଦର କଣ୍ଠ, ଭଲ ଗୀତ ଗାଉଛୁ, ଅକ୍ଷର ଚହ୍ନି ନାହୁଁ ? ହାୟରେ ହତଭାଗ୍ୟ ଓଡ଼ିଶା, ହାୟରେ ପରାଧୀନ ଓଡ଼ିଆ ନାରୀ ! ଏଡ଼େ ସୁନ୍ଦର ରୂପ ପାଇ, ଅକ୍ଷର ବି ଚହ୍ନି ନାହିଁ ଯେ ଖଣ୍ଡିଏ ଲଭ୍ ଲେଟର୍ ବି ଲେଖିବ । କଲୁ ଅନ୍ୟାନ୍ୟ ସଭ୍ୟଦେଶ ହୋଇଥିଲେ, ଆଜ... ଅଚ୍ଛା ! ତୁ ଇଂଲିଶ ଜାଣୁନାଁ ?

ଭିଖା—ନାଇଁ ବାବୁ ।

ରସିକ—ଅଚ୍ଛା ତୁ ତ ଯୁବତୀ, ଓଃ I mean ସୁନ୍ଦରୀ ଯୁବତୀ । Love, Romance, Flirting—ଏ ସବୁ କିଛି ବୁଝୁ ?

ଭିଖା—କିଛି ବୁଝୁ ନାହିଁ ବାବୁ ।

ରସିକ—Love ବୁଝୁ ନାହିଁ ? love ? love ? ( ଚବୁକରେ ହାତ ମାରି ) Love.

ଭିଖା—ଛି, ବାବୁ ( ପଇସା ଫିଙ୍ଗିଦେଇ ଗାଇ ଗାଇ ଗ୍ଭଲିଗଲା )

ରକସି—Bad boy ! ହାୟରେ ଦେଶ ! love ବି ବୁଝୁ ନାହିଁ ?

( ପଇସା ଗୋଟାଇ ନେଇ ଗ୍ଭଲିଗଲା )

---

## ସପ୍ତମ ଦୃଶ୍ୟ

[ମଦ୍ଦର୍ସଜପୁର ଗ୍ରାମ—ସାଗରର ପିତା କାହ୍ନୁଚରଣ ସିରସ୍ତାରେ ବସିଥିଲେ—ପାଖରେ ତାଙ୍କର ଗୁମାସ୍ତା ବସି ତାଙ୍କୁ କାଗଜ ବୁଝାଉଥିଲେ ]

କାହ୍ନୁ—ଆହା··ମୋଟ ଅସୁଲଟା କହିପାରୁ ନାହିଁ ? ଗୋଟି ଗୋଟି ଚେକ ମିଳାଇ ତେବେ ଯାଇ ବାହାର କରିବ ? ଭଲ ଲୋକ ତୁମେ !

ଗୁମାସ୍ତା—ଆଜ୍ଞା, ମୋଟ ଜମା ଟ ୪୦୭ଙ୍କ ଦଶପଇସା ମଇଧେ ବଜେ ଶ୍ରୀ ଦୋଳଗୋବିନ୍ଦ ଜୀଉଙ୍କର ଦେବୋତ୍ତର ଖଞ୍ଜାକୁ ଟ ୧୦୭ଙ୍କା ଛ ପଇସା ଯାଇ ବାକି ୩୦୦ ଟଙ୍କା ଚୁଇପଇସା ।

କାହ୍ନୁ—ବୁଝିଲି, ସେଥିରୁ ଆମର ଅସୁଲ କେତେ ?

ଗୁମାସ୍ତା—ହଁ, ସେଇକଥା ଆଜ୍ଞା !

କାହ୍ନୁ—ତେବେ କହ, କେତେ ଆଦାୟ ।

ଗୁମାସ୍ତା—( ପୁଣି ଚେକ ବହି ଲେଉଟାଇ ) ମୋଟ ୧୪୨ ଟଙ୍କା ।

କାହ୍ନୁ—ଏତକ ଆଦାୟ ମୋଟେ ? ସବୁ ଗାଆଁରେ ତ ଏମିତି ହୋଇଥିବ । ଦେଖୁଛି, ତୁମେ ଏଇ କିସ୍ତିରେ ମାହାଲ ଲାଟକୁ ଦେବ । ରାଜସ୍ୱ ଦିଆ ହେବ କେମିତି ?

ଗୁମାସ୍ତା—ଗୁଡ଼ ତ ଆଜ୍ଞା ବଡ଼ ଫସଲ । ସେ ତ ଖାଉ ହେଲା କାହିଁରେ କଅଣ ? ତାଇ ବି ମିଳୁଚି କୋଉଠି ? ଲୋକେ ତ ଗଛ ଗୁଏଁ ନେଇ ଆଖୁକଳ ପାଖେ ଦେଇଆସୁଛନ୍ତି । ଖଜଣା ବାକି ପଡ଼ୁଚି ।

କାହ୍ନୁ—ତୁମେ ତ ଆମକୁ ଏଇ କୈଫିୟତ ଦେଇ ଖଲାସ୍ । ଆଚ୍ଛା ଆମେ ଭଲା ସର୍କାରକୁ କି କୈଫିୟତ ଦେଉଁ ? ଆଉ ଦିନ ୩ । ୪ ଟା ମଝିରେ, ଲାଟବନ୍ଦୀକି । ଉପାୟ କଣ ?

ଗୁମାସ୍ତା—ଏଣେ ତ ସରକାର ଗୋଟେ ଦଫା ଉଠେଇଛନ୍ତି ଯେ ଖଜଣା ଛାଡ଼ ହୋଇଯିବ । ଲୋକେ ସେଥିରେ ମାତି ସାହା ବି ଦିଅନ୍ତେ ମୂଳରୁ ଆମକୁ ଦୁଆର ବାଡ଼ିଆ କରୁଛନ୍ତି । ପିଲାଟି ଦିନୁଁ ତ ଆଜ୍ଞା ଏଇ ଘରେ । ଏମିତି କାଳ ପଡ଼ିବା ତ କେବେ ଦେଖି ନ ଥିଲି ।

କାହ୍ନୁ—ନାଃ, ମାହାଲ ରଖିବା ଗୋଟାଏ ଦାଘ୍ ହୋଇ ପଡ଼ିଲାଣି ଏବେ । କେହି ନେବାକୁ ଚାହିଁଲେ କିଛି ଛଥ ସହିତ ତାକୁ ଦେଇ ପାରିଲେ ଖଲାସ୍ ।

ଗୁମାସ୍ତା—ଯାଏଁ, ଆଉଥରେ ଇଲାକା ଉପରକୁ, କଅଣ ହଉଛି ।

କାହ୍ନୁ—ଯାଇ କେତେ ନ ଯାଇ କେତେ ? ଯଦି ବା ସାମାନ୍ୟ କିଛି ଟଙ୍କା ମିଳିବ—ସେଥିରେ ତ ଆଉ ଗରଜ ମେଣ୍ଟିଯିବ ନାହିଁ । ଫେର୍ ସେଇ ବନ୍ଧକ ନଇଲେ ବିକ୍ରୀ । ମହାଜନ ଦୁଆର ଛଡ଼ା ତ ଆଉ ଗତି ନାହିଁ । ଭଗବାନ ଫେର୍ ଏମିତି କଲେ ଯେ ଯାବନ୍ତ ଶ୍ରେଷ୍ଠ ଲୋକଙ୍କୁ ହାତ ପତେଇବାକୁ ହେଲା । ହଁ, କେତେବେଳେ ନାହା ଉପରେ ଗାଡ଼ି, ପୁଣି ଗାଡ଼ି ଉପରେ ବି ନାଆ ।

ଗୁମାସ୍ତା—ଯାଉଚି ଦେଖେଁ ।

କାହ୍ନୁ—ହଁ, ଦେଖିବ ଯେ—ଆଗେ ମହାଜନ ସଜିଲ କରି, ତା' ପରେ ଇଲାକାକୁ ଯାଉଥାଅ ।

ଗୁମାସ୍ତା—ଆଗେ ତ ସେ କଥା—

( ବସ୍ତାନି ବାନ୍ଧି ବସିଲେ )

କାହ୍ନୁ—ଦିଅ, ରଖ ଏଗୁଡ଼ାକ ଦେଖି ଆଉ କଅଣ ହେବ ?

( ଗୁମାସ୍ତା ପ୍ରସ୍ଥାନ ଓ ସାଗର ବୋଉ ଚିଠି ଖଣ୍ଡିଏ ଧରି ଆସିଲେ )

ସାଃ ବୋ—ସାଗର ଚିଠିର ଜବାବ କଅଣ ଗଲା ?

କାହ୍ନୁ—ହିଁ ? ହଁ, ହଁ । ସତେତ ତ ! ଶଠି କଅଣ, ସେ ତ ଗୋଟାଏ ଟେଲିଗ୍ରାଫ କରିଥିଲ । ତାର ବି ଜବାବ ଦେବାକୁ ମୋର ମନେ ନାହିଁ । ( ଦୀର୍ଘ ନିଃଶ୍ୱାସ ପକାଇ ) ଆଉ, ମନେ ଥିଲେ ବି କଅଣ ଅବା କରନ୍ତି ?

ସାଃ ବୌ—ତା'ର ପରି ପରୀକ୍ଷା ମୁଣ୍ଡ ଉପରେ ? ଏତିକିବେଳେ ତା ମନ ଖରାପ ହେଲେ ତା'ର ବାର ବରଷର ତପସ୍ୟା ଶୁଖିଆ ପୋଡ଼ାରେ ଯିବ ସିନା !

କାହ୍ନୁ—ଯାହା ପ୍ରଭୁଙ୍କର ଇଚ୍ଛା ଥିବ, ମୁଁ ଆଉ କଅଣ କରିବି ? ପଢ଼ିଲେ ପଢ଼ୁ—ନଇଲେ ନାଇଁ ।

ସାଃ ବୌ—ଏମିତି ଗୁରିଏ କଅଣ କହୁଚ ମ ?

କାହ୍ନୁ—ଆଉ କଅଣ କହିବି ? ଆମ ତେଯୁଗଣୋଇ ପୁରୁଷ ଜମିଦାର ଯେ, ସମସ୍ତେ ଓଡ଼ିଆ ପାଠରେ ସାଆନ୍ତ । ଏବେ ପୁଅ ହେଲେ ଇଂରେଜୀ ପାଠୁଆ ବାବୁ ଯେ, ତାଙ୍କ ପରୀକ୍ଷା ଖରଚ ଯୋଗାଉ ଯୋଗାଉ ମାହାଲ ନାକେବୁଡ଼ । ଏବେ ତ, ହାଲ କଥା । ୪।୫ ମାସ ହେଲ କରଜ ହେଇ ସେ ଟଙ୍କା ପରୀକ୍ଷା ଫିସ ଦିଆଯାଇଛି ଯେ ସୁଧକୁ ମଧ୍ୟ ପଇଠ ନାହିଁ । ଏଣେ ମୁଣ୍ଡ ଉପରେ ଲଟବନ୍ଦୀ । ତାକୁ ନ ଜଗିଲେ ଇଜ୍ଜତ, ମହତ୍ତ୍ୱ ସବୁ ଯାଏ । ସେଥିକି ତ ହାତରେ କାଣି କଉଡ଼ିଏ ନାହିଁ ବୋଲି ମହାଜନ ଖୋଜା ପଡ଼ୁଛି । ଆଚ୍ଛା, ସାଗର ଏବେ ଆଉ ନ ପଢ଼ିଲେ ! କେହି ତ ତା'କୁ ଆଉ ଅଯୋଗ୍ୟ କହିବେ ନାହିଁ ?

ସାଃ ବୌ—ନ କହିଲେ କଅଣ ହେଲ ? ପାଠଟା ତ ତାର ଖଣ୍ଡିଆ ହବ ।

କାହ୍ନୁ—ହେଲେ ଏବେ, କୋଉ ତଣ୍ତ୍ରୀ ଅଶୁଦ୍ଧ ହୋଇ ଯାଉଛି ! ପଢ଼ିକରି ଏବେ କଅଣ କରିବ ସେ ସେ ?

ସାଃ ବୌ—ଅଚ୍ଛା, କଅଣ ପଢ଼ିଲେ ଭଲ ହାକିମ ହୁଅନ୍ତି କହିଲ ? ତୁମେ ନ ଦେଲେ ନାହିଁ, ବୁଢ଼ାକୁ ମୁଁ ସେଇ ଯାଏଁ ପଢ଼େଇବି ।

କାହ୍ନୁ—ତୁମେ ମାଇପି ଲୋକ, ବୁଝି ପାରିବ ନାହିଁ ସାଗର ବୌ । ଭାଗ୍ୟ, ଭାଗ୍ୟ, ପଢ଼ିଲେ ହାକିମ ହୁଅନ୍ତି । ଆଜି ଆଉ ସେ କାଳ ନାହିଁ । ଗାନ୍ଧୀ ଅମଳ ଟି ! ଆଜି କଅଣ ଆଉ ପାଠର କଦର ଅଛି ? ହଳିଆ ମୂଲିଆ ତ ପଢ଼ିଲେଣି ପାଠ ।

ସାଃ ବୌ—କଅଣ ବି· ଏ· ପଢ଼ିଲେ ପରି ?

କାହ୍ନୁ— କହିଲି ତ ସେ କାଳ ଗଲଣି ?

ସାଃ ବୌ—ଅଚ୍ଛା ! ବୁଢ଼ା ପରି ବି· ଏ· ପଢ଼ୁଛି ?

କାହ୍ନୁ—ହିଁ, ବି· ଏ· ।

ସାଃ ବୌ—ଏଇ ପାଶ୍ଟା ସେ କରିସାରୁ, ନୋହିଲେ ଗାଆଁ ଗଣ୍ଡାରେ କଅଣ କହିବେ ?

କାହ୍ନୁ—ବୁଝିଲ, କହିବେ ତ ସଭିଏଁ । ଏଇନେ ଦଉଚ କିଏ ?

ସାଃ ବୌ—ଯାହା ହଉ—କଚ୍ଛ ଛଅଟା ନଅଟା । ନୁହଁ, ଗୋଟିଏ ବୋଲି ତ ପୁଅ—ପାଶ୍ଟା କରିସାରୁ । କେଜାଣି ଯେବେ ଆମ ଭାଗ୍ୟ ଫେରେ ।

କାହ୍ନୁ—ଭଲ କଥା । ତମ ମନ ଯାହା, ପାରିବ ଯେବେ କର । ବାକି ମୋର ଆଉ ବଳନାହିଁ । ଶୁଣୁଚ ତ ଅବସ୍ଥା ।

ସାଃ ବୌ—ମୋର ଏଇ ହୀରାମୁଦି ଥାଇ କଅଣ ହବ ? ଏଇଟିକି ନେଇ···

କାହ୍ନୁ—କଅଣ ବନ୍ଧା ନା ବିକ୍ରୀ ?

ସାଃ ବୌ— ଯେମିତି ହଉ ।

କାହ୍ନୁ—ଯେମିତି ହଉ ପୁଣି କିମିତି ମ ? ହୀରା ମୁଦି, ଏଠି କିଏ ନବ ଅବା ଏ ମଫସଲରେ ?

ସାଃ ବୌ—କଟକ ପଠେଇଲେ···

କାହ୍ନୁ—ପଠାଇଲେ ଆଉ କେମିତି ମ ? ଏତେ ଟଙ୍କାର ମାଲ ! ଆଉ ତ ଖଣ୍ଡିଏ କରିବାର ଆଶାନାହିଁ । ନିଜେ ଗଲେ ଯାଇ···

ସାଃ ବୌ—ଭଲ, ପୁଅକୁ ଦେଖି ଆସିବାର ହବ— କେମିତି ପଢ଼ୁଛି, କେମିତି ଅଛି···

କାହ୍ନୁ—ଘରୁ ବାହାରି ପାରୁଛି କାହିଁ ? ଏଣେ ଆଉ ଦି'ଦିନ ଗଲେ ରାଜସ୍ୱ ଦାଖଲ । ରୋକ ନାଇଁ, ଶୋଷ ନାଇଁ । ନଅର ପରି ଘର ଦ୍ୱାର ଭାଙ୍ଗି ପଡ଼ିଲା ଏଇ ଆଖି ଆଗରେ ଯେ ଚୂନ ମେଞ୍ଚାଏ ମାରି ଦେବାର ତ ବଳ ନାହିଁ । ପ୍ରଜାଏ ଟେଣେ ଖଜଣା ଦେବାକୁ ନାହାନ୍ତି । ମୁଁ କହେଁ, ବୁଢ଼ା ଅସି ଆପଣା ଇଲାକାବାଡ଼ି ବରଂ ଦେଖୁ । ବୟସ ତ ଆସି ହେଲା । ତା ବୟସକୁ ତୁମେ ଆମ ଘରକୁ ଆସିଲଣି ଟି ! କି ଚାକିରି ବା କରିବ ଆଜିକାଲି ? ପେଟକୁ ନଅଣ୍ଟ । ତୁମେ ସଂସାରଟାକୁ ଦେଖୁଁ ନାଁ ସାଗର ବୌ ।

ସାଃ ବୌ—ଯାହା ହେବାର ହେଲାଣି । ଏଇ ପଶ୍ଚିଷାଠା ତା'ର ଯାଉ । ଆସି ବେଳ ଗଡ଼ି ଗଲଣି । ତୁମେ ଘରକୁ ଆସ ।

କାହ୍ନୁ—( ନୀରବରେ ବସିଲେ )

ସାଃ ବୌ—ଆଉ ଫେର୍ ବସି ରହିଲ କାହିଁକି ମ ? ବେଳ କଅଣ ଅଛୁଛି ? ଗାଧୁଆ ଖାଧୁଆ ବଢ଼ାଅ, ମୁଣ୍ଡ ଉପରେ ବେଳଟି ?

କାହ୍ନୁ—ହୁଁ ( ଦୀର୍ଘ ନିଶ୍ୱାସ ମାରି ) ହଁ, ମୁଣ୍ଡ ଉପରେ ତ ସବୁ ।

( ଉଠି ଚାଲିଲେ )

---

## ଅଷ୍ଟମ ଦୃଶ୍ୟ

[ ଗାର୍ଲ୍‌ସ୍କୁଲ ଓଏଟିଙ୍ଗ୍ ରୁମ୍ । ସାଗର ଓ ରସିକ ଦୁଇଖଣ୍ଡି ଚୌକିରେ ବସିଛନ୍ତି ]

ସାଗର—କରେ, ( ଘଡ଼ି ଦେଖି ) ଆଠ୍ ବାଜିବ ଯେ !

ରସିକ—ନ ଆସିବାର ହେଲେ କାର୍ଡ଼ ଫେରି ଆସନ୍ତାଣି ।

( ଆନନ୍ଦ ଆସି ପହଞ୍ଚିଲା )

ରସିକ—ଏଇ ତ ଆନନ୍ଦ ! କଅଣ କଲୁ ?

ଆନନ୍ଦ—ମିସି ମାଆଙ୍କୁ ଟିକଟ ଦେଲି । ବାବୁମାନଙ୍କୁ ବସିଥିବା କହ ବୋଲି କହିଲେ ।

ରସିକ—ଆଚ୍ଛା, ଯାଅ । ତୁମେ ତ ଗେଟ୍‌ରେ ଥିବ । ଗଲାବେଳେ ଦେଖା ହେବ ଯେ, ଯାଅ ।

ଆନନ୍ଦ—ଆଜ୍ଞା, ମୁଁ ମଅର ଗେଟ୍‌ରେ ତ ଥିମି, ଆପଣମାନେ ଦିଦିମଣିମାନଙ୍କ ସାନ୍ତର କଥାଭାଷା ହେଇ······ ।

ରସିକ—ହୁଁ············ ( ଆନନ୍ଦ ଚାଲିଗଲା ) କରେ, ଉଚ୍ଛନ୍ନ ହଉଥିଲୁ ଯେ !

ସାଗର—ବାବା ! ବଡ଼ Risky କାମ୍ଟ, ଗୋଟେ ନାଆଁଟା ବଦଳାଇ···

ରସିକ—ଅରେ Vernacular, କଷ୍ଟ ନ କଲେ କୃଷ୍ଣ ପାଇବୁ କାହୁଁ ? ଏ ସବୁ ତ ତୋ'ର ନାସ୍ତିଶିଷା ବିବର୍ଦ୍ଧିନୀ ସଭାର ମାମଲା ନୁହେଁ । ସେ ସେ···

ସାଗର—ଦୁର୍ ବେ ! ମୁଁ ଗୋଟେ out of curiousity ଏଟା କରିବାକୁ ଚାଲି ନାଁ, ନଇଲେ କାମ୍ଟ, ବାସ୍ତବିକ ଏ ସବୁ······

ରସିକ—ଆଚ୍ଛା—ଆଚ୍ଛା—ସେ ବକ୍ତୃତାଟା ଆଉ ଅଳ୍ପ ସମୟ ଗଲେ···

[ ହଠାତ୍ କଥାରେ ବାଧା ପଡ଼ିଲା, ରେଣୁ ଓ ବେଳା ଆସିବାରୁ । ସାଗର ଓ ରସିକ ଚୌକି ଛାଡ଼ି ଉଠି ପଡ଼ିଲେ ]

ବେଳା—ନମସ୍କାର, ନମସ୍କାର । କଷ୍ଟ ହେଇଥିବ । ଅନେକ ସମୟ ଆପଣମାନଙ୍କୁ ଅପେକ୍ଷା କରିବାକୁ ପଡ଼ିଲା, କ୍ଷମା ଦେବେ ।

ରସିକ—କଷ୍ଟ ! କଷ୍ଟ କଅଣ ! ଆମେ ତ ଦୁହେଁ କଥାବାର୍ତ୍ତା କରି ବେଶ୍ ଥିଲୁ; ବରଂ କଷ୍ଟ ଆପଣମାନଙ୍କୁ ଦେଲୁଁ । ସେଥିଲାଗି ଆମର କ୍ଷମା ମାଗିବାର କଥା—ନାଁ କଣ ସାଗର ?

ସାଗର—ନିଶ୍ଚୟ ।

ରସିକ—ହଁ ମୁଁ ଇତିମଧ୍ୟରେ Introduce କରିଦିଏଁ ତ । ଏ ଆମର ସାଗର ବାବୁ, ଏଇ ପ୍ରଗତି ଯୁଗର ଉପନ୍ୟାସମାନ କବି । ସେ ହେଉଛନ୍ତି ଶ୍ରୀମତୀ ରେଣୁ ଦେବୀ । ଆଉ ସେ ଶ୍ରୀମତୀ ବେଳା ଦେବୀ । ଦୁହେଁ ତୃତୀୟ ବାର୍ଷିକ ଛାତ୍ରୀ । ଅବଶ୍ୟ ବେଳା ଦେବୀଙ୍କ ସାହିତ୍ୟ ପ୍ରେମ ଇତ୍ୟାଦି ସମ୍ବନ୍ଧେ ମୁଁ ଆଗରୁ ଅନେକ କଥା ଶୁଣିଛି, କିନ୍ତୁ ତାଙ୍କ ସହିତ ଆଜଯାଏ ପରିଚୟ ନ ଥିବା ମୋର ଦୁର୍ଭାଗ୍ୟ । ନମସ୍କାର ।

ବେଳା—ନା, ନା ସେ ଗୋଟାଏ କଅଣ ! ମୁଁ ମଧ୍ୟ ଅନେକ ଦିନୁଁ ରେଣୁଠାରୁ ଆପଣଙ୍କ କଥା ଶୁଣିଛି, ମାତ୍ର ସାକ୍ଷାତର ସୌଭାଗ୍ୟ ହୋଇ ନଥିଲା । ନମସ୍କାର ।

ସାଗର—ନମସ୍କାର ବେଳାଦେବୀ, ନମସ୍କାର ରେଣୁଦେବୀ ! ସୁଖୀ ହେଲି ଆପଣଙ୍କମାନର ସାକ୍ଷାତ ପାଇ । ବସନ୍ତୁ ନାଁ—ଛିଡ଼ା ହୋଇ ରହିଲେ ଯେ !

ରେଣୁ—ମୁଁ ତ ରସିକ ବାବୁଙ୍କ ମୁହଁରୁ ଆପଣଙ୍କର ପ୍ରଶଂସା ଅନେକ ଦିନୁ ଶୁଣିଛି ଆଉ ଆପଣଙ୍କର ସୁଖ୍ୟାତି ପତ୍ର ପତ୍ରିକାରେ ବରାବର ଦେଖୁଛି, କିନ୍ତୁ ବେଳାର ଆପଣ ସମ୍ପୂର୍ଣ୍ଣ ନୂତନ ବନ୍ଧୁ—ସହକାରର "ଅଦେଖା ପ୍ରିୟ"...ନାଁ ବେଳା ? ( ହସିଲା )

ବେଳା—( ଧୀରେ ) ଭାରି ଦୁଷ୍ଟ !

ରେଣୁ—ଏଥର ଅନ୍ତତଃ ତା'ର ଦେଖାପ୍ରିୟ ହେବାକୁ ମୁଁ ଆଶା କରିପାରେଁ ?

ରସିକ—ନିଶ୍ଚୟ କରି ପାରନ୍ତି । By all means. ଗୁଣୀ ନିଶ୍ଚୟ ଗୁଣୀର ଆଦର କରିବ । ଏଥିରେ ଆପଣ 'ଆଶା କରି ପାରନ୍ତି' ଏ କଥା କହିବାଟାଇ ଅନ୍ୟାୟ ବୋଲି ମୁଁ କହିବ । ବେଳା ଦେବୀଙ୍କ ପରି ସାହିତ୍ୟିକା...

ବେଳା—ମୋର ଅଯଥା ପ୍ରଶଂସା କରି...

ରେଣୁ—ମୁଁ କିନ୍ତୁ ରସିକ ବାବୁଙ୍କ ପକ୍ଷରୁ କହିପାରେଁ ଯେ ତାଙ୍କର ପ୍ରଶଂସା କରିବାଟା ମୋଟେ ଭୁଲ ହୋଇନାହିଁ । ତୁ କଅଣ ସାଗର ବାବୁଙ୍କ ଲେଖାଟିକି ଖୁବ୍ ପ୍ରଶଂସା କରିନାହୁଁ ? ମୋତେ ବାର ବାର ଶୁଣାଇନାହୁଁ ସେ ଦୁଇଟି ଲାଇନ୍ ?

ବେଳା—ମୁଁ ତ ନାହିଁ କରୁନାହିଁ, କିନ୍ତୁ ତା ବୋଲି ମୁଁ ଯେ ସାହିତ୍ୟିକା, ଏ କଥା—

ରସିକ—ଅର୍ଥାତ ଗୁଣୀ ନୋହିଲେ ଗୁଣ ଚହ୍ନିବା ଯେ ମୁସ୍କିଲ ବେଳା ଦେବୀ !

ସାଗର—ବୃଥାଟାରେ ମୋ ନେଇ ଏତେ ତର୍କ କାହିଁକି ଭଲା ? ଯୋଉ ତ ଲେଖା ! ଅତି କଦର୍ଯ୍ୟ । ତାର ପୁଣି...

ରେଣୁ—ରହନ୍ତୁ, ରହନ୍ତୁ ! ସାର୍ଟିଫିକେଟ ବେଳା ଦେବ । କହନାଁ ବେଳା, ସାଗର ବାବୁଙ୍କ ଏଇ କଥାଟା କଅଣ ଠିକ୍ ?

ବେଳା—ନାଁ । ବାସ୍ତବିକ ଖୁବ୍ ସୁନ୍ଦର ।

ରସିକ—And as a token of Bela Devi's kind appreciation ( ରୁମାଲରୁ ମୁଦିଟି ଫିଟାଇ ) ଏ ଟା କିନ୍ତୁ ମୋର ଲୁହେଁ—ମୋର ବନ୍ଧୁଙ୍କର present. Only a remem-berance.

ବେଳା—ଏ ତ ଭାରି ଅନ୍ୟାୟ ।

ରସିକ—ସାଗର ବାବୁଙ୍କ ଲେଖାକୁ ସୁନ୍ଦର ବୋଲି କହିବାରେ ଯେପରି ଆପଣଙ୍କର ଅଧିକାର ଅଛି, ତାଙ୍କର ମଧ୍ୟ ଆପଣଙ୍କ appreciation ର ମର୍ଯ୍ୟାଦା ବୁଝିବାର ତ ସେଇପରି ଅଧିକାର ଅଛି ।

ବେଳା -କିନ୍ତୁ—

ରେଣୁ—ତୋର ସେ lame excuseର କିଛି ମୂଲ୍ୟ ନାହିଁ ବେଳା !

ରସିକ—( ମୁହଁ ଦେଖାଇ ) ସାଗର !

ସାଗର—( ମୁହଁ ନେଇ ) ବେଳା ଦେବୀ ! ମୋର ଏଇ···

ରେଣୁ—( ବେଳାର ହାତ ଧରି ) ଭାରି shy । ଦେଅନ୍ତୁ ନାଁ ପିନ୍ଧାଇ ଆପଣ ସାଗର ବାବୁ !

ସାଗର—( ପିନ୍ଧାଇ ଦେଲେ )

ବେଳା—ନମସ୍କାର, କିନ୍ତୁ ଆପଣ ଅଯଥା···

ସାଗର—ନମସ୍କାର ।

ରେଣୁ—ବସ୍ ନା, ସେ ଯଥା ଅଯଥା ବିଚାର ତୁ ପରେ କରି । ବା'ରେ, ଏକାବେଳେ ତ ଆଙ୍ଗୁଠିର ମାପ ନେଲାପରି ଫିଟ୍ କରୁଛି ! ସୁନ୍ଦର ଆପଣଙ୍କର ସିଲେକ୍‌ସନ ସାଗର ବାବୁ !

ରସିକ—ତୁମେ ବାଦ୍ ଯାଉନାହିଁ ରେଣୁଦେବୀ ! ତୁମେ ଯେ ଏ ପରିଚୟର ମୂଳ, ଏ ଟା ତୁମର present ( ବ୍ରୁଚ କାଢ଼ି ) ମୋର ବନ୍ଧୁଙ୍କ ତରଫରୁ ମୁଁ ଦେଇ ଦେଉଛି ।

ରେଣୁ—ଧନ୍ୟବାଦ ।

ରସିକ—ଆହା, ମୋତେ କାହିଁକି ? ( ସାଗରକୁ ଠାରିଦେଲେ )

ରେଣୁ—ନମସ୍କାର । ସୁନ୍ଦର ବ୍ରୁଚଟି, କିନ୍ତୁ ସାଗର ବାବୁ କାହିଁକି ଭଲା ଅକାରଣଟାରେ···

ସାଗର—ଅକାରଣ—ମାନେ ?

ରସିକ—ଏଟା ଯେ ଆଜି ଏଇ ମିଳନର ମଧୁସ୍ମୃତି— ଅବଶ୍ୟ ମୁଁ କବି ଭାଷାରେ କହି ପକାଇଲି । କ୍ଷମାଦେବେ ।

(ସମସ୍ତେ ହସିଲେ)

ରସିକ—ବର୍ତ୍ତମାନ ଆମର ଏଇ ମିଳନର ସ୍ମୃତିଟିକୁ ଆହୁରି ଅଧିକ ମଧୁମୟ କରିବା ଲାଗି ମୁଁ ଆଉ ଗୋଟିଏ ପ୍ରସ୍ତାବ ଆଣି ପାରେ କି ?

ରେଣୁ—ସ୍ୱଚ୍ଛନ୍ଦରେ ।

ରସିକ—ବେଳା ଦେବୀ !

ବେଳା—କହନ୍ତୁ ।

ରସିକ—ସାଗର !

ସାଗର—ଉତ୍ତମ ।

ରସିକ—ଯଦି କାହାରି ଅମତ ନ ଥାଏ, ଆଜି 'ଅଧିକାର' ଫିଲମ୍‌ଟା ଦେଖାଯାଉ ଏକସଙ୍ଗରେ । ଆଜି ତା'ର Last day । ଆଉ ଫିଲମ୍‌ଟା ବି ଖୁବ୍ ଭଲ । ଦେଖିବାର ଯୋଗ୍ୟ । କଅଣ କହୁଛି ସାଗର ?

ସାଗର—ଅତି ଆନନ୍ଦର କଥା ।

ବେଳା—(ଉଠି) ତା' ହେଲେ ଆପଣମାନଙ୍କର ସମୟ ହୋଇଯିବ—

ରସିକ—ତା ମାନେ ? ଆପଣ କଅଣ ଯିବାକୁ ନାରାଜ ?

ବେଳା—ଆମେ—ମାନେ ?

ରସିକ—ହଁ, ଆପଣ ଆଉ ରେଣୁ ଦେବୀ, ଦୁହେଁ ।

ବେଳା—କିନ୍ତୁ···

ରସିକ—ଓ, ବୋଧହୁଏ ହଷ୍ଟେଲରୁ ଯିବା ଅନୁମତି କଥା ଭାବୁଛନ୍ତି, ନାଁ ? ସେଟା ମିଳିଯିବ ନିଶ୍ଚୟ । ମୁଁ ତାର ବାଟ କରିନେବି ।

ରେଣୁ—ଏଥିରେ ଆପତ୍ତି କଅଣ ? Innocent pleasure—ବେଳାର ଆପତ୍ତି କରିବାର ଆଉ ତ କିଛି କାରଣ ମୁଁ ଦେଖୁନାହିଁ, ଅବଶ୍ୟ ଯଦି permissionଟା ମିଳେ—

ରସିକ—Oh ! that's my lookout. ତା' ହେଲେ ବେଳା ଦେଖ, of course ସାଗର ବାବୁଙ୍କର ବି ଏଇଟା request ବୋଲି ମଧ୍ୟ ଧରିନେବାକୁ ହେବ ।

ରେଣୁ—ଯେହେତୁ ଦୁହେଁ ବନ୍ଧୁ ।

ରସିକ—ଭୁଲ କଲ, ରେଣୁ ! ବନ୍ଧୁତ ଖାଲି ନୁହେଁ— ପରମ ବନ୍ଧୁ । ଏକ ମନ, ଏକ ପ୍ରାଣ—(ଦେହ ଦେଖାଇ)ଏଇ ମାତ୍ର ଅଲଗା । (ଘଡ଼ି ଦେଖି)ଗୁଡ଼ନ୍ସ, ଟାଇମ୍ ହୋଇ ଆସିଲା—ତା ହେଲେ ଆପଣମାନେ ରେଡ଼ି ହୁଅନ୍ତୁ । ମୁଁ necessary permission ଟାର ଯୋଗାଡ଼ କରିନିଏଁ । ଆ, ସାଗର— ଆପାତତଃ ନମସ୍କାର ।

(ସାଗର ଓ ରସିକ ଚାଲିଗଲେ)

ରେଣୁ—(ବେଳାର ହାତ ଧରି) ସାଗର ବାବୁ ସୁନ୍ଦର ଲୋକଟି, ନାଁ ରେ ? (ମୁଦି ଦେଖି) ବା ରେ ! ଖୁବ ସୁନ୍ଦର ମୁଦିଟି ତ ! ତୋ ହାତକୁ ଏକାବେଳେ ମାପ ନେଲାପରି ହେଇଚ ।

ବେଳା—ମୁଁ କିଛି କହି ପାରିଲି ନାହିଁ ସେମାନଙ୍କର କଥା ଉପରେ । କିନ୍ତୁ···

ରେଣୁ—କିନ୍ତୁ ?······

ବେଳା—ମୁଁ କିନ୍ତୁ ଯାଇ ପାରିବି ନାହିଁ । ଯାହା କହ ।

ରେଣୁ—ବାଃ, ଏ କେମିତି ହେବ ? ତୁ ଯିବାବ କଲୁ । ସେମାନେ ବୋଧେ ମିସ୍ ମାଆଙ୍କୁ କହି ଗାଡ଼ି ଠିକ୍ କରିଥିବେ । ଏତେବେଳକୁ ତୁ ମନାକଲେ କେମିତି ହବ ?

ବେଳା—ଯାହା ହଉ ପଛେ—

ରେଣୁ—ଅଚ୍ଛା ତୁ ରୁମ୍‌କୁ ଚାଲ । ମୁଁ ତୋତେ ବୁଝେଇ ଦଉଚି । ସେଥିରେ ଆପତ୍ତି କଅଣ ?

ବେଳା—ସେ ଯାହାହଉ, ମୁଁ ସାଗର ବାବୁଙ୍କୁ ସ୍ନେହ କରେଁ, ଶ୍ରଦ୍ଧା କରେଁ । ତାଙ୍କୁ ଦେଖିଲାକ୍ଷଣି ମୋର ତାଙ୍କ ପ୍ରତି ଗୋଟାଏ···

ରେଣୁ—ସେ ତ, ମୁଁ ତୋ ଆଖିରୁ ହି ବୁଝିଚି ।

ବେଳା—ଧେତ୍, ତୁ'ଟା ବଡ଼ ଦୁଷ୍ଟ !

ରେଣୁ—କିନ୍ତୁ ତୋତେ ସେ ଯିବାକୁ ହେବ, ଏଇଟା ଠିକ୍ । ଚାଲ୍ ଆଗେ । ରୁମ୍‌କୁ ଚାଲି ତ ।

(ଦୁହେଁ ଚାଲିଗଲେ)

---

## ନବମ ଦୃଶ୍ୟ

[ରାସ୍ତା କଡ଼ରେ ଗାର୍ଲସ୍ସ୍କୁଲ ଗେଟ୍ ଦ୍ୱାରରେ ଆନନ୍ଦ ବସି ଗୋଡ଼ ଲମ୍ବାଇ ଭୁଲାଉଥିଲା । ମଶା ଲାଗୁ ଥିବାରୁ ଥରେ ଥରେ ବିରକ୍ତି ପ୍ରକାଶ କରୁଥିଲା । ଏଣୁ ତେଣୁ ଗୀତ ଗାଉଥିଲା । ଗୋଟିଏ ପିଲା ଆସି ଡାକିଲା ।]

ପିଲା—ହେ ଚପରାସୀ ! ହେ, ଶୁଣ ତ ।

ଆନନ୍ଦ—(ସେହିପରି ଗୀତ ଗାଉଥାଏ)

ପିଲା—ହେ ଚପରାସୀ !

ଆନନ୍ଦ—ହାଁ, କିଏ ଡାକୁଚୁ ?

ପିଲା—ଏଣେ ଆସ ତ, ତମକୁ ଜଣେ ବାବୁ ଡାକୁଚି ।

ଆନନ୍ଦ—କେ ବାବୁ ଡାକୁଚୁ ? ନାଁ ନାହିଁ ନା ?

ପିଲା—ମୋତେ କହିଲା ଚପରାସୀ କୁ ଡାକିଦବୁ—ଜଣେ ବାବୁ ଡାକୁଚି ବୋଲି ।

ଆନନ୍ଦ—କେ, କା'ଡର—ଚୂରି କି ଗଣ୍ଡି କଥା ! ଗୁପାଳ, କି ଗୁମିନ୍ଦ, କି ଗୁବର୍ଦ୍ଧନ—ତାର ନାଁ ନାହିଁ—ମଅର ଚାଲିଯିମି କମିତି କୁହନ ? ଯା, ତୁ, ଯା—ମୁ ମଅର ଏଇଠି ଅଛି । ତା'ର ଆସିତେ ଗରଜ ଥିନେ, ଆସୁ ।

ପିଲା—ଡାକଦେବ ?

ଆନନ୍ଦ—ହଁ ତ—ଏଇଠି କି ଡାକ—ଆସିତେ କସ ମନା ଅଛି ? ମୁଁ କାଆଡ଼େ ଯିମି ? ମୁଁ ମଅର ଠୁପେ ଘୁଞ୍ଜିମିନାହିଁ । (ଗାଲରେ ଚାପୁଡ଼ ମାରି) ଇସ୍

ମର ଶଳା ମଶା ।                    (ପିଲଟି ଶୁଲାଗଲା)
ତାର ଭର୍ଲ କ ମର୍ଦ ? ଭଲ କ ମନ୍ଦ ? କିଛି କାଅଡ଼େ ଜଣାନାହିଁ—ସ୍ୱେ ଅନ୍ଧାରରେ ମତେ ଡାକୁଚ୍ କେନେ ? କ'ସ କଥା ?

(ପଛରୁ ଆସି ଡାକୁଛ ସାଗର)

ସାଗର—ଆନନ୍ଦ !

ଆନନ୍ଦ—(ପାଖକୁ ଯାଇ) କଏ ? (ଦେଖି)ହଁ, ଚକ୍ଲିଲ । ଆପଣ ଡାକୁଥିଲେ ନା ?

ସାଗର—ହଁ, ରସିକ ବାବୁ କାହାନ୍ତ ?

ଆନନ୍ଦ—ସେ ତ ଭତରକୁ ଯାଇ ଆଉ ଫେର ନାହାନ୍ତ ।

ସାଗର—ଆଚ୍ଛା । (ରସିକ ଓ ରେଣୁ ଆସିଲେ)

ରସିକ—କଏ, ସାଗର !

ସାଗର—ହୁଁ ।

ରସିକ—ବେଲା ଦେଖା ଆସିଲେ ନାହିଁ ରେ !

ସାଗର—କାହିଁକ ? କଅଣ ହେଲା ତାଙ୍କର ?

ରେଣୁ—କିଛି ନାହିଁ, ଗୋଟେ ବଡ଼ଲୋକ ଗୃଲ୍ ସେ ।

ରସିକ—ମୁଁ କହଲ, ରେଣୁ ବ କହଲେ । ସେ ଏକ ବସମର ଲୋକ । ସେସବୁ ଅନେକ କଥା—ପରେ । ଆଚ୍ଛା ତୁ ରେଣୁକୁ ଆଗରେ ନେଇ ଗାଡ଼ିକ ଗୃଲ । ମୋର ଆନନ୍ଦ ସାଙ୍ଗରେ ଟିକଏ କଥା ଅଛି ।

ସାଗର—ଅଚ୍ଛା, ଜଲଦ୍ ଆ ।     (ଗୃଲଗଲେ ଦୁହେଁ)

ରସିକ—ଆନନ୍ଦ, ତୁମେ ଗୋଟିଏ କାମ କରବ ନାଁ ?

ଆନନ୍ଦ—ଆପଣଙ୍କ ପାଇଁ କରବ ନାହିଁ ନା ? ସ୍ୱେ କସ କହୁଚ ?

ରସିକ—ଗେଟ୍ ଗୃବ ତୁମଠି ତ ?

ଆନନ୍ଦ—ମଅର ସଦାହବନେ ରଖି ଆସୁଛି—ଆଉ କଏ ରଖିବ ?

ରସିକ—ସେଇଆ ତ । ତୁମେ ସେ ଗୃବ ଆଉ ତାଲଟା ମୋତେ ଦଅ—ଏଇ ତାଲଟା ରଖ—ଆଉ ଗୃବଟା ରଖ । ଗେଟ୍‌ରେ ଦେଇ ଶୋଇବ ।

(ତାଲା ଗୃବ ଦେଲା)

ଆନନ୍ଦ—କେନେ ? ଏଇଟା ତ ଭଲ ତାଲା—ସରକାରୀ · ତାଲ୍ ·····

ରସିକ—ଭଲ ନେଏ, ତର ତ ଗୃବ ଗୋଟେ—ମୁଁ ତମକୁ ତମର ତାଲଟା ସକାଳେ ଫେରାଇ ଦେବ ସେ—ଆମର ଟିକଏ ଉଚ୍ଚୁର ହେବ ଫେରୁ ଫେରୁ କ ନାଁ, ତୁମେ ତୁମର ଶୋଇ ପଡ଼ଥିବ—ଡାକବାକୁ ଅସୁବଧା—

ଆନନ୍ଦ—ଫେରତେ କେତେ ରାତ ହେବ ? ୧୦।୧୨ ?

ରସିକ—ହଁ ।

ଆନନ୍ଦ—୧୨ଟା, ଗୁଚେ ?

ରସିକ—ହଁ, ପ୍ରାୟ ସେମିତି···

ଆନନ୍ଦ—ନ ହେଚନେ, ମୁଁ ମଅର ଜାଗିଥିମି ।

ରସିକ—ସେ···ସୁବଧା ହେବ ନାହିଁ କାଲେ ଶୋଇଥିଆ ପଡ଼ବ । ତୁମର ହାନ କଅଣ ? ତାଲା ଗୃବ ତ ସକାଳୁ ଫେର ପାଇବ ।

ଆନନ୍ଦ—ସର୍କାରୀ କଥା ବାବୁ ! ଜାଣୁଚ ତ ସାଇବାଣୀ ବଡ଼ କଡ଼ା । ସେ ଭର୍ଲ ନୁହେ ସେ—ଭନଟା ମର୍ଦ । କାଲେ କସ ଥାଏ । ମଅର ଦାନାପାଣି କଥା—ନ, ଏତେ ରାତ କେନେ ହବ ?

ରସିକ—ପିଲା ଲୋକ ନାଁ—ଟିକଏ ବାଇସ୍କୋପ ଦେଖି ଯିବାକୁ ମନ କରଛନ୍ତ । ବଜାର କଣସାର ସେଠୁ ଫେରୁ ଫେରୁ କାଲେ ଡେର ହେବ—ତୁମେ କାହାକୁ କିଛି ନ କହ ଠିକ୍ ଫାଟକ ଆର ପାଖେ ଥିବ ତ କହ, ବରଂ ମୁଁ ଫାଟକ ଡେଇଁ ତମକୁ ଡାକ ଦେବ । ହଲ୍ଲାକଲେ ଫେର୍ ମିସ୍ ଜାଣିବେ ।

ଆନନ୍ଦ—ଆଁ, ଏତେ ବଡ଼ ଫାଟକଟା ?

ରସିକ—ତା ମୁଁ ଟପିଯିବ ।

ଆନନ୍ଦ—ନାହିଁ ବାବୁ ରାତ ଅନ୍ଧାର—କାଅଡ଼େ ଗୋଡ଼ ହାତ ଛିଟା ହବ ତ ଫେର୍ ସମସ୍ତେ ମରିବା । ଦେଖେଁ ତାଲ—  (ରସିକ ତାଲା ବଢ଼ାଇ ଦେଲା)

ଆନନ୍ଦ—(ଚାଲ୍ ଦେଖି) ଆଁ—ସ୍ୱେ ହେଲେଁ ଆଉ କଥା କସ ? ସ୍ୱେ ତ ସେଇ ଚାଲ୍ ବରାବର ! ଉଟେଣଇଣ୍ ଝାଣ୍ ! ଏଇଠି ଟିକିଏ ରହନ୍ତୁ; ମୁଁ ସର୍କାସ ଚାଲଟା ଆଣି ଦଉଚି । ( ଭିତରକୁ ଚାଲିଗଲା )

ସାଗର—(ଆସି ପହଞ୍ଚିଲା) କରେ କଅଣ ହେଲା ?

ରସିକ—ଟଙ୍କାରେ ଯାହା ହୁଏ ! ଭୂ ଯା, ଗଲୁ, ଗାଡ଼ି କତିରେ କେହି ନାହିଁ ସେ ..

ସାଗର—ଅଚ୍ଛା । (ଚାଲିଗଲା)

ଆନନ୍ଦ—(ଆସି)ହେଇ ବାବୁ ! ଦେଖନ୍ତୁ ନାଁ—ଏଇଟା ବାକି ମତେ ଫେର ଦେବେ ।

ରସିକ—ନିଶ୍ଚୟ (ଚାଲ୍ ବଦଳାଇ) ମୁଁ ସେମାନଙ୍କୁ ଛାଡ଼ି, ଫେରିବା ବେଳେ ତମକୁ ଡାକି ଫେର ଦେଇ ଯିବି—ତୁମେ ତ ଗେଟ୍ ପାଖରେ ଥିବ ?

ଆନନ୍ଦ—ଖରାଦିନ - ପଦାରେ ଶୋଇଚ୍ ସବୁ ।

ରସିକ—ଆଚ୍ଛା, ମିସ୍ କେବେ ରାତିରେ ବୋର୍ଡ଼ିଂ ଦେଖିବାକୁ ଯାଏ ?

ଆନନ୍ଦ—ନାଁ—କେବେ ନାହିଁ ।

ରସିକ—ହଁ, ଆଉ ଗୋଟେ କାମ କରିବ—ଅଠର ନମ୍ବର ରୁମରୁ ଟିକିଏ ସମସ୍ତେ ଶୋଇଶୁଆ ଗଲେ ଚାଲଟା ଫିଟାଇ ଆଣି ତୁମ ପାଖରେ ରଖିଥିବ । ଝରକା ତ ଖୋଲା—ଭିତରରୁ ଦୁଆରର ଛିଟିକିଣିଟା ଦେଇ, ଝରକା ବାଟେ ଆସି ଝରକାକୁ ଖାଲି ଆଉଜାଇ ଦେଇଥିବ । ଭିତରୁ ବନ୍ଦଟା ଲଗାଇ ଦବ । ପାରିବ ନାଁ ?

ଆନନ୍ଦ—(ଭାବିଲା)

ରସିକ—ଏଇତକ ଆଉ ପାରିବ ନାହିଁ ନାଁ ? ସେ ଚାଲଟା ତୁମେ ରଖିଥିବ—ସନ୍ଧ୍ୟା ବା ମିସ୍ ବୁଲିବାକୁ ଯାଏ—ଦେଖିବ ଭିତରୁ ଘର ବନ୍ଦ । ସେ ଘରର ଚାବିଟା ହେଇ ନିଅ । ସକାଳେ ଦ୍ୱଦ୍ୱମାନଙ୍କୁ ଦେଇ ଦେବ । ଏ ଦଶଟା ଟଙ୍କା ନିଅ—ତୁମ ବକ୍‌ସିସ୍ । କରିବ ଏତକ—ନଅଟା ପରେ ବାକି ।

ଆନନ୍ଦ—ନଅଟା ପର ? ଅଚ୍ଛା !

ରସିକ—ମୁଁ ଯାଏଁ—ତୁମେ କାମକୁ ଯାଅ ତେବେ ।

ଆନନ୍ଦ—ହଉ, ନମସ୍କାର ।

ରସିକ—ନମସ୍କାର ।

(ଦୁହେଁ ଦୁଇଆଡ଼େ ଚାଲିଗଲେ)

---

## ଦଶମ ଦୃଶ୍ୟ

[ପଥ—ଅନ୍ଧୁଣୀ ଗାଇ ଗାଇ ମାଗି ମାଗି ଚାଲିଛି]

( ଗୀତ )

ଦାତା, କେ ଅଛ ଦୁଃଖର ସାଥୀ
ଭୋକ ଶୋଷ ଭୋଗି ବିକଳ ଜୀବନ ଗୋ—
ଚିର ମୋର ଦୁଃଖର ରାତି ।
ଘଡ଼ି ଘଡ଼ି, ଚମକ ଚମକ ଉଠେ ଜୀବନ—
ଦୁ ରୁ ଦୁ ରୁ ଥରେ ସତେ ଛାତି
ଜନମୁ ଏ ଜୀବନ ମୋର ଭାର ପରା
ନାହିଁ ମରଣ, ମୋ ଶାନ୍ତି ॥

(ଗାଇ ଚାଲିଗଲା)

---

## ଏକାଦଶ ଦୃଶ୍ୟ

[ମହାନଦୀ କୂଳ—ଚନ୍ଦ୍ର ପକ୍ଷ ରାତି]

ରେଣୁ—ଏତେ ଲେଟ୍ ? ଗାଡ଼ିରେ ବସି ମୋତେ ଯେଉଁ ବିରକ୍ତ ଲାଗିଲା ।

ରସିକ—ଲାଗିବାର କଥା, ମୁଁ ତା ଜାଣିଥିଲେ ବି ମୋର ଆଉ କିଛି ଉପାୟ ନାହିଁ ।

ରେଣୁ—କିଏ ସେ ଲୋକଟି ?

ରସିକ—ସେଇଟି ପରା ସାଗରର Vernacular Father—Tipycal ମରହଟି ! ଶୁଣ—ବସ ହାଁ—ମୁଁ ତାଙ୍କୁ ଅବଶ୍ୟ ସାଗରର Father ବୋଲି ଖଣ୍ଡେ ସିଗାରେଟ offer କଲି and that old idiot କହିଲେ କଣ ଜାଣ ? ସାଇବ ପିଲା, ସେ ମାରା ହୋଇଯିବେ ।

ରେଣୁ—ବାବା, ଏତେଟା । ଏଇ ତା’ ହେଲେ ସାଗରବାବୁଙ୍କ Father ? ମୁଁ ସେଇଥିପା ଭାବୁଚ, —ଗାଡ଼ିଟାରେ ବସି ବସି । ଆମର ତ ସିନେମା ଯିବାର କଥା, ହଠାତ୍ ବାଟରୁ କାହାକୁ ଦେଖି ସାଗର ବାବୁ ଗାଡ଼ି ଅଟକାଇ ଫେରିଲେ—କାହିଁକି ? ଆଉ ତୁମେ ବ···

ରସିକ—ବାଧ୍ୟ, ସାଗରକୁ ଚୁପ୍ କରି ଗୋଟେ ସର୍ଟକର୍ଟରେ ବସାକୁ ତାର ବଦାୟ କରିଦେଇ, ମୋତେ ବୁଡ଼ାକୁ follow କରିବାକୁ ହେଲା । ତାଙ୍କୁ ବସାରେ ପହଞ୍ଚାଇ ଦେଇ ମୁଁ ଯେ କେମିତି ଆସିଛି, ଏଇ ଦୁଇ ତିନ ମାଇଲ ବାଟ—ସତେ ଯେମିତି ଗୋଟାଏ ନିଃଶ୍ୱାସରେ !

ରେଣୁ—ସାଗର ବାବୁ ତାହାହେଲେ ରହିଲେ । ଆମର ସିନେମା ଦେଖାଟା ବ···

ରସିକ—ଆମେ ଦୁହେଁ ନୋହିଲେ ଆଉଦିନେ ଆସିବା । ମୋର କିଛି ପଇସା ବ ବଞ୍ଚିଗଲା ।

ରେଣୁ—(ହସି) ହୁଁ, ଏତେ ଗ୍ରେଠା କେବେ ହେଲ, ଶୁଣେ ?

ରସିକ—ତୁମପାଇଁ ଅବଶ୍ୟ ନୁହେଁ । ସାଗର କଥା କହୁଛି—ଜାଣ ଘଟଣାଟା ? ଠିକ୍ ତୁମର ଶଠି ମୋତେ ଆନନ୍ଦ ଦେଲା ବେଳକୁ, ଘରୁ ମୋର ୯୦ ଟଙ୍କାର ଗୋଟିଏ M.O. ଆସିଥିଲା, ସାଗର ବ ମୋ ବସାରେ ବସିଥିଲା । ଏଣେ ତମର ହୁକୁମ—ତାଙ୍କୁ ଯାଗରେ ଆଣିବାକୁ ! ସେ ବ ଖାଲିହାତରେ ଆସୁଛି କେମିତି ? (ନୋଟ ଦେଖାଇବା)

ରେଣୁ—ତା’ପରେ ?

ରସିକ—ବାଧ୍ୟ ହୋଇ ତାଙ୍କୁ ମୋତେ ତିରିଶଟା ଟଙ୍କା ଦେବାକୁ ହେଲା, ଅବଶ୍ୟ ଧାର ନେଇଛି ।

ରେଣୁ—ସେ ପରା ଜମିଦାର ପିଲା ?

ରସିକ—ସତ ଯେ, Vernacular Fatherକୁ ତାର ଦେଖିଲ ତ, ସେ କଅଣ ଏତେ ଟଙ୍କା ଦିଏ ? ମାସକୁ ପଠାଏ ଜମା ପନ୍ଦରଟି ମୁଦ୍ରା । ସାଗର ବଡ଼ବଡ଼ ଲେଖା ଲେଖିରୁ କିଛି ପାଏ । ତା’ପର ବରାବର ମଝିରେ ମଝିରେ ମୋଠୁଁ ଧାର ନିଏ ।

ରେଣୁ—ନିଏ ମାନେ ?

ରସିକ—ନିଏ ମାନେ··ନିଏ । କେବେ କେବେ ଅବଶ୍ୟ ସୁବିଧା ହେଲେ ଦିଏ । ଗୁଡ଼, ସେସବୁ ବାଜେ କଥା—କହନା ଦେଖି ବେଳା, ଲୋକଟି କେମିତି ?

ରେଣୁ—ମନ୍ଦ ନୁହେଁ—ଅର୍ଥାତ୍ ବେଶ୍ ଗୋରା ତୋରା, ଗୋଲଗାଲ୍ ମୁହଁଟି । ଗାଏ ବେଶ୍ । ପଢ଼େ ବ ମନ୍ଦ ନୁହେଁ ।

ରସିକ—ଧେତ୍···

ରେଣୁ—ଆଉ କଅଣ ଶୁଣିବ ?

ରସିକ—ମୋ’ର ଯେମିତି ମନେହେଲା, ଲୋକ ସେତେ ସୁବିଧା ନୁହେଁ । ଆମେମାନେ ହସି ଖୁସି କଥାବାର୍ତ୍ତା କରୁଥାଉଁ ଆଉ ମୁଁ ବରାବର ମାର୍କ କରୁଛି—ସେ ଯେମିତି ଭାରି ଗମ୍ଭୀର,—ସତେ ଯେମିତି କିଏ ତାଙ୍କର ଶଏ ଷାଠିଏ ଧାରେ ।

ରେଣୁ—ସେଟା ତାର ନେଚର୍—ଟିକିଏ ଅଳ୍ପ ମିଶୁକ । ହଷ୍ଟେଲ ଟାଏ ଯେ—ଏତେ ପିଲ, ମୋ ଛଡ଼ା ବୋଧହୁଏ କାହାକୁ ସେ ବେଶି କଥା କହେ ନାହିଁ, ମିଶେ ନାହିଁ ବ ।

ରସିକ—ଅବସ୍ଥା କେମିତି ?

ରେଣୁ—ଖୁବ୍ ଭଲ, ବାପା ତାଙ୍କର ବାଲେଶ୍ୱରରେ ଡେପୁଟିକଲେକ୍‌ଟର । ଏକମାତ୍ର ଝିଅ । ଖୁବ୍ ଆଦରରେ ବଢ଼ାଇଛନ୍ତି ।

ରସିକ—ଓଃ । ସେଥିପାଇଁ ଟିକିଏ ଗର୍ବ ଅଛି ତାଙ୍କର !

ରେଣୁ—ନା, ନା, ମୋଟେ ନୁହେଁ । ସେ ଟିକିଏ ବେଶି ମିଶୁକ ଲୋକ ନୁହେଁ । କିନ୍ତୁ ଯାହା ସାଙ୍ଗରେ ମିଶେ,—ଏକାବେଳେ ପ୍ରାଣ ଦେଇ । ଟିକିଏ shy ।

ରସିକ—ନ ଆସିବାର କାରଣ ତେବେ···

ରେଣୁ—କିଛି ନୁହେଁ, ଲାଜ ।

ରସିକ—ଯାହାହେଉ ! ଏକ ଦଗରେ ଭଲ ତ ହୋଇଛି ।

ରେଣୁ—ମାନେ ?

ରସିକ—ଆମର ଗୋଟେ ବାଧା ହୋଇଥାନ୍ତା ।

ରେଣୁ—ଅର୍ଥାତ୍ ?

ରସିକ—ଅର୍ଥାତ୍ (ହସି) ଶ୍ରୀମତୀଙ୍କର ଏକାନ୍ତ ସାକ୍ଷାତରେ···

ରେଣୁ—ହୁଁ, ଏତେ ଦୁଷ୍ଟ !

ରସିକ—ଆଦୌ ନାଁ—ତୁମେ ଦେଖିପାର ଏଇ ଯମୁନା କୂଳ—(ନଦୀ ଦେଖାଇ) ଏଇ କଦମ୍ବ ମୂଳ, ଆକାଶ କୋଳରେ ଏଇ ଚନ୍ଦ୍ର—ଆଉ ତଳେ ତ (କୋଳକୁ ଟାଣି ନେଇ) ଚନ୍ଦ୍ରୋଦୟ । ଦେଖ ।

ରେଣୁ—ଯାଃ—ମୁଁ ଦେଖିବି ନାହିଁ (ମୁହଁ ଢାଙ୍କିଦେଲେ)

ରସିକ—ଠିକ୍ ତ ! ଠିକ୍ ଏଇ ଅବସ୍ଥା—(ଗାଇଲେ)

ଶ୍ୟାମ ପରଶେ ଧନୀ ରାଇ ହେମ ବରଣୀ
ଚନ୍ଦ୍ରମୁଖ ଆବରେ ଲାଜେ,
ଚଳ ଛଳ ଅଞ୍ଚଳ ଚଞ୍ଚଳ ଚଳ ଗୋ
(କିବା) ଜଳଘନେ ଦାମିନୀ ସାଜେ ॥

ରେଣୁ—ଜାଣେ ପରା ତୁମେ···
(କୋଳରୁ ଉଠିବାକୁ ଚେଷ୍ଟା)

ରସିକ—ହଁ, ତୁମେ···କଅଣ ? ସେଇଠୁ କହ ।

ରେଣୁ—କିଛିନାହିଁ ଯା—ମୁଁ କିଛି କହିବି ନାହିଁ ।

ରସିକ—ବା ରେ, ଏ ତ ବରାବର ମିଳି ଯାଉଛି— ଅକ୍ଷରେ, ଅକ୍ଷରେ । (ପୁଣି ଗାଇଲେ)

ଗୁମାନ କର ଗୋରୀ ଗୁରୁ ଦମ୍ଭାଧରୀ
ନ କହିଲେ ହସି ପଡେ କଥା ।

ରେଣୁ—ଆରେ···(ଉଠିବାକୁ ଚେଷ୍ଟାକଲେ)

ରସିକ—(ହସି)

କନକଲତାଟି ସତ ମାନେ କିଶୋରୀ ଗୋ
ଢଳାଇ ବସିଲା ପରା ମଥା

ରେଣୁ—ଛାଡ଼ (ଛଡ଼ାଇ ଉଠିବାକୁ ଚେଷ୍ଟା)

ରସିକ—ଅସମ୍ଭବ ଚେଷ୍ଟା—ସବୁଟା ଶୁଣିବାକୁ ହେବ ।

ରେଣୁ—ନାଁ ।

ରସିକ—ଅବଶ୍ୟ—ହଁ ।

ରେଣୁ—କଅଣ ଜବରଦସ୍ତି ?

ରସିକ—ପ୍ରାୟ,—to some extent.

ରେଣୁ—ନାଁ, ମୁଁ ଶୁଣିଛି, ମୁଁ ଜାଣେ ।

ରସିକ—କାହିଁ, ଶୁଣେ ।

ରେଣୁ—(ଗୀତ) କପଟ କପଟ ଶ୍ୟାମ ନଟବର
ମୁଖେ ମଧୁ ମଧୁ ହାସ,
ଅନ୍ତରେ ତା'ର ଗରଳ ଭରିଛି
ନାଗୀମର ତାର ଆଶ ॥

ରସିକ—(ହସି) ସତେ ?

ରେଣୁ—(ଅଳ୍ପ ଉଠି) ହୁଁ ।

ରସିକ—(ପୁଣି ଟାଣିନେବା ବେଳେ) ହୁଁ ?
( ପଟକ୍ଷେପଣ )

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ସାଗରର ବସା, ସାଗର ବସି ଚିଠି ଲେଖୁଥିଲା—ଆନନ୍ଦ ତା ପାଖରେ ଠିଆ ହୋଇଛି । ଚିଠି ଲେଖିସାରି, ଆନନ୍ଦକୁ ବଢ଼ାଇ ଦେଇ ସାଗର ତାକୁ ଗୋଟିଏ ଟଙ୍କା ବକ୍‌ସିସ୍ ଦେଉଛି]

ସାଗର—ସାବଧାନରେ ଚିଠିଟି ଦିଅ, ବୁଝିଲ ?

ଆନନ୍ଦ—ଆଜ୍ଞା, ସେ କଥା ମୋତେ କହିବାକୁ ହବ ନାଇଁ ସିଏ ଏକଲା ଥିବାବେଳେ ଦେଇଦେମି ।

ସାଗର—ହଁ, ଜବାବଟା ମୁଁ ଯେମିତି ଆଜ ପାଏଁ !

ଆନନ୍ଦ—ସେ ତାଙ୍କର ଦେବେ ସିନା ?

ସାଗର—ସେ ଠିକ୍ ଦେବେ ।

ଆନନ୍ଦ—ତା ହେଲେ, ମଅର କସ ଗୁଡ଼ ବଥଉଚ୍ଚ ? ଏଇ ଏତଳ ବାଟ ଆସି ପାରମି ନାଇଁ ନାଁ ? ସେତେ ରାତି ହଉ, ମୁଁ ମଅର ଆସିମି । ଆପଣ ଥିବେ ନାଁ ?

ସାଗର—ମୁଁ ତମକୁ ଅପେକ୍ଷା କରି ରହିଲି । ସିଧା ଭିତରକୁ ଚାଲି ଆସିବ—ବୁଝିଲ ?

ଆନନ୍ଦ—ଆଜ୍ଞା, ଏ ତ ମ' ଘର କଥା—କାହାକୁ କହିବାକୁ ଅଛି ନାଁ ପୁଚ୍ଛିବାକୁ ଅଛି ? ବରାବର ଚାଲି ଆସିମି । ନମସ୍କାର ।

ସାଗର—ହଁ, ନମସ୍କାର । (ଆନନ୍ଦ ଚାଲିଗଲା)

(ସାଗର ଗୁଣୁଗୁଣୁ କରି ଗୀତ ଗାଇ, ଲଫାପା ଖୋଲି ଚିଠି ପଢ଼ି ବସିଲା)

ଚଇଁଆ—(ଆସି) ରସିକ ବାବୁ ବସାରେ ନାହାନ୍ତି, କୁଆଡ଼େ ଯାଇଛନ୍ତି କେହିଁ ଜାଣନ୍ତି ନାହିଁ । ମଦନ-ବାବୁ ଆସିଛନ୍ତି ।

ସାଗର—ମଦନ ବାବୁ ?

ଚଇଁଆ—ଗହଣା ଦୋକାନୀ ।

ସାଗର—ଡାକ୍ ଡାକ୍ (ଚିଠି ବନ୍ଦ କରିଦେଲା)

ଚଇଁଆ—(ଚାଲିଗଲା)

ସାଗର—(ମଦନକୁ ଦେଖି) ଆସନ୍ତୁ, ଆସନ୍ତୁ, ଆପଣ ନିଜେ ଚାଲି ଆସିଲେ ନାଁ ? ମୋ ଚିଠି ପାଇଛନ୍ତି ତ ? ନମସ୍କାର ।

ମଦନ—ନମସ୍ତେ । ଆପଣଙ୍କ ଚିଠି ଭାଇକୁ ମିଳିଲା । ସେ ମୋତେ ପଠାଇଲା ।

ସାଗର—ସେଟା ମିଳିଲା ?

ମଦନ—ହଁ ତ ମିଳିଛି । ଫେଣ୍ ସେଟା ଏଟା କି ନାହିଁ, ଠିକ୍ ତ କହି ପାରୁନାହିଁ । (ପକେଟରୁ ଗୋଟିଏ କେସ୍‌ରୁ ଗୁଡ଼ିଏ ମୁଦି କାଢ଼ିଲା) ଦେଖନ୍ତୁ ତ ।

ସାଗର—(ମୁଦି ନେଇ ଦେଖି) ଏଇ ତ ପଢ଼ନ୍ତୁ ନାଁ, ବାବାଙ୍କ ନାଁ ଲେଖା ହୋଇଛି ।

ମଦନ—ଆପଣ ପଢ଼ି ଦେଖୋ, ଆମକୁ ତ ଉଡ଼ିଆ ମୁଡ଼ିଆ ଜଣାନାହିଁ ସାଗର ବାବୁ !

ସାଗର—ହଁ, ମଦନ ବାବୁ, ଏଇ ମୁଦି ।

ମଦନ—ତବ୍ ତ ଠିକ୍ ଅଛି । ଭାଇ କହିଲା ଆପଣଙ୍କର ଦରକାର ପଡ଼ିଲା ତ, ଲେଖି ପଠାଇଲା ନାହିଁ କାହିଁକି ? ଏକଶୋ ହେଲେ ବି ତ ହମେ ଦେଇ-ଥାନ୍ତା । ଏମିତି ମୁଦି ପଠାଇଲା କାହିଁକି ? ହମେ ତ ଆପଣଙ୍କୁ, ଆପଣଙ୍କ ପିତାଜୀଙ୍କୁ ଜାଣୁଛେ । ଏମିତି କାହିଁକି କଲା ?

ସାଗର—ସେ ଯାହା ହେବାର ହୋଇ ଯାଇଛି ମଦନ ବାବୁ ! (ଉଠି ଟଙ୍କା ଗଣି) ଷାଠିଏ ଟଙ୍କା ନିଅନ୍ତୁ ଆପଣଙ୍କର ମୂଳ—ଆଉ ସୁଧ କେତେ ହେଲା ଦେଖନ୍ତୁ ?

ମଦନ—ସୁଧ କଅଣ ?

ସାଗର—ସେଟା କେମିତି ହବ ? ମୁଁ ସେ ବନ୍ଧକ ମାଲଟା ମୁକୁଳାଇ ନେଉଛି ।

ମଦନ—ବନ୍ଧକ ମାଲ୍ ! (ଖାତା ଦେଖାଇଲା) ଏ ତ ବନ୍ଧକ ନାହିଁ । ୨୦ ତାରିଖରେ ବଟୀ ଏକ ସୋନା ମୁଦି ଓଜନ ଦେଢ଼ଭରି, ଦର ୫୪୦-୦୦ମୁତାବକ

୬୦ ଟଙ୍କା । ସବୁ ଜହରତ ଜମତ୍ତ ଟ୯୦-୦୦ମୋଟ ଟ୧୫୦-୦୦ ।

ସାଗର—ବଣ୍ଟୀ ? ମୁଁ ତ ବଣ୍ଟୀ କରନାହିଁ, ମୁଁ ଗୋଟିଏ ଲୋକ ହାତେ ବନ୍ଧକ ରଖି ୬୦ ଟଙ୍କା ଆଣିବାକୁ ଦେଇଥିଲି ।

ମଦନ—ତେବେ ଏ ରସିଦ ପଢ଼ୋ ।

ସାଗର—(ପଢ଼ିଲା)

ମଦନ—କଅଣ ଲେଖିଛି ଅଙ୍ଗେରଜରେ ?

ସାଗର—ଲେଖିଛି ବନ୍ଧସ୍ତ କରି ନଗଦ ୧୫୦ ଟଙ୍କା ବୁଝିନେଲି । (ମୁହଁ ରଖିଦେଲା ତଳେ)

ମଦନ—କେ ଲେଖିଛି ?

ସାଗର—ରସିକ ସୁନ୍ଦର ଦାସ ।

ମଦନ—ବାବୁ, ସେମିତ ରସିକ, ଉସିକ, କଅଣ ତା'ର ନାମ ହବ । ଯୁଅଚ୍ଚୋର, ଥାଣା ମେ ଦଓ, ଥାଣା ମେ ଦଓ ।

ସାଗର—ଏଥର ବୁଝିଲି । ତାକୁ ମୁଁ ଆଜକ ଦୁଇ ଦିନ ହେବ ୭୫ ଟଙ୍କା ଦେଇ, ମୁଦିଟା ମୁକୁଲାଇ ଆଣିବାକୁ କହିଛି । ତା'ପରେ ତା'ର ଆଉ ଦେଖାଇ ନାହିଁ ।

ମଦନ—ତାର ଘର ?

ସାଗର—ଘର କୋଉଠି ମଫସଲରେ । ତେବେ ଏଇଠି ତାର ବସା, ଛକୁଣ୍ଟା ଲେନରେ ଗୋଟେ ମେଶ୍‌ରେ ଥାଏ । ବି. ଏ. ପଢ଼େ ମୋ ସଙ୍ଗରେ ।

ମଦନ—ତୋ ବସାରେ ଦେଖୋ ।

ସାଗର—ଅନେକବାର ଗଲିଣି, ଲୋକ ବି ଫେରି ଫେରି ଆସୁଛି, ପତ୍ତା ନାହିଁ ତା'ର । ବାବାଙ୍କର ସେଇଟା । କେତେବେଳେ ନାଇଁ ନାଇଁ ପଚ୍ଚରି ଦିଅନ୍ତ ତ ଭାରି ମୁସ୍କିଲ ହେବ ।

ମଦନ—ତ ରଖୋ । ଆଉ ସେ ଯୁଆଚ୍ଚୋରକା ଖବର ଜଲଦି ଲଓ ।

ସାଗର—ଏତେ ଙ୍କା ତ ନାହିଁ । ମୁହଁ ରଖିବ କେମିତ ? ସେ ସେ ଏକାବେଳକେ ମୁଦିଟା ବନ୍ଧ ଦେଇଛି ।

ମଦନ—ଅପଣକେ କେତେ ଟଙ୍କା ଦେଲା ?

ସାଗର—ମୁଁ ତ ସେଇ ଟ ୬୦-୦୦ ଟଙ୍କା ପାଇଁ କହିଥିଲି ।

ମଦନ—ବାଃ, ସିଅଉ୍ ଟ୯୦-୦୦ଲେଲା, ଫେଣ୍ ଲେଲା ଟ୬୦ । ଶାଲାକୁ ଥାଣା ମେ ଦଓ ।

ସାଗର—ସେ ତ ଯାହା ହବ, ମୁଁ ଏଇନେ କରେଁ କଅଣ ?

ମଦନ—ଆପଣ ମୁହଁ ରଖୋ, ପିନ୍ଧୋ (ହାତରେ ପିନ୍ଧାଇ ଦେଲା) ହାମେ ଆପଣଙ୍କୁ ଜାଣୁ । ଏ ତରଣ ଟଙ୍କା ଆମେ ଲେଇ ଯାଉଛେଁ । ଫେଣ୍ ସେ ଶାଲା ଚ୍ଚୋରକୁ ଧରି ବାକ ଟଙ୍କା ପଛେ ଦେଇ ଦେବେ । ଖାତାରେ ଗୋଟେ ଲେଖି ଦିଅନ୍ତୁ ।

ସାଗର—କନ୍ତୁ ସଦ ତାକୁ ମୁଁ ନ ପାଏଁ, ହଠାତ୍ ତ ଆପଣଙ୍କ ଟଙ୍କାଟା ଦେଇ ପାରିବ ନାହିଁ ।

ମଦନ—ନ ହେଲା ଆଇସ୍ତେ ଆଇସ୍ତେ ଦେଇଦେବେ, ଆମେ ଆପଣଙ୍କୁ ଜାଣୁଛେଁ ।

ଚଇଁଆ—(ଦୌଡ଼ି ଆସି) ଅଜ୍ଞା, ରସିକ ବାବୁ ।

ସାଗର—ରସିକ ? କାଇଁ ?

ଚଇଁଆ—ଆମ ଦୁଆରେ କାହା ସଙ୍ଗେ କଥା ହଉଛନ୍ତ ।

ସାଗର—ତୁ ଯା ଯା, ଦେଖ୍ ସେ ଯେମିତ ଆସେ ।

(ଚଇଁଆ ଚ୍ଚଲଗଲା)

ମଦନ—କେ, ସେଇ ଚ୍ଚୋରଟା ନା ?

ସାଗର—ହିଁ, ମଦନ ବାବୁ, ଆପଣ ଟିକଏ ଆସନ୍ତୁ ତ, ଏଇ ଘରକୁ । ମୋ ଲାଗି ଅଉ ଟିକଏ କଷ୍ଟ କରିବାକୁ ହେବ । କଛି ମନେ କରନ୍ତୁ ନାହିଁ ।

(ମଦନକୁ ସାଙ୍ଗରେ ନେଇଗଲା)

ମଦନ—(ଯାଉ ଯାଉ) ନା, ନା, ଚ୍ଚଲନ୍ତୁ ।

(ସଙ୍ଗେ ସଙ୍ଗେ ଆସି ସାଗର ତା'ର ବସିବା ଯାଗାରେ ସାଂଟି ଶୀଘ୍ର କାଢ଼ି ଥୋଇ, ତା'ପରେ

ମନଯୋଗୀ ଗ୍ରନ୍ଥଟିପଣ ବନ୍ଧକାଢ଼ି ବସିଲ, ରସିକର ଆସିବା ବାଟ ଚାହିଁ )

ରସିକ—(ଆସି) ଏଇ, ମନୋପଯୋଗୀ ଗ୍ରନ୍ଥ !

ସାଗର—(କିଛି ନ ଜାଣିଲା ପରି ଫେରିଚାହିଁ) ଆରେ, ରସିକ, ତୋର ଦେଖାଇ ନାହିଁ !

ରସିକ—ଆଉ ଦେଖା ? ମୁଁ ତ ଘର ଅନ୍ତାଆରେ ପଡ଼ିଛି । ସାଗର – ମୋର ତ ବୁଦ୍ଧିବଣା, ଦୌଡ଼ ଦୌଡ଼ ମୋର ଚକଗୋଡ଼ ଉଡ଼ିଗଲାଣି । ଖିଆଇଲୁ ଆଗେ କପେ ଚା ଦେଖି ?

ସାଗର – ଅଚ୍ଛା ବସ, ବସ । ଚଇଁଆ ! ଚା' କର । ବେଗିକରି କରିଥା, ରସିକ ବାବୁଙ୍କ ପାଇଁ । ହୁଁ, କଥାଟା କଅଣ ରେ ?

ରସିକ—ତୋର ମୁଦ କଥା, ଟ୬୦ଙ୍କା ତ ମୂଳ, ଏଇ କେତଟା ଦିନପାଇଁ ତାକୁ ଟ୫ଙ୍କା ସୁଧ ଦିଆଗଲା-ମାନେ ୬୫ଟଙ୍କା, ତେବେ ବ ସେ କହେ, ହବନାହିଁ ଆହୁରି ୫ଟଙ୍କା ନେଲେ ମୁଦ ଦବ ।

ସାଗର – ମାନେ ୬୦ ଟଙ୍କାର ସୁଧ ୧୦ ଟଙ୍କା ?

ରସିକ—ଶୁଣୁଛୁ ତ ! ଆଉ କହିବ କଅଣ ?

ସାଗର—ଜବାବ ତ ଏମିତି ନ ଥିଲା ।

ରସିକ—ତା ମାନେ ସେ ବୁଝିଛି ତ, ଆମେ ତ ଆଉ ନାଲିସ୍ କରି ପାରିବା ନାହିଁ କି ଆମ ହାତରେ ବି ନାଲିସ୍‌ର ପ୍ରମାଣ ପାଇଁ କିଛି ନାହିଁ । ମୁଁ ତ ଭୁଲ କରିଛି ଭାଇ ।

ସାଗର—ତୋର ଭୁଲ କଅଣ ?

ରସିକ – ବନ୍ଧକ ଦେଇ ଗୋଟେ ରସିଦ ଆଣିଥିଲେଇ କାମ ଶେଷ ।

ସାଗର – ନ ହେଲା ଅବା, ବିଶ୍ୱାସରେ ଫେର୍ କାମ ହେଉଚି ତ !

ରସିକ—ଶଳା, ଚୋଠା···–ଏକଦମ୍ ମୁହଁକୁ ଚିକିଏ ଚାହୁଁ ନାହିଁ ରେ । ତୁ ଦେଲୁ ପାଞ୍ଚଟା ଟଙ୍କା, ମୁଁ ଯାଏଁ ଆଗେ ।

ସାଗର—ଚା' ଖାଇବୁ ଯେ !

ରସିକ—ଆଉ ଚା' ? ଯାଃ, ମନଟା ମୋର ଏକଦମ ଖରାପ ହୋଇଯାଇଛି । ଦୁନିଆରେ ଏଡ଼କ ଅବିଶ୍ୱାସୀ ଲୋକ ଅଛନ୍ତି ? ମା ଲକ୍ଷ୍ମୀ କେମିତି ତାଙ୍କୁ ଏ ଧନ ଦୌଲତ ଦେଇଛନ୍ତି, ମୁଁ ସେଇକଥା ଭାବୁଚି ! ଦେ, ଦେଲୁ ଟ୫ଙ୍କା । ମୁଁ ଜିନିଷଟା ନେଇ ଆସେଁ ।

ସାଗର—ତୁ ମଦନ ବାବୁ କି ମାଧବ ବାବୁଙ୍କୁ ମୋ ନାଆଁଟା କହିଲୁ ନାହିଁ । .

ରସିକ – ଆରେ ସବୁ କହିଛି, ଯେତେ ରକମ ବୁଝାଯାଇ ପାରେ । ସେ ଶଳା ମଦନା ଯାହା—ଶଳା ମାଧିଆ ସେଇଆ ।

ସାଗର—ହୁଁ ।

ରସିକ —ତୁ ଦେଲୁ । ସେ ଯାହା ତ ହେବାର ହେଲାଣି । ଚୁପ୍‌ହୋଇ ବସିଗଲୁ କଅଣ ମ ?

ସାଗର—ନହାତି ତାହାହେଲେ ଟଙ୍କା ପାଞ୍ଚଟା ନ ଦେଲେ ମୁଦଟି ନ ମିଳେ – ନାଁ ?

ରସିକ—ଆଉ କେମିତି ? ଚୁଟି ତ ପର ହାତରେ । ଆମର ଆଉ ଗତି କଅଣ ଏତେବେଳେ ?

ସାଗର—ତୁ ତେବେ କଅଣ କହୁଛୁ ଯେ ? ମୁଦଟା ମିଳିବ ଟି ? ଜାଣୁ ତ ସେଟା ବାପା ଦେଇଥିଲେ । ସେ ନିଶ୍ଚୟ ପଚାରିବେ ।

ରସିକ—ଜାଣେ ବୋଲି ତ ଏତେ କଥା—ନୋହିଲେ ବଣିଆଁ ଜାତିକି ଏତେ ଖୁସାମତି କି ରସିକ କେବେ କରେ ?

ସାଗର—ଆଚ୍ଛା, ଦେଖିବା ।

ରସିକ – ଦେଖିବୁ କଅଣ ମ ? ବେଳ କ'ଣ ଆସୁଛି ? ସଞ୍ଜହେଲେ, ଫେର କହିବ କାଲିକି । ଆଉ କିଛି ଖେଳ ପୁଣି ନ ଖେଳୁ । ମୁଁ ସେଠି ଜଣକୁ ବସେଇ ଦେଇ ଆସିଛି ଯେ ଜବାବ୍ ଫବାବ୍ ସବୁ ଠିକ୍

କର ! ଖାଲି ଟଙ୍କାଟା ନେଇ—ମୁଦଟା ଆଣିଲେ, ଗୋଟେ ଚେଷ୍ଟାରୁ ମୁଁ ପାର ।

ସାଗର—ଟଙ୍କାର ଯୋଗାଡ଼ କରେଁ, ପାଖରେ ତ ମୋର ଆଉ ଟଙ୍କା ନାହିଁ । ଅଚ୍ଛା; ମୁଁ ଖଣ୍ଡେ ଚିଠି ସେ ମଦନବାବୁ ପାଖକୁ ଦଉଛି; ତୁ ତାକୁ ଦେଇ, ମାଲଟା ନେଇ ଆସିଥା; ପରେ ନ ହେଲେ ତାକୁ ଟଙ୍କା ପାଞ୍ଚଟା ଦେଇଦେବ ।

ରସିକ—ସେ ଶଳା ତ ଆଉକ ଓ୍ବେର ! ଯାବତ୍ ଗୋଳମାଳ ସେ ହାଉ । ନା—ବାବୁ, ତୁ ସେ ଶଳାକୁ ଚହ୍ନି ନାଉଁ ।

ସାଗର—ତୁ ତାକୁ ଚହ୍ନିଚୁ ତ ?

ରସିକ—ହାଡ଼େ ହାଡ଼େ ।

ସାଗର—ଭଲକଥା···ମଦନବାବୁ !

ମଦନ—(ଭିତରୁ) କହନ୍ତୁ ।

ସାଗର—ଏଣେ ଆସନ୍ତୁ ତ ଟିକିଏ, ଆପଣଙ୍କ ଭଣେଇ ଡାକୁଛନ୍ତି ।

ମଦନ—(ଆସି ଠିଆହେଲ) ଏଇ ଲୋକ ନା ରସିକ ବାବୁ ?

ସାଗର—ଆରେ ! ଆପଣ ଚହ୍ନିପାରୁ ନାହାନ୍ତି ? ଆପଣଙ୍କ ଭଣେଇ ଯେ ! କରେ ରସିକ ! ତୁ ଚହ୍ନିପାରୁଚୁ ତ ? କେତେ ଟଙ୍କା ଆଉ ଦର୍କାର ତୋର, କହ, ମୁଁ ଦେଇ ଦେଉଚ୍ଛି । ଟଙ୍କା ନାଁ ? (କାନ ଧରି) କହ ! (ପାଞ୍ଚ ଗୁପଡ଼ ଏକ ଦୁଇ ଗଣି ମାଇଲା) Treacherous ! ମୁଦି କେତେକୁ ବନ୍ଧୀ କରିଚୁ ? ଟଙ୍କା କାହିଁ ? ମୁଁ ତୋ ତେ ବକବାକୁ ଦେଇଥିଲି ?

ମଦନ—ତୁମେ ଭଦ୍ରଲୋକ ନାଁ ! ମୁଦି ଆମକୁ ବନ୍ଧକ ଦେଇଛ, ନାଁ ବନ୍ଧୀ କରିଚ ?

ସାଗର—କରେ ! କହ !

ମଦନ—ଫକଉଟା ! ପଗ୍ଭରି'ବା ଲଭ କଅଣ ? ଏଟାକୁ ଥାଣାମେ ଦିଅ । ଗ୍ଭକରକୁ ପଠାଓ, ଥାଣାରେ ଖବର ଦେଇ ପୁଲିସ୍ ଜିମ୍ମା କର । ମିଚ୍ଛ ମିଚ୍ଛେ ଗୋଳ ମଗ୍ଭଇ ଫାଇଦା କଅଣ ?

ରସିକ—(ସାଗରର ଗୋଡ଼ଧରି) ସାଗର !

ସାଗର—(ଗୋଇଠା ମାରି) Treacheous ! ଯୁଆ-ଗ୍ଭେର ! ଧନେ ହେଲେ ତୋ ସଙ୍ଗରେ ଭାବଥିଲି ! ତୋ ଜୀବନଟା ମୁଁ ମାଟି କରି, ତୋର ବାପା ମାଆଙ୍କୁ କଷ୍ଟ ଦେବ ନାହିଁ । କେତେ ଟଙ୍କା ଆଉ ରଖିଚୁ—କାଢ଼ ।

ରସିକ—(ମନିବ୍ୟାଗ୍ କାଢ଼ି) ଟ୫୦ଙ୍କା ।

ମଦନ—ବାକି ଟଙ୍କାର ହାଣ୍ଡନୋଟ ଲେଖୋ ।

(କାଗଜକଲମ ଦେଲା)

ସାଗର—ରସିଦ ଷ୍ଟାମ୍ପ୍ ଯେ ନାହିଁ ।

ମଦନ—ଆମେ ଦେଖୁ, (ପକେଟରୁ ନୋଟବହି କାଢ଼ି) ଅଛି,·ଲଅନ୍ତୁ ।

ସାଗର—ବାକି ଟଙ୍କାର ହେଣ୍ଡନୋଟ୍ ଲେଖ ।

ରସିକ—(ଲେଖିଲା)

ସାଗର—(ପଢ଼ି) ଠିକ୍ ଅଛି । (ଷ୍ଟାମ୍ପ ମାରି) ସାଇନ୍ କର ।

ରସିକ—(ସାଇନ୍ କଲା)

ସାଗର—ଟଙ୍କାଟା ଯଲ୍‌ଦ ନ ଦେଲେ—ନାଲିସ କରୁ । ଯା, ଖବରଦାର । ଏ ଦୁଆର ଯେମିତି ଆଉ ନ ମାଡ଼ୁ । ଯା—Please walk out (ଧକ୍‌କା ଦେଇ ପେଲି ଦେଲାବେଳକୁ ଚେଣ୍ଡୁ ଚଇଆଁ ଗ୍ଭ' ନେଇ ଆସୁଥିଲା,—ରସିକ ଦେହ ବାଜି ଗ୍ଭ' ଢଳିଗଲା ଓ ସେ ଚମକି ପଡ଼ିଲା ।)

ରସିକ—(ଚମକି) ଓଃ !

ଚଇଆଁ—ଗ୍ଭ'···

(ରସିକ ଗ୍ଭଲିଗଲା ଗୃହିଁ, ସାଗର ଓ ମଦନଦୁହେଁ ହସି ଉଠିଲେ ।)

---

## ଦ୍ୱିତୀୟ ଦୃଶ୍ୟ

[ ସାଗରର ଗାଆଁ ଘର—ସାଗରଙ୍କ ବୌ ଗଳ-ବସ୍ତ୍ରରେ ତୁଳସୀ ଚଉରା ପାଖେ ଠାକୁରଙ୍କୁ ପ୍ରଣାମ କରୁଥିଲେ—ଗୁମାସ୍ତା ତାଙ୍କୁ ଅପେକ୍ଷା କରଥିଲେ ସାଗରର ବିବାହ ପ୍ରସ୍ତାବ ପକାଇବାକୁ ]

ସାଃ ବୌ—(ପଛକୁ ଫେରି) ରଘୁନାଥ, କଅଣ ?

ରଘୁନାଥ—ଅସିଥିଲି ଯେ ଗୋଟେ ଖବର ନେଇ, ଆପଣ ପୂଜା ସାରନ୍ତୁ···

ସାଃ ବୌ—ସରିଲାଣି, ଖାଲି ଚଉରାରେ ପାଣିଦେବି। (ଚଉରା ମୂଳେ ପାଣି ଦେଲେ, ଚୂରିପାଖ ବୁଲି ପ୍ରଣାମ କଲେ) କହ।

ରଘୁ—ଆପଣ ଘରକୁ ଚାଲନ୍ତୁ।

ସାଃ ବୌ—ମୋରତ କେତେଖଣ୍ଡି ନଥି ଅଛି। ତମର କଅଣ କହିବାର ଏଇଠି ଶୁଣିଯାଏଁ।

ରଘୁ—ରାମଚନ୍ଦ୍ରପୁର ବକ୍ସି ଘର କ ଭଲ କରଣ, ଆପଣଙ୍କୁ ତ ଜଣାଥିବ ?

ସାଃ ବୌ—ତାଙ୍କର କୁଳୀନ ଘର। ଆମ ପିଉସୀଙ୍କ ନଣନ୍ଦ ପରା ତାଙ୍କ ଘରେ! ତାଙ୍କର କରଣ ଭଲ, ଜମିଦାର ଘର, ଚଳଣି ବି ଭଲ ବୋଲି ଶୁଣିଛି।

ରଘୁ—ବକ୍ସିଙ୍କର ଗୋଟିଏ ବୋଲି ଝିଅ। ସେଇଟିକି ସେ ଆଜି କାଲି ଧରଣର ଯୋଗ୍ୟ କରିଚନ୍ତି। କଟକରେ ବାଳିକା ସ୍କୁଲରେ ପଢ଼ୁଛି। ଆମ ସାନବାବୁଙ୍କ ପାଇଁ କଲେ କେମିତି ହୁଅନ୍ତା ?

ସାଃ ବୌ—ଗୋଟିଏ ବୋଲି ତ ଆଖି ମୋର, ପାଠ ଶାଠ ପଢ଼ିଆ କରଣ୍ଯାନିଅଣୀ ବୋହୂଟିଏ ହେଲେ ସିନା ଆମ ମହତ। ଦେଖି ଶୁଣି କରିବା। ପୁଅ କୋଉ ଅବା ବୁଢ଼ା ହୋଇ ଯାଉଚି ? କୋଡ଼ିଏ ପୂରି ଏକୋଇଶ ତ ତାକୁ ହେଲା ମୋଟେ।

ରଘୁ—ବକ୍ସି ଘରୁ ଜଣେ ଭଲଲୋକ ଅସିଛନ୍ତି। ଆଗେ ତାଙ୍କଠୁଁ ବୁଝା ସୁଝା କରନ୍ତୁ। ସମ୍ପତ୍ତିବାଡ଼ ଢେର ତାଙ୍କର। ହ'ଇଲ୍କା ଯାକର ଆମ ସାନବାବୁ ହେବେ ମାଲିକ।

ସାଃ ବୌ—ସବୁ ହବ ଯେ, ଧନ ନେଇ ତ ସଂସାର ଚଳିବ ନାହିଁ ଆମର ଖାଲି। ଫେର୍ ବୋହୂଟି ସୁନ୍ଦର ହୋଇଥିବ। ଆଉ ଆଜକାଲି କାଳ ତ ଜାଣୁଚ। ପୁଅର ମନ ମାନିଲେ ସିନା!

ରଘୁ—ଆପଣ ଥରେ ସେ ମଧ୍ୟସ୍ଥଙ୍କଠୁଁ ସବୁ ବୁଝନ୍ତୁ, ତା'ପର ଯାହା ହବ କରିବେ ସିନା ?

ସାଃ ବୌ—ସାଆନ୍ତ ତ ଇଲ୍କାରୁ ଫେରି ନାହାନ୍ତି। ତାଙ୍କୁ ବସା ସଖା ଦିଅ, ଅଟକାଅ, ସାଆନ୍ତ ଅସନ୍ତୁ। କଥା ହେଲା ଉତ୍ତାରୁ ଯାହା ହେଲେ କରିବାକୁ ହେବ। ବାଡ଼ିଅ ପୁଅକୁ ବାଡ଼ିଅ ଝିଅ—ଏମିତି କେତେ ଥାନରେ ପଡ଼େ। କଥା ପକାଇବାକୁ ମନା କଅଣ ? ସବୁ ଅଜ୍ଞେ, ଫେର୍ ମେଳକ ଯୋଗାଇବା ଆଜ୍ଞେ।

ରଘୁ—ଆପଣ ତା ହେଲେ ଆସନ୍ତୁ, ମୁଁ ତାଙ୍କର ରହିବାର ଯୋଗାଡ଼ କରିଦିଏଁ।

ସାଃ ବୌ—ହଉ। (ଠାକୁରଙ୍କୁ ମୁଣ୍ଡିଆ ମାରିଲେ)

---

## ତୃତୀୟ ଦୃଶ୍ୟ

[ ରେଣୁର ଘର। ଘର ଭିତରେ ରେଣୁ ଗୀତ ଗାଉଛି, ଶୁଣାଯାଉଛି···ବାହାରକୁ ମାତ୍ର ଦିଶୁ ନାହିଁ ବାହାରୁ। ଆଉ ଜଣେ ମଝିରେ ମଝିରେ କଥା କହି ରସଭଙ୍ଗ କରୁଛି— ସେ ରସିକ]

ରସିକ—ଏଇ ତ, ଗୀତ ଗାଇ ଗାଇ ମଠ କଲ। ଠିକ୍ ଛଅଟା ପଇଁ ଗୁଲଟରେ 'ଅଧିକାର' ସୋ ଆରମ୍ଭ। ବଡ଼ ଭିଡ଼ ହ'ଲ୍‌ରେ।

ରେଣୁ—ବା ରେ, ଗୀତ ଗାଇ ମୁଁ ମଠ କଲି ? ଗୀତ ଗାଇ ଭଲ କାମ ମୋର କିଛି ବନ୍ଦ ଅଛି ?

ରସିକ—ନା, ତୁମେ ଖୁବ୍ dutyful !

ରେଣୁ—ଫେର୍, ଥଟ୍ଟା ?

ରସିକ—ଅପରାଧ କ୍ଷମକାର—ବେଗେ ବାହାର ପଡ଼ । ଆଉ ଡେର କରନାହିଁ ।

ରେଣୁ—(ପୁଣି ଗୀତ ଗାଇଲା)

ରସିକ—( କିଛି କାଳ ପରେ ) ସରିଲା, ନାଁ ଫେର୍ ଚାଲିଲା ଗୀତ ? ବନ୍ଦ କର ଭଲା ।

ରେଣୁ—ଓଃ, ତମର ବାଧା ଘଟୁଛି ? Excuse । ମୁଁ ଭୁଲ କରିଛି ବାସ୍ତବିକ୍ । ତୁମକୁ ଭଲ ନ ଲାଗିବାର କଥା ।

ରସିକ—କାରଣ ?

ରେଣୁ—ଏଟା ଯେ ମୋର ଗୀତ ।

ରସିକ—ତା’ ମାନେ ?

ରେଣୁ—ମାନେ ତ ସ୍ପଷ୍ଟ ।

ରସିକ—କମିତି ?

ରେଣୁ—ମାନେ—ଏଟା ତ ଶ୍ରୀମତୀ ବେଳା ଦେବୀ ଗାଉ ନାହାନ୍ତି, ଗାଉଛି ରେଣୁ । ତୁମକୁ ଭଲ ନ ଲାଗିବାର କଥା । ଆଉ, ଭଲ ନ ଲାଗିଲେ କାନରେ ଅନୁଗ୍ରହ କରି ତୁଳାବଣ୍ଡା ଦେଇ ବନ୍ଦ କର । ଏକାବେଳକେ ବେଳା ଦେବୀଙ୍କ ରୁମ୍‌ରେ ଯାଇ ଖୋଲିବ ।

ରସିକ—ରେଣୁ ! ଜାଣ ? ବେଳାକୁ ମୁଁ…

ରେଣୁ—କେତେ ପ୍ରେମ କରେଁ ? ( ହସିଲା )

ରସିକ—ରେଣୁ…

ରେଣୁ—( ଆଗପରି ହସି ) ଆଉ ତାକୁ ପାଇବାକୁ ଚେଷ୍ଟା କରି ପରିଶେଷରେ ହତାଶ ହୋଇ ପ୍ରତିଦିନ ଥରେ ଲେଖାଏଁ ଆତ୍ମହତ୍ୟା କରେଁ । ( ହସିଲା )

ରସିକ—ରେଣୁ, ଏ ତମର ଭୁଲ୍ ଧାରଣା ।

ରେଣୁ—ମୁଁ ସବୁ ଜାଣେଁ, ବେଳା ଲାଗି ତୁମେ କମ୍ ସାଧ ସାଧନ କରିନ; କିନ୍ତୁ ସେ…

ରସିକ—ସେ ? ସେ କଅଣ ?

ରେଣୁ—ସେ ସାଗରର, ବରଂ ତୁମକୁ ଘୃଣା କରେ ।

ରସିକ—ଏ ମଧ୍ୟ ତମର ଭୁଲ୍ । ସେ କାହାର ନୁହେଁ—ସାମାନ୍ୟ love present ରେ ସେ ବଶ ।

ରେଣୁ—ତୁମେ ଚିହ୍ନିନାଁ ତାକୁ ରସିକ ବାବୁ !

ରସିକ—ବେଶ, ମୁଁ ଚିହ୍ନେ ନ ଚିହ୍ନେ, ତମ ସାଙ୍ଗେ ସେ ତର୍କ କରିବାକୁ ବର୍ତ୍ତମାନ ବେଳ ନାହିଁ । ( ଘଡ଼ି ଦେଖି ) ୬ଟା ବାଜିବାକୁ ୧୦ ମିନିଟ୍ । ଯାଏଁ, ଗାଡ଼ିଟା ଡାକି ଆଣେଁ, ତୁମେ ready ହୋଇପଡ଼ । ( ଚାଲିଗଲା )

[ ରେଣୁ ବାଟ ବନ୍ଦେଇଦେବାକୁ ଆସିଲା । ହାତରେ ଚିରୁଣୀ, ମୁଣ୍ଡ କୁଣ୍ଡାଇ କୁଣ୍ଡାଇ । ଫେରିଯାଇ ଗୀତ ଧରିଲା ଫେର୍ । ରସିକ ଯାଉ ଯାଉ ବାଟରେ ଭେଟିଲି ବେଳାକୁ ]

ରସିକ—( ଛିଡ଼ାହୋଇ ) ନମସ୍କାର ବେଳା ଦେବୀ !

ବେଳା—( ହାତରେ ଖଣ୍ଡେ ଚିଠି, ମୁହଁ ବଡ଼ ଗମ୍ଭୀର ) ନମସ୍କାର !

[ ବାଟ ଫେରାଇ ଘୃଣା କଲାପରି ଚାଲିଗଲା । ରସିକ ପଛରୁ ତାକୁ ଚାହିଁରହିଲା ଟିକିଏ ]

ରସିକ—( ପ୍ରତିହିଂସାପରାୟଣ ମୁଖରେ ) ଆଚ୍ଛା, ଚାଲିଗଲ ?

ବେଳା—( ରେଣୁର ଦୁଆର ମୁହଁରେ ଛିଡ଼ା ହୋଇ ) ରେଣୁ !

( ରେଣୁ ଗୀତ ଗାଉଥିଲା ବୋଧହୁଏ—ଶୁଣିପାରିଲା ନାହିଁ )

ବେଳା—ରେଣୁ !

ରେଣୁ—( ଭିତରୁ ) କିଏ ?

ବେଳା—ମୁଁ ବେଳା । ଟିକିଏ ବାହାରକୁ ଆସିପାରିବୁ ?

ରେଣୁ—( ଭିତରୁ ) ଆ, ଘରକୁ ଆ ।

ବେଳା—( ଗମ୍ଭୀର ମୁହଁରେ ) ନାଁ ଏଇଠି । ତୁ କହବୁ କ, ଏ ଚଠି କଏ ଦେଇଛୁ ? ( ଚଠିକୁ ଦେଖାଇ )

ରେଣୁ—( ପ୍ରବେଶ କରି ) ମାନେ ?

ବେଳା—ତୁ ଜାଣି ନାହୁଁ, ଏ କଥା କେବେ ନୁହେଁ । ତଥାପି ମୁଁ ତୋତେ ପଗ୍ଚରିବାକୁ ଆସିଛୁ ଯେ ଏମିତ ବେନାମୀ ଚଠି ଦେବାରେ ତୋର ସ୍ୱାର୍ଥ କଅଣ ? ମୋ ସାଙ୍ଗରେ ଏମିତ ଚ୍ଚେରେଷ ଖେଳ··· ( ଆଉ କହପାରଲ ନାହିଁ । )

ରେଣୁ—ଆରେ, ତୁ ପାଗଳୀ ହେଲୁ ନାଁ କଅଣ ? କ ଚଠି, କାହା ପାଖକୁ ?—ମୁଁ ଯେ କଛୁ ଜାଣେ ନାହିଁ ।

ବେଳା—ଜାଣୁ ନାହିଁ ?

ରେଣୁ—ନାଁ ।

ବେଳା—ତୋଠୁଁ ଏଭଳ ଉତ୍ତର ପାଇବ ବୋଲ ଜାଣି ସୁଦ୍ଧା ତୋତେ ପଗ୍ଚରିବାକୁ ଆସିଥିଲ । ଆଚ୍ଛା, ମୁଁ ଆସେ । ଗୁଡ୍ ବାଇ ରେଣୁ ! ମନେ ରଖ, ମୋର ନାଲମ୍ ଭଗବାନଙ୍କ ପାଖେ ରହଲ—(ରାଗରେ ଚ୍ଛଲ ଯାଉଥିଲ)

ରେଣୁ—ବେଳା, ବେଳା ! One word—ପଦେ, ପଦେ କଥା ।

[ ସେତେବେଳକୁ ଅଭିମାନ ଏବଂ କ୍ଷୋଭରେ ବେଳା ଆଖିରୁ ଲୁହ ଝରୁଥିଲ । ସେ ରେଣୁଆଡ଼କୁ ନ ଫେର ସେଇଠି ଠୁଡ଼ାହୋଇ ରହ ଲୁହ ପୋଛୁ ପୋଛୁ କହଲ ]

ବେଳା—କଅଣ ?

ରେଣୁ—ମୁଁ ଜାଣିବାକୁ ଚାହେଁ, କାହାର ସେ ଚଠିଟି ।

[ ବେଳା ହାତ ଟେକ ଦେଖାଇଦେଲ ନ ଫେର ]

ରେଣୁ—( ପଢ଼ି କହଲ ) To the Supdt. Girls' School Hostel.

ବେଳା—ଏଥର ବୋଧେ ବୁଝିଲୁ ସବୁ ।

ରେଣୁ—ସତ କହୁଛୁ,—ନାଁ । ଚଠିଟି ମୋତେ ଥରେ ପଢ଼ିବାକୁ ଦେ, କାହାର ହାତ-ଅକ୍ଷର ଦେଖେଁ ।

ବେଳା—ପୂର୍ବରୁ ବୋଧେ ଅନେକବାର ଦେଖିଛୁ, ତଥାପି ଦେଖିବାକୁ ଚ୍ଛହୁଁ ? ( ଦେଖାଇ ) ଦେଖ୍ ।

ରେଣୁ—( ଆଶ୍ଚର୍ଯ୍ୟ ହୋଇ ) ମୋତେ ବିଶ୍ୱାସ କର ବେଳା ! ଏ ମୋର ଲେଖା ନୁହେଁ, ମୋତେ ବିଶ୍ୱାସ କର । ଏ ଲେଖା ବୋଧହୁଏ··· ( ହାତ ଧରଲ )

ରସିକ—( ପଛରୁ ଡାକଲ ) ରେଣୁ !

ବେଳା—( ହାତ ଛଡ଼ାଇ ହଠାତ୍ ଚ୍ଛଲଗଲ )

ରେଣୁ—( ଫେର ଆସୁଥିବାବେଳେ ରସିକ ତା'ର ଦ୍ୱାରବନ୍ଧରେ ହାତ ଦେଇ ରହଲ )

[ ରସିକ ରେଣୁର ଦ୍ୱାର ବନ୍ଧରେ ହାତ ଦେଇ ଠିଆହୋଇଥିଲ । ସେ ରେଣୁର 'ବେଳା' ଏଇ ଡାକଟି ଶୁଣିଛୁ । ରେଣୁ ବେଳାକୁ ସେମାନଙ୍କର ସିନେମା ଯିବା କଥା ବୋଧହୁଏ କହୁଛୁ ମନେ କର, ପଗ୍ଚରଲ ]

ରସିକ—ତୁମେ ବୋଧହୁଏ ବେଳାକୁ ଆମମାନଙ୍କ ସିନେମା ଯିବା କଥା କହଲ ?

ରେଣୁ—( ଗମ୍ଭୀର ହୋଇ ) ନାଁ ।

ରସିକ—ତେବେ ?

ରେଣୁ—ସେ ଅନ୍ୟକଥା, ଉଠ । ( ରାଗରେ )

ରସିକ—( ହାତ ନ କାଢ଼ି ) ହଠାତ୍ ବଡ଼ ଗମ୍ଭୀର ଯେ ? ଆସ, ଗାଡ଼ ଠୁଡ଼ାହେଲ ବାହାରେ ।

ରେଣୁ—ଉଠ, ମୁଁ ଭିତରକୁ ଯାଏଁ ।

ରସିକ—ପୁଣି ଭିତରକୁ କାହିଁକ ? ଏତେବେଳଯାଏଁ ବ କାମ ସରଲ ନାହିଁ ?

ରେଣୁ—ନାହିଁ ।

(ରସିକର ହାତ ଧର ଦ୍ୱାରବନ୍ଧରୁ ଛଡ଼ାଇବାକୁ ବସିଲ )

ରସିକ—( ହାତ ଘଷୁ ଘଷୁ ) ତେବେ, ବୋଧହୁଏ ଆମ ଯିବାଟା ଆଜ ହଉ ନାହିଁ ।

ରେଣୁ—( ଭିତରକୁ ପଶି ଯାଉ ଯାଉ ) ବୋଧହୁଏ ନାଁ ।

( ଭିତରକୁ ଚାଲିଗଲା ହାତଠେଲି )

ରସିକ—ରେଣୁ ! (ରେଣୁ ଖଟରେ ପଡ଼ିଗଲା ମୁହଁ ମାଡ଼ି)

---

## ଚତୁର୍ଥ ଦୃଶ୍ୟ

[ କଟକର ବାବୁ ବଜାର—ସେଇ ଭିଖାରୁଣୀ ଗୀତ ଗାଇ ଗାଇ ଭିଖ ମୁଠାକ ପାଇଁ ଦାଣ୍ଡେ-ଦାଣ୍ଡେ ବୁଲୁଛି । କିଏ ଦେଉଛି, କିଏ ବା ନ ଦେଉଛି । ରସିକ ଏକ ବାଟରୁ ଆସିଲା । ଅନେକବେଳ ତାକୁ ଚାହିଁଲା ନିରେଖି । ମନେ-ମନେ କଅଣ ଭାବୁଥାଏ । ବେଳେବେଳେ ପକେଟ୍‌ରେ ହାତ ମାରୁଥାଏ । ଭିଖାରୁଣୀ ପାଖକୁ ଆସିଲା ସେ । ଭିଖାରୁଣୀକୁ ଝଣ୍ କରି ଦୁଇ-ଚାରିଟା ଅଧଲା-ପାହୁଲା ପକାଇଦେଲା । ]

ଭିଖାରୁଣୀ—ଭଗବାନ୍ ମଙ୍ଗଳ କରନ୍ତୁ । ( ପୁଣି ଗାଇଲା ଗୀତ, ରସିକ ତା ପଛେ ପଛେ ସେମିତି କିଛି ଚିନ୍ତାକ୍ତ ଭାବଭାବ ଯାଉଥାଏ )

( ଗୀତ )

ହେ ଧରମୀ ଦାତା, ଦେଇଯା’ ଅନ୍ଧୁଣୀରେ ॥ ୦ ॥
ଯାହା ନାହିଁ କେହି—ମୋ ବନ୍ଧୁ ନାହିଁ ଜଗତେ,
ତୁମେ ମୋ ଭାଇ ବନ୍ଧୁ—ଦୟା କର ଗୋ ମୋତେ,
ଏ ହାତେ ଦେଲେ ସେ ଧନ, ନ ଯିବ ଗୋ ପାଣିରେ ।

( ଗୀତଟି ସରିବାକୁ ଟିକିଏ ବାକି ଅଛି, ରସିକ ଡାକିଲା )

ରସିକ—ହେ, ହେ ।

ଭିଖାରୁଣୀ—( ଚୁପ୍ ହୋଇଗଲା )

ରସିକ—ତୁ ଏଡ଼େ ସୁନ୍ଦର ଗାଉଛୁ ! ଯେ ତୋ ଗୀତ ବୁଝିବ, ସେଠି ଗୀତ ଗାଇଲେ ହବ ସିନା ! ଦଶ-ପାଞ୍ଚ ଯୋଉଠି ପାଇବୁ, ସେଠିକି ଯାଉନୁ କାହିଁକି ?

ଭିଖାରୁଣୀ—କୋଉଠିକି ବାବୁ ?

ରସିକ—ଗୋଲବଜାର ମୋଡ଼—ଜାଣିଛୁ ?

ଭିଖାରୁଣୀ—ମୁଁ ଅନ୍ଧୁଣୀଟା ବାବୁ !

ରସିକ—ହେଲେ, ବୁଲୁ ନୁ ତ ଫେର୍ ଯାଡ଼େ ସ୍ୟାଡ଼େ, ଗୋଲବଜାର ମୋଡ଼—ହେଇ ଆଗରେ ମ ।

ଭିଖାରୁଣୀ—ବଜାର ଚିହ୍ନିନାହିଁ । ନାଆଁ ଜାଣିନାହିଁ ।

ରସିକ—ଅଚ୍ଛା, ମୁଁ କହିଦେବି । ଜଣେ ଜମିଦାର ବାବୁ ଆସି ସେଠି ଅଛନ୍ତି, ଭାରି ବଡ଼ ଲୋକ । ଗୀତକୁ ବଡ଼ ସୁଖ ପାଆନ୍ତି । ତୋ’ଠୁ ସେ ଗୀତ ଶୁଣିଲେ, ତୋ ଭାଗ୍ୟ ଫେରିଯିବ, ସେଠିକି ଯା ।

ଭିଖାରୁଣୀ—କେମିତି ଯିବି ବାବୁ ? କହିଲା ପରା ଅନ୍ଧୁଣୀଟା ।

ରସିକ—ଆଚ୍ଛା, ମୁଁ ଛାଡ଼ିଦେବି ତୋତେ ନେଇ ।

ଭିଖାରୁଣୀ—ଭଗବାନ୍ ତମର ବଡ଼ତ କରନ୍ତୁ ବାବୁ ?

ରସିକ—ହଁ, ଯିବୁ ସେ···ସେଠି ତାଙ୍କ ଚାକରବାକର-ଗୁଡ଼ା ଭଲ ଲୋକ ନୁହନ୍ତି । ମୁଠେ ଭିଖ ଦେଇ ତଡ଼ିଦେବେ ତୋତେ ।

ଭିଖାରୁଣୀ—ଆଉ ତେବେ କାହିଁକି ଯିବି ବାବୁ ?

ରସିକ—ଯିବୁ ନାହିଁ କାହିଁକି ? ଶୁଣ୍, ତୁ ଗୋଟିଏ କାମ କରିବୁ ।

ଭିଖାରୁଣୀ—ହଁ ବାବୁ, କୁହ ।

ରସିକ—କିଛି ବାଟ ମୁଁ ତୋତେ ଧରିଧରି ନଉଚି । ସେଠି ପହଞ୍ଚି ତୁ ଗୀତ ଗାଇବୁ । ମୁଁ ତୋତେ ଛାଡ଼ିଦେଇ ଚାଲିଯିବି । ତାଙ୍କ ଚାକର କେହି ଆସି ଯେବେ ଗଣ୍ଡେ ଭିଖ ଦେଇଯିବ, ତାକୁ ନ ନେଇ ବାବୁଙ୍କୁ ଡାକଦେବାକୁ ଜିଦ୍ କରି ପୁଣି ଗୀତ ଗାଇବୁ । ବୁଝିଲୁ ?

ଭିଖାରୁଣୀ—ହିଁ ବାବୁ ଗାଇବ ।

ରସିକ—ସେଇଠୁ ବାବୁ ଆସିଲେ ତୋତେ ପଚ୍ଚରିବେ । ମାଗିବୁ, ତୋର ଯାହା ମନ । ଆ, ହାତ ଧ—(ହାତ ବଢ଼ାଇଲା—ଭିଖାରୁଣୀ ରସିକର ହାତ ଧରି ଛୁଡ଼ାଦେଲା) ଚୁଲ୍ ।

ଭିଖାରୁଣୀ—(ଖୁସି ହୋଇ) କଅଣ ମାଗିବ ବାବୁ ?

ରସିକ—କହିଲି ପରା, ଯାହା ମନ ।

ଭିଖାରୁଣୀ—(ହସି—ଆନନ୍ଦରେ) ତୁମେ କହିଦିଅ--

ରସିକ—ତୋ ମନ ନାଁ ।

ଭିଖାରୁଣୀ—ନାଇଁ, ତମ ମନ ।

ରସିକ—ଆରେ ? ଆଚ୍ଛା ତ ! ମୋ ମନ କେମିତି ?

ଭିଖାରୁଣୀ—ହିଁ, ତମ ମନ ।

ରସିକ—ତୋ' ମନ ନାଁ···ତୁ କହନା ଆଗେ ଦେଖି, କଅଣ ମାଗିବୁ ?

ଭିଖାରୁଣୀ—(ହସି, ଭାବି) ମୁଁ—ଆସୁନେଇଁ···ନାଁ—ତୁମେ···

ରସିକ—ତୁ କହ । ପଇସା, କି ଲୁଗା, କି ଟଙ୍କା, କି ଖାଇବାକୁ—

ଭିଖାରୁଣୀ—(ଆନନ୍ଦରେ) ପଇସା, ପଇସା—(ଲୁଗାରେ ହାତ ମାରି) ନାଁ ନାଁ, ଲୁଗା ! ମୋର ଲୁଗା ନାଇଁ; ମୋର ଚିରାଲୁଗାଟା । ଲୁଗା, ଲୁଗା ମାଗିବ ।

ରସିକ—ଆଚ୍ଛା, ଲୁଗା ମାଗିବୁ ।

ଭିଖାରୁଣୀ—ନାଁ ନାଁ, ଟଙ୍କା ଟଙ୍କା, । ଘର କରିବ, ଆଗେ ମୁଣ୍ଡଗୁଞ୍ଜି ରହିଲେ ତ ଲୁଗା ।

ରସିକ—ହିଁ, ଟଙ୍କା ମାଗିବୁ । ତେବେ, ଚୁଲ୍ ।

(ଉଭୟଙ୍କର ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

[ ମଦ୍ଧ'ରାଜପୁର । କାହ୍ନୁଚରଣଙ୍କର ଘର । ଗୃହଦେବତାଙ୍କ ସମ୍ମୁଖରେ ପୁରାଣପଣ୍ଡା ବସି ଭାଗବତ ପାଠ କରୁଥିଲେ । ସାଗରର ପିତା କାହ୍ନୁ ଝୁଲିମୁଣିଧରି ମାଳ ଜପକରୁକରୁ ମଝିରେ ମଝିରେ ହରିନାମ କରୁଥିଲେ । ଗାଆଁର କେତେଗୁଡ଼ିଏ ଲୋକ ବସି ଭାଗବତ ପାଳି ଧରୁଥିଲେ । କିଛି ବେଳପରେ ଘୁମୁକରଣ ଆସି ପ୍ରଣାମ କଲେ । ହାତରେ ତାଙ୍କର ଖଣ୍ଡେ ଚିଠି । ପୁରାଣପଣ୍ଡାଙ୍କୁ ଟିକିଏ ପଢ଼ା ବନ୍ଦ କରିବାକୁ ଠାରି—]

କାହ୍ନୁ—ସେ କଅଣ ଘୁମୁକରଣେ ?

ଘୁମୁକରଣ—(ଆଲୁଅରେ ଦେଖି) ଚିଠି । ବଣି ବାରିକ ଏଇନେ କଟକରୁ ଫେରିଲା ଯେ, ସାନବାବୁ ଚିଠି ଦେଇ ପଠେଇଛନ୍ତି ତା' ହାତେ ।

କାହ୍ନୁ—କିଏ, ସାଗର ? ସେ ଭଲ ଅଛି ତ ?

ଘୁମୁ—ଆଜ୍ଞା ।

କାହ୍ନୁ—ଆଉ ଚିଠି କଅଣ ?

ଘୁମୁ—ଚିଠିଟା ମୋ ନାଆଁରେ ଲେଖିଛନ୍ତି ।

( ବଢ଼ାଉଥିଲେ )

କାହ୍ନୁ—ଅଃ, ଯା' ନାଆଁରେ ହଉ ହେ, କି ମିଳିବ ସେଥିରୁ ? ରଖ । ଏଇନେ ଚଷମା ଆ'ଣ ବାରଖଣ୍ଡି ବେଉଷା ! ତୁମେ ପଢ଼ିଦିଅ—ଶୁଣେଁ ।

ଘୁମୁ—ସେଇ ବାହାଘର କଥା ।

(ଚିଠି ପଢ଼ିଲେ ମନେମନେ)

କାହ୍ନୁ—ଫେର୍ ସେ କଥା କଅଣ ? ସେ ଜାଣନ୍ତି, ତାଙ୍କ ବୋଉ ଜାଣନ୍ତି । ଆଉ ସେ ବିଷୟ-ପ୍ରସଙ୍ଗ ମୋ ଆଗେ ପକାଅ ନାହିଁ । (ଟିକିଏ ତୁନି ରହି) ଆହେ ଘୁମୁକରଣେ ! ଆମର ଆଉ କେତେ ଦିନ ? ଆମେ ପୁଅକୁ ଦେଖୁ ଦେଖୁ ଚାଲିଗଲେ ଗଲା ।

ସେ ବୋହୂ ଦେଖା ସୁଖ ନୋହିଲା ପଛେ ଆମର ।

ପୂଃ ପଣ୍ଡା—ଏଁ ନାଁ ଗୋଟେ କଥା ? ରଜା ଆପଣ, ଲୋକେ ଝୁଡକପର ଝୁଣ୍ଡିଛନ୍ତି ସାନବାବୁଙ୍କ ମଙ୍ଗଳକୃତ୍ୟକୁ । କେତେ ଲୋକଙ୍କର କେତେ ଆଶା !

କାହ୍ନୁ—ବୁଝିଲ ନାଇଁକ ପୁରାଣ ପଣ୍ଡାଏ ! ଏବେ ହେଲା ଟୋକା-ଟୋକାଙ୍କ ଯୁଗ—ବାହାଘରେ ଆମର କିଛି ହାତ ନାଇଁ, ତାଙ୍କର ଯେଉଁଠି ମନ ସେଠି ସେମାନେ ବାହା ହେବେ । ପଠାଣ ହଉ, ଖିରସ୍ଥାନ ହଉ—ଗାନ୍ଧି ପରା କୁଆଡ଼େ କହୁଚନ୍ତି—ଜାତି-ଫାତି କିଛି ନାଇଁ । ଆନ୍ଧାରୁ କାନ୍ଧାରୁ, ପାଇଟି କରି ନ ପାରିବାରୁ—ପଞ୍ଚାଏ କନାଗଣ୍ଡୁଆ ଅଛନ୍ତି ଯେ ତାଙ୍କର ବେଉଷା ହେଲା ଏଇ କଥା ପ୍ରଚ୍ଛର କରିବା । ବାହା ନାଆଁ ଶୁଣିଲେ, ଅମେ ଆମ ବାପାଙ୍କୁ ଲୁଚୁଥିଲୁଁ । ଏବେ ପିଲାଏ କହୁଲେ, ଆମର ମତ ନ ନେଇ କନ୍ୟା ସ୍ଥିର କଲେ, ତମର ତମେ ବାହା ହେଇପଡ଼ । କାଳ ପରା ଓଲଟିଛି ?

ପୂଃ ପଣ୍ଡା—ସାଗର ବାବୁଙ୍କଠଉଁ ତ ଏକଥା ଅଶା କରି ହବନାଇଁ ।

କାହ୍ନୁ—ଅହେ, ହେଲା ତ—ହବନାଇଁ କଅଣ ? ଆମ ଭାଗ୍ୟ ସେ । ଏବେ ଆମେ କନ୍ୟାଘର ବୁଝାବୁଝି କରି ସବୁ ଠିକ୍ ଠିକଣା କଲୁଁ । ଜାତି ଯେମିତି, କନ୍ୟା ସେମିତି, ଗୋଟିଏ ବୋଲି ଝିଅ, ଇଲାକାବାଡ଼ ତିକିଂଶାଳାରୁ ଡେଙ୍କାନାଳ ଯାଏଁ । ସଦର ଜମା କୋଡ଼ିଏ ହଜାର । ଏ ଇଲାକା, ସେ ଇଲାକାର ମାଲିକ ହେଇ ବସନ୍ତେ । ଭାଗ୍ୟରେ ସେ ଭୋଗ ଥିଲେ ତ ! ଜନ୍ମ ସିନା ଆମେ ଦେଇଚୁଁ, କର୍ମ ତ ଦେଇନୁଁ ।

ଅନ୍ୟ ଜଣେ—ସାନବାବୁ ଏବେ ଆମର ଏ କଥାକୁ କଅଣ ହେଁଟି ଦଉଛନ୍ତି ?

ପୂଃ ପଣ୍ଡା—ପିଲା ବୁଦ୍ଧି ! କଅଣ କେତେବେଳେ କହି ଦେଇଥିବେ, ଏଗୁଡ଼ା ଧରିବାର ନୁହେଁ ସାଆନ୍ତ ! ବୁଝାଇଦେଲେ ବୁଝିଯିବେ ସେ ।

କାହ୍ନୁ—ନଷ୍ଟା ନାହିଁ ପରା କଲା ହେ ! ପଦରଦ୍ଦନ କାଲ ଗୋଟେ ଭଲ୍ଲୋକ ଏଠି ରହି ଗଣାପୋଗ୍ଯ ସବୁ ସରଲା । ରାଜଯୋଟକ । ସବୁ କରସାର ନଟନ୍ଦଦନକୁ ତ ଏ ଖବର ! କଅଣ ନାଁ—ସେ ତାଙ୍କର ମନୋମତ କରି ବାହାହେବେ । କେତେ ଫେରକାମୀ ! ମାନେ, ମାନେ ପରା ଭଲ୍ଲୋକଟାକୁ ବଦାୟ କରିଦେଲୁଁ । ଆଉ କଅଣ ? ଘୁଡ଼, ସେ ଆମ କର୍ମ । ହଁ, ଘୁମୁକରଣେ ! ପଢ଼ିବଟି, କଅଣ ଫେରି ଏଥର ଲେଖିଛନ୍ତି । ଆଃ, ସାର କଥାଟା ତାଙ୍କର କଅଣ କହୁଛଅ ହେ; ଚିଠି ରଖ । ସକାଳେ କଚେରିବେଳେ ଦେଖିବା । ଚିଠିରୁ ଗୋଟେ କଥା ତ ଶୁଣିଲେଁ—ସେ ଭଲ ଅଛି—ସନ୍ତୋଷ । ଆଉ ତାଙ୍କର ବାହାଘର କଥା—କଅଣ ଦେଖି କହିବ ଶୁଣେଁ—

ଘୁମୁ—(ପତ୍ର ପଢ଼ି ବସିଲେ) ଶ୍ରୀ ଇଷ୍ଟଦେବ ଶରଣ—

କାହ୍ନୁ—(ଖଟେଇ ହୋଇ) ଆଃ, ଇଷ୍ଟଦେବ ଶରଣ ! ଏତକ ହେଲେ ନେଗିଲେ ବୋଲି ! ଈଶାଣ ତ ପାଣି ପାଇବେ ନାହିଁ ! ଆଉ ଇଷ୍ଟଦେବ ? ଇଷ୍ଟଦେବ ତାଙ୍କର ସାଇବାଣୀ ।

ଘୁମୁ—ମୁକାମ କଟକ ।

କାହ୍ନୁ—ଆହେ, ହଁ ହେ । ଗଲା ଏ ଗୋଟେ ଫିପିକ, କାଗଜ ପଢ଼ି ବସିଲେ । କହିଲ ପରା—ସାର କଥାଟା କହ ।

ଘୁମୁ—(ଚିଠିପଢ଼ି) କହୁଛୁ । ହଁ । ଆଁ—ଏତ ଗଲା କନକ ପାଇବା କଥା—ତା'ପରେ ବିବାହ

କଥା । ଲେଖିଛନ୍ତି:—ବାପା ଓ ବୋଉଙ୍କ ମନରେ ମୁଁ କଷ୍ଟ ଦେଇଅଛି, ତାହା ମୁଁ ଯଥେଷ୍ଟ ଅନୁଭବ କରି ପାରୁଅଛି । କିନ୍ତୁ···

କାହ୍ନୁ—ହିଁ, ସେଇ କିନ୍ତୁ ଠିକ୍ କ ତ ଆମ କର୍ମରେ ବାପ ! ଆମେ ତତେ ସେ ବଙ୍ଗାପାଠ ପଢ଼େଇବାକୁ କଟକ ନ ପଠାନ୍ତି, କି ତୋ ସାଙ୍ଗ ଆମକୁ ସାଇବ ପିକା ନ ଯାଚନ୍ତି । ସେଇ ଦିନୁ ଆମେ ଜାଣିଲୁଣି ସାଗର ଆମର କେମିତି ଲୋକଙ୍କ ସଙ୍ଗେ ଚଳୁଛି, କଅଣ ହେଇଥିବ । ବାପା ମାଆଙ୍କ ମନ କଷ୍ଟ ! ଯେବେ ସ୍ୱା ବୁଝୁଛି—ଆଉ କିନ୍ତୁ ସେଠି କଅଣ ?

ପୁଃ ପଣ୍ଡା—ହିଁ, କଅଣ ଲେଖିଛନ୍ତି ?

ଘୁମୁ—କିନ୍ତୁ ମୁଁ ଯାହାଙ୍କୁ ନେଇ ଜୀବନଟା କଟାଇବି ତାଙ୍କୁ ଦେଖିଶୁଣି, ବୁଝି, ବିବାହ କରିବା ଉଚିତ ।

କାହ୍ନୁ—ତାଙ୍କୁ ନେଖ, ଏ ଘୁମୁକରଣେ, ତାଙ୍କୁ ନେଖ, ନେଖ—ତାଙ୍କ ବୋଉଙ୍କୁ ଆମେ ଦେଖି ଶୁଣି, ଚିହ୍ନି ତେବେଯାଇ ବାହା ହେଇଥିଲୁଁ, ଆମ ବାପାଙ୍କ ସଙ୍ଗେ କଳକରି । ଗୁଡ଼େ ଭବ୍ୟ ପଣିଆଁ ଲେଖା ସେ ! ପାଠ ! ପାଠ ପଢ଼ିଛନ୍ତି ! ମୋର ଯମା ମନ ନ ଥିଲା ହେ କଟକ ପଠେଇ, ସ୍ୱାଙ୍କୁ ବି. ଏ. ପଢ଼େଇ, ଏଇମିତି ଯୋଗ୍ୟର କରିବାକୁ ! ସବୁ, ସବୁ ତାଙ୍କ ମାଆ ସାଆନ୍ତାଣୀଙ୍କ ଗୁଣ । ପୁଅ ଆମର ପାଠ ପଢ଼ିବ, ଦୋପଟି ହବ । ସେ କାଳ ଗଲାଣି । ହେଇଟି ଏବେ ପାଆନ୍ତୁ । ମାଆଙ୍କ ଆଖିରୁ ଧାର ବନ୍ଦ ନାହିଁ, ପୁଅଙ୍କଠୁ ବାହାହେବା ବିଷୟ ଶୁଣି ।

ପୁଃ ପଣ୍ଡା—ଆହା ହା, ତାରପରି ସାଆନ୍ତାଣୀ—ଲକ୍ଷ୍ମୀ ! ତାଙ୍କ କର୍ମରେ ପୁଣି···

କାହ୍ନୁ—କର୍ମ—କର୍ମ ! ହିଁ, ପଢ଼ ପଢ଼ ।

ଘୁମୁ—ମୋର ବିଶ୍ୱାସ ଯେ ବାପା ଏ କଥା ଭଲକରି ବୁଝିବେ ।

କାହ୍ନୁ—ହିଁ, ବୁଝିଲୁଣି ।

ଘୁମୁ—ଓ ମୋତେ ସମର୍ଥନ କରିବେ ?

କାହ୍ନୁ—କଅଣ କରିବେ ?

ଘୁମୁ—କଅଣ ସମର୍ଥନ ବୋଲି ତ ଲେଖିଛନ୍ତି ।

କାହ୍ନୁ—ହଉ, ସେ ତାଙ୍କ ପାଠ । ଆମକୁ ତାଙ୍କ ମତ ବୁଝାଗଲା । ହଅ, ପଢ଼ । ସେଇଠୁ ?

ଘୁମୁ—ମୁଁ ଯେଉଁ ସ୍ଥାନରେ ମନୋମତ କରିଛି, ଲେଖୁଅଛି ।

ପୁଃ ପଣ୍ଡା—ହିଁ, ହିଁ, କୋଉଠି ? ଦେଖି କେମିତି ପ୍ରସିଦ୍ଧ ସ୍ଥଳ ।

କାହ୍ନୁ—ହିଁ ହେ—ଗୋଟେ ପାଣି କି ପଟାଶ ତ ହୋଇଥିବ ।

ପୁଃ ପଣ୍ଡା—ହଉ ହଉ; କଅଣ ପଢ଼—ପଢ଼ ।

ଘୁମୁ—ବାପାଙ୍କଠାରେ ଜଣା କରିବି, ମୋର ବିଶ୍ୱାସ ସେ ଏ ସମ୍ବନ୍ଧରେ ରାଜି ହେବେ ।

କାହ୍ନୁ—ରାଜି ନ ହୋଇ ବାପା ତ ବାପା, ତାଙ୍କ ବାପାଙ୍କର ଆଉ ଆପତ୍ତି ନାହିଁ ରେ ବାପା ! ଆମେ ନ ଶୁଣିକରି ରାଜି । ଜାଣିଲ ପୁରାଣ ପଣ୍ଡେ ! ସକାଳୁ କାଲି ତୁମେ ଠିକଏ ଆସ ।

ପୁଃ ପଣ୍ଡା—ଆସିବି ଆଜ୍ଞା !

କାହ୍ନୁ—ମୋଠୁଁ ଆଗ ଗୁଆ ଗୁଉଳ ନେଇ ମହାଦେବଙ୍କ ଦେଉଳରେ ମନ୍ତ୍ର ଗୁଣି କି ଯେମେତେ ସାଗରର ବାହାଘର ଆଗରୁ ଆମର ମରଣ ହଉ ।

ସମସ୍ତେ—( କାନରେ ହାତ ଦେଇ ) ଓଃ, ରାମ, ରାମ, କଅଣ ଏଗୁଡ଼ାକ କହିବା ହେଉଛନ୍ତି ସାଆନ୍ତେ ?

ପୁଃ ପଣ୍ଡା—ଘୁମୁକରଣେ, ନେଲ ସେ ଚିଠି କି—ବସ୍ତାନିରେ ବାନ୍ଧିଦେବ, ଥାଉ ।

କାହ୍ନୁ—ନାଇଁ, ନାଇଁ, ପଢ଼ । ପାଞ୍ଚ ଜଣ ବସିଛ, ଶୁଣିବ ।

ଘୁମୁ—କନ୍ୟାଟି ବର୍ତ୍ତମାନ ବାଲକାସ୍କୁଲରେ, ଇଂରାଜୀ ପଢ଼ୁଅଛି ।

କାହ୍ନୁ—ଅଃ ! କନ୍ୟାଟି ଇଂରାଜୀ ପଢ଼ୁଅଛି ! କଅଣ ତାଙ୍କ ବୋଉଙ୍କ ମେନେଜର ହେବେ ? ନାଁ ତାଙ୍କ ସାଙ୍ଗରେ ଇଂଗ୍ରିଜୀରେ କଥାବାର୍ତ୍ତା କହିବେ ? ନାଁ, ଚଳକ ଇଂରାଜୀରେ ନ କହିଲେ ସେ ବୁଝିନାହିଁ, କେମିତି ଗ୍ରତଡାଳ ରହିଯାଏ ? ବୋଇଲେ, "କନ୍ୟାଟି ଇଂଗ୍ରିଜୀ ପଢ଼ୁଅଛି" ! ଘୁମୁକରଣେ, ତାଙ୍କୁ ଦେଖ—ତମ ବାପ ମାଅଙ୍କୁ ଇଂଗ୍ରିଜୀରେ ପିଣ୍ଡ ବାଢ଼ିବ କନ୍ୟାଟି, ବେଶି ପଢ଼ୁ । ଆଉ କଅଣ ପାଶ୍ ଫାଶ୍ କଲଣି, ସେକଥା କହୁ ଦେଖି ନାହାନ୍ତି ? ଆ ହା – ହା !

( ଘଡ଼ିଏ ସମସ୍ତେ ଚୁପ୍ ରହିଲେ )

ଘୁମୁ—(ଶଙ୍କି ଶଙ୍କି ଶଠିପଡ଼ିଲେ) ତାଙ୍କ ପିତାଙ୍କ ନାମ ରାୟସାହେବ ଶ୍ରୀ ଚନ୍ଦ୍ରମୋହନ ପଟ୍ଟନାୟକ ।

କାହ୍ନୁ—ଓହୋ, ସ୍ପା ବୋଲ । ( ଆନନ୍ଦରେ ) ପୁଅ ମୋର ଜାତି ରଖିଛୁ ବୋଲ । ସାଗର ବୌ ! ସାଗର ବୌ କୁଆଡ଼େ ଗଲେ ? ( ଉଠିଲେ )

ପୁଃ ପଣ୍ଡା -- ସାଆନ୍ତାଣୀ ଭିତରଆଡ଼େ ଥିବେ ନାଁ ।

କାହ୍ନୁ—ଦୁର୍ଗାମାଧବ, ଦୁର୍ଗାମାଧବ ! ଓହୋ ରକ୍ଷା ହେଲି । ଏଣିକ ସେ ଯାହା ହଉ; ପୁରାଣପଣ୍ଡେ ! ତୁମେ କାଲ ସକାଳୁ ଆସ ।

ପୁଃ ପଣ୍ଡା—ଆସିବି ଆଜ୍ଞା !

କାହ୍ନୁ—ଆମ ଦୁହିଙ୍କ ମାନସିକ ଥିଲା ମଙ୍ଗଳାଙ୍କୁ କଳା କାଚ ପିନ୍ଧାଇ ମାଜଣା କରିବାକୁ । ଘୁମୁକରଣେ ! ତୁମେ କାଲି ସକାଳୁ ସକାଳୁ ବରାଦ କରିଦେବ, ହେତୁ କର । ମା ସର୍ବମଙ୍ଗଳା ! ମୋ ଗୁହାରି ଶୁଣିଲୁ ମା ।

( ହାତଯୋଡ଼ି ମୁଣ୍ଡିଆ ମାରି, ବସିଲେ )

ପୁଃ ପଣ୍ଡା—ସେଇଠୁ ଆଉ କଅଣ ପଢ଼ିବି ଟି ।

ଘୁମୁ—( ଆନନ୍ଦ ହେବାପରି ) ହଁ, ତାଙ୍କ ପିତାଙ୍କ ନାମ ରାୟସାହେବ ଶ୍ରୀ ଚନ୍ଦ୍ରମୋହନ ପଟ୍ଟନାୟକ ।

ପୁଃ ପଣ୍ଡା—କଅଣ ? କଅଣ ? ରାୟସାହେବ ? ଆଜ୍ଞା ! ( ଜମିଦାରଙ୍କୁ ଚକାଇ ) ସମୁଦି ରାୟସାହେବ ! କଅଣ ଏଇନେ ସାନବାବୁଙ୍କୁ ଖୁଣି ହଉଥିଲ ! ଧର୍ମ, ପୁରାଣ, ଦାନ, ଧ୍ୟାନ—ଏସବୁ କଅଣ ବୃଥା ? ଆପଣଙ୍କର ତ ଯାହା; ମାଆ ସାଆନ୍ତାଣୀଙ୍କ ଭଗତି ! ତାଙ୍କ ଅନ୍ନପୂର୍ଣ୍ଣା ହାତ ! ଏଇ ଘର ନଷ୍ଟ କରିଦେବେ ଭଗବାନ ? ଦୁଃଖୀ, ରଙ୍କୀ ବଞ୍ଚିବେ କିପରି ଆଉ ?

କାହ୍ନୁ—(ହସି) ମାଆ ମଙ୍ଗଳା ! ସତେ ତା'କଣ୍ଠରେ ବସିଲୁ ? ତା'ର ସଦ୍‌ବୁଦ୍ଧି ହେଲା ? ଓହୋ ! ପଢ଼, ପଢ଼ ଘୁମୁକରଣେ, ଗୋଟି ଗୋଟି କରି ସବୁ ପଢ଼, ମୁଁ ଶୁଣେଁ । ମୋ ଚଷମାଟା ? (ଖୋଜି) ହଉ ଥାଉ ଥାଉ, ଗୋଟି ଗୋଟି କରି ତୁମେ ସବୁଯାକ ପଢ଼ ।

ଘୁମୁ—ସେ ଡେପୋଟି ହୋଇଛନ୍ତି, ବର୍ତ୍ତମାନ ବାଲେଶ୍ୱରରେ ଅଛନ୍ତି । ତାଙ୍କ ନିବାସ ରାମଚନ୍ଦ୍ରପୁରରେ ।

କାହ୍ନୁ—ରହ ରହ, ରହିବଟି । ସାଗର ବୌ, ସାଗର ବୌଙ୍କୁ ଡାକିବଟି ଘୁମୁ କରଣେ !

(ସମସ୍ତେ ଉଠିଗଲେ ସାଗର ବୌ ଆସିବେ ମନେକରି)

ଘୁମୁ—(କିଛିଦୂର ଯାଇ କବାଟ ପାଖେ) ମଞ୍ଜି ! ଏ ମଞ୍ଜି !

(ଭିତରକୁ ଗଲେ)

କାହ୍ନୁ—(ଲୋକଙ୍କୁ) ଉଠୁଛ କାହିଁକି ? ପଦେ ଖାଲି ପଗ୍ଭରି ଦେବା କଥା—କରଣ ବୋଲି ତ ଜାଣିଲେଁ । ବାକି ରାମଚନ୍ଦ୍ରପୁର କରଣ ବୋଇଲେ, କେମେତେ କରଣ । ଆମ କୁଳୀନକୁଟି କି ନାହିଁ— ଏଇଆ ଯେ, ସେସବୁ ଖବର ସାଆନ୍ତାଣୀଙ୍କ

ଜଣା । କୋଉଠି କାହା ଘର, କେମିତି ଘର, କେତେ ପୁଅ ଝିଅ, ସବୁ ତାଙ୍କର ମୁହେଁ ମୁହେଁ । ଆମ ଓଡ଼ିଶା ଚକଡ଼ାର ସବୁ କରଣଘର ଗୋଇ ତାଙ୍କୁ ଜଣା ।

ପୁଃ ପଣ୍ଡା—କ, କୋଉ କଥାଟା ତାଙ୍କୁ ଅଜଣା କ ? ପୁରାଣରେ କଅଣ କମି ? ଅଠର ଖଣ୍ଡ ଘରଚ ତ ପେଟରେ । ସେଦିନ ଏବେ ରାମାୟଣ ଶୁଣୁ ଶୁଣୁ ଦେଲେ ମୋତେ ପଚ୍ଛରି:—କୁଆଁଙ୍କ ଆଖି କାହିଁକି ଟେରା । ସାଆନ୍ତ ଥିଲେ ବୋଲି ପାର ପାଇଗଲି; ନୋହିଲେ ତ ମୁ ହରକାବା ! ସେଇଦିନୁ ମୋ ଧାନା ମରଥାନ୍ତା ଲୋ ବାପା !

ଘିମୁ—(ଭିତରୁ ଆସି) ଅଜ୍ଞା, ସାଆନ୍ତାଣୀ ଆସୁଛନ୍ତି ।

ସମସ୍ତେ –(ପୁରାଣ ପଣ୍ଡାଙ୍କ ଛଡ଼ା) ମାଆଙ୍କୁ ଏଇଠି ଯୁହାର ହଉଚୁଁ ।

(ମୁଣ୍ଡିଆ ମାଇଲେ)

କାହ୍ନୁ—ସେଇପାଖେ ରହି କହନ୍ତୁ । ପଚ୍ଛରବ ଟି ଘିମୁକରଣେ, ରାମଚନ୍ଦ୍ରପୁର ଗାଆଁ ଜାଣନ୍ତି କ ?

ଭିତରୁ—ହଁ, କାହିଁକି ?

ଘିମୁ—ନାଇଁ ଜାଣ କ ?

ଭିତରୁ—ଜାଣେଁ ପରା କହିଲି ।

କାହ୍ନୁ—ସେଠିକା କରଣକୁଟୀ କେମିତି ?

ଭିତରୁ—ଭଅଲ ଯେ, କାହିଁକି ସେ କଥା ଆଉ ? ପୋଡ଼ା ଭୁଜଣରେ ସୁଆଦ ଖୋଜା କାହିଁକି ଯେ ?

କାହ୍ନୁ—ନାଇଁ, କେମିତି ଫେର୍ ଶୁଣିବା ।

ଭିତରୁ—କରଣ ଘର ବୋଲି ତ ସେଠି ବକ୍‌ସି ଘର ଗୋଟିଏ । ଆମ ସେସେଙ୍କ ମାମୁଘର, ଆଉ କଅଣ ?

କାହ୍ନୁ—ପୁରାଣ ପଣ୍ଡେ ଶୁଣିଲ ? (ହସି) ଏଥୁଁ ବୁଝ ।

ପୁଃ ପଣ୍ଡା—ମୁଁ କହୁନେଇଁ ? ସେ ପରା ତୁଳସୀ ପତ ଆଜ୍ଞା !

କାହ୍ନୁ—ଆଉ ନାଆଁଟା ? ଘିମୁକରଣେ ପଡ଼ି ଦବଟି । ଆମର ହେତୁ ରହିଲା ନାଇଁ ହେ ।

ଘିମୁ—ଶ୍ରୀ ଚନ୍ଦ୍ରମୋହନ ପଟ୍ଟନାୟକ ।

କାହ୍ନୁ—ଆଉ, ଆଉ, ଆଉ ସେ ପଦଟା ?

ଘିମୁ—ରାୟସାହେବ ଶ୍ରୀ ଚନ୍ଦ୍ରମୋହନ—

କାହ୍ନୁ—(ବାଧାଦେଇ) ହଁ, ହେ ! ହଁ ସେଇ ରାୟସାହେବ ସେଇ ପଦଟା । ସାଗର ବୌ !

ଭିତରୁ—ହଁ, ମୁଁ ଜାଣିଲି । ସେ ପରା ଆମ ବାପାଙ୍କର ମଉଳାପୁଅ ? ଦୋଷଟି ସେ । ଯେ—ମୁଁ ପରା ଥରେ କହିଲି ପୋଡ଼ା ଭୁଜଣରେ ଆଉ କ ସୁଆଦ ଥାଏ ବୋଲି ?

କାହ୍ନୁ—କାହିଁକି ? କାହିଁକି ?

ଭିତରୁ—କାହିଁକି ? କଅଣ ଏତେ ବେଗି ପାଶୋରି ଦେଲ ? ତାଙ୍କର ଝିଅକୁ ପରା ଆମ ସାଗର ପାଇଁ ପଡ଼ିଥିଲି, ରାଜଯୋଟକ । ସାଗର ମନାକଲା ଯୋଉଠି.........

କାହ୍ନୁ—ଏଇ ଏବେ ରାମଚନ୍ଦ୍ରପୁରୁ ? ମୁଁ ବୋଇଲି ଆଉ କୋଉ ପୁରୁ ପୁରୁ ବୋଲି । ସାଗର ବୌ ! ଚିଠି ପଡ଼, ଚିଠି ପଡ଼ । ସେଇଠି ସେଇଠି । ଯିଏ ଯାହାର—(ତରବର ହୋଇ ଗୁମାସ୍ତାଠୁଁ ଚିଠି ଟାଣି ନେଇ ଯାଉ ଯାଉ ଫେରି ଲୋକଙ୍କୁ କହିଲେ) ହଁ, ତମେ ସବୁ ତେବେ ଆସ ଆଜ ।

ସମସ୍ତେ—ଜୁହାର ଆଜ୍ଞା । (ଚାଲିଗଲେ)

କାହ୍ନୁ—ଜୁହାର, ଜୁହାର । (ଯାଉ ଯାଉ ଫେରି) ପୁରାଣ ପଣ୍ଡେ, ଆଜ ପୁରାଣ ବନ୍ଦ୍ରେଇ ଦିଅନ୍ତୁ, କ୍ଷମସ୍ୟାପି କର କର । (ଭିତରକୁ ଗଲେ)

ଘିମୁ—ତେବେ ମୁଁ ବିଦା ହଉଚ ଆଜ୍ଞା !

କାହ୍ନୁ—(ପୁଣି ଫେରି) କଏ ଘିମୁକରଣେ ! ହଁ କାଲି ସକାଳୁ ଆସ ।

ଘିମୁ—ଆଜ୍ଞା । (ପ୍ରଣାମ କରି ଚାଲିଗଲେ)

କାହ୍ନୁ—ପୁରାଣ ପଣ୍ଡାଏ......

ପୁଃ-ପଣ୍ଡା—ଆଜ୍ଞା, ହଁ ଦେଲି ।

(ଉଠି, ପୋଥି ବାନ୍ଧି ବସିଲେ)

କାହ୍ନୁ—ହଁ ବଢ଼େଇ ଦିଅନ୍ତୁ ।

(ପ୍ରଣାମ କଲେ ପୁରାଣକୁ ଓ ଗଲେ)

ପୁଃ ପଣ୍ଡା—( ଗୃହିଁ ) ଓଃ, ଦୁ'ଘଣ୍ଟା କାଳ ନଗେଇ ଥାଆନ୍ତା ମୋତେ ବକର ବକର କରି । ଯ୍ରମସ୍ୟାପି ଚଣେଭଙ୍ଗ···ଦିଅଁଙ୍କ ଅନୁଗ୍ରହ, ବେଗେ ଖଲାସ ପାଇଲି ଯାହା ହଉ ।

(ଶ୍ଳୋକ ପଢ଼ୁ ପଢ଼ୁ ପୋଥିରେ ଡୋରି ଭିଡ଼ଲେ)

ଭିତରୁ—ପୁରାଣ ପଣ୍ଡା ଆପଣେ ।

ପୁଃ ପଣ୍ଡା—ହଁ। ବୋଲ ।

ଭିତରୁ—ଅଜ୍ଞା ହେଲା କି କାଲି ସକାଳୁ ସ୍ନାନ ସାରି ଆସିବେ ।

ପୁଃ-ପଣ୍ଡା—(ହସି) ହଉ ।

ଭିତରୁ—ପୁରାଣଙ୍କୁ ରଖି, ଘିପଟା ନଦେଇ ଦେଇ ଯାଆନ୍ତୁ । ମୁଁ ଗଲି ।

ପୁଃ-ପଣ୍ଡା—ହଁ ଲୋ ମାଆ । ଘିପ ଆଉ ରଖୁଛୁ ? ତେଲ ସରିଯିବ ଯେ !

(ଫୁଙ୍କି ଲିଭାଇ ଦେଲେ)

---

## ଷଷ୍ଠ ଦୃଶ୍ୟ

(ଗୋଲ ବଜାର—ସାଗର ଘରର ଦ୍ୱାର ସାମନା । ରସିକ ସାବଧାନରେ ଆସି ଭିଖାରୁଣୀକି ଠିଆ କରିଦେଲା, ସାଗର ଘରୁ ଟିକିଏ ଦୂରରେ)

ରସିକ—( ଭିଖାରୁଣୀକି ) ଏଇଠୁ ଗାଇଗାଇ ଯା । ହେଇଟି ପାଖ । ଦିଶୁଛି ତ ।

ଭିଖାରୁଣୀ—କେମିତି ଜାଣିବି ବାବୁ ? ଆଉ ଟିକିଏ···

ରସିକ—ନାଇଁ ନାଇଁ, ମୁଁ ଆଉ ଯିବିନାଇଁ । ଗାଇଗାଇ ଯା, ଯୋଉଠି ତୋତେ ମୋ ତାଳି ଶୁଭିବ, ସେଇଠି ଠିଆ ହବୁ, ବୁଝିଲୁ ?

ଭିଖାରୁଣୀ—ହଉ ବାବୁ ।

(କିଛି ବାଟ ଗଲାପରେ ଗୁଣ୍ଡରେ ରସିକ ହୁସ୍ ହୁସ୍ କରିଲା, ପୁଣି ପଛରୁ ତାଳି ମାରିଲା )

ଭିଖାରୁଣୀ—(ରହିଯାଇ) ଏଇଠି ? ବାବୁ ? ଏଇଠି ଠିଆହେବି ? ଗଲ ଭିଆରି କି ? ବାବୁ, ଠିଆ ହେବି ନାଁ ଏଇଠି ?

ରସିକ—(ବିରକ୍ତ ହୋଇ ହାତ ଗୋଡ଼ ବାଡ଼ାଇ ହୋଇ ପୁଣି ତାଳି ମାରିଲା)

ଭିଖାରୁଣୀ—ବାବୁ, ଏଁ; ବାବୁ ?

ରସିକ—(ଯୋରରେ କହିଲା) ହଁ ହଁ; ବଦମାସ !

(ଭିଖାରୁଣୀ ଗୀତ ଆରମ୍ଭ କଲା । ରସିକ ପକେଟରୁ ପିସ୍ତଲ କାଢ଼ି ଲକ୍ଷ୍ୟ ସ୍ଥିର କଲା, ଠିକ୍ ସାଗର ଦ୍ୱାରକୁ ଲକ୍ଷ୍ୟ ପଡ଼ୁଛି କି ନାହିଁ)

(ଗୀତ)

ଭିଖାରୁଣୀ—

ହେ ଧର୍ମୀ ଦାତା; ଦେଇ ଯା ଅନ୍ଧୁଣୀରେ
ସାହା ନାହିଁ କେହି ମୋ—ବନ୍ଧୁ ନାହିଁ ଜଗତେ
ତୁମେ ମୋ ବନ୍ଧୁ ଭାଇ; ଦୟା କର ଗୋ ମୋତେ
ଏ ହାତେ ଦେଲେ ସେ ଧନ, ନ ଯିବ ଗୋ ପାଣିରେ ।

(ସାଗରର ଚାକର ଗୀତ ଶୁଣି ଆସିଛି ଭିତରୁ)

ଚାକର—ଏ ଅନ୍ଧୁଣୀ, ଏତେବେଳେ କଅଣ ମାଗୁଛୁ ? ଏ ରାତି ସଞ୍ଜରେ ତତେ କିଏ ଭିଖ ଦବ ? ଯା, ସକାଳୁ ଆସିବୁ ।

ଭିଖାରୁଣୀ—ଏଇଠି ଯୋଉ ବାବୁ ନ ଥାନ୍ତି, ସେ କୁଆଡ଼େ ଗୀତକୁ ସୁଖ ପାଆନ୍ତି ।

ଚାକର—କାହିଁକି ? କଅଣ ହେଲା କି ? ଏତେବେଳେ ବାବୁଙ୍କ ପଠାବେଲ ! ଯାଃ ।

ଅନ୍ଧୁଣୀ—ଟିକିଏ ତାଙ୍କୁ ଡାକିଦିଅ, ମୁଁ ତାଙ୍କୁ ମାଗିବି । କିଛି ଖାଇନାହିଁ କାଲି ରାତିରୁ । ପେଟ ପୋଡ଼ି ଯାଉଛି ।

ଶୁକର—ଏଁ ଃ, ବାବୁ ଅନେଇଁ ବସିଛନ୍ତ ତଳେ ଏଇନେ ! ନବୁ ତ ରହ । ମୁଁ ପଛକେ ଗଣ୍ଡେ ଭଖ ଆଣି ଦଉଚ ।

ଅନ୍ଧୂଣୀ—ନାଇଁ ବାବୁ, ତାଙ୍କୁ ଟିକଏ ଡାକଦଅ ।

ଶୁକର—ଆଲେ, ବାବୁ କଅଣ କରବେ ? କହଲ ପର ରହ । ମୁଁ ଭଖ ଆଣି ଦଉଚ ।

ଅନ୍ଧୂଣୀ—ନାଇଁ, ବାବୁଙ୍କୁ ଟିକଏ ଡାକଦଅ ।

(ଗୁଣି ଗୀତ ଗାଇଲା)

ସାଗର—(ନେପଥ୍ୟେ) କଅଣରେ ଚଇଁଆ ?

ଶୁକର—ଯାଉଛୁ ଆଜ୍ଞା—

(ଅନ୍ଧୂଣୀ ଗୀତ ଗାଉଥିଲା—ସାଗର ଆସି ଦ୍ୱାରରେ ଠିଆ ହୋଇ ଶୁଣୁଥିଲା—ରସିକ ଥିବା ଦଗରୁ ଗୋଟେ ଗୁଳ ଆସି ଅନ୍ଧୂଣୀ ଓ ସାଗର ମଝିରେ ଗୁଳଗଲା—ଅନ୍ଧୂଣୀ କାନରେ ହାତ ଦେଇ "ଆଃ !" ବୋଲ ଚତ୍କାର କର ବସି ପଡ଼ଲା)

(ପଟ୍ଟପତନ)

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ସାଗରର ବସା—ଗୋଟାଏ କରରେ ଅନ୍ଧୂଣୀ ଭିଖାରୁଣୀ ସ୍ଲେଟ ଖଟଟିରେ ଶୋଇଛି, ଆଖିରେ ତାର ପଟି ଭଡ଼ା ହୋଇଛି । ସାଗର ଗୁଣୁ ଗୁଣୁ ହୋଇ ଗୀତ ଗାଉଛି ଓ ବୁଲଯିବା ଲଗି ପ୍ରସ୍ତୁତ ହେଉଛି । ଅପେକ୍ଷା କରଛି ଚଇଁଆକୁ, ଯୋଡା ରଙ୍ଗ କର ଆଣିଦେବା ଲଗି । ]

ଅନ୍ଧୂଣୀ—ବାବୁ ?

ସାଗର—ହଁ ।

ଅନ୍ଧୂଣୀ—ମୁଁ କେଉଁଠି ବାବୁ ?

ସାଗର—ମୋ ପାଖରେ, ବସାରେ ।

ଅନ୍ଧୂଣୀ—ମୁଁ ଶୋଇଚ । ନାଁ ?

ସାଗର—ହଁ, ଶୋଇଚୁ ପର !

ଅନ୍ଧୂଣୀ—(ଖଟ ଅଣ୍ଡାଳ) ମତେ ଉଚ ନାଗୁଚ, କୋଉଠି ଶୋଇଚ ବାବୁ ?

ସାଗର—ଖଟ ଉପରେ ।

ଅନ୍ଧୂଣୀ—(ହସି) ଖଟ ଉପରେ ! ମୁଁ ଖଟ ଉପରେ ଶୋଇଚ ?

(ଉଠିବାକୁ ଚେଷ୍ଟା କଲା)

ସାଗର—(ବାଧା ଦେଇ) ଉଠ୍ ନା, ଉଠ୍ ନା, ଡାକ୍ତର ପର ମନା କରଛୁ ।

ଅନ୍ଧୂଣୀ—ମନା କରଛୁ ? ହଉ । ଏଇଟା କଅଣ ?

(ଗଦ୍ଦରେ ହାତ ମାର)

ସାଗର—ସେଟା ଗଦ୍ଦ, ତୁ ତା ଉପରେ ଶୋଇଛୁ ।

ଅନ୍ଧୂଣୀ—ମୁଁ ତା ଉପରେ ଶୋଇଚ ? ମୁଁ ପର ଖଟ ଉପରେ ଶୋଇଚ ?

ସାଗର—ହଁ, ଖଟ ଉପରେ ଶୋଇଚୁ—ଗଦ୍ଦ ଉପରେ ଶୋଇଚୁ ।

ଅନ୍ଧୂଣୀ—କେମିତ ? ଗୋଟାଏ ତ, ଏଇଟା ଗଦ୍ଦ ହେଲେ ଖଟ କାଇଁ ?

ସାଗର—ଖଟ ଉପରେ ଗଦ୍ଦ ପଡ଼ଚ ! ତୁ ତା'ଉପରେ ଶୋଇଚୁ । ତୋତେ ନରମ ଲଗୁନାହିଁ ?

ଅନ୍ଧୂଣୀ—(କର ନେଉଟାଇବାକୁ ଚେଷ୍ଟା କଲା)

ସାଗର—ନାଁ ନାଁ, ସେଇମିତ ଚତ୍ ହୋଇ ଶୋ—ଡାକ୍ତର କହଛୁ ।

ଅନ୍ଧୂଣୀ—(ଟିକଏ ଦେହକୁ ଝୁଙ୍କାଇ) ଭାର ନରମ, ଗଦ୍ଦ ଏଇମିତ ନରମ ?

ସାଗର—ତୁଳା ଅଛୁ ପର ତା' ଭିତରେ ।

ଅନ୍ଧୂଣୀ—(କର ତକଆରେ ହାତମାର ଚମକ) ଏଇଟା କଏ ଶୋଇଚ, ମୋ ପାଖେ ?

(ପେଲ ପକାଇ ଦେବାକୁ ଉଦ୍ୟତ)

ସାଗର—(ବାଧା ଦେଇ) ସେ କେହ୍ବ ନୁହେଁ । ଠକଆ ସେଇଟା । ତୁ ତା' ଉପରେ ମୁଣ୍ଡ—ନ ଦେଲେ ଗୋଡ଼ ରଖିବୁ ।

ଅନ୍ନପୂର୍ଣ୍ଣୀ—(ହସି ଆନନ୍ଦରେ) ସେ ଠକ ? ଏଇଟାକୁ ଠକ କହନ୍ତି ?

ସାଗର—ଠକ ନୁହେଁ; ଠକଆ । ଶୋଇପଡ଼ ତୁନିହୋଇ । ବେଶୀ କଥା କହନା, ଆଖି ଖରାପ ହେବ । ଶୋଇପଡ଼ ।

ଅନ୍ନପୂର୍ଣ୍ଣୀ—ହଉ ।

(ସାଗରର ଚାକର ଚଇଁଆ ଆସି, ଯୋତା ରଖି ଦେଲା । ସାଗର ଆସି ଚୌକିରେ ବସିଲା ଯୋତା ପିନ୍ଧିବାକୁ)

ଚଇଁଆ—ନଗିଆ ପାନବାଲା କହୁଚି, ସେଦିନ ସଞ୍ଜରେ ଯେ ଗୁଳି ମାଇଲା; ତାକୁ ସେ ଦେଖିଛି । ତା ଦୋକାନ ପାଖେ ଠିଆ ହୋଇ ଲୁଚିଥିଲା । ମାରି ଦେଇ ଦଉଡ଼ି ପଳାଇଲା ।

ଅନ୍ନପୂର୍ଣ୍ଣୀ—କିଏ ବାବୁ ?

ସାଗର—କେହ୍ବ ନାହିଁ, ତୁ ଶୁଅ । ଚଇଁଆ ! କେମିତି ଲୋକଟି ରେ ?

ଚଇଁଆ—ସାବନା ହେଇ, ବେଶୀ ଢେଙ୍ଗା ନୁହେଁ । ବାବୁଟିଏ, ପଢ଼ୁଆ ପିଲା ପରି । ସେ ତାକୁ ଅନେକ ବାର ଦେଖିଛି ବୋଲି କହୁଛି ।

ସାଗର—ଚିହ୍ନିଇ ପାରିବ ସେ ?

ଚଇଁଆ—କେଜାଣି ? ସହର ପରା !

ନେପଥ୍ୟେ—ବାବୁ, ଚିଠି ।

ସାଗର—ଡାକବାଲା ଡାକୁଚି ରେ । (ଚଇଁଆ ଗଲା-ବେଳେ ତାକୁ ବାଧାଦେଇ) ଆଚ୍ଛା, ତୁ ଥା' । ମୁଁ ତ ଯାଉଛି······

ଚଇଁଆ—ନଗିଆ ଦୋକାନ ହେଇ ଯିବେ ।

ସାଗର—(ଉଠି) ହଁ, ତୁ କବାଟଟା ଦେଇ, କାମ ଦେଖ ।

(ଚଇଁଆ କବାଟ ଦେବାକୁ ଗଲା)

---

## ଦ୍ୱିତୀୟ ଦୃଶ୍ୟ

[ ମହଦ୍‌ଗଜପୁର ଗାଁ ଦାଣ୍ଡ—ଜମିଦାର କାହ୍ନୁ ଚରଣ, ଘୁମୁକରଣ, ପୁରାଣପଣ୍ଡା ଓ କେତେକ ପ୍ରଜା କଥାବାର୍ତ୍ତା ହୋଇ ଆସିଲେ ।]

ପୁଃ ପଣ୍ଡା—ଆଜ୍ଞା, ତା ବୋଲି କଅଣ ଆପଣ ରଜା ନୋହିବେ, ନା ଆମେ ପ୍ରଜା ନ ହେବୁ ? ଆମ ତେପନ ପୁରୁଷ ତ ଏଇଠି ଗଲା—ପରଜା ହୋଇ ।

କାହ୍ନୁ—ଆରେ ବାବା, ସେ ତେପନ ପୁରୁଷ କଥା ତ ଅଜ ଆଉ ନାହିଁ । ଆମରି ଭାଇ, ଆମରି ଭଗାରି । ଡାହାଣୀ ସେଇ, ଗୁଣିଆ ସେଇ, ପ୍ରଜା ଏ ମୋର ସୁନା ଥିଲେ ହେ । ବର୍ଷ ଦ୍ୱ'ଟାରେ ସବୁ ଗଲା ଓଲଟି । ନନ୍ଦ ନାଳ ,କେନାଲ, ଗଡ଼ିଆ, ପୋଖରୀ, ଇସ୍କୁଲ—ସବୁ ପରଜାଙ୍କ ପାଇଁ କଲି । ଯେତେବେଳେ ଯେ ଯାହା ବୋଇଲା—କୋଉଟା ଭଲା ମୁଁ ଊଣା କରିଛି ?

ଘୁମୁ—ସେଇଟା କରି ତ ଆଜ୍ଞା ଏ ଅବସ୍ଥା ? ମୁଁ ପରା ଜାଣେ—ଚିହ୍ନେ ସମସ୍ତଙ୍କୁ । ଆଗରୁ ମୁଁ ମନାକରି ନାହିଁ ? ରାଜ୍ୟ ସାରା ମଲେ ମଧ୍ୟ, ଆମ ଇଲାକାର ଭୂଇଁକି ମରୁଡ଼ି ବାଧା ନାହିଁ । କେନାଲ ହରଣୀ କଲେ, ସ୍ୱଚ୍ଛନ୍ଦରେ ପାଣି ମାଡ଼ିଲା କିଆରିକି । ପିଲା ଏ ତାଙ୍କର ସୁବିଧାରେ ପାଠ ପଢ଼ିଲେ । ଘରେ ପଖାଳ ତୋରାଣୀ ଖାଇ ଯୋଗ୍ୟହେଲେ । ଖାଇବାକୁ ନଅଣ୍ଟ ନୋହିବାରୁ, ପରା ଅମରମତ । ଆଉ ଦ୍ୱ'ଅକ୍ଷର ନେଖି ଶିଖିବାରୁ, କହି ଶିଖିବାରୁ ଗାଁ ଗାଁକେ ହୁଟ୍ ବୋଇଲେ ଚୁଟ୍···ଏ ସବୁ ସମିତି । ସବୁଥିର ଗୋଡ଼ ଆପଣ ।

କାହ୍ନୁ—ହଁ, ଆମେ ଯେତେବେଳେ ପ୍ରଜାଙ୍କ ସୁବିଧା ପାଇଁ ଏତକ କଲୁଁ; ଦୋଷୀ ତ ଆମେ ।

ଘୁମୁ—ନୁହେଁ ? ତା ନୋହିଲେ ଯୋତା ମଳି ମଳି ଯାହାର ହଦକ ଯାଇଛି ଏଇ ଦୁଆରେ, ତା'ର

ପୁଅ ଆମର ହୁଅନ୍ତା ବଇର ? କାହା ଦାନା କନାରେ ସେ ମଣିଷ ଆଜ ? ସେଇ ବନା ପୁଣି ବାହାର ଗାଁ ଗାଁ କେ ସଭାସମିତି କର ପ୍ରଜାଙ୍କୁ କହୁଛୁ ରାଜସ୍ୱ ଦିଅ ନାଇଁ । କାଲକା ଯୋଗୀ··· ମୁଣ୍ଡରେ ଜଟା ! କାଲ, କାଲ, ଆଜ୍ଞା । ସେ ବନା ପୁଣି ବୋଲାଉଛ···ନେତା ।

କାହ୍ନୁ—ହଇ ହେ ସତେ, ସ୍ୱେ ନେତା କଥାଟା କଅଣ ? ନେତା ବୋଲନ୍ତେ···ଖୋରଠାରେ ଯୋଉ କହନ୍ତି ନେଏତା ଦେଏତା ? ସେଇ ନେଏତା ସ୍ୱେ ? ନବାକୁ ନେତା ?

ସମସ୍ତେ—ଠିକ୍ କହୁଛନ୍ତି ଆଜ୍ଞା, ସବୁ ନବାକୁ—ନବାକୁ । ସ୍ୱାଡ଼େ, ରାଜସ୍ୱ ଦବାକୁ ନାଇଁ, ସ୍ୟାଡ଼େ ଆମେ ଗୁନ୍ଦା ଦେଇ ଦେଇ ଅଧା ପ୍ରାଣ ।

କାହ୍ନୁ—ଗୁନ୍ଦା ? କଅଣ ହଉଛ ସେସବୁ ?

ପୂଃ ପଣ୍ଡା—ଜଗନ୍ନାଥେ ଜାଣନ୍ତି । ଅଜ ସଭା ହେଉଛ··· କାଲି ପ୍ରଜା ମଣ୍ଡଳ ବସୁଚନ୍ତି—କୋଉଠୁ ଦିଲ୍ଲୀରୁ ଆସିବେ ଜଣେ ନେତା—ଏଇ କଥା ସବୁ ଲାଗିଛୁ । ଟଙ୍କାର କଅଣ ହିସାବ ନାଁ ପଦ ? ମାଇଲ ଘରେ ଭୂତ ନାଇଁ ଆଜ୍ଞା !

ଘିମୁ—ବାନା ବୋପାର ଯୋଉ କରଜ ଥିଲା ଆଉ ଅଧାଏ ଅଛି ? ତାକୁ ସୁଝି, ପକା ତୋଳ, ଏଇନେ ସେ ମହାଜନ । କମି ତା'ର ପଡ଼ୁଛି । ପ୍ରଜାଏ ଅନ୍ଧପର ଦେବାକୁ, ଆଉ ସେ ତ ନେଏତା ।

କାହ୍ନୁ—ସେଇଟା ପର କଅଣ ଇଂରେଜ ପଢ଼ାପଢ଼ି କରିଥିଲା ହେ ? ଗୃକର ବାକର ନ କର, ନେଏତା ହେଇ କେତେ ଦିନ ଏଇମିତି···

ଘିମୁ—ଗୃକର ବାକର କଅଣ ପଦାରେ ପଡ଼ୁଛି ଆଜ୍ଞା ? ସମସ୍ତେ ତ ପଢ଼ିଲେ ପାଠ, ସମସ୍ତେ ହେବେ ବାବୁ । ହାତ୍ତୀ, ପଠାଣ ସହିତେ ! ଏଡ଼କ ମୁଲକଟିଏ ! ଆଡିକାଟାରେ ଭରଣେ ଚାଉଳ ଫୁଟିବ କେମିତି ? ପାଞ୍ଚଟଙ୍କାର ପିଆଦାଗିର ନାଗି ଶହ ଶହ ଦର୍ଖାସ୍ତ । ଶିଳ ଶିଳପୋତା ଗଗନେ ଉଡ଼ୁଛନ୍ତି, ଶିମିଳ ତୁଳାକୁ ପଗୃରେ କିଏ ? ବନା କୋଉ ଗାଇର ଗୋବର ଯେ—ଗୃକରିଟାଏ କରିବ ? କୋଉଠି ମହମହ ବାସିବ ସ୍ୱେ ?—ଗୋବର ଗଦାର ପଦ୍ମ !

କାହ୍ନୁ—ହଉ ଭଲ, ପ୍ରଜାଙ୍କୁ ଖଜଣା ଦେବାକୁ ବନ୍ଦ କଲ, କର । ସେମିତି ସର୍କାରରୁ ଆମକୁ ଛାଡ଼ କରାଇ ଦିଅ । ତେବେ ସିନା ନେତା । ଅଜ ନ ହେଲେ କାଲି, ଏ କିସ୍ତି ନ ହେଲେ ଆର କିସ୍ତି । ରାଜସ୍ୱ କୋଉଠି କିଏ ନ ଦେଇ ଅଛି ? ସେମିତି ହେଲେ ରାଜ୍ୟ ରହିବ ?

ପୂଃ ପଣ୍ଡା—ଆଜ୍ଞା, ଆମେ ସବୁ ବୁଝିଲୁଣି ଯେ ! କବାଟ କଉଡ଼ ଚାଟି ଖାଇଲା ପର ଏସବୁ ରାଜସ୍ୱ ଧନ ଗୁନ୍ଦାରେ ଯାଉଛ । ବେଳସରିକ ଆମର ପିଠିରେ ଲଦା ହଉଛ । ଏ କିସ୍ତିରେ ଆଠଅଣା ଦେବାକୁ ସାଖ୍ୟ ନାହିଁ । ଆର କିସ୍ତିକି ହେବ ଟଙ୍କାଏ । ଜମିଦାର କଅଣ ଛାଡ଼ିବେ, ନାଁ ଅମେ ନ ଦେଇ ଜମି ଚଷିବୁ ?

ଘିମୁ—ସେ ରାଜା ନ ହେବେ ନାଁ ଆମେ ପ୍ରଜା ନ ହେବୁଁ ? ଓଲଟି ଯେତକ ସୁବିଧା ପାଉଥିଲ, ସେତକ ଗଲା । ଜମିଦାରଙ୍କୁ ସିଆଣିଆ କରିବା କଥା ସ୍ୱେ । ହଇଏ, ବାପ ପାଖେ ଅଳ କର ସିନା ପୁଅ ଗେଲବସର ହବ । ଆଉ ଏ ଯବରଦସ୍ତି ?

ପୂଃ ପଣ୍ଡା—ଆମେ ଯିଦ କଲେ କଅଣ ଜମିଦାର ଛାଡ଼ିବେ ?

କାହ୍ନୁ—ସେ ତ ଯାହା ହବ ହବ । କିଏ କାହାକୁ ସହଜେ ଛାଡ଼ିଦିଏ ଯେ ଆମେ ଦବୁ ? ହଉ, କେତେ କାଳ କିଏ କଅଣ କରୁଛନ୍ତି, କରିଯାଆନ୍ତୁ । ଗୁଡ଼େ ଅକର୍ମୀ—କିଛି କାଳ ମାର ପିଠି ଖାଇ ବଞ୍ଚଯା'ନ୍ତୁ । ଆମ ଧନ ଥୁଆ—ସୁଧେ ଅସଲେ । ଅଜ ଭଲରେ ମିଳନ୍ତା—କାଲି ମନ୍ଦରେ ମିଳିବ । ଛାଡ଼, ମୋର କହିବା କଥା କଅଣ ଶୁଣିଲଣି କି ?

ସମସ୍ତେ—କହିବା ହଉ ।

କାହ୍ନୁ—ସାନ ବାବୁଙ୍କ ବାହାଘର । ଆମର କିଛି ନାହିଁ ବୋଲି ତ ଦାଣ୍ଡରେ କେହି ଜାଣିବେ ନାହିଁ । ଏତେବେଳେ ତ ଗୃହଆଡ଼ ନଅଣ୍ଟ, ଯେ ତୁମେମାନେ କିଧି ପ୍ରକାରେ ଆମକୁ ସାହାଯ୍ୟ ହେବ କି ନାହିଁ ? ଏଇଆ ମୋର ପଚାରିବା କଥା । କଅଣ କହୁଛ ?

ପୁଃ ଚଣ୍ଡା—କହିବୁଁ ଆଉ କଅଣ ? ଯାହା ଯେମିତି ହବାର ତ କରିବୁଁ । ସେ ରଜା ନୁହନ୍ତି ନାଁ ଆମେ ପ୍ରଜା ନୁହଁ ? ସେ ବାପ ହେବେ ନାଇଁ ନା ଆମେ ପୁଅ ହେବୁ ନାଇଁ ? ସଞ୍ଜକୁ ଭାଗବତ ଘରେ ସମସ୍ତେ ଏକାଠି ହେଇ କାଲି ଉଆସଠି ହାଜର ହେବୁଁ । ଯାଅନ୍ତେ ଦାଣ୍ଡଟାରେ ଠିଆ ହୋଇ ରହିଚନ୍ତି, ଉଆସକୁ ଯାଆନ୍ତୁ ।

କାହ୍ନୁ—ହଉ, ଆସ ଗୁମୁକରଣେ ! ତାଙ୍କ ଇଚ୍ଛା । କଅଣ କରୁଚନ୍ତି କରନ୍ତୁ ।

ସମସ୍ତେ—(ପ୍ରଣାମ କରି ଚାଲିଗଲେ)

---

## ତୃତୀୟ ଦୃଶ୍ୟ

[ ଗାର୍ଲସ୍କୁଲ ହଷ୍ଟେଲ୍—ତଳ ମହଲାର ଜଣକିଆ ରୁମ୍ । ବେଲା ସେଠି ରହେ । ବଡ଼ ଝରକାଟିଏ ସେ ଘରେ । ରେଲିଙ୍ଗ୍‌ମାନଙ୍କ ମଧ୍ୟରୁ ଦୁଇଟା ଏପରି ଭାବରେ କଟା ଯାହାକି ସହଜରେ କଟା ବୋଲି ବୁଝା ପଡ଼ିବ ନାହିଁ । ସାଗର ଆଜି କାଲି ସେବାଟେ ଗଳି କରି ଯିବା ଆସିବା କରୁଛି । ରାତି ଏଗାରଟା ବେଳ ହେବ । ସେଦିନ ସାଗର ଆସିଚି ବେଳା ଘରକୁ । ଭାରି ଆନନ୍ଦରେ ତାକୁ ଆଜି ଗୋଟେ ଖୁସି ଖବର ଦେବ ସେ । ଦୁହେଁ ବସିଛନ୍ତି ଘର ଭିତରେ, ସଦର କବାଟ ବନ୍ଦ । ]

ସାଗର—ରସିକ ଯେ ଗୁଳି କରିଛି—ଆଉ ମୋତେ ଲକ୍ଷ୍ୟ କରି, ଏ କଥା ମୁଁ ଭାବିପାରୁ ନାହିଁ ଏକାବେଳେ ।

ବେଳା—କିନ୍ତୁ ମୋର କାହିଁକି ମନେ ହେଉଚି, କଷ୍ଟେ ସେ ରସିକ ଆଉ ତମକୁଇ ତାର ଲକ୍ଷ୍ୟ ।

ସାଗର—ଅନ୍ଧାରୀକି ବି ତ ଲକ୍ଷ୍ୟ ହୋଇପାରେ ।

ବେଳା—ବିରୁଗିର ଭିଖ ମୁଠାକର ଜୀବନ, ତାକୁ କାହିଁକି ?

ସାଗର—ତାର ଯେ ଶତ୍ରୁ ନ ଥିବେ, ଏ କଥା କାହିଁକି ଭାବୁଛ ?

ବେଳା—ଶତ୍ରୁ ଥିଲେ, ତାକୁ ହତ୍ୟା କରିବା କଠିନ ନୁହେଁ । ତା' ପାଇଁ ଏତେ ଲୁଚ ଲୁଚା କାହିଁକି ? ତୁମେ ତାଠୁ କଅଣ କିଛି ଖବର ବୁଝିଲ ନାହିଁ ?

ସାଗର—ସେ ତ ଅନ୍ଧାରୀ । କାହାକୁ ଚିହ୍ନେ—ନାଁ—ଜାଣେ ? ସେ ଭ'ଲ—ତାର ଭିଖ ଭ'ଲ କି ତାର ଗୀତ ଭ'ଲ ।

ବେଳା—ହଉ, ସବୁ ଭଲ ହଉ, ସମସ୍ତେ ଭଲ ହୁଅନ୍ତୁ । କିନ୍ତୁ ଭଲ ମନେକରି ମୁଁ ଗୋଟିଏ କଥା କହିବ ତୁମକୁ, ସେତକ ଅନୁରୋଧ ମୋର ରଖିବ ?

ସାଗର—ଶୁଣେଁ—

ବେଳା—ଆଉ କେତେଟା ଦିନ ବା ତୁମର କଲେଜରେ ? ବି· ଏ· ଏକ୍‌ଯାମିନେସନ୍ ବୋଧେ ସରିଲା ଆଜି । ବାକି ତମର ବି· ଏସ୍· ସି· ପିଲାଙ୍କର ।

ସାଗର—(ବାଧାଦେଇ) ଆଃ, ବ୍ୟାକରଣ ଦୋଷ ଘଟୁଛି ଯେ ! କଅଣ ଆଉ ତୁମେ ୩ୟ ବର୍ଷରେ ପଢ଼ୁଛ ? B. Sc. ପିଲାଙ୍କର ନୁହେଁ,—ଯୁବକଙ୍କର । ଆମେମାନେ ତ ଆଉ ପିଲା ନୋହୁଁ । ଭ୍ରମ ସଂଶୋଧନ କରିସାରି, ଯାହା କହିବାର କହିପାର ।

ବେଳା—ଅଚ୍ଛା, ତ୍ରୁଟି ମାର୍ଜନା କର । ତା'ପରେ

ଶୁଣ ମୋ କଥାଟା । ତୁମର ବୋଧେ ଗୋଟେ ଅଧେ ପ୍ରାକ୍‌ଟିକାଲ ବାକି ?

ସାଗର—ଆଜ ହେଲା 12th, ନାଁ ? ଆଉ ରହିଲା (ଆଙ୍ଗୁଠି ଗଣି) 13th, 14th, 15th, 16th, 17th, 18th, 19th,—ସାତ ଦିନ ମଝିରେ । 20thରେ ପ୍ରାକ୍‌ଟିକାଲ ଗୋଟାଏ । ତା'ପରେ ?—

ବେଳା—ହୁକୁମ ? ଶୁଣ । ତୁମେ କଟକରେ ନ ରହି, ଘରକୁ ଯିବ । କିନ୍ତୁ ଏଇ କେତୋଟା ଦିନ ତୁମେ ବରାବର ଘର ଭିତରେ ରହିବ । ଆଉ ଘରୁ ପଦାକୁ ଆସିବ ନାହିଁ ।

ସାଗର—ଅର୍ଥାତ୍ (ବେଳାର କାନଟାଣି ମଥାରେ ଓଢ଼ଣା ପକାଇ,) ଏଇମିତି ? ତୁମେ ଯାହା, ଦୁନିଆଟାକୁ ସେଇଆ ହେବାକୁ ଚାହୁଁଛ ? ନା ?

ବେଳା—ଛି, (କାନ ଟାଣି) ପରିହାସ ନୁହେଁ—ଶୁଣ ଆଗେ କଥାଟା ।

ସାଗର—ମୁଁ ବୁଝିଲି । ତୁମେ କହିବାକୁ ଚାହିଁ କି କାଳେ ରସିକ ହାତ ମୋର କିଛି ଅନିଷ୍ଟ ହୋଇପାରେ । ଏଇଥିପାଇଁ ମୁଁ କୋଣ ଭୁଆସୁଣୀ ହେବ । ଏଇ ତ ?

ବେଳା—ଠିକ୍ ତା ନୁହେଁ ଅବଶ୍ୟ ।

ସାଗର—କିନ୍ତୁ, ପ୍ରାୟ ସେଇ ରକମ—Semi କୋଣ-ଭୁଆସୁଣୀ—ଅସମ୍ଭବ ! ଏଗୁଡ଼ା ତମର ସ୍ତ୍ରୀ ସୁଲଭ ଦୁର୍ବଳତା ।

ବେଳା—ଆଉ ତମର ମଧ୍ୟ ସେମିତି ଏ ଗୁଡ଼ାକ ଜଦ୍‌ଖୋସ୍ତ କଥା ।

ବେଳା—ବାଜେ ତର୍କ ରଖ । ମୁଁ ଯାହା କହୁଚି, କରିବାକୁ ହେବ ତମକୁ ।

ସାଗର—ଯେ ଆଜ୍ଞା । ତାହାହେଲେ ଫେର୍ ପ୍ରାକ୍‌ଟିକାଲ ଏକ୍‌ସାମିନେସନ୍ ଦେବାକୁ ଯିବ ତ ?

ବେଳା—ଯିବ । ଗାଡ଼ିରେ ଯିବ, ଗାଡ଼ିରେ ବସାକୁ ଆସିବ ।

ସାଗର—ବେଶ୍, ଏ ତ ଗଲା ମୋ'ର ଦିନମାନର କୋଣ-ଭୁଆସୁଣୀ ହେବା ପ୍ରୋଗ୍ରାମ । ଫେର୍ ରାତିରେ ?

ବେଳା—ମାନେ ?

ସାଗର—ଏଠିକି ?

ବେଳା—ଦର୍କାର ନାହିଁ, ମୁଁ ତମ ବସାକୁ ଯିବି ।

ସାଗର—ଓ, ଅର୍ଥାତ୍ ତମ କହିବାର ଅଭିପ୍ରାୟ ଯେ, ମୁଁ ତମ ପରି ଅବଳା ପାଲଟି ଯାଏଁ । କୋଣରେ ଆତ୍ମଗୋପନ କରେଁ—ରସିକ ଭୟରେ । ଆଉ ତୁମେ ପୁରୁଷପରି ସାହସ ଧରି ଅବାଧରେ ଯା ଆସ କରିବ । ଏଇ ତ ? ଅସମ୍ଭବ ।

ବେଳା—ଅସମ୍ଭବ କାହିଁକି ?

ସାଗର—କେମିତି ଯିବ ?

ବେଳା—ତୁମେ ଯେମିତି ଆସୁଚ ।

ସାଗର—ଜାଣ ତ, କି risk ନେଇ ମୋତେ ଆସିବାକୁ ହୁଏ ଏଠିକି ? ପାଚେରିରେ ବାଟ କରି, ଝରକା ଟପି···ଯାହା ତୁମ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ ।

ବେଳା—ସମ୍ଭବ କି ଅସମ୍ଭବ ଦେଖିପାର ।

ସାଗର—ବୋଧହୁଏ ଆଉ କାର୍ଯ୍ୟରେ ଦେଖିବାକୁ ହେବନାହିଁ ।

ବେଳା—ମାନେ ?

ସାଗର—ଅଜିଇ ଏଇ ଦେଖାର ଶେଷ ।

ବେଳା—ଅର୍ଥାତ ?

ସାଗର—(ଗମ୍ଭୀର ହୋଇ ଚଟିଟି କାଢ଼ି) ସେଇପରି ଗୋଟେ କିଛି ଘଟିଛି । (ଛଳଗ୍ରବନାର ଅଭିନୟ)

ବେଳା—(ଉଠି ଅଧୀର ହୋଇ) ମୁଁ ତମର କଥାର ଭାଷା ବୁଝିପାରୁ ନାହିଁ, ସ୍ପଷ୍ଟ ହୁଅ ମୋ ପାଖେ ।

ସାଗର—କିଛି ତ ଅସ୍ପଷ୍ଟ ନୁହେଁ । ବୋଧହୁଏ, ଏହାପରେ—ଆଉ···

ବେଲା—(ହାତଧରି, କଥାରେ ବାଧାଦେଇ) ମାନେ ?
(ଗୁହିଁ ରହିଲା)

ସାଗର—ବାବାଙ୍କର ଏ ଖଟି ଦେଖିପାରୁ ।
(ବଢ଼ାଇ ଦେଲେ ଖଟ ବେଲା ହାତକୁ)

ବେଲା—(ଯନ୍ତ୍ରଚାଳିତ ପରି ସେଇଟି ନେଇ ନେଇ ଖସି ପଡ଼ିଲା ଖଟିଟି ତଳେ, ପୁଣି ତାକୁ ଗୋଟାଇ) ବାବା ! ସେ କେମିତି···

ସାଗର—ମୁଁ ଜାଣେ ? ଭଗବାନଙ୍କର ବରଦ ।
( ବେଲା ଏଇ ଭିତରେ ଖଟିଟା ଖୋଲି ପଡ଼ିବ ମନେ କରୁଛି, ସାଗର ଟିକିଏ ତଳକୁ ଗୁହିଁ ଓ ବେଲାର ଅଲକ୍ଷରେ ତାକୁ ଗୁହିଁ ହସିବାରେ ଲାଗିଛି, ଠିକ୍ ଖଟି ଖୋଲିଲି ବେଳକୁ ଡାକିଲି କିଏ ସଦର ଦରଜାରେ ବେଲାକୁ )

ସାଗର—(କାନେଇଁ) ଶୁଣ ତ କିଏ ! ମୁଁ ଯାଏ ବାହାର । ଖଟି ରହିଲା, ପରେ ପଢ଼ିବ । ସାବଧାନ । ( ଝରକା ପାଖକୁ ଗଲା )

ବେଲା—( ଖଟି ତକିଆ ତଳେ ରଖି ) ରହ, ମୁଁ ଆଗେ ଦେଖେଁ । ( ଆଗେ ଆଗେ ଗଲା । ସାଗର ଝରକା ବାଟେ ଚାଲିଗଲା, ବେଲା ଝରକା ବନ୍ଦ କଲା)

ନେପଥ୍ୟରୁ—ସେଇ ଲୋକଟାର ନାଆଁ କଅଣ, ସାଗର ?

ନେପଥ୍ୟେ ରେଣୁ—ହିଁ ।

ଅନ୍ୟ—କେଜାଣି···

ରେଣୁ—ନିଶ୍ଚୟ ଅଛି, କାରଣ ପାଟେଶ୍ୱର ସେ ବାଟଟା ଖୋଲି ରହିଛି ।

ଅନ୍ୟ—ତେବେ ସେଇଠି ଜଗିଲେ ତ ହେଲା । ସେଇଟା ଆଜ ଖୋଲା ହେଇଚ, ଦେଖିଛ ତୁମେ ?

ରେଣୁ—ସେଇଟା ଦେଖି ଆସି, ଉଠାଇଲି ଆପଣଙ୍କୁ ଯେ ।

ଅନ୍ୟ—ଆଚ୍ଛା, ସେଠି ସର୍ଚ୍ଚ କଲେ ତ ଜଣା ପଡ଼ିଯିବ, ଚାଲ ।

ରେଣୁ—ଆଉଥରେ ଏଠି ଚେଷ୍ଟା କରାଯାଉ ତ ।

ଅନ୍ୟ—( କବାଟ କଡ଼ା ହଲାଇ ) ବେଲା, ବେଲା, ବେଲା !

ବେଲା—(ନୀରବରେ ଶୁଣୁଥାଏ)

ଅନ୍ୟ—ନାଃ, ସେଠିକି ଚାଲ ରେଣୁ ।
(ଯିବାର ପଦଶବ୍ଦ ଶୁଭିଲା)

ବେଲା—(କିଛି ବେଳ ରହି, କାନେଇଁ) ଅନୁମାନ ମୋର ଠିକ୍ । ଆଚ୍ଛା, ମୁଁ କିନ୍ତୁ ତୋର ଯାହା ଖବର ରଖିଛି ରେଣୁ ! (ଖଟ ଉପରେ ଦୁମ୍ କରି ବସି ପଡ଼ିଲା, କଅଣ ଭାବି କହିଲା) ସେ··· ସେ କଅଣ ଏତେବେଳେ ଯାଏ ଥିବେ ?
(ଉଠି କବାଟ ଫିଟାଇ ବାହାରକୁ ଗଲା ହଠାତ୍)

---

## ଚତୁର୍ଥ ଦୃଶ୍ୟ

[ ମର୍ଦ୍ଧରାଜପୁର ଗାଆଁ ଦାଣ୍ଡ—ଜମିଦାର କାହ୍ନୁଚରଣ ହାତରେ ଖଣ୍ଡେ ଲଫାଫା ଧରି ବଡ଼ ତରବର ହୋଇ ଘରୁ ବାହାରି ଆସି ଦାଣ୍ଡରେ ଛିଡ଼ା ହେଲେ । ଯେମିତି ସେ କାହାର ଅପେକ୍ଷା କରିଅଛନ୍ତି, ବଡ଼ ଉଦ୍‌ଗ୍ରୀବ ହୋଇ ]

କାହ୍ନୁ—(ସମ୍ମୁଖକୁ ଗୁହିଁ ଦୂରକୁ ଡାକ ଦେଲା ଭଳି ଡାକିଲେ) ଏ କିଏ ରେ କେଳା ? କେଳା ଯାଉଚୁ ନାଁ ରେ ? ଏ କେଳା ! (ଟିକିଏ ଅପେକ୍ଷା କଲେ, ମନେ ହେଲା ଯେମିତି କେଳା ତାକୁ କିଏ ପଛରୁ ଡାକୁଛି ବୋଲି ଠଉରେଇ ନ ପାରି ଖାଲି ଗୁହିଁଲା, ସେକଥା ଦେଖି, ପୁଣି କହିଲେ)—ଆରେ ମୁଁ ଡାକୁଚି ରେ ଏ କେଳ !

ନେପଥ୍ୟେ କେଳା—ଆଜ୍ଞା, ମୋତେ ଡାକିବା-ହେଉଛନ୍ତି ? ଯାଉଚି ।

କାହ୍ନୁ—ଆସିବା କିଛି ଦର୍କାର ନାହିଁ ରେ । ଗ୍ରାମୁକରଣେ ସାନବାବୁ ପାଖକୁ କଟକ ଯାଉଛନ୍ତି । ହେଇଟି ଆଗରେ ହୋଇଥିବେ, ମଟର ଧରିବାକୁ ଗଲେ ।

ଟିକଏ ଝଅଟ୍ ଯାଇ ତାଙ୍କୁ ଡାକ ଦେବୁ—କହିବୁ ସାଆନ୍ତ କହିଚନ୍ତି କଟକରୁ ଚିଠି ସାନବାବୁ ଦେଇଛନ୍ତି, ଏଇନେ ଡାକବାଲା ଦେଲା । ଟିକଏ ଦଉଡ଼ଯାଅ—ଏଇ ବାଙ୍କଟା ତ ବୁଲି ପଡ଼ିଲେ ଦେଖିବୁ, ପଛରୁ ଡାକଦେବୁ । ଗଲୁ ଗଲୁ ଟିକଏ ।

ନେପଥ୍ୟ—ହଉ ଆଜ୍ଞା ।

କାହ୍ନୁ—(ଚଷମାଟା ପିନ୍ଧିଲେ, ଚିଠି ଲଫାଫାରୁ କାଢ଼ି ପଢ଼ିଲେ, ମୁହଁରୁ ତାଙ୍କର ସନ୍ତୋଷରେ ଯେମିତି ହସ ଫୁଟି ପଡ଼ୁଥାଏ)

ଘୁମୁ—( ଫେରି ଆସିଲେ କିଛିକ୍ଷଣ ପରେ—ଆସି ପଚାରିଲେ) ମଟର ତ ଚାଲିଯିବ, ମୋତେ ପୁଣି ଫେରେଇଲେ କାହିଁକି ? କେଳା ସାହୁ କହିଲା ସାଆନ୍ତ ଡାକୁଚନ୍ତି ବୋଲି ।

କାହ୍ନୁ—ହଁ, ମୁଁ ଡାକ ପଠାଇଲି । ଆଉ କାହିଁକି କଟକ ଯିବ ? ଦର୍କାର ନାହିଁ, ତୁମେ ଘରୁ ଗୋଡ଼ କାଢ଼ିଛ କି ନାହିଁ ହାଡ଼ିଆ ପିଆଦା ଦୁଇଖଣ୍ଡ ଡାକ ଚିଠି ଆଣିଲା । ପିଉନୁ ପରା ତାକୁ କଚେରୀ ଘରେ ଦେଲା । ପୁଳିନ୍ଦା ଉପରେ ଅଙ୍ଗରେଜୀରେ ଠିକଣା ଲେଖା ହେଇଚି, ସେ ଆମକୁ ତ ସେ ବଙ୍କା ପାଠ ଜଣା ନାହିଁ । ଖଣ୍ଡେ ଖୋଲି ଦେଖୁଁ ତ ସାନବାବୁ ଦେଇଚି ତମ ପାଖକୁ । ହେଇଟି ଦେଖ, ଆଉ କଟକ କାହିଁକି ଯିବ ? (ଚିଠି ବଢ଼ାଇ ଦେଲେ)

ଘୁମୁ—( ବ୍ୟାଗ୍‌ଟି ତଳେ ଥୋଇ ଚଷମା ଲଗାଇ ଚିଠି ପଢ଼ିଲେ ) ସବୁ ତ ଲେଖିଚନ୍ତି, ଆଉ ଦର୍କାର କଅଣ ? ମନରୁ ତ ହଳଦିଳ ଭାଙ୍ଗିଗଲା । ପରୀକ୍ଷା ଲାଗିଥିଲା ନାଁ, ସେଇଥିପାଇଁ ଆମ ଚିଠିର ବେଉରା ଦେଇ ପାରୁ ନ ଥିଲେ ।

କାହ୍ନୁ—ମାଆ ମଙ୍ଗଳାଙ୍କ ଇଚ୍ଛାରୁ କେମିତି ପାଣ୍ଟିଏ କରି ଯାଏ କି !

ଘୁମୁ—ସେ ଫେଲ୍ ହେବା ପୁଅ ନୁହଁ ଆଜ୍ଞା, ଏଇ ଘଟଣାରୁ ମାଆଙ୍କ ଦୟା ବୁଝୁନାହାନ୍ତି ?

କାହ୍ନୁ—ହଁ, ଡାକବେଳ ଯାଇ ନ ଥିବ ତ ?

ଘୁମୁ—ନାହିଁ, ଡାକ ଚାରିଟା ବେଳକୁ ।

କାହ୍ନୁ—ତେବେ ବାଲେଶ୍ୱରକୁ ଆଉ ଖଣ୍ଡିଏ ଚିଠି ଦିଅ, ଆଜି ଡାକରେ ଯାଉ । ଜବାବ ତ ମିଳିଲା ନାହିଁ, ଆଜଯାକେ ।

ଘୁମୁ—( ଆଙ୍ଗୁଠି ଗଣି ) ସୋମବାର, ମଙ୍ଗଳବାର, ବୁଧବାର, ଗୁରୁବାର—ଆଜି ହେଲା ଶୁକ୍ରବାର, ପାଞ୍ଚ ଦିନ ହେଲା ଆଜିକି । ଡେରି ତ କିଛି ହେଇନାହିଁ । ଚିଠି କାଲିଆଉକୁ ଆସିପାରେ କି ଏକାଥରେ ତାଙ୍କର ସ୍ୱୀକାରପତ୍ର ନେଇ ବ୍ରାହ୍ମଣ-ଭଣ୍ଡାରୀ ଆସୁଛନ୍ତି ।

କାହ୍ନୁ—ଯାହା ହଉ, ଆଜି ଡାକରେ ଆଉ ଖଣ୍ଡେ ଚିଠି ଦିଅ । ସାନବାବୁ ପରା ତେଣେ ଉଚଲା ହଉଚି ଜବାବ ପାଇବାକୁ ? ତା ଚିଠିରୁ ବୁଝୁନାଁ ?

ଘୁମୁ—ହଉ ଚାଲନ୍ତୁ । ଦେଇଦବା ଏବେ, କଅଣ ହଉଚି ?

କାହ୍ନୁ—( ଆଉ ଖଣ୍ଡିଏ ଚିଠି ବଢ଼ାଇ ) ହଁ, ଇଏ ଆଉ ଗୋଟେ । କଣ ଛପା ଚିଠି ଆସିଚି, କଅଣ ସର୍କାରି ଚିଠି ହେଇଥିବ, ଦେଖ । ଭୁଲି ଯାଇଥିଲି ।

ଘୁମୁ—( ଚିଠି ନେଇ ମୋହରଟା ଉପରୁ ଦେଖି, ହସି ) ମ, ମ, ଏ ଚିଠି ଆପଣ ଏତେବେଳେ ଯାଏଁ ରଖି ବସିଚନ୍ତି ? କହୁ ନାହାନ୍ତି ? ( ଚିଠି ଚିରୁଥାନ୍ତି )

କାହ୍ନୁ—କି ? ସେ ଚିଠି କେଉଁଠୁ କି ?

ଘୁମୁ—ଆଉ ପୁଣି କୋଉଠୁ ? ସେଇ ବାଲେଶ୍ୱର ଚିଠି । ଯୋଗ ପରା, ମାଆ ମଙ୍ଗଳାଙ୍କ ବରାଦ ଟି !

କାହ୍ନୁ—( ହସି ହସି ) ପଢ଼, ପଢ଼, ପଢ଼ । ମୁଁ ଏବେ ସ୍ଥା ଜାଣିଚି ? ଉପରେ ଠିକଣାଟା ଛପା

ଅକ୍ଷରରେ ହୋଇଥିଲା ଯେ, ମୁଁ ବୋଇଲି କି ସର୍ବାଂଶ ଶର୍ତ୍ତ, କପ୍ରିବନ୍ଧ ବାବଦକୁ । ରାଜସ୍ୱ ପାଇଁ ଚାଗିଦା ହୋଇଥିବ ।

ଘୁମୁ—( ପଢ଼ି ପଢ଼ି ) ସମ୍ବନ୍ଧୀ ଦୋଫଟି କି ନାଁ, କଚେରିରେ ତ ଶର୍ତ୍ତ ଲେଖିଥିବେ । ଉପରେ ଠିକଣାଟା ଟାଇପ୍ ହୋଇଛି ।

କାହ୍ନୁ—ହଁ, କଅଣ ଲେଖିଛନ୍ତି ?

ଘୁମୁ—ମୁଁ ଯାହା କହୁଥିଲି ସେଇଆ, ଚାଲନ୍ତୁ, ଚାଲନ୍ତୁ । ବେଗେ ଘରକୁ ଚାଲନ୍ତୁ ।

କାହ୍ନୁ—କଥାଟା କଅଣ ?

ଘୁମୁ—ଆଉ କଥା କଅଣ ? ସ୍ୱୀକାର ବେଶର ନେଇ ପୁରୋହିତ ଯାଉଛନ୍ତି ବୋଲି ଲେଖିଛନ୍ତି, ଏକାବେଳେକେ । ଏ ଶର୍ତ୍ତ ସେ ଦେଲେ କାଲି ଡାକରେ । ପୁରୋହିତେ ଆସୁଥିଲେ ତ ଏଇ ମଟରରେ ଆସିବେ । ଚାଲନ୍ତୁ ବେଗେ, ମୁଁ କଟକ ଯାଇଥିଲେ ତ ଏଇନେ ମହା ଅଡୁଆ ହୋଇଥାଆନ୍ତା ।

କାହ୍ନୁ—ଆଉ କଅଣ ? ମାଆ ମଙ୍ଗଳାଙ୍କ ଇଚ୍ଛା ସେ ।

ଘୁମୁ—ଆପଣ ନୋହିଲେ ଘରକୁ ଯାଆନ୍ତୁ । ମୁଁ କଚେରିକି ଯାଉଛି । ସେଠୁ ଜଣକୁ ବିଦାୟ କରି ମଟରଟିକି ପଠେଇଦେବି । ତାଙ୍କ ପୁରୋହିତକୁ ନେଇ ଆସିବ ।

କାହ୍ନୁ—ସେ କଅଣ ଏଇ ଗାଡ଼ିରେ ଆସିବେ ?

ଘୁମୁ—ଏଇଟା ତ ଦଶପନ୍ଦର ଗାଡ଼ିକି ମଟର । ରାତି ଗାଡ଼ିକି ସେ କାହିଁକି ଆସିବେ ? ଆପଣ ଯାଆନ୍ତୁ । ସାଆନ୍ତାଣୀଙ୍କି ଖବରଟା ଦେଇଦେବେ । ମୁଁ ଗଲି ।

( ବାହାରିଗଲେ )

କାହ୍ନୁ—( ଫେରିପଡ଼ି ପାହୁଣ୍ଡେ ଯାଇ ) ସ୍ୱେ ଘୁମୁକରଣେ ! ( ପୁଣି ଫେରି ) ନାଇଁ, ନାଇଁ, ଯା ଯା, ଆଉ—ମୁଁ ବିବାଦ କରୁଚି । ଗୋଟେ ଶୁଭ କାର୍ଯ୍ୟରେ ବାହାରିଚ—ଯା । ( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ ସାଗରର ବସା—ଅନ୍ନପୂର୍ଣ୍ଣୀ ଶୋଇଛନ୍ତି । ରାତି ପ୍ରାୟ ଏଗାରଟା ହେବ । ଅନ୍ନପୂର୍ଣ୍ଣୀ ଉଠି ଡାକଚି ସାଗରକୁ ]

ଅନ୍ନପୂର୍ଣ୍ଣୀ—ବାବୁ, ( ଟିକିଏ ରହି, ପୁଣି ) ବାବୁ !

( ଚଇଁଆ ଆସିଲା )

ଚଇଁଆ—ବାବୁ ନାହାନ୍ତି । କଅଣ କହ, ଭୋକ ହଉଛି ?

ଅନ୍ନପୂର୍ଣ୍ଣୀ—ନାଁ । ବାବୁ ?

ଚଇଁଆ—ବାବୁ ଯାଇଛନ୍ତି କୋଉଠିକି କାମରେ । ସଂଧ୍ୟାବେଳେ ଖାଇ କରି ଆସିବେ କି କଅଣ, କୋଉ ଠିକଣା ତାଙ୍କର ? ଅନ୍ଧାର ରାତି, ଏଗାରଟା ବାଜିଲାଣି ଆସି । ଫେର ନାହାନ୍ତି ତ !

( ନେପଥ୍ୟେ ଘୋଡା ଶବ୍ଦ ଶୁଣାଗଲା, ଚଇଁଆ କାନେଇ)

ଚଇଁଆ—ଆଇଲେଣି ବୋଧହୁଏ । (ଆଲୁଅ ଡେକଲା)

ସାଗର—(ଆସି) ଯାଆ ତ, ଗାଡ଼ିବାଲାଟାକୁ (ଟଙ୍କାଦେଇ) ଭଙ୍ଗାଇ କରି ଆଠଣା ଦେଇଦେବୁ । ଆଉ ଗାଡ଼ିରୁ ଗ୍ରାମଫୋନ୍‌ଟା ନେଇଆସିବୁ । ରେକର୍ଡଗୁଡ଼ା ଅଲଗା ଅଛି । ହୁସିଆର, ଚଳୁ ଆଲୁଅଟା ନେଇ ଯା ।

(ଚଇଁଆ ଚାଲିଗଲା । ସାଗର ବେଶ୍ ଫୁର୍ତ୍ତିରେ ମୁହଁରେ ସିଟିମାରି ଯୋତା ଓ ସାର୍ଟ କାଢ଼ି ଯଥାସ୍ଥାନରେ ରଖି ଚୌକିରେ ବସିପଡ଼ିଲା)

ଅନ୍ନପୂର୍ଣ୍ଣୀ—ବାବୁ ?

ସାଗର—ତୁ ଚେଇଁଚୁ କି ?

ଅନ୍ନପୂର୍ଣ୍ଣୀ—ନିଦ ମାଡ଼ୁ ନାହିଁ ।

ସାଗର—ଆଚ୍ଛା, ତୁ ପରା ଗୀତ ଶୁଣିବାକୁ କହୁଥିଲୁ ? ଶୁଣିବୁ ?

ଅନ୍ଧ୍ରୂଶ୍ରୀ—ହଁ ବାବୁ ଶୁଣିବ ।

ସାଗର—ଆଚ୍ଛା, ଚଇଁଆ ଆସୁ, ଖାଇଲୁଣି ତ ?

ଅନ୍ଧ୍ରୂଶ୍ରୀ—ନାଁ ।

ସାଗର—କାହିଁକି ?

ଅନ୍ଧ୍ରୂଶ୍ରୀ—ସେତେବେଳେ ଖାଇଥିଲି, ଭୋକ ନାହିଁ, ତୁମେ ଖାଇନା ତ ?

ସାଗର—ମୁଁ ଖାଇକରି ଆସିଛି । ମୋର ଜଣେ ବନ୍ଧୁ ନିମନ୍ତ୍ରଣ କରିଥିଲା । ସେଇଥିପାଇଁ ପରା ଏତେ ରାତି ହେଲା ।

ଅନ୍ଧ୍ରୂଶ୍ରୀ—ରାତିରେ କଅଣ ଅନ୍ଧାର ହୁଏ ବାବୁ ? ଚଇଁଆ କହିଲା ।

ସାଗର—ଦିନବେଳେ ସୂର୍ଯ୍ୟ ଥା'ନ୍ତି, ଆଲୁଅ ହୋଇଯାଏ । ସଞ୍ଜ ହେଲେ ବୁଡ଼ିଯାନ୍ତି । ସେଇଠୁ ଅନ୍ଧାର ହୁଏ ।

ଅନ୍ଧ୍ରୂଶ୍ରୀ—ସୂର୍ଯ୍ୟ କେଉଁଠି ବୁଡ଼ନ୍ତି ? ସୂର୍ଯ୍ୟ କଅଣ ?

ସାଗର—ସୂର୍ଯ୍ୟ ବୁଡ଼ନ୍ତି ସମୁଦ୍ରରେ ।

ଅନ୍ଧ୍ରୂଶ୍ରୀ—ରାତିସାରା ପାଣିଟାରେ ରହନ୍ତି ? ଆହା ! ଶୀତ କରୁଥିବ ତ ?

ସାଗର—ତାଙ୍କୁ ଶୀତ ହୁଏ ନାହିଁ ।

ଅନ୍ଧ୍ରୂଶ୍ରୀ—କାହିଁକି ?

ସାଗର—ସେ ପରା ଦେବତା ! ସୂର୍ଯ୍ୟ—ଦେବତା, ଠାକୁର ।

ଅନ୍ଧ୍ରୂଶ୍ରୀ—ସୂର୍ଯ୍ୟ ଦେବତା—ଠାକୁର—ନାଁ ?

ସାଗର—ହଁ, ଠାକୁର ।

ଅନ୍ଧ୍ରୂଶ୍ରୀ—ନମସ୍କାର ତାଙ୍କୁ । (ହାତ ଯୋଡ଼ିଲା)
(ଚଇଁଆ ଗ୍ରାମଫୋନଟାକୁ ନେଇଆସିଲା)

ସାଗର—(ଟେବୁଲରୁ କାଗଜପତ୍ର ଘୁଞ୍ଚାଇ) ରଖ୍ । ଏତେବେଳଯାଏଁ କଅଣ କରୁଥିଲୁ ରେ ?

ଚଇଁଆ—ଟଙ୍କା ଭଙ୍ଗାଇବାକୁ ବଜାରକୁ ଗଲି; ତା ପାଖରେ ନ ଥିଲା ।

ସାଗର—ଆଚ୍ଛା, ଯା ପୁଷ୍ପାରାଣୀଙ୍କୁ କହ, ତୁମେସବୁ ଖିଆପିଆ କର । ମୁଁ ଖାଇବି ନାହିଁ ।

ଚଇଁଆ—ଠାଆ କରିବି ନାହିଁ ?

ସାଗର—ନାଁ, ମୁଁ ଖାଇକରି ଆସିଛି (ଅନ୍ଧ୍ରୂଶ୍ରୀଙ୍କ ଠାରୁ) ଖାଇସାରି, ପ୍ଲେଟ ଖାଇବାର ଆଣି ଏଇଠି ରଖି ଦେଇଯିବୁ ।

ଚଇଁଆ—(ଖୁସି ଯାଉ ଯାଉ) ଆଜ୍ଞା !

ସାଗର—ତୁ ଗୀତ ଶୁଣିବୁ ପରା ?

ଅନ୍ଧ୍ରୂଶ୍ରୀ—ହଁ, ବାବୁ ।

ସାଗର—(ଗ୍ରାମ୍‌ଫୋନ୍ ଫିଟାଇ) ଆଚ୍ଛା (ଶୁଭ ଦେଉ ଦେଉ) କି ଗୀତ ଶୁଣିବୁ କହ ନାଁ ? ଓଡ଼ିଆ, ନାଁ ବଙ୍ଗଳା, ନାଁ ହିନ୍ଦି ?

ଅନ୍ଧ୍ରୂଶ୍ରୀ—ବଙ୍ଗଳା ।

ସାଗର—କି, ତୁ କଅଣ ବଙ୍ଗାଳୁଣୀ କି ?

ଅନ୍ଧ୍ରୂଶ୍ରୀ—ନା' ତ ।

ସାଗର—ତେବେ ? ଓଡ଼ିଆ ଗୀତ କଅଣ ଭଲ ନୁହେଁ ? ଭଲ ଲାଗେ ନାହିଁ ?

ଅନ୍ଧ୍ରୂଶ୍ରୀ—ଲାଗେ ।

ସାଗର—ବଙ୍ଗଳା ଶୁଣିବାକୁ କାହିଁକି କହୁଛୁ ?

ଅନ୍ଧ୍ରୂଶ୍ରୀ—କେବେ ଶୁଣି ନାହିଁ ବୋଲି !

ସାଗର—ଆଚ୍ଛା, ଆଗେ ଓଡ଼ିଆ ଗୀତ ଶୁଣ ।
(ରେକର୍ଡ଼ ଦେଇ ଗୀତ ଲଗାଇଲେ । ଗୀତ ଭିତରେ ଅନ୍ଧ୍ରୂଶ୍ରୀ ଖାଲି ହସୁଥାଏ ଆନନ୍ଦରେ । ସେ ପଚାରିଲା ସାଗରଙ୍କୁ—)

ଅନ୍ଧ୍ରୂଶ୍ରୀ—ବାବୁ ! ବାବୁ !

ସାଗର—ରହ, ଆଗେ ଗୀତ ଶୁଣ—ଗୀତ ସରୁ । (ଗୀତ ବନ୍ଦକରି) କଅଣ କହୁଥିଲୁ ତୁ ?

ଅନ୍ଧ୍ରୂଶ୍ରୀ—କିଏ ଗାଇଲା ? ତୁମେ ? ଏତେ ସୁନ୍ଦର !

ସାଗର—ତୋତେ ଭଲ ଲାଗିଲା, ନାଁ ?

ଅନ୍ଧ୍ରୂଶ୍ରୀ—(ଆନନ୍ଦରେ) ଖୁବ୍ ।

ସାଗର—କିଏ ଗାଉଥିଲା କହିଲୁ ଦେଖି ?
ଅନ୍ଧୁଣୀ—ତୁମେ ।
ସାଗର—ନାଁ ।
ଅନ୍ଧୁଣୀ—ଆଉ ?
ସାଗର—ମୋ କଥାରୁ ତୁ ବଝୁ ନାହୁଁ । ମୋର କେତେ ମୋଟା ଗଳା ? ଆଉ ସେ ଗୀତ କେମିତ ?
ଅନ୍ଧୁଣୀ—ଖୁବ୍ ସରୁ ଗଳା ।
ସାଗର—ତେବେ ମୁଁ କେମିତ ଗାଇଲି ?
ଅନ୍ଧୁଣୀ—ଆଉ କିଏ ଗାଉଥିଲା ସେ ?
ସାଗର—ସେ ଜଣେ ତୋ'ର ପରି ସ୍ତ୍ରୀ ଲୋକ ।
ଅନ୍ଧୁଣୀ—ଜୁହାର ମୋର ତାଙ୍କୁ । (ହାତ ଯୋଡ଼ିଲା)
ସାଗର—(ହସି ହସି) ଆରେ ! ଆରେ ! ଏ ରେକର୍ଡ, ରେକର୍ଡ ।
ଅନ୍ଧୁଣୀ—ରେକର୍ଡ ? ସେ ରେକର୍ଡ ? ମୁଁ ତାଙ୍କୁ କଅଣ ବୋଲି ଡାକିବି ? ନାନୀ—ନାଁ ଅପା ? ନାଇଁ ନାଇଁ, ଅପା—ରେକର୍ଡ ଅପା ! ନମସ୍କାର ।
(ସାଗର ହସିଲା । ବେଳା ହଠାତ୍ ଘରେ ପଶିଲା)
ବେଳା—ନମସ୍କାର ।
ସାଗର—(ସାର ଆଶ୍ଚର୍ଯ୍ୟହୋଇ) ଆରେ ତୁମେ ?
ବେଳା—ହଁ, ମୁଁ । ଆଶ୍ଚର୍ଯ୍ୟ ହେଲି ସାର—ନାଁ ?
ସାଗର—ହେବାର କଥା । (ଚୌକି ଦେଲେ)
ବେଳା—ମୁଁ କେମିତ ଆସିଲି ବୋଲି, ନାଁ ?
ସାଗର—ସତେ ତୁମେ ହଷ୍ଟେଲରୁ ଏତେବେଳେ ?···
ଅନ୍ଧୁଣୀ—ବାବୁ ! କିଏ ସେ କଥା କହୁଛନ୍ତି ? ରେକର୍ଡ ଅପା ?
ବେଳା—(ଆଶ୍ଚର୍ଯ୍ୟ ହୋଇ) ରେକର୍ଡ ଅପା ?
ସାଗର—(ହସି) ତୁମେ ପରା ?
ବେଳା—ମାନେ ?
ସାଗର—ମାନେ···ସେ ଗୀତ ଶୁଣିବାକୁ କହିଲା—ମୁଁ ରେକର୍ଡ ଲଗାଇଥିଲି; ସେ ତ ବଝେ ନାହିଁ କି ଦେଖୁ ନାହିଁ, ଏଇଟା ମେସିନ୍ ବୋଲି । ମୁଁ ରେକର୍ଡ ଗାଉଚି ବୋଲି ତାକୁ କହିଲି । ସେ ତା'ର ଧରିଚି—ରେକର୍ଡ ଅପା ଜଣେ ମଣିଷ ବୋଲି । ଆଉ ଠିକ୍ ତୁମେ ବି ତା ପଛେ ପଛେ ଆସିଚ ।
ବେଳା—(ହସି ହସି) ନାଁ, ନାଁ, ମୁଁ ରେକର୍ଡ ଅପା ନୁହେଁ !
ଅନ୍ଧୁଣୀ—ବାବୁ ! ନୁହେଁ ?
ସାଗର—ସେ ଆଉ ଜଣେ ଅପା, ସେ ଗାଉଥିଲେ ଯେ ସେ ନୁହେଁ । ତୋର ଆଖି ଫିଟୁ, ତାଙ୍କୁ ଦେଖିବୁ ଯେ ।
ଅନ୍ଧୁଣୀ—ସେ କିଏ ? ତମର କଅଣ ହୁଅନ୍ତି ?
ସାଗର—ହଁ ସେ ? ସେ ମୋର···(ହସି) କହ ନାଁ ବେଳା ! କଅଣ କହିବି, ସେ ମୋର···
ବେଳା—ଚୂପ୍ (ପାଟି ମୁହଧରି) ଦୁଷ୍ଟ !
ଅନ୍ଧୁଣୀ—ଦୁଷ୍ଟ ? ତାଙ୍କ ନାଆଁ ଦୁଷ୍ଟ ?
ବେଳା—ନା, ମୋ ନାଆଁ ଦୁଷ୍ଟ ନୁହେଁ । ତୁମ ବାବୁଙ୍କ ନାଁ ଦୁଷ୍ଟ । ମୋ ନାଁ ବେଳା—ବେଳାଦେବୀ, ମୁଁ ଏଠି ଗାର୍ଲସ୍କୁଲରେ ପଢ଼େଁ !
ଅନ୍ଧୁଣୀ—ଏଁ ? କୋଉଠି ?
ବେଳା—ଓଃ, ମୁଁ ଭୁଲ କରୁଛି ବାସ୍ତବକ୍ ! ମୁଁ ଏଠି ମାଇପି ସ୍କୁଲରେ ପଢ଼େଁ ।
ଅନ୍ଧୁଣୀ—ବାବୁ ! ମାଇପି ଲୋକ ପାଠ ପଢ଼ନ୍ତି ?
ସାଗର—ହଁ, ତୋ ଆଖି ଭଲ ହୋଇଗଲେ ତୁ ବି ପଢ଼ିବୁ ଯେ ।
ବେଳା—ପଢ଼ିବ ?
ଅନ୍ଧୁଣୀ—ହଁ, ବାବୁ କହୁଛନ୍ତି ।
ବେଳା—ଆଚ୍ଛା, ତୁମ ଆଖି ଭଲ ହୋଇଯାଉ, ମୁଁ ପଢ଼େଇବି ତମକୁ ।
ଅନ୍ଧୁଣୀ—ମୋ ଆଖି କେବେ ଭଲ ହବ ବାବୁ ?
ସାଗର—ହବ, ହବ, ଆଉ ଦୁଇ ତିନି ଦିନ ଗଲେ । ତୁ ଶୁଅ—ବେଶି କଥା କହିଲେ ଆଖି ଖରାପ ହେବ ।
ବେଳା—ଏ ସେଇ ନାଁ ? (ଅନ୍ଧୁଣୀକୁ ଠାରି)

ସାଗର—ହଁ । ସେଇ···

ବେଲା—ଆଶା କେମିତି ?

ସାଗର—ଡାକ୍ତର ତ ଭଲ ଆଶା କରନ୍ତି ।

ବେଲା—ସାହାହେଉ, ତମ ବନ୍ଧୁବରଙ୍କ ଗୁଳ କୃପାରୁ ଲଭଟା ହେଲା ଏଇ···

ସାଗର—(ହସି) ଧନ୍ୟବାଦ ଗରବ ।

ବେଲା—ଭଲ ହେଇଯାଉ କେମିତି ।

ସାଗର—ହଁ ଗୁଡ଼, ତୁମେ ଆସିଲ କେମିତି ? ଆଉ ଏତେ ରାତିରେ ବା···କାହିଁକି ?

ବେଲା—ତୁମେ ଆଗେ କହନାଁ, କେଡ଼େ ଦୁଷ୍ଟ ତୁମେ ?

ସାଗର—କେମିତି ?

ବେଲା—ରଖ ତମର ଚଠି ।

(ଚଠି କାଢ଼ି ସାଗର ଉପରକୁ ଫିଙ୍ଗିଦେଲା)

ସାଗର—ଆରେ ? ଏଇଟା କଅଣ ସେଇ ଚଠି ? ବାବାଙ୍କର ନାଁ ? ତାଙ୍କୁ ଦବନା—ମତେ···

ବେଲା—ମୋ ଲାଗି ନୋହିଲେ ତୁମେଇ ଦେଇଦବ । ଏଡ଼େ ଦୁଷ୍ଟ !

ସାଗର—ତୁମେ କଅଣ ଭାବିଥିଲ କହନାଁ,—ସେଦିନ ମୋ' କଥା ଶୁଣି ?

ବେଲା—କିଛି ନାହିଁ···ଯାଃ ।

ସାଗର—ତଥାପି ?

ବେଲା—ତୁମେ କହ ପରା ? କଳ୍ପନା କର ।

ସାଗର—(ଅଳ୍ପ ହସି, ଆଖି ମୁଦି) ଆଚ୍ଛା କରୁଛି, କାଗଜ କଲମ ଦିଅ । ଲେଖି ପକାଏଁ ।

ବେଲା—ବୁଝାଗଲା, ବୁଝାଗଲା, ତମ କଳ୍ପନାର ଦୌଡ଼ ।

ସାଗର—ଅଶେଷ ଧନ୍ୟବାଦ !

ବେଲା—ପଛେ ଧନ୍ୟବାଦ ଦେବ । ମୁଁ ଯିବି ଯେ, କାହିଁକି ଆସିଲି ଜାଣ ?

ସାଗର—କହିଥିଲ ତବୋଲ, ତମର କଥା ରଖିବାକୁ ବୋଧହୁଏ ।

ବେଲା—ହଁ, ତା' ବି ତ, ତେବେ ଠିକ୍ ତା' ନୁହେଁ । ବିଶେଷ କାରଣ ଅଛି ।

ସାଗର—କଅଣ ଶୁଣେ ?

ବେଲା—ରେଣୁ ବୋଧହୁଏ ଶୀଘ୍ର ହଷ୍ଟେଲରୁ ବିଦାୟ ନଉଛି ।

ସାଗର—କାହିଁକି ? ଆଉ ପଢ଼ିବ ନାହିଁ ?

ବେଲା—କେମିତି ପଢ଼ିବ ? ମୁଁ ତାର ବାଲ୍ୟ-ସଙ୍ଗିନୀ । ମୋର ତ ଆସି ପୋଥିରେ ଡୋର ଦେବାର ସମୟ ହେଲା—ତାର ତ ଫେର୍ ଗୋଟିଏ ସହାନୁଭୂତି ଅଛି ମୋ'ପ୍ରତି । ସେ ମଧ୍ୟ ପଢ଼ା ଛାଡ଼ିବା ଉଚିତ । ଅନ୍ତତଃ sympathy ଦେଖାଇ···

ସାଗର—ରେଣୁ ସ୍ୱା କରୁଚି !

ବେଲା—ବାଧ୍ୟ, କିନ୍ତୁ ଦୁଃଖ ଯେ ମୋ ଛାଡ଼ିବା ଆଗରୁ ତା'ର ସହାନୁଭୂତି ଉଛୁଳି ପଡ଼ୁଛି ।

ସାଗର—ମାନେ ?

ବେଲା—ଖୁବ୍ ଶୀଘ୍ର, ପ୍ରାୟ ଆଉ ଚାରି-ଛଅ ମାସ ପରେ ରେଣୁ ମାଆ ଡାକ ଶୁଣିଥାନ୍ତା ।

ସାଗର—ଇସ୍, ରସିକଟା ଏତେଦୂର···

ବେଲା—ଆହା, ହା ! ସେମିତି କହନ୍ତି ? ତମର ବାଲ୍ୟ ସଙ୍ଗୀ ଯେ !

ସାଗର—ବାଃ, ମୁଁ କଅଣ ଜାଣିଥିଲି ? ତା'ପରେ କଅଣ ହେଲା ରେଣୁର ?

ବେଲା—ହବ କଅଣ ? Treatmentରେ ଏଇନେ । ହଷ୍ଟେଲରେ କଥାଟା ଖୁବ୍ ଗୋପନରେ ଅଛି ଅବଶ୍ୟ । ରେଣୁର ଜନକପକ୍ଷ ସବୁ ଲେଡି ଡାକ୍ତର ଦେଖି ଉଦ୍ୟୁର ଭିତରୁ କଅଣ ଶିଶି ପରା ପାଇଲେ । ଛି, ମୁଁ ସେସବୁ ଆଉ କହିପାରିବି ନାହିଁ ।

ସାଗର—ବୁଝିଲି । ଫେର୍ ବର୍ତ୍ତମାନ ଅବସ୍ଥା ?

ବେଲା—ତମର ପରମାସଙ୍ଗିନୀ, ଯାଇ ସମବେଦନା, ସହାନୁଭୂତି ପ୍ରକାଶକରି ଦେଖି ଆସିପାର ।

ସାଗର—ହଁ, ସେ ତ ହବ, କଅଣ ଫେର୍ ଏଇନେ ହଉଚ ? ରସିକ ତାଙ୍କୁ ଦେଖିବାକୁ ଆସୁଚ୍ଛି ନାଁ ?

ବେଲା—ମୁଁ କେମିତି କହିବ ? ତେବେ ସେତେଦୂର ସମ୍ଭବ—ଆଉ ଆସୁ ନାହିଁ ।

ସାଗର—ଆଉ ସେ ଆସିବ ବା କାହିଁକି ? ଠିକ୍ କରିଛଡ଼ା ଦବ, ମୁଁ ଜାଣେ । କଥାଟା ହଷ୍ଟେଲରେ ଖୁବ୍ ଗୁଞ୍ଜଲ୍ୟ ସୃଷ୍ଟି କରିଥିବ—ନାଁ ?

ବେଲା—ନାଁ, ବଡ଼ ଲୁଚ୍ଚେଟୁଚିରେ କଥାଟା ବସ୍ତର ହେଉଛି—କଉଡା ପଡ଼ିବ । କାହାରିକୁ ଯିବାକୁ ଦିଆ ହଉନାହିଁ । ଲେଡ ଡାକ୍ତର ଆସୁଛନ୍ତି । ତା'ଛଡ଼ା ପାଖରେ ଜଣେ ନର୍ସ ବରାବର ଜଗି ରହିଛି । ଖୁବ୍ କମ୍ ଷ୍ଟୁଡେଣ୍ଟ୍ ଟିକିଏ ଟିକିଏ କଥାଟା ଜାଣିଛନ୍ତି ।

ସାଗର—ତୁମେ ଏ ସମୟରେ ଆସି ବୋଧେ ଭଲ କର ନାଁ ହଷ୍ଟେଲରୁ ।

ବେଲା—ତୁମେ ନିଶ୍ଚିନ୍ତ ରହ, ସେ ବିଷୟରେ ମୁଁ ଠିକ୍ ଅଛି । ମାତ୍ର ଚଞ୍ଚଳ ଯିବ ।

ସାଗର—ନ ଆସିଥିଲେ ହୋଇଥାନ୍ତା, ଚାଲ ମୁଁ ତମକୁ ଛାଡ଼ିଦେଇ ଆସିବ ।

ବେଲା—ଷ୍ଟାଣ୍ଡରେ ଗାଡ଼ି ମିଳିବ ବୋଧହୁଏ ?

ସାଗର—ଯଥେଷ୍ଟ । (ଉଠି ସାର୍ଟ ପିନ୍ଧିଲା)

ବେଲା—ହଁ, ଗୋଟେ କଥା ବୁଝିବାକୁ ଥିଲା । ତୁମେ କେବେ ଘରକୁ ଯାଉଚ ?

ସାଗର—ବୋଧେ ଦୁଇ ରେ । ତୁମେ ?

ବେଲା—(ହସି) ମୁଁ ତ ଯାଇ ନାହିଁ, ଆଉ ମୁଁ ବା କାହିଁକି ଯିବ ?

ସାଗର—ଓଃ ! (ଆଦରରେ ମାରିଲା ଗାଲକୁ)

ବେଲା—ଓଃ କଅଣ ?

ସାଗର—ନାଇଁ କଚ୍ଛି ନାହିଁ, ଆସ ଡେରି ହବ । (ବାହାରି) ଚଇଁଆ ! ମୁଁ ଟିକିଏ ବାହାରୁ ଆସୁଚ୍ଛି, କବାଟଟା ଦେ ।

ବେଲା—ଧନ୍ୟବାଦ ! ଆସିବା ଦରକାର ନାହିଁ ।

ସାଗର—କାହିଁକି ?

ବେଲା—ମୋର ଗାଡ଼ି ବାହାରେ ଅଛି, ଆଉ ତମର ଯିବା ଦର୍କାର ନାହିଁ, ଲୋକ ଅଛି ମୋର ଗାଡ଼ିରେ ।

ସାଗର—ମାନେ ?

ବେଲା—(ଚଟିଟିଏ ଦେଇ) ମାନେ, ବାବା ଜାଣନ୍ତି ।

ସାଗର—(ଚଟି ପଡ଼ୁ ପଡ଼ୁ ହସି) ତା' ହେଲେ ଦେଖୁଛି ଏକାବେଳେ ଛୁଟି......

ବେଲା—(ହସି ଚାଲି ଯାଉ ଯାଉ) ଯା, ମୁଁ ଜାଣିନାହିଁ—ଦୁଷ୍ଟ !

ସାଗର—(ହସି ଚଟିଟା ବଢ଼ାଇ) ଛାଡ଼ିଗଲ ଯେ—

ଅନ୍ନପୂର୍ଣ୍ଣୀ—ବାବୁ !

ସାଗର—ଉଁ ?

ଅନ୍ନପୂର୍ଣ୍ଣୀ—ସେ ଗଲେଣି କି ?

ସାଗର—ହଁ, ଚାଲିଗଲେ ।

ଅନ୍ନପୂର୍ଣ୍ଣୀ—ବାବୁ, କହିଲ ନାଇଁ ସେ କିଏ ?

ସାଗର—ସେ—ସେ—ମୋର—ମୋର···

ଅନ୍ନପୂର୍ଣ୍ଣୀ—ତମର କଅଣ ? ଏଁ ?

( ପଟ୍ଟପତନ )

---

## ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

[ବାବୁ ବଜାର, କଟକ । ମଳିନ ବେଶରେ ଯାଉଛି ରସିକ । ସମାଜ ହକର ପିଲାଟା ଡାକ ଡାକ ଯାଉଛି—ସମାଜ ବକ ବକ ।]

ହକର—ସମାଜ, ଦୈନିକ ସମାଜ, ରଣ ହଲ୍ ପାଣ୍ ହେଲା । ଗଞ୍ଜାମରେ ବିରାଟ ସଭା, ଭୀଷଣ ରେଲ୍ ଦୁର୍ଘଟନା, ଦାସଘର ମାମଲା ।

ରସିକ—(ଛାଡ଼ା ହେଲା) ଏ ସମାଜ ! ସମାଜ !

ହକର—ହଁ । (ଫେରିଲା କାଗଜ ଖଣ୍ଡେ କାଢ଼ି କାଢ଼ି)

ରସିକ—ଦେଖେଁ···

ହକର—ଭଲ ଖବର ଅଛି ବାବୁ ।

ରସିକ—(ଉପର ପାଖ ଦେଖି) ରାମପୁର ହାଇସ୍କୁଲ ପାଇଁ ଜଣେ ଟ୍ରେଣ୍ଡ ଗ୍ରାଜୁଏଟ୍···ଗୁଡ଼···ରତନ ମିଲ୍‌ରେ··· । ଜଣେ ଲେଡ଼ ଟିଚରର···
(କାଗଜ କଲମ ପକେଟରୁ ବାହାରକରି ଲେଖୁଥାଏ)

ହକର—ସମାଜ, ଦୈନିକ ସମାଜ ।

ନେପଥ୍ୟେ—ଏ ସମାଜ, ଦେଇ ଯା ।

ହକର—ହଁ ।

ନେପଥ୍ୟେ—ଦେଇ ଯା ।

ହକର—ନବ ଯେବେ ନିଅ ବାବୁ ! ମୁଁ ଯାଏଁ ।

ରସିକ—ରହ—ରହ ଟିକଏ ଦେଖେଁ ।

ହକର—ଖଣ୍ଡେ କିଣି ନେଇ ଦେଖୁଥା ନାଁ ବାବୁ ।

ରସିକ—(ହକର କଥାକୁ ନ ଶୁଣି) wanted 6 peons.

ନେପଥ୍ୟେ—ଏ ସମାଜ !

ହକର—ହଁ ବାବୁ (ରସିକଙ୍କୁ) ନିଅ ବାବୁ ! ତମେ ନବ ନାଇଁ—ମିଛରେ ମୋତେ ଅଟକେଇ··· (କାଗଜ ଟାଣି ନେଇ) ହାତରେ ନ ଥାଇ ଧନ ନାଁ ସୁଅ ବାହା କର ମନ ! ସମାଜ, ଦୈନିକ ସମାଜ ।

ନେପଥ୍ୟେ—ସମାଜ !

ହକର—ଗଲ ବାବୁ, ସମାଜ ଦୈନିକ ସମାଜ !
(ଡାକ ଡାକ ଚାଲିଗଲା)

ରସିକ—(ଚାହିଁ ରହିଲା ବୋକା ପରି—ମଳୟ ପଛରୁ ଆସିଲା । ରସିକ ପିଠିକୁ ଧକାଏ ମାରି ଦେଲା, ରସିକ ଚମକି ଉଠିଲା)

ମଳୟ—କିରେ, ଏଠି ଏମିତି ଠିଆ ହୋଇଛୁ ? ମତଲବଟା କଅଣ ? କାହାକୁ ଅନାଇଁଚୁ ?

ରସିକ—ମଳୟ ? ଆରେ ଅନେକ ଦିନରୁ ଦେଖାନାଇଁ ତୋର ! ମୁଁ ମନେ ମନେ ତୋତେ ବହୁତ ଖୋଜୁଥିଲି ଭାଇ !

ମଳୟ—ହଁ ଦେଖିଲୁ ପରା ? ରସିକଟି ତୁ ? ଆଚ୍ଛା, ଏଠିଟାରେ କାହିଁକି ଏମିତି ଛିଡ଼ା ହୋଇଛୁ ?

ରସିକ—ସମାଜ ହକରଟା ଡାକିଲା ସମାଜ-ସମାଜ ବୋଲି ସେ ତାକୁ ଅନେଇଁ ଥିଲି ଖଣ୍ଡେ ସମାଜ ନବାକୁ ।

ମଳୟ—ଓଃ ! ସମାଜ ଆଉ ମିଳୁଛି ? କଅଣ ଦର୍କାର କହନାଁ ?

ରସିକ—ଓ୍ୱାଣ୍ଟେଡ୍ କଲମ, ଆଉ କଅଣ ? ବେକାର ସମସ୍ୟା ।

ମଳୟ—ଓଃ ଚାକିରି ? ଯେ ଆଶା ଗୁଡ଼ ଭାଇ, ଓଡ଼ିଶା ପ୍ରଭିନ୍ସରେ ଚାକିରି ଆଶା ? ଶୁଣିବୁ ? ଆମ ଅଫିସରେ ତିନଟି ପିଅନ ପୋଷ୍ଟକୁ ହଜାରେ ଆପ୍ଲିକେଶନ୍ । ତା' ଭିତରୁ ପ୍ରାପ୍ତ ୭୮ ଜଣ ପି· ଯୁ· ବାଲା ଦେଢ଼ଶ କି ଦୁଇଶ ସରିକି ମାଟ୍ରିକ୍ । ବେତନ କେତେ ଜାଣୁ ?

ରସିକ—କେତେ ?

ମଳୟ—ମହଙ୍ଗାଭତ୍ତା ମିଶି ନାଗପାଟ ନବେ । ଦାଦକଯାକ ଚାକିରି ରଖିପାରିଲେ ଅବଶ୍ୟ କିଛି ବଢ଼ିବ ।

ରସିକ—(ପେଟକୁ ଠାରି) ହଁ, ଏ ତ ଅଛି ରେ ଭାଇ ! ଯିଏକୁ ପୋଷିବାକୁ ସବୁ କଥା···

ମଳୟ—ତେବେ ଆଉ ଆପତ୍ତି କଅଣ ? ଚାକିରି ଯେବେ ପେଟ ପୋଷାର ଏକମାତ୍ର ଉପାୟ, ତେବେ ଯୋଗା ସଫା କରିବାକୁ ଡରିଲେ ଚଳିବ ନାହିଁ ।

ରସିକ—ତା ବୋଲି ତ ଫେର୍ ଗୋଟେ ପ୍ରେଷ୍ଟିଜ୍ ଅଛି ?

ମଳୟ—ପ୍ରେଷ୍ଟିଜ୍ ? ସେ କାଳ ଗଲାଣି । ବାପାଙ୍କ ଦାଦକରେ ଡାମ୍ପଣ ଅଗରେ ଘିଅ ଖାଇବା କଥା ପାଶୋରି ପକା । କି ରେ, ବର୍ଷକୁ ହେବେ କୋଡ଼ିଏ ହଜାର ମାଟ୍ରିକ୍ୟୁଲେଟ୍, ପାଞ୍ଚ ସାତ ହଜାର ବି·ଏ· ବାହାରିବେ ଆମର ଏଇ ସ୍କୁଲ କଲେଜରୁ, ଆଉ ସମସ୍ତେ ଖୋଜିବେ ଚାକିରି;—କୋଉଠୁ ଭଲା ପ୍ରଭିନ୍ସ୍, ଚାକିରି ଯୋଗାଇବ ତାଙ୍କୁସବୁ କହନାଁ ?

ରସିକ—ଆଉ ଉପାୟ କଅଣ ?

ମଳୟ—ସେସବୁ ଛାଡ଼ । ଅକର୍ମାଙ୍କ ପେଟପୋଷାର ଆଉ ଗୋଟେ ବାଟ କହୁଚି—ଶୁଣ ।

ରସିକ—କଅଣ କହିଲୁ, ଶୁଣେ ?

ମଳୟ—ଗୋଟେ ନେତା ହୋଇପଡ଼ ନା ବାବୁ !

ରସିକ—ନେତା ?

ମଳୟ—ହିଁ ମ, କଛୁ ଭଲ ନାହିଁ ସେଥିରେ । ଖାଲି ଗୋଷ୍ଠାକେତେ ସଙ୍ଗରେ ହଡ଼ଦ ହାଙ୍କି, ନାଚ, କୁଦ ଗର୍ଜି, କାନ୍ଦ କହି ପାରିଲେ ହେଲା । ଖିଏ ଖାଇବାକୁ ମିଳିବ, ଚୁନ୍ଦା ବି ଅନେକ ଆଦାୟ କରିପାରିବୁ, ଗୁରୁଏ ଶୁଖିଲି ଦଣ୍ଡବତ ବି ପାଇବୁ ।

ରସିକ—ମୋ ହାତେ ସେକଥା ହବ ନାହିଁ, ଭାଇ !

ମଳୟ—ଆଉ କଅଣ ବୁଝବି ? ଆମେ ଯେ ଝଣ୍ଡେ ଖଣ୍ଡେ ପାଇ ଯାଇଛୁ—ଏ କେବଳ ଆମ ବାପାଙ୍କର ଜୁହିଁ, ଜେଜେ ବାପାଙ୍କର ସୁକୃତରୁ ଏକାବେଳେ ।

ରସିକ—କଛୁ ଭେକାନ୍ସି ତୋ ଅଫିସରେ ଅଛି ନାଁ ?

ମଳୟ—ତୁ କାଲି ଯିବୁ ୧୦ ଟା ବେଳେ—ଦେଖିବା, ମୁଁ କହିପାରୁ ନାହିଁ । ଚାଲ୍, କାଠଯୋଡ଼ି କୂଳକୁ । ବଡ଼ ଗରମ ହଉଚି, ଟିକଏ ବୁଲି ଆସିବା ।

ରସିକ—ନାଇଁ ଭାଇ, ମୋର ବହୁତ କାମ ଅଛି ।

ମଳୟ—ତୋର ଗୋଟେ କାମ କଅଣ ମ ? କଅଣ କରୁଚୁ ଆଜକାଲି ? ପରୀକ୍ଷା ଦେଇଛୁ ନାଁ ?

ରସିକ—ହଁ, ଦେଇଛି । ତା' ପରେ ତ ବସିଛି । ବହୁ କଷ୍ଟରେ ଖଣ୍ଡିଏ ଟିଉସନ୍ ଧରିଛି । ସେଥିରେ ପୁଣି ଏକ ବିଧବା ମରହଟ୍ଟି ମାଇକନା ଆମ ଖାମିନ୍ଦାଣୀ । ପିଲଟା ଏଡ଼େ ବଦ୍‌ମାସ ଯେ ପାଠ ପଢ଼ୁଚି ମୋତେ ନଚ ସେ, ଆଉ ମୁଁ ତାକୁ କଅଣ ପଢ଼େଇବ ?

ମଳୟ—ଚାଲ୍ ନା, ବୁଲିଆସିବୁ ଟିକଏ । ଆବଧାନଆ ମୁଣ୍ଡ ଅଣ୍ଡା ହୋଇଯିବ, କାଠଯୋଡ଼ୀର ସୁଲୁସୁଲିଆ ହାଉଆରେ ।

ରସିକ—ନାଇଁରେ ଭାଇ, ମୋର କାମ ଅଛି ଟିକଏ । ମନେ ନ ଥିଲା, ସେ ପିଲଟିର ଖଣ୍ଡେ ବହି କିଣି ନେବାକୁ ହେବ । ( ପକେଟରେ ହାତମାର ) ଆରେ ରେ, ମୁ ତ କଅଣ ପଇସା ଆଣିଲି ନାହିଁ । ଟେବୁଲ ଉପରେ ଛାଡ଼ିଦେଇ ଆସିଲି । ପଇସା ଅଛି ତୋ' ପାଖେ ?

ମଳୟ—କେଜାଣି ? କେତେ ?

ରସିକ—ଦେଖି ତ କେତେ ଅଛି ? ମୁଁ କାଲି ନେଇ ତୋତେ ଦେଇ ଆସିବି । ଏତେ ବାଟ ଫେରି ଫେରିଯିବା—ଅସୁବିଧା···

ମଳୟ—(ପଇସା ଗଣି) ମୋଟେ ନ ଅଣା ଅଛି ।

ରସିକ—ଆରେ, ଠିକ୍ ମୋର ସେତିକ ଦର୍କାର ଥିଲା । ବାରଣା ବହି ଖଣ୍ଡକ । ତିନିଅଣା ବୋଧେ ଅଛି ମୋ ପାଖେ ।

ମଳୟ—(ପଇସା ବଢ଼ାଇ ଦେଇ) ତୁ ତେବେ ଥାଆ ଭାଇ, କାଲି ଦେଖା ହବ । (ଚାଲିଗଲା)

ରସିକ—ଯରୁର୍—ତୋ ଅଫିସରେ, ନମସ୍କାର ।

ମଳୟ—ନମସ୍କାର । (ଭିତରୁ କହିଲା)

ରସିକ—(ପଇସା ଗଣି) ଏଇ ନଅଣା ପଇସା ! ଆଜ ମୋତେ ନଅ ଟଙ୍କାପରି ଲାଗୁଛି । ଏକା ଥିଲି, ଭଲ କଥା, ମୁଣ୍ଡରେ ଗୋଟେ ଫେରି ବୋଝ । ଯାହା ହଉ, ଓଳଟାଏ ତ ଆଗ···ଦେଖାଯିବ । ତା'ପରେ ! (ଚାଲିଗଲା)

---

## ଦ୍ୱିତୀୟ ଦୃଶ୍ୟ

[ କାହ୍ନୁ ଚରଣଙ୍କ ଗୃହଦେବତା କୋଠରି ଆଗର ବାରମୁହିଁ । ପୁରାଣପଣ୍ଡା ଓ କେତେକ ପୁରାଣ ଶୁଣାଳୀ ବସିଛନ୍ତି । ପୁରାଣପଣ୍ଡା ପୋଥି ଧରି ଘୁମାଇଁ ଘୁମାଇଁ ପୋଥିଟା ହାତରୁ ଖସି ପଡ଼ିଲା । ଲୋକେ କଥାବାର୍ତ୍ତା ହେଉଥିଲେ । ପୁରାଣପଣ୍ଡା ପୋଥି ପଢ଼ିଯିବା

ଶବ୍ଦରେ ସଜାଗ ହୋଇ, ଠିକଏ ଏଣେତେଣେ ଗୃହିଁ, "ନାଗସୂଣ ନମସ୍କୃତ୍ୟଂ" କଥାଟା ବେଗେ କହି ପକାଇଲେ ଏକ ନିଶ୍ବାସରେ, ତା'ପରେ ଗୃହିଁ ପଗ୍ଚରିଲେ ]

ପୂଃ ପଣ୍ଡା—କି ରେ, ସାଆନ୍ତ ଆଜି ପୁରାଣକୁ ଆସିବେ ନାହିଁକି ?

ଶୃଣାଳଏ—ଆସୁଥିବେ, ଆସୁଥିବେ, ନ ଆସିବାର କଥା ହୋଇ ଥିଲେ ଖବର ହୁଅନ୍ତାଣି ।

ପୂଃ ପଣ୍ଡା—ଆଜି ତ କଅଣ ବହୁତ ଉଚ୍ଛୁର ?

( ଜମିଦାର ଆସିଲେ)

ଶୃଣାଳଏ—ଜୁହାର ଆଜ୍ଞା । (ଜମିଦାରଙ୍କୁ ପ୍ରଣାମ କଲେ)

କାହ୍ନୁ—ଜୁହାର, ଜୁହାର ।

(କହି ପୁରାଣକୁ ପ୍ରଣାମ କରି ବସିଲେ)

ପୂଃ ପଣ୍ଡା—(ପୁଣି ଖାସି ଖାସି ଆରମ୍ଭ କଲେ) ନାଗସୂଣଂ ନମସ୍କୃତ୍ୟଂ···

( ଦି ଧାଡ଼ି ଶ୍ଳୋକ ପଢ଼ା ହୋଇନାହିଁ କାହ୍ନୁଚରଣ କହିଲେ )

କାହ୍ନୁ—ହଇଏ ପୁରାଣ-ପଣ୍ଡାଏ ! ଘରଟା କେମିତି ନିଶୁନ ଲାଗୁ ନାହିଁ ଆଜି ? (ଘରଆଡ଼କୁ ଗୃହିଁଲେ)

ପୂଃ ପଣ୍ଡା—ଗୋଟେ ଝମେଲି ପରି ଲାଗିଥିଲା । ଲୋକବାକ, ଖିଆପିଆ, ଗଲାଅଇଲା···ଇଲାକା ଗୋଟାକର ପ୍ରଜା ।

କାହ୍ନୁ—ଏକା ତ ଆମର ବନ୍ଧୁ କୁଟୁମ୍ବ ଶଏ ହେବେ ।

ପୂଃ ପଣ୍ଡା—କି କଥା ସ୍ୱେ ! ସେଡ଼ିକି ବାଉଁଶ—ତେଡ଼ିକି ପୋଲି । ସମସ୍ତେ ବିଦା ହେଲେଣି ନା ଆଉ କିଏ କିଏ ଅଛନ୍ତି ?

କାହ୍ନୁ—ନାଁ, ଆଜି ଦିହପହର ସୁଦ୍ଧା ସମସ୍ତେ ଗଲେ । କମ୍ପୁଥିଲା ତେ଼ ଏ ଘର । ଏତେବେଳକୁ ଖାଲି ନିଶୁନ ଲାଗୁଚି ଘରଆଡ଼େ ।

ପୂଃ ପଣ୍ଡା—ବାକି ଆଜ୍ଞା, ପବିତ୍ର ହୋଇଗଲା । ପେଟେ, ମୁହିଁ ପବିତ୍ର ହୋଇଗଲା ସାନବାବୁଙ୍କ ବାହା-ଘରରେ । କାଲିକା'ଲକୁ ଗୋଟେ କଥା ରହିଲା । ଲୋକେ ସାନବାବୁଙ୍କ ବାହାଘର ଲଛନା ଦେଉଥିବେ ।

କାହ୍ନୁ—ଓଃ, ମୋର ତ ଭରସା ନ ଥିଲା ଏମିତି ସୁରୁଖୁରୁରେ ବାହାଘରଟା ଉଠିଯିବ ବୋଲି ! ବଡ଼ ଘର ସେ—ବଡଲୋକ—ହାକିମ । ତାଙ୍କ ଘରେ ବନ୍ଧୁ ବାନ୍ଧିବା କଅଣ ସହଜ ?

ପୂଃ ପଣ୍ଡା—ହଁନ ପଦର କୋଡ଼ିଏଟାରେ; ଯୋଉ ଯୋଗାଡ଼ କରି ହଁଆଗଲା ଆଜ୍ଞା ! ଆପଣ ବୋଲି ସିନା ! ଆଉ କିଏ ହୋଉଥିଲେ ? ଯାଃ···

ଜଣେ—ଯୋଉ ସଲଟଣ—ନାଟ, ତାମସା, ରୋଷଣି···

(ଗ୍ରାମୁକରଣ ଆସୁଥିଲେ)

ପୂଃ ପଣ୍ଡା—(ଦେଖି) ଆଉ ଆମ ଗ୍ରାମୁକରଣଙ୍କୁ ବି ଧନ୍ୟ କହିବା । ଅସଲ ମାହାନ୍ତି ପିଲା ସେ ! ମଣିଷଟି ସିନା ଏତେ଼—ମତ୍ ମୁର୍କୁଟିଆ; ବାକି ବୁଦ୍ଧି ଟାଣ । ବାହାଘର କେଇ ହଁନ ତାଙ୍କୁ ଆଉ ବସିବାକୁ ତର ଅଛି ? ବୋଇଲେ···ସେ ବାତ ଚର୍କୀ ! ତ ଧନ୍ୟ ବୋଲିବା ତାଙ୍କ ଗୋଡ଼ ହଳଖଣ୍ଡକୁ ।

କାହ୍ନୁ—ଆମ ଗ୍ରାମୁକରଣ କି ? ସବୁ ବିଷୟରେ ଯୋଗ୍ୟ, ତାଙ୍କ ଆଗିକି ଆମ ଘର, ତାଙ୍କ ଘର—ଏକା । ତାଙ୍କପରି ଜଣେ ଲୋକ ନ ଥିଲେ ମୁଁ କେଭେଁ ବାହାଘରଟି ସୁରୁଖୁରୁରେ ଉଠେଇ ପାରି ନ ଥାନ୍ତି ।

ଗ୍ରାମୁ—ଆଜ୍ଞା, ମିଛୁଟାରେ ମୋତେ ପ୍ରଶଂସା କରୁଚନ୍ତି । ସବୁ ଆପଣଙ୍କ ବିରାଦ—ଯାହା ହୁକୁମ ହେଲା ତା କଲୁଁ । ଏଥିରେ ଆମର ଆଉ ବାହାଦୁରି କଅଣ ?

ପୂଃ ପଣ୍ଡା—ସେ କରେ, ସେ କଅଣ ଗୁରେ ବକୁଥାଏ କି ? ଆହେ ଏମେତେ କଲୁ ହେ, ଆହେ ସେମେତେ କଲୁ ହେ—ବୋଲି ।

କାହ୍ନୁ—ନାଁ ନାଁ, ଅଧେ କାମ ତ ଏକା ଗ୍ରାମୁକରଣଙ୍କର । ତାଙ୍କ ସାହସରେ ମୁଁ ମାତିଗଲି ନା ।

ପୂଃ ପଣ୍ଡା—(ପୋଥି ଧରି) ନାଗସୂଣଂ ନମସ୍କୃତ୍ୟଂ···

କାହ୍ନୁ—ଜାଣିଲ, ପୁରୁଣ ପଣ୍ଡାଏ, ଯାହା ଦେଇଛୁ ରାମ୍ବସାହେବ ଘର, କୋଉ ରଜାଘର ପରି ଏମିତି ଦେଇ ନ ଥିବ ।

ପୁଃ ପଣ୍ଡା—ହଁ, ଗୋଟିଏ ବୋଲ କିଅ, ଆଉ କାହାକୁ ଦିଅନ୍ତେ ? ବୋହୂଟି କେମିତି ଯେ ?

କାହ୍ନୁ—(ମୁଣ୍ଡରେ ହାତ ମାରି) କହିବ ପରି, ମାଆ ମଙ୍ଗଳାଙ୍କ ଅନୁଗ୍ରହ । ବୋହୂ, ଆଃ ପଚୁଶ ସୁନା, ପୂଅ ପ୍ରତିକ ସରସା । ବୋହୂ ତ ନୁହଁ···ସେ ସାକ୍ଷାତ ଲକ୍ଷ୍ମୀ । ଏଇଥିରୁ ବୁଝୁନା, ଆସି ଘରେ ପାଆ ଦଉଦଉ ଆମ ବଡ଼ କଳୁଲୀ ଗାଈଟା ଗୋଟେ ମାଈ ବାଛୁରୀ ଜନମ କଲେଣି ।

ପୁଃ ପଣ୍ଡା—ସତେ ଆଜ୍ଞା, ମୋର କହିବାକୁ ମନେ ନ ଥିଲା । ମାସେ ହେଲା ଜର ଖେରି କରିବି ନାଗି ହେଉଥିଲା, ସେଇ ଦିନଠୁଁ ଘରଆଡ଼େ ଆମର ଜର ଛାଡ଼ିଛି ଯେ ଛାଡ଼ିଛି ।

କାହ୍ନୁ—ଆମେ ମନେ କରିଥିଲୁ ଇଂରାଜୀ ପାଠପଢ଼ୁଆ ବୋହୂ, ଆମ ବୁଢ଼ା ବୁଢ଼ୀ ଦି'ଟାଙ୍କୁ ଖାତିର କରିବ କି ନାହିଁ । ହେଲେ ରନ୍ଧା, ବଢ଼ା, ଖାତିର ମର୍ଯ୍ୟାଦା···ସବୁଥିରେ ପାଶ୍ ।

ଘୁମୁ—ଆଜ୍ଞା, ଇଂରିଜି ପାଠ ପଢ଼ିଲେ ବୋଲି କଅଣ ଲୋକ ଖରାପ ହୋଇଯିବେ—ନାଁ ବାଳିକା ସ୍କୁଲରେ ପଢ଼ିଲାକୁ ଲୋକେ ମହତ ମର୍ଯ୍ୟାଦା ବୁଡ଼ାଇବେ ? ପାଠ କି ଇସ୍କୁଲର କିଛି ଦୋଷ ନୁହଁ ଆଜ୍ଞା, ଜଣ ଜଣକର ବୁଦ୍ଧି ସେମିତି ଖରାପ । ତାଙ୍କୁ କହିଲେ ନାହିଁ, ବୋଇଲେ ନାହିଁ, ଜନ୍ମରୁ ସେ ବିଗୁଡ଼ିଅଛି ।

(ପୁରୁଣପଣ୍ଡା ପୁଣି ଶ୍ଳୋକ ପାଠ ଆରମ୍ଭ କଲେ । ପାଠ ଶେଷ ହୋଇ ନାହିଁ, ଭିତରୁ ଡାକ ଶୁଭିଲା )

ଭିତରୁ—ଘୁମୁକରଣ ଆଜ୍ଞା, ଘୁମୁକରଣ ଆଜ୍ଞା !

ପୁଃ ପଣ୍ଡା—(ପୋଥି ବନ୍ଦକରି) ଘୁମୁକରଣେ, ଭିତର ଦିଗରୁ ଡକରା ହେଉଛି ପରା ?

ଘୁମୁ—ମତେ ?

ପୁଃ ପଣ୍ଡା—ହଁ ହେଁ ।

ଘୁମୁ—(ଉଠି ଯାଉ ଯାଉ) ମତେ ଶୁଭିନାହିଁ । (ଭିତରକୁ ଯାଇ ସାଙ୍ଗେ ସାଙ୍ଗେ ଥାଳିଆରେ ଥାଳିଆଏ ପାନ ନେଇ ଆସି କହିଲେ) ପୁରୁଣ ପଣ୍ଡାଏ, ବୋହୂ ସାଆନ୍ତାଣୀ ଆପଣଙ୍କୁ ନମସ୍କାର ହେଉଛନ୍ତି । ଆଉ ହେଇଟି ପାନ—ସମସ୍ତଙ୍କ ପାଇଁ ଦେଇଛନ୍ତି ।

ପୁଃ ପଣ୍ଡା—(ହସି ହସି) ହଉ, ହଉ, ସର୍ବସୁଲକ୍ଷଣୀ ହୋଇ ଥାଆ ମା ! ଘରକୁ ଆସୁ ଆସୁ ତ ଏ ଭଳିତି । ଘର ଗୁଣେ ପରା···

ଶୁଣାଳିଏ—ଆମର ଜୁହାର ଜଣାଇଦିଅ ଘୁମୁକରଣେ ଆଜ୍ଞା ।

( ଘୁମୁକରଣ କାହ୍ନୁ ଚରଣଙ୍କର ପାଖେ ପାନ ଥୋଇଲେ )

କାହ୍ନୁ—ନିଅ ସମସ୍ତଙ୍କୁ ଦିଅ । ବୋହୂ ପରା ପଠେଇଛନ୍ତି ? ଆଗେ ପୁରୁଣ ପଣ୍ଡାଙ୍କୁ ଦିଅ ।

ପୁଃ ପଣ୍ଡା—(ହସି ହସି) ପାନ ତ ନୁହଁ—ଆମର ଏ କୋଟିଏ ଟଙ୍କା—ଅମୃତ—ଦାନା, କନା ସବୁ । ମାଆଙ୍କର ଏଇ ଅନୁଗ୍ରହ ଥାଉ । ଆହା ହା ! ଦେଖିଲ କି ଭବ୍ୟପଣିଆଁ ! ବଡ଼ଘର—ବଡ଼ବୁଦ୍ଧି, ସେଥିରେ ବିଦ୍ୟା ପଢ଼ିଛନ୍ତି ? ମାନ୍ୟ, ଧର୍ମ, ସବୁଥିରେ ପାଶ୍ । ସାଆନ୍ତଙ୍କ ଭାଗ୍ୟ ପରା !

କାହ୍ନୁ—ସେ କଥା କାହିଁକି ପଚାରୁଛ ଆଉ ପୁରୁଣ ପଣ୍ଡାଏ ! ଏମିତି ବୋହୂଟିଏ ମିଳିବ ବୋଲି ଆମ ମନ ବଚନ କର୍ତ୍ତବ୍ୟରେ ନ ଥିଲା । ବୋହୂ ନୁହେଁ ଯେ—ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ ।

ପୁଃ ପଣ୍ଡା—ଆଜ୍ଞା, ତଚ୍ଛରୂପ, ତଚ୍ଛରୂପ ! (ପାନରୁ ଦି ଚାରିଖଣ୍ଡ ନିଜ ଅଣ୍ଟାରେ ଖୋସି, ଶୁଣାଳିଙ୍କ ପ୍ରତି ଥାଳିଆ ବଢ଼ାଇଦେଇ କହିଲେ) ନିଅ, ତମମାନଙ୍କ ଭାଗ ନିଅ । (ଜଣେ ଥାଳିଆଟି ନେଲା)

ଜଣେ—ମାଆ ପ୍ରସାଦ ଏ ଆଜ୍ଞା, ମହାପ୍ରସାଦ । ଆମ ମନକାମନା ପୂର୍ଣ୍ଣ ହୋଇଗଲା । ହରିବୋଲ ।

ସମସ୍ତେ—ହରିବୋଲ ।

ପୁଃ ପଣ୍ଡା—(ପୁରାଣ ଆରମ୍ଭ କଲେ)

ଭିତରୁ—ଘୁମୁକରଣେ ଅଜ୍ଞା, ଜଣା କରିଦିଅନ୍ତୁ କି ବୋହୂ ସାଆନ୍ତାଣୀ ଠାଆ ସଜକରି ଅନେଇଁ ବସିଚନ୍ତି, ସାଆନ୍ତଙ୍କ ଠାଆ ବଢ଼ିଲେ ସେ ସାରିବେ ।

କାହ୍ନୁ—ପୁରାଣ ପଣ୍ଡାଏ, ସାନବାବୁ ମୋର ବାଛିକରି ବୋହୂ ଆଣିଛି । ଶୁଣିଲ ?

ପୁଃ-ପଣ୍ଡା—ଆମେ ସବୁ ଚାଟକା ହେଇ ଗଲୁଣି ଆଜ୍ଞା, ବୋହୂ ସାଆନ୍ତାଣୀଙ୍କ ବୁଦ୍ଧି ଦେଖି । ଇସ୍କୁଲରେ ଇଙ୍ଗ୍ରିଜି ପାଠ ପଢ଼ିଲେ ଝିଅମାନେ ଯାହା ନଷ୍ଟ ହେଇଯିବା କଥା ଲୋକେ କହନ୍ତି, ସେସବୁ ମିଛ । ଘୁମୁକରଣେ କହିଲାପରି, ଜଣେ ଜଣେ ଥାଆନ୍ତି ମୂଳରୁ ବଛୁଆ ।

ଘୁମୁ—ଉତ୍ତର ହବ ଅଜ୍ଞା, ପିଲାଲୋକ ସେ ।

କାହ୍ନୁ—(ଉଠି ଉଠି) ବୋହୂ ଆସିଲା ବାସି, ସାଗର ବୌଙ୍କୁ ଗଲା ସବୁଥିରୁ ବନ୍ଦ କରିଛି ସେ ।

ପୁଃ ପଣ୍ଡା—କାହିଁକି, କାହିଁକି ?

କାହ୍ନୁ—କଅଣ ସେ କରୁଛି କାମ କରେଇ ଦଉଚି ତାଙ୍କୁ ? ହଆ-ନଆ, ଭଲ-ମନ୍ଦ, ରଖା-ଥୁଆ ସବୁଥିକି ଆଗ । ସେ ଯବୁ କରିବ । ଯାଙ୍କୁ ଟିପ ଛୁଆଇଁ ଦଉଚି କି ? ସେତ ତ ଗଲା ହଅଁଙ୍କ ଖଟୁଲି-ଠାକୁର ।
(ହସିଲେ)

ଭିତରୁ—ଘୁମୁକରଣେ !

ଘୁମୁ—ଟେଣେ ଉତ୍ତର ହଉଚି ଆଜ୍ଞା ।

କାହ୍ନୁ—ହଁ, ହଁ, ପୁରାଣେ ପଣ୍ଡାଏ ! ପୁରାଣ ବଢ଼େଇଦେଇ ଯା' । (ଭିତରକୁ ଗଲେ)

ଶୁଣାଳଏ—ଜୁହାରି ଆଜ୍ଞା ! (କହି ଚୂଲଗଲେ)

ପୁଃ ପଣ୍ଡା—(ବସି ପୁରାଣ ବାନ୍ଧୁ ବାନ୍ଧୁ) ଓଃ, ଅଜି ହନଟା ଏଇ ବୋହୂ ପୁରଣରେ ଗଲା ।

ଭିତରୁ—ପୁରାଣ ପଣ୍ଡା ଆଜ୍ଞା !

ପୁଃ ପଣ୍ଡା—ହାଁ—ବୋଲ ।

ଭିତରୁ—ପୁରାଣ ବଢ଼ିଲେଣି କି ?

ପୁଃ ପଣ୍ଡା—କାହିଁକି ?

ଭିତରୁ—ବୋହୂ ସାଆନ୍ତାଣୀ ହାତରେ କଅଣ ଅନୁକୂଳ ସାମଗ୍ରି କରିଥିଲେ ଯେ ଭୋଗ ପାଇଁ ପଠେଇଥିଲେ ।

ପୁଃ ପଣ୍ଡା—ନାଇଁ ପୁରାଣ ବଢ଼ି ନାହାନ୍ତି ତ ।
(ଡୋର ପୁଣି ଫିଟାଇଦେଲେ)

ଭିତରୁ—ଭୋଗ ଏଇଠି ଅଛି ନେଇଯାଆନ୍ତୁ ।

ପୁଃ ପଣ୍ଡା—ହଉ, ତୁମେ ଟିକଏ ଆଡ଼େଇ ହେଇଯାଅ । (ଯାଇ ଭୋଗ ଆଣି ପୋଥିରୁ ଛଡ଼ା ତୁଳସୀପତ୍ର ନେଇ ଥାଳରେ ଦେଲେ ଓ ଦୀପ ଆଣି ଦେଖି, ସେଥିରୁ ନେଇ, ବେଶୀଭାଗ ଭୋଗ ସହିତ ଥାଳ ଟିକି ଭିତରେ ନେଇ ରଖିଦେଲେ) ନଅ । ପ୍ରସାଦ ନଅ, ସାମାନ୍ୟ ଚଣ୍ଡ ଆମେ ନେଇଛୁଁ— ଖାଲି ବୋହୂ ସାଆନ୍ତାଣୀଙ୍କର କେମିତି ପାକ, ଗଣ୍ଡାଏ ତୁଣ୍ଡେ ପକାଇବା ବୋଲି । ଆଉ ଚଣ୍ଡ ନ ନେଲେ ଭୋଗ ମଧ୍ୟ ଶୁଦ୍ଧ ହୁଏ ନାହିଁ । ସେତ ବ ଗୋଟେ କଥା ଅଛି ।

ଭିତରୁ—ମ, ଥାଳରେ ତ କଅଣ ପ୍ରସାଦ ଆହୁରି ଅଛି । ଭୋଗ କରିସାରି, ଆପଣ ନେବେ ନାଁ, ବୋହୂ ସାଆନ୍ତାଣୀ ପରା କହିଥିଲେ ।

ପୁଃ-ପଣ୍ଡା—ଏମେତେ ବୋଲ, କହିଥିବେ ତ । ମୁଁ ଜାଣେ ପରା, ବଡ଼ ଘର—ବଡ଼ ଆଖି (ଭୋଗ ବନ୍ଧାବନ୍ଧ କରି) ମାଆଙ୍କର ଏଇ ଅନୁଗ୍ରହ ସବୁଦିନକୁ ଆମ ଉପରେ ଥାଉ । ଏତିକି କଥା କହିବ ।

ଭିତରୁ—ଥାଳଟା ହଅନ୍ତୁ ।

ପୂଃ-ପଣ୍ଡା—(ଉଠି) ହଁ, (ଆଳଦେଇ ଶ୍ଳୋକ ପାଠ କରି ପୁରାଣ ବନ୍ଦକଲେ ଓ ଧାପଟା ନ ଲାଗିଲ ଗ୍ଭଲ ଯାଉ ଯାଉ ପୁଣି ଫେରି) ଅଲେ ଲେ, ଏଇନେ ତ ହେଲୁ ନ ଥିଲ, ଧାପଟା ନ ଲାଗିଲ ଗ୍ଭଲ ଯାଉଥିଲ

( ଧାପ ଲାଗିଲ ଗ୍ଭଲଗଲେ )

---

## ତୃତୀୟ ଦୃଶ୍ୟ

[ ତେଲଙ୍ଗାବଜାର ରାସ୍ତା । ସମୟ । ରାତି । ନଡିଆ ଯେମିତି କାହାର ଅପେକ୍ଷାରେ ଥରେ ପଛକୁ ଟିକଏ ଚକାଇ ରହୁଛି—ଗାଉଛି । ଏକ ଦିଗରୁ ଦଉଡ଼ ଦଉଡ଼ ଆସିଛି ନଟିଆ—ନଡିଆ କାନରେ କଅଣ କହିଲ ସେ ]

ନଡିଆ—ଧୂତ୍, କେହି ନୁହେଁ, ଲଗା ଯିବ ! ସେ ତ ମୋଟେ ଘରୁ ପଦାକୁ ଅସୁ ନାହିଁ ।

ନଟିଆ—କଅଣ ହେଲ ସେଇଠୁ ! ତା ଢଙ୍ଗ ରଙ୍ଗ ଠିକ୍ କହିଦଉଛି···

ନଡିଆ—ଆବେ ସେ ମାଷ୍ଟରର ଭାରିଜା ହେଇଥିବ ବେ ।

ନଟିଆ—କଭି ନୁହେଁ, ଗୋଟେ ଟଡ଼ଆ କୋଉଠୁ ଉଡ଼େଇ ଆଣିଛି ମାଷ୍ଟର

ନଡିଆ—ଆଚ୍ଛା, ତା ମୁଣ୍ଡରେ ସୁନ୍ଦର ଅଛି କି ନାହିଁ କହ ତ ?

ନଟିଆ—ସୁନ୍ଦର ? ଠୋପେ ନାହିଁ ।

ନଡିଆ—ତୁ କେମେତେ ଦେଖିଲୁ ?

ନଟିଆ—ଅଭି ଗ୍ଭଲ, ଦେଖେଇଦେବି ।

ନଡିଆ—ଦୁଶିବ ?

ନଟିଆ—ଝରକାରେ ତ କବାଟ ନାହିଁ, ମେଞ୍ଚାଏ କନା ମଡ଼ା ହେଇଚି, ଘରେ ତ ବଇଠା ଜଳୁଛି, କନାଟା ଠେଲି ଦେଲେ ହେଲ ।

ନଡିଆ—ହଟ୍ ବେ, ତୁ ଶଳା ଭାରି ବଦମାସ୍, କୋଉଠି ଝରକାରେ କବାଟ ନାହିଁ, କେଉଁଠି ସେ ମାଷ୍ଟର କାହାକୁ ଗୋଟେ ଆଣିଲ, ଶଳା ଗୋଇ ଉଡ଼ୁଥିବୁ ।

ନଟିଆ—ଗୋଇ କଅଣ ବେ ? ଆମ ସାଇଟା ଭିତରେ ଗୋଟେ ଲଗେଇଚି ଲାଟ ? ଏଇଠାକୁ କି ସାଇକରି ପାଇଲ କି ? ତୁ ଆ ନା' ସାଙ୍ଗରେ, ଦେଖେଇ ଦଉଚି ।

ନଡିଆ—ଯାବେ, ଝରକାରୁ କପଡ଼ାଟା ଠେଲିଦେଲେ କଅଣ ନାଇଁ କଅଣ କହିବ ?

ନଟିଆ—କହିଲେ ଫେର୍ ଟଡ଼ଆ ବୋଲ୍ଡି ଶୁଣିବ । ଏଇ ତ ମୁଁ ଶୁଣେଇ ଆସୁଚି ତାକୁ, ଯେମିତି କପଡ଼ାଟା ଠେଲିଦେଇଚି, ଭିତରୁ ଏକଦମ୍ ଯେମିତି ସାପ ଗରଜେ—କହିଲ···କିଏ ? ମୁଁ କହିଲି ଆମେ ଅଛୁ, ବସ୍ତିବାଲା ।

ନଡିଆ—ତା' ପର ?

ନଟିଆ—ଫେଣ୍ ପଗ୍ଭରିଲ କଅଣ ଗ୍ଭହୁଚ ? ସାଥେ ସାଥେ ଜବାବ ଦେଲି—ତମକୁ ଗ୍ଭହୁଁଛୁ ।

ନଡିଆ—ଶଳା ଭାରି ବଜ୍ଜାତ୍ ତୁ ।

ନଟିଅ—ଦେଖ୍ନା ଠୋକାର ରୁବାବ୍ ! ପକ୍କା ଖଲିଫା ଅଛି ।

ନଡିଆ—ତୁ ପଣ୍ଡା ଲଗା'ନାଁ, ଠିକ୍ ଖବର ମିଳିଯିବ; ସେ କିଏ ?

ନଟିଆ—ଲଗଉଛି, ଲଗଉଛି ।

ନଡିଆ—(ଚୁପ୍ କରାଇ) ଚୁପ୍ ଚୁପ୍ ସେ ମାଷ୍ଟର ଆସୁଛି ।

ନଟିଆ—ଆରେ ମାଷ୍ଟର ? ଦେ'ଖ୍ନାଁ, ମୁଁ ବୋଲ୍ଡି ଶୁଣଉଚି ।

(ରସିକ ଆସୁଥିଲ ତାକୁ ପଛରୁ ଡାକିଲ ନଟିଆ)

ନଟିଆ—ଓ, ଓ, ଓ ବାବୁ—ମାଷ୍ଟରବାବୁ ନାଁ କଅଣ ତୁମେ ?

ରସିକ—(ଫେରି ଛିଡ଼ା ହୋଇ) ମୋତେ ?

ନଟିଆ – ହଁ ତମକୁ । ତୁମେ ଏଠି ସାଇ ଭିତରେ ଗୋଟେ କଅଣ ଲଟ ଲଗେଇଚ ଲାଇଡ ?

ରସିକ – କଅଣ ?

ନଟିଆ – କଅଣ ? ଆହୁରି ପଚରୁଚ ? ଏଇଠାକୁ କି ପଡ଼ାକରି ପାଇଲ କି ?

ରସିକ – କଅଣ କହୁଚ, ମୁଁ ତ କିଛି ବୁଝିନାଇଁ ।

ନଟିଆ – ଅଚ୍ଛା, ବୁଝେଇଦେବା, ଯେବେ ବୁଝିନାହଁ ।
(ଫେରି ଯିବାକୁ ବସିଲା)

ରସିକ – କଅଣ ? କଥାଟା କଅଣ ?

ନଟିଆ – (ଫେରି ଗୁହିଁ) କଅଣ ? ଗୋଟେ ମାଇକିନା କୁଆଡ଼ୁ ଆଣି ରଖିଚ—ସେ ଯାହାକୁ ନାଇଁ ତାକୁ ଗାଳି ଦେବ ? ଏଟା ମଫସଲ ନୁହେଁ ବାବୁ, କଟକ ସହର—ବଜଲବଗି । ଅନ୍ଧାର ନୁହେଁ । କିଏ ହେ। ସେ ?

ରସିକ – ସେ – ସେ – ସେ – ଜଣେ···

ନଟିଆ – ଜଣାଅଛି ଆମକୁ (ଖଡେଇ ହୋଇ) ସେ – ସେ ? ତୁଣ୍ଡ ଝାଡ଼ନବଜା ଗୁଡ଼ପିବଟି ବାବୁ ! ତୁମେ କାଲି ଭିତରେ ଆମ ସାଇରୁ ଉଠ । ନୋଇଲେ··· ହଁ ।
(ଚାଲିଗଲା)

ରସିକ – ଶୁଣ, ଶୁଣ । ଓ ବାବୁ ! (ପଛେ ପଛେ ଗଲା)

---

## ଚତୁର୍ଥ ଦୃଶ୍ୟ

[ତେଲେଙ୍ଗାବଜାର—ରସିକ ବସା । ରାତି ପ୍ରାୟ ୩ଟା ହେବ । ରେଣୁ ଓ ରସିକ ଦୁହେଁ ଗୋଟିଏ ବିଛଣାରେ ଶୋଇଛନ୍ତି । ରସିକ ବୋଧହୁଏ ଶୋଇ ନ ଥିଲା—କମ୍ପା ନିଦ ଭାଙ୍ଗିଗଲା । ଉଠି, ରେଣୁ ମୁହଁକୁ ଚାହିଁ ଦେଖିଲା—ତାକୁ ଖୁବ୍ ନିଦ ହେଇଚି । ଆସ୍ତେ ଆସ୍ତେ ବିଛଣାରୁ ଉଠି ନିଜ ସୁଟ୍‌କେଶ୍ ଫିଟାଇ ବାହାରେ ଥିବା ଲୁଗାପଟା ସଜାଇ ରଖୁଥାଏ, ଯେମିତି ରେଣୁ ଏ କଥାର ଟେର୍ ନପାଏ—ସାଇତି ସାରି ବାହାରକୁ ଗଲା । ଘଣ୍ଟା ବାଜିଲା ତିନି । ରସିକ ଆସି ସୁଟ୍‌କେଶ୍‌ରୁ ଖଣ୍ଡିଏ ଛୁରୀ କାଢ଼ି ଧାର ପରୀକ୍ଷା କଲା । ତା' ପରେ ଧୀରେ ଧୀରେ ଆସି ରେଣୁ ମଥା ପାଖେ ବସି, ପ୍ରଥମେ ତା' ବେକରୁ ଚେନଟି କାଟି ସୁଟ୍‌କେଶରେ ରଖିଦେଇ ଆସିଲା ।]

ରସିକ—(ତୁନିତୁନି) ତିନି ବାଜିଲା ବୋଧହୁଏ ।
(ଏହା କହି ରେଣୁର ବିଛଣାକୁ ଗଲା, ଧୀରେ ଧୀରେ ତାର ହାତକୁ ଗଡ଼ାଇ, ତା'ର ଚେତା ନ ଆସିବାରୁ ଟିକିଏ ଅପେକ୍ଷା କରି ରେଣୁ ହାତରେ ଥିବା ସୁନା ଚୂଡ଼ିକୁ ସୁଟକେଶରେ ଥିବା ଗୁଆକାତି ଆଣି କାଟିବାକୁ ଲାଗିଲା, ପାଖରେ ଲଣ୍ଠନ ରଖି । ଗୋଟିଏ ହାତରୁ କାଟି ସାରିବା ପରେ, ଆର ହାତର କାଟିବାକୁ ଗଲାବେଳେ ରେଣୁର ନିଦ ଭାଙ୍ଗିଗଲା ।)

ରେଣୁ—(ହାଉଳି ହୋଇ କହିଲା) କିଏ ?
(ରସିକ ହଠାତ୍ ଲଣ୍ଠନଟି ଲିଭାଇ ଅନ୍ଧାରରେ ନିଜ ସୁଟ୍‌କେଶଟି ଧରି ଘରୁ ବାହାରି ଚାଲିଗଲା ।)

ରେଣୁ—ରସିକ ବାବୁ ! ରସିକ ବାବୁ !
(ଡାକି ଡାକି ଅନ୍ଧାରରେ ଉଠି ଏପାଖ ସେ ପାଖ ଅଣ୍ଡାଳୁ ଅଣ୍ଡାଳୁ ଗୋଟିଏ ଷ୍ଟୁଲରେ ଗୋଡ଼ ବାଜି କଚାଡ଼ିହୋଇ ପଡ଼ିଲା ।) ଉଃ !
(ବୋଧହୁଏ ଆଉ ତା'ର ଚେତା ନାହିଁ ।)

---

## ପଞ୍ଚମ ଦୃଶ୍ୟ

[ ପଥ—ନଟା ବାରମଜା ବିକି ବିକି ଗାଇ ଗାଇ ଚାଲିଛି ]

ଗୋଟେ ପଇସାରେ ବାବୁ, ବାରମଜା ଖା'
ବାରମଜା ଖା' ବାବୁ, ବାରମଜା ପା' ।।

ଘଦେ ଫାନ୍‌ସି ଚପଲ-ମୁଖେ ବଉଟି ପାଉଡର୍
ଉଡ଼େ ଫିନ୍ ଫିନ୍ ଶାଢ଼ୀ
ସଞ୍ଜବେଳେ ଲଇକୂଳେ ହାଓଆ ଖାଇ ଯା'
ଲେଡ଼ ଲଭ୍ ଗୁହିଁଥିବେ ଯା ।।
ଝଙ୍କା ବରଗଛ ମୂଳେ ପ୍ଲିଡ଼ର ସାହେବ
ବାରମଜା ପାଟିରେ ପକାଏ
ମହକଲଙ୍କୁ ଗୁହିଁ ଦନଯାଏ ।।
ନାଡ଼ ଚପ୍ ଚପ୍ ପୁଣି ଡାକ୍ତର ସାହେବ
ବାରମଜା ପଟିରେ ପକାଏ
ରୋଗୀ ମାର ଡାକ୍ତର ବୋଲଏ ।।

ନବ—(ଆସି ପହଞ୍ଚିଲା) ହଇବେ ଲଚା ! ଏଠି ଗୋଟେ ବେବଶା ଯମେଇ ଦେଲୁଣି ?

ନଚା—ଦୂର୍‌ବେ—କାର୍‌ବାର୍ ବେଳେ ଆସି ଗୋଟେ ଗୋଲ୍‌ମାଲ କର୍‌ନା ।

ନବ—ଉଠ୍‌ବେ—କାର୍‌ବାର୍ ସେତ୍‌କ ହେଲା ସେତ୍‌କ ଥାଉ—ଆ ଯିବା । ଆବେ ସେତକ ଥାଉ ବେ-ଗୃଟ୍ ହବ ।

ନଚା—ଯାବେ ଯା'—ତୁ ଚଏଲ୍ ଦେ ।

ନବ—ଶଳା ଯିବୁ ନାହିଁ ? ଆଚ୍ଛା—ଦେଖିବା ।
(ଥାଳଉଠାଇ ନେଇ ଗୃଲଗଲା)

ନଚା—ହଁ। ବେ ଶଳା ଦେ'ବେ—ଦେ'ବେ ।
(ପଛେପଛେ ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

[ସାଗରର କୋଠରୀ—ସାଗର ଗୋଟେ ଚୌକରେ ବସି ଗୋଟେ ଲମ୍ବା ହିସାବ ଖାତା ଦେଖୁଥିଲେ । ପାଖରେ ତାଙ୍କର ଘମୁକରଣେ ଖଣ୍ଡିଏ ଖଣ୍ଡିଏ କାଗଜ ଓଲଟାଇ ଦସ୍ତଖତ କରାଉଥିଲେ । ଆଠ ବାଜଲଣି ]

ସାଗର—ଆଉ କେତେ ଅଛୁ ?

ଘମୁ—ବ୍ରହ୍ମାଙ୍କୁ ଲଚାଏ ହେଇବ ସାନବାବୁ !

ସାଗର—ଦନ ୪ଟା ବେଳୁ ବସି···ସରବାକୁ ନାହିଁ ?

ଘମୁ—ବର୍ଷକର କାଗଜପତ୍ରଟି ! ଆପଣ ବୋଲି ଆହୁର ଏତକ ସାରଲେଣି ।

ନୟନା—(ଭିତରୁ ଦୌଡ଼ ଆସିଛି, ଡାକ) ବାବୁ ! (ଆସି ସାଗର କାମ କରୁଥିବା ଦେଖି ଟିକଏ ଥମିଗଲା, ଜଭକାମୁଡ଼ । ସାଗର ଓ ଘମୁକରଣେ ତାକୁ ଗୁହିଁଦେଇ କାମରେ ଲାଗିଲେ ।)

ସାଗର—(ଅଳ୍ପସମୟ ପରେ) କଅଣ ରେ ନୟନା ! ଠିଆହେଲୁ ?

ନୟନା—ବାବୁ ! ମାଆ ସାଆନ୍ତାଣୀ କହିଲେ···
(ତୁନ ହୋଇଗଲା)

ସାଗର—(ଟିକଏ ପରେ) କଅଣ କହୁଥିଲୁ , କହ ।

ନୟନା—ମାଆ ସାଆନ୍ତାଣୀ କହିଲେ···

ସାଗର—(ଟିକଏ ଛଲେଇ କର, ପରିହାସ କଲାପରି) ହଁ, ମାଆ ସାଆନ୍ତାଣୀ କହିଲେ···

ନୟନା—(ଅଭିମାନଭରା ସ୍ୱରରେ) ଯା, ମୁଁ କହିବ ନାଇଁ—ଯା । (ଗୃଲଯାଉଥିଲା)

ସାଗର—(ହସି) ନୟନା ! ଶୁଣ୍, ଶୁଣ୍, ଅଚ୍ଛା ମୁଁ ଏଇନେ ଶୁଣିବ କହ । କଛୁ କହିବ ନାହିଁ ଆଉ ତୋତେ । ଆଁ—ଶୁଣ ।

ନୟନା—( ଫେର, ଅଭିମାନରେ ) ହଁ, ଯା—ତୁମେ ଖାଲି ଥଟ୍ଟା କରବ ।

ସାଗର—(ହସି କାମ କରୁଥାଏ) ନାଁ—ଶୁଣିବ ଭଲକର କହ ।

ନୟନା—ମାଆ ସାଆନ୍ତାଣୀ କହିଲେ···

ସାଗର—(ଟିକଏ ଅପେକ୍ଷାକର) ଫେର୍ ତ ସେଇଆ କହିଲୁ— ମାଆ ସାଆନ୍ତାଣୀ କହିଲେ—ମାଆ ସାଆନ୍ତାଣୀ କହିଲେ···

ନୟନା—ଆଉ ତୁମେ ଶୁଣିବ ନାଇଁ, ଖାଲି କାଗଜକୁ ଅନେଇଁ ଥିବ—ମୁଁ ମୋର୍ କହୁଥିବ ?

ସାଗର—ଓଃ, ତୋ଼ଠୁ କଥା ଶୁଣିବାକୁ ହେଲେ କାମଦାମ ବନ୍ଦ କରି, ତୋତେ ଗୁହିଁବାକୁ ହେବ—ନେବେ ଯାଇଁ ତୁ କହିବୁ । ନାଁ ?

ନୟନା—ଆଉ ସ୍ୟାଡ଼େ ତ କାମ କରିବ, ସ୍ୟାଡ଼େ ଶୁଣିବ କେମିତି ?

ସାଗର—କାମ ହାତରେ କରୁଛି, ତୋ କଥାଟା କାନରେ ଶୁଣିବ । କାନଠୁ ହାତ କେତେ ଦୂରରେ—ଦେଖିଲୁ ? ଆଚ୍ଛା, କହ । (ଘ୍ରମୁକରଣଙ୍କୁ) ଟିକିଏ ରହିବ ଟି, ତା କଥା ନ ଶୁଣିଲେ ଫେର୍ ବଗି ଗୁଲଯିବ ଏଇନେ ।

ଘ୍ରମୁ—(ଟିକିଏ ସାମନାରୁ ପାଖେଇ ଗଲେ) ହଉ ହଉ, କହ ।

ନୟନା—କହିଲେ କ—ଯା, ସାନବାବୁଙ୍କୁ କହିବୁ—ବଡ଼ ଆଠ ବାଜିଲାଣି । ନ ଖାଇ ନ ପିଇ ସବୁବେଳେ କଣର କାମ କରୁଥିବ ? କଅଣ କାହାର ଗୁକର କରିଛି ? (ହସି ହସି ପଳେଇଲା)

ସାଗର—ଶୁଣ୍, ଶୁଣ୍ ନୟନା !

ନୟନା—କଅଣ ? (ପୁଣି ଦଉଡ଼ି ଆସି)

ସାଗର—ତୁ ଗୁଲ ଯାଉଛୁ ?

ନୟନା—ଆଉ ?

ସାଗର—ତୁ ପରା ବୋଉଙ୍କ ପାଖରୁ ଖବର ନେଇ ଆସିଥିଲୁ ?

ନୟନା—କହିଲି ଯେ !

ସାଗର—ଖାଲି କହିଦେଲେ ହେଲା ?

ନୟନା—ସେ ତ ମୋତେ କହିବାକୁ କହିଥିଲେ ।

ସାଗର—ତୁ ତାଙ୍କ ପାଖକୁ ଫେରି ଯାଉଛୁ ଟି ?

ନୟନା—ହଁ ।

ସାଗର—ମୁଁ କଅଣ ଜବାବ୍ ଦେଲି ବୋଲି, ସେ ତୋତେ ପଗୁରିଲେ କଅଣ କହିବୁ ତୁ ?

ନୟନା—(ନୀରବ)

ସାଗର—ମୁଁ ତ ତତେ କିଛି ଜବାବ୍ ଦେଇନାହିଁ, ତୁ କେମିତି ଗୁଲଯାଉଛୁ ?

ନୟନା—କଅଣ କହିବ ତେବେ ?

ସାଗର—କହିବୁ କ—ହଁ, ସାନବାବୁ ପରା ତମର ଗୁକର, ତମର ଗୁକର କରିଛନ୍ତି ।

ନୟନା—ଉଁ, ଆଉ କଅଣ ? ମୁଁ କହିବନାଇଁ—ଯା ।

ସାଗର—କ ? କଥାଟା ତୋ' ମନକୁ ପାଇଲା ନାଇଁ ? ନାଇଁ ଯା—ସେଇଆ କହିବୁ । ଆଉ ମୋ ଜଳଖିଆ ନେଇଆସିବୁ ।

ନୟନା—ଏଇଠିକି ?

ସାଗର—ହଁ, ମୁଁ କାମ ବନ୍ଦ କରୁଛି, ଯାଃ—(ନୟନା ଗୁଲଗଲା) ଘ୍ରମୁକରଣେ ! ଆଜ ଆଉ ସ୍ୱେ ସରୁନାଇଁ ?

ଘ୍ରମୁ—ହଁ, କ'ଣ ହେଲା ? କାଲି ସକାଳେ ଘଣ୍ଟାଏ ବସିଗଲେ ସରିଯିବ ଯେ ।

ସାଗର—(କଲମ ରଖି, ଅଳସ ଭାଙ୍ଗି) କାଲି ସକାଳେ ? ଆହୁରି ଅନେକ କାମ ବାକି ଅଛି ସକାଳକୁ ।

ଘ୍ରମୁ—ଆଉ କୁଆଡ଼େ ଯିବାର ଅଛି ?

ସାଗର—ସେ ନୂଆ ପୋଖରୀଟା କେତେ ଖୋଳା ହେଲା···କାମ ଦେଖି ନାଇଁ ।

ଘ୍ରମୁ—ସେଠୁ ଫେରିଲେ ଏ କାମ ହବ ।

ସାଗର—ହଁ, ସେଠୁ ଫେରିଲେ ?···ଆରେ, ରେ ! କାଲି ତ ଆଉ ଗୋଟେ କାମ ଅଛି ।

ଘ୍ରମୁ—ଆଉ କଅଣ ?

ସାଗର—ତମ ବୋହୂ ସାଆନ୍ତାଣୀ ଡାକିଛନ୍ତି ତାଙ୍କ ଗାର୍ଲ୍‌ସ୍କୁଲ ଦେଖି ଯିବାକୁ···କୁଆଡ଼େ ଅନେକ ପିଲା ହୋଇଛନ୍ତି···ଶଏଖଣ୍ଡେ । ଏଇ ତିନି ଗୁରି ମାସ ଭିତରେ ଖୁବ୍ କାମ ହୋଇଛି ।

ଘ୍ରମୁ—ବୋହୂ ସାଆନ୍ତାଣୀ ଧନ-ଗିଡ଼ ଲଗିଛନ୍ତି । ଧନ ଦଶଟାରୁ ଗୁକରି ବଜେଇଲାପରି ଯିବେ ଯେ, ଫେର୍ ସୁଆଗ ଲଗିବ ଗୁରରେ । ଘଡ଼ିଏ

ଆଗରୁ ସୁଆଗ ଗଲେ ବେହେରାଙ୍କୁ ବିରକ୍ତ ହେବେ—କାହିଁକି ଏତେ ବେଗି ଆଣିଲ ବୋଲି ।

ସାଗର—ଲୋକଙ୍କର ଖୁବ୍ ଆଗ୍ରହ ଅଛି···ନାଁ ?

ଝୁମୁ—ଆଗ୍ରହ ବୋଇଲେ ! ବୋହୂ ସାଆନ୍ତାଣୀ ପଢ଼ାଉଛନ୍ତି ନାଁ ? ଘରୁ ବଡ଼ ବଡ଼ ଯୁବତୀ ଝିଅ ପଢ଼ିଆସିବାକୁ ମନ କଲେଣି ଟି !

ସାଗର—ଆସନ୍ତୁ ଆସନ୍ତୁ ।

ଝୁମୁ—ଆସନ୍ତୁ ବୋଲି ତ କହିଦେଲେ । ବାକି ଏତେ ପିଲାଙ୍କୁ ବୋହୂ ସାଆନ୍ତାଣୀ ଏକୁଟିଆ ପଢ଼େଇ, ତାଙ୍କର ଦେହ ଆଉ ଦେହ ହୋଇ ରହିବଟି ? ଯୁବତୀମାନଙ୍କୁ ପଛେ ବୋହୂ ସାଆନ୍ତାଣୀ ପଢ଼ାନ୍ତୁ । ପିଲାମାନଙ୍କ ପାଇଁ ଗୋଟେ ଅଲଗା ପାଠୁଆ, ଖଣ୍ଡିଅକ୍ଷରିଆ, ଅଳ୍ପ ଦରମାରେ କାହାକୁ ରଖିବା ବନ୍ଦୋବସ୍ତ କଲେ ଭଲ ହୁଅନ୍ତା ।

ସାଗର—କରିବାକୁ ହେଲେ ଖଣ୍ଡିଅକ୍ଷରିଆ ଭଲ ନୁହେଁ । ଆମ ଦେଶର ସେଇଟା ଭୁଲ ଧାରଣା । ପିଲାଙ୍କୁ ପାଠ ପଢ଼େଇବାକୁ ବଡ଼ ପାଠୁଆ ଦରକାର । ମୂଳଦୁଆ ଦୋରସ୍ତ ନ ଥିଲେ ତୋଳାଘର ଭାଙ୍ଗି ପଡ଼ିବ ଯେ ।

(ନୟନା ପାଣି ଓ ଗିଲାସ ନେଇ ଆସିଲା)

ସାଗର—ସେଇଥିପାଇଁ ଦେଖୁନା ଏଇ ନୟନାକୁ—କେତୋଟା ମାସ ବା ପଢ଼ିଲା ସେ । ତମ ବୋହୂ ସାଆନ୍ତାଣୀ ତାକୁ ପଢ଼ାଉଛନ୍ତି । ଏଇନେ ଓଡ଼ିଆ, ବଙ୍ଗଳା, ଇଂଲିଶ୍, ବେଶ୍ ପଢ଼ି ବୁଝି ପାରୁଛି । ସେ ଟିକିଏ ପାରିଗଲେ, ମାଷ୍ଟ୍ରିଆଣୀ ହବ ଯେ ! ତାକୁଇ ପଢ଼ାଇ ବସୁବସୁ ତ ଗାର୍ଲସ୍କୁଲ୍ କରିବାର ମତଲବ୍ ହେଲା ।

ଝୁମୁ—ତେବେ ନୟନା ଆମମାନଙ୍କର ବହୁତ ଉପକାର କରିଛନ୍ତି ।

ନୟନା—ଫେର୍ ଉଚ୍ଛୁର କଲ, ମୁହଁ ଧୁଅ ।

ସାଗର—ତେମେ ତେବେ କାଗଜଗୁଡ଼ା ନେଇଯା ଝୁମୁକରଣେ, କା'ଲି ଫେର୍ ଏଇ ସଞ୍ଜକୁ···

ନୟନା—ହଁ, ନ ଖାଇ ନ ପିଇ··ଫେର୍ କାଲି ।

ସାଗର—ନାଁ ନାଁ, ଖାଇସାରି କାମ କରିବ, ଯା—ତୋ'ର କଥା ହେବ ।

ନୟନା—ହଁ ।

ସାଗର—ସାଆନ୍ତ କାଲି ଯାଉଛନ୍ତି କି ସ୍କୁଲ ଦେଖି ?

ଝୁମୁ—ଯିବେ ବୋଧହୁଏ । ଗାଆଁରୁ ଆଉ, ଆଉ, ଭଦ୍ରଲୋକମାନଙ୍କୁ ଡାକିଛନ୍ତି ବୋହୂ ସାଆନ୍ତାଣୀ ।

ସାଗର—ଓଃ, ମୁଁ ତ ଏସବୁ ଜାଣିନାହିଁ । ଗୋଟେ ତେବେ କିଛି ବିଶେଷ ବ୍ୟବସ୍ଥା କରାଯାଇଛି । ଏଁ ?

ଝୁମୁ—ହଁ, ଘର ସଜା ସଜି—ପିଲାଙ୍କୁ କୁହା ହୋଇଛି ସବୁ ଭଲ ଲୁଗା ପିନ୍ଧି ଆସିବେ । ଗୀତ ଶିଖା ହୋଇଛି ।

ନୟନା—କଟେରି ଯେବେ ସରିଲା ତ ଗପରେ ରାତି ଦଶ ବାଜିବ । ମୁଁ ଯାଉଚି ।

(ପାଣି ନେଇ ବାହାରି ଯିବାକୁ ଉଦ୍ୟତ)

ଝୁମୁ—ନାଇଁ, ନାଇଁ ମୁଁ ଯାଉଚି ।

(ଚାଲିଗଲେ କାଗଜପତ୍ର ନେଇ)

ସାଗର—(ଉଠିହସି) ଯବର୍ଦ କରିବୁ ମୋତେ ତୁ—ନାଁ ? ଆଚ୍ଛା, ଆଚ୍ଛା, ଆଣ୍ ପାଣି ଆଣ୍ । ଜଳଖିଆ କାହିଁ ?

ନୟନା—ଆଗେ ମୁହଁ ଧୁଅ ।

ସାଗର—ମୁଁ ଧୋଉଚି—ତୁ ଯା ଆଣ୍ ଯା—ଭୋକ ହେଲାଣି ।

ନୟନା—ଓଃ ଭୋକ ! ଏବେ ମନେ ପଡ଼ିଗଲା କି ? ଆଉ ଦିଘଣ୍ଟା ଗପିଥିଲେ ହୋଇଥାନ୍ତା ତ ?

(ସ୍ନେହଭରା କୋପ ଦୃଷ୍ଟି ଦେଇ ଚାଲିଗଲା)

ସାଗର—(ନୟନାର ଭାବଭଙ୍ଗୀ ଲକ୍ଷ କରୁଥିଲା, ହସି କହିଲା) ନୟନା !

ନୟନା—(କେବଳ ଫେରି ଚାହିଁଲା ସ୍ନେହଦୃଷ୍ଟିରେ)

ସାଗର—ତୁ ମନେ କରୁଛୁ ମୁଁ ସେମିତି ଛୋଟ ପିଲା—ନାଁ ? ତୁ ସବୁବେଳେ ମୋ'ତ ତୋ ଶାସନରେ ରଖିବାକୁ ଚାହୁଁ—ନାଁ ?

ନୟନା—(ଛଳ କୋପରେ) ହଁ, ଯା (ଚାଲିଗଲା)

ସାଗର—(ଦୀର୍ଘନିଶ୍ୱାସ ମାରି) କିନ୍ତୁ ନୟନାର ଭବିଷ୍ୟତ ? (ଆଖିମୁଦି) ନୟନା ସୁନ୍ଦରୀ ଯୁବତୀ ।

(ନୟନା କିଛିବେଳ ପରେ ଜଳଖିଆ ଥାଳି ଆଣିଲା, ସାଗର ପାଦଶବ୍ଦ ଶୁଣି ଚାହିଁଲା, ନୟନା ଜଳଖିଆ ଧରି ଛିଡ଼ାହେଲା ।)

ସାଗର—ଏଇ ଟେବୁଲରେ ଦେ ।

(ମୁହଁ ଧୋଇବାକୁ ଗଲା)

ନୟନା—(ରଖିଦେଇ) ସବୁତକ ଖାଇବାକୁ ହବ ।

ସାଗର—(ନୟନାକୁ ଚାହିଁ, ପାଖକୁ ଟାଣିଆଣି, ବାଆଁ ହାତ ତା' ଅଣ୍ଟାରେ ଦେଇ, ଡାହାଣ ହାତରେ ତା, ଗାଲରେ ଧୀରେ ଚାପୁଡ଼ ଦେଇ ଚାହିଁଲା) ତୁ ବଡ଼ ଦୁଷ୍ଟ ନୟନା, (ହାତଧରି ହଲାଇ) ନାଁ ?

ନୟନା—(କେମିତି ଚଡ଼ଚ୍ ସଞ୍ଚାର ଅନୁଭବ କଲା, ଜୀବନରେ । ସେ ଥରିଗଲା, ଚାହିଁ ରହିଲା ସାଗରର ମୁହଁକୁ, ବଦଳିଗଲା ତା'ର ଆଚରଣ ଚାହାଣୀ । ଆରକ୍ତ ହେଲା ଗଣ୍ଡ, ଧୀରେ ଧୀରେ ସେ ସାଗରର ହାତକୁ ତା ହାତରେ ଛଡ଼ାଉ ଛଡ଼ାଉ କହିଲା) ନା, ସବୁ ଖାଇଦଅ ।

ସାଗର—(ସେଦିନ ଯେଉଁ ଆଖିରେ, ତା'ର ଅଜ୍ଞାତରେ ସେ ନୟନାକୁ ଦେଖିଲା, ଆଉ କେବେ ସେମିତି ଦେଖିନାଇଁ । ନୟନା ସେଦିନ ତାର ଆଖିର ସବୁଠାରୁ ସୁନ୍ଦର ଜିନିଷ ବୋଧହୁଏ । ଚାହିଁ ରହିଲା ଖାଲି ନୟନାର ଆଖିକି । ହାତ ଛୁଏଁ ଛୁଏଁ ଛୁଡ଼ିଗଲା କି ନୟନା ଛଡ଼ାଇ ଦେଇଛି ମନେ ହେଉ ନାହିଁ ତା'ର) ହୁଁ (କଳ ଯନ୍ତ୍ର ପିତୁଳା ଭଳି ସେ ଖାଇଲା ଜଳଖିଆ । ଦୁଇ ଚାରି ଥର ଖାଇସାରି ପାଣି ପିଇଲା)

ନୟନା—ଏତକରେ କଅଣ ସରିଗଲା ?

ସାଗର—ନୟନା ! ତୁ ସାରିବାକୁ ଦଉଛୁ କେଉଁଠି ?

ନୟନା—ଆଉ ? ପାଣି ପିଇଲ ଯେ ?

ସାଗର—ଛାତିରେ କେମିତି ଲାଗିଗଲା ।

ନୟନା—ମିଛ କଥା ! ସେ ତୁମର ଗୋଟେ ଛଳ ।

ସାଗର—ଛଳ ? ମୋର ? (ଚାହିଁଲା) ।

ନୟନା—ଆଉ ?

ସାଗର—ତୁ ଦେଖ୍, ଜାଣିବୁ । ଛାତି ଦେଖ, ଲାଗିଛି କି ନାହିଁ ।

(ନୟନାର ହାତ ନେଇ ଛାତିରେ ଦେଲା)

ନୟନା—ଏମିତି ଉପରୁ ଭଲ ମୁଁ କଅଣ ଜାଣିବି ? (ହାତନେଇ)

ସାଗର—ସତରେ ନୟନା ! ଏମିତି ଲାଗି ନ ଥିଲା କେବେଁ । ସତରେ ଏମିତି କେବେଁ ତ ଲାଗେନାଇଁ । (ପୁଣି ଚାହିଁଲା)

ନୟନା—(ଲାଜରେ ମରିଗଲା ସତେ···କଅଣ ବୁଝିଲା କେଜାଣି) ।

(ସାଗର ବୌ ପାନନେଇ ଆସିଲେ)

ସାଃ ବୌ—ମ ? ଖିଆ ସରିନାହିଁ କି ତୋର ? ମୁଁ ମନେ କଲି, ସାରିବୁଣି, ପାନ ନେଇ ଆସିଲି । ଦେ, ଖାଇଦେ । ବସିଛୁ କଅଣ ?

ସାଗର—(ଖାଇବସିଲେ ପୁଣି)

ନୟନା—ଖାଇବେ କଅଣ ? ତାଙ୍କର ଛାତିରେ ଲାଗୁଛି, ଚାଲିଛି ତ ଖାଲି ପାଣିପିଆ ।

ସାଃ ବୌ—ଲାଗିବ ନାଇଁ ? ଦିନ ନାଇଁ, ରାତି ନାଇଁ, ଖାଲି କଚର—କଚର ! ବେଳ ସହଳରେ ଦିଇଟା ଖାଇଲେ ସିନା ହେବ ? ଆଉ ଗୋଟିଏ କଥା ମୋର ବୁଢ଼ା ! ଇସ୍କୁଲ କରିବାକୁ ଯେବେ ମନ, ତେବେ ଆଉ ମାଷ୍ଟରାଣୀ ରଖ । ଦିନ କେତଟାରେ ବୋହୂଟି ମୋର କଳାକାଠ ହୋଇଗଲାଣି !

ସେ କାଲିଠାରୁ ଆଉ ଇସ୍କୁଲକୁ ଯିବନାହିଁ । ତୋ' ଇସ୍କୁଲ ଭାଙ୍ଗୁ କି ରହୁ । ମୁଁ ମନା କଲି—ସେ ଆଉ ଯିବ ନାହିଁ ।

ସାଗର—ହଁ, ମୁଁ ତା'ର ବନ୍ଦୋବସ୍ତ କରୁଛି ।

ସାଃ ବୌ—ତୁ କର—ନ କର । ମୋ ବୋହୂ ଯିବ ନାହିଁ ତ ଗଲା ।

ସାଗର—ସ୍କୁଲଟା ଭାଙ୍ଗି ଯିବ ଯେ ?

ସାଃ ବୌ—ଭାଙ୍ଗିଲେ ଭାଙ୍ଗୁ, ରହିଲେ ରହୁ ।

ସାଗର—ମୁଁ କାଲି ନୋଟିସ ଦଉଚି ଖବର କାଗଜରେ । ଆଠ ଦିନ ଭିତରେ ଅନ୍ୟ ଲୋକ ରଖିନେବି ।

ସାଃ ବୌ—ହଉ । ଗଣି ଗଣି, ଆଠ ଦିନ ବାସି, ନଅ ଦିନ ଦିନ ବୋହୂ ଆଉ ନ ଯାଏ । (ନୟନାପ୍ରତି) ନେ, ନୟନା ପାନ ରଖ । ସାନବାବୁ ଖାଇସାଇଲେ ଦବୁ । ମୁଁ ଯାଉଚି, ପୂରାଣ ଆରମ୍ଭ ହୋଇଗଲାଣି । ଦେ, ତୁ ସବୁ ଖାଇଦେ ।

ନୟନା—(ପାନ ନେଇ) ମୋ ବେଳକୁ ଯିନା ଗୁଡିରେ ଲଗୁଥିଲା ! ଏଥର ତ ବୋଉ କହି ଗଲେଣି— ସବୁତକ ଖାଅ—ନୋଇଲେ ଯାଇ ବୋଉଙ୍କୁ କହିଦେବି । ପାନ ଦେବିନାହିଁ ।

ସାଗର—(ଖାଉ ଖାଉ) ସେତିକ ପାରିବ ତ ।

ନୟନା—ସେ କଥା ମିଛ । ସବୁତକ, ମୁଁ ଗୁହିଁଛି ।

ସାଗର—ମୋର ଯେ ଛାତିରେ ଲଗୁଛି···

ନୟନା—କଅଣ ଲାଗି ରହିଛି ସେମିତି ?

ସାଗର—କହିଲି ତ, ସତ କି ମିଛ ଦେଖିଲୁ ନାହିଁ ତୁ ?

ନୟନା—ଦେଖିଲେ ବା ମୁଁ କଅଣ କରିବି ?

ସାଗର—ସେଇଥିପାଇଁ ଦେଖିଲୁ ନାହିଁ ? ନାଁ ?

(ନୟନାର ଆଖି ଛଳଛଳ ହୋଇଗଲା, ପାନ ଥାଳିଆଟା ହାତରୁ ଖସିପଡିଲା, ସେ ଡରିଗଲା, ଉଠାଇବାକୁ ବସିଲାବେଳକୁ, ସାଗର ଉଠିପଡ଼ି କହିଲା)

ସାଗର—ଥାଉ,ଥାଉ, ମୁଁ ଦଉଚି । (ଗୋଟାଇ, ଉଠେଇ ରଖିଦେଇ ବାହାରେ ହାତ ଧୋଇବାକୁ ଗଲା । ଆସି ପାଣି ପିଉଚି ନୟନାକୁ ଗୁହିଁ ଗୁହିଁ, ତେଣୁ ଆସିଲା ବେଳା । ବେଳା ଆସିବାର ଦେଖି ନୟନା ଅଇଁଠାଟା ଉଠାଇ ନେବାକୁ ଆରମ୍ଭ କଲା ତରବର ହୋଇ)

ବେଳା—କଅଣଟେ ପଡ଼ିଲା ?

ସାଗର—ଟେବୁଲରେ ପାନ ଥାଳିଆଟା ଥିଲା ଯେ, ମୁଁ ଉଠିଗଲାବେଳକୁ ମୋ' ହାତବାଜି ପଡ଼ିଗଲା । ନୟନା ଉଠାଇ ରଖିଦେଲାଣି ।

(ନୟନା, ଥରେ ବେଳାର ଅଲକ୍ଷରେ ସାଗରକୁ ଗୁହିଁ ଗୁଲିଗଲା; ସେ ଘରୁ ଅଇଁଠା ନେଇ)

ବେଳା—ନୟନା, ବୋଉଙ୍କଠୁଁ ଆଉ ପାନ ଆଣିଦେ, ଯା । ଏଗୁଡା ତଳେ ପଡ଼ିଯାଇଛି । ହଁ, କହିବାକୁ ଆସି ଭୁଲିଯାଉଛି, ଶୁଣିଚ ନାଁ, ରେଣୁ ଆସିଚି ।

ସାଗର—ରେଣୁ ? (ବୁଝି ପାରିଲା ନାହିଁ)

ବେଳା—ଚାଟକା ହେଲ କି ? ରେଣୁ—ରସିକର ରେଣୁ ।

ସାଗର—ରେଣୁ ! ସେ କେମିତି···

ବେଳା—ସେ ଅନେକ ଇତିହାସ, ତାଠୁ ଶୁଣିବ । ତମ ବନ୍ଧୁଙ୍କର ଅପାର କୀର୍ତ୍ତି ।

ସାଗର—କୋଉଠି ଅଛି ସେ ?

ବେଳା—ତଳଘରେ; ବୋଉଙ୍କ କଥା ଜାଣି ନାଁ ? ମୋର ଜଣେ ସାଙ୍ଗ ପଢ଼ୁଆ ବୋଲି କହି, ଶୋଇଲା ଘରେ ବସେଇ ଦେଇଚି । ତୁମେ ଯିବ ଆସ ।

ସାଗର—ନାଁ, ମୋର ଯିବା କି ଦର୍କାର ? ସେ କାହିଁକି ଆସିଛି ?

ବେଳା—ଆହା, ବିଚରା ଆଶ୍ରୟ ଗୁହୁଁଛି ।

ସାଗର—ଭଲ ହେଲା—ଯଦି ତା କଥା ସତ ହୋଇଥାଏ ସେ ତମ ଇସ୍କୁଲରେ ରହି ପାରିବ ? ଏଇନେ ତ ବୋଉ ମୋତେ ଗାଳିଦେଇ ଯାଇଛନ୍ତି । ତାଙ୍କ ବୋହୂ କଲାକାଠ ପଢ଼ି ଯାଉଛନ୍ତି, ଇସ୍କୁଲକୁ ଯାଇ । ଆଉ ଯିବେ ନାହିଁ । ବହୁତ କଷ୍ଟରେ

ଆଠ ଦନ ମହଲତ ପାଇଛୁ ମୁଁ । ଭଲ କଥା—ରେଣୁ ରହୁ । ଖବରକାଗଜ ବିଜ୍ଞାପନ ଖର୍ଚ୍ଚରୁ ତ ରକ୍ଷା ହେଲ ?

ବେଲା—ଏକା ରେଣୁ ହେଲେ ତ ଚଳବ ନାହିଁ । ଗ୍ରେଟ ଗ୍ରେଟ ପିଲାମାନଙ୍କ ପାଇଁ ଜଣେ ଶିକ୍ଷକ ଦର୍କାର । ଆଉ ଇଣ୍ଟର୍ଭ୍ୟୁ କରବାକୁଇ ହେବ ।

ସାଗର—ହଉ, ତୁମେ ତେବେ ଯା—ଚା' ଖାଇବା ପିଇବା ବନ୍ଦୋବସ୍ତ କରଦଅ ।

ବେଲା—ତୁମେ ଆସ୍ ନା ।

ସାଗର—ମୁଁ ତାକୁ ଦେଖି କଅଣ କରବ ?

ବେଲା—ଆସ ନାଁ, ତା'ଠୁଁ ରସିକର କୀର୍ତ୍ତିକଳାପ ଶୁଣିବ । ବିଲ୍କୁଲ୍ ଗୁଣ୍ଡାଳକର ।

ସାଗର—ହିଁ, ମୋର ତ ଆଉ ଯେମିତ କଛି କାମ ନାହିଁ !

ବେଲା—(ଉଠାଇ) ଆସ, କବ ତୁମେ ପର ? ତୁମକୁ ବେଶ୍ ଖୋରାକ ମିଳିଯିବ । ଆସ । ଏ ମାସର କୌଣସି ପତ୍ରିକାକୁ ସରଗରମ କରଦେବ । (ହାତଧର ନେଇଗଲ)

---

## ସପ୍ତମ ଦୃଶ୍ୟ

[ରାଣୀହାଟ ଛକ ନକଟକୁ ଅଳ୍ପ ବାଟରେ ଟଗୋଟିଏ ଗଳି, ନବଘନ ଓ ନଟା ରସିକକୁ ସଙ୍ଗରେ ନେଇ ଆସୁଛନ୍ତି କଥାବାର୍ତ୍ତା ହେଇ]

ନଟା—ଆମକୁ ଖୋଜେଇ ଖୋଜେଇ ମାଇଲଣି ବାବୁ ! ଆମର ସବୁ କାମଦାମ ମାରାକର ତମକୁ ସକାଳୁ ଗୁହିଁ ବସିଚୁଁ, ତମେ ସ୍ପାଡ଼େ ଚମ୍ପଟ ! କରେ, ଲବଘନଆ, ସତ କ ମିଛ ?

ନବା—ତମେ ଆମକୁ ଗୋଟେ କାମ କରବାକୁ କହି··· ସ୍ପାଡ଼େ ?

ରସିକ—ନାଁ, ମୁଁ ତ ଗୁଲଯାଉ ନ ଥିଲି, ହଠାତ୍ ଗୋଟେ ତାର ପାଇଲି—ମୋର ଜଣେ ବନ୍ଧୁ ଅସୁସ୍ଥ । ତାଙ୍କୁ ଦେଖିବାକୁ ଭୁବନେଶ୍ବର ଯାଇଥିଲି । ସେଠୁ ଆସିଥିଲି ଔଷଧ ନବାକୁ । ପୁଣି ଏଇ ବାହାରଛୁ, କାଲି ସକାଳେ ଫେରଆସିବ ।

ନବ—ବାବୁ, ତୁମେ ଭବନନେଶୋର ଯା, ଗୁଇ ଦହେଲ ଯା—ଆମକୁ କଅଣ କହିଥିଲ ?

ନଟା—ଆଉ କଅଣ କଲ ?

ନବ—ତୁମେ ପାଠ ପଢ଼ିଛ କଲେଜରେ ପରା ? ତୁମମାନଙ୍କ ଯବାନ୍‌ରେ ବେଠିକ୍ ହେଲେ, ଆଉମାନେ କଅଣ ଲ କରବେ ?

ରସିକ—ମୋ କଥାରେ କଛି ଭୁଲ ହେଇ ନାହିଁ ।

ନଟା—ଛନ ଦନ ହେଇଗଲଣି । ତମର ଦେଖାନାହିଁ କ ସେ ମାଷ୍ଟ୍ରାଣୀର ବ ଦେଖା ନାହିଁ । ଘର ଶୂନ ।

ରସିକ—ବସାରେ କଅଣ ସେ ନାହିଁ ?

ନବା—ଦ ଦ ମାସର ଘରଭଡ଼ା, ଭଡ଼ାବାଲ ବଗୁଚ କାନମୁଣ୍ଡା ଆଉଁଷି, ବସିଛି ଉପରକୁ ତକେଇ ।

ନଟା—ଯୋଗକୁ ତୁମ ଦେଖା ମିଳିଗଲ ବୋଲି ସିନା ?

ରସିକ—ହଉ ମୁଁ ଆସେଁ—ଗାଡ଼ ଟାଇମ୍ ହେଇଯିବ, କାଲି ଆସିଲେ ଦେଖା ।

ନବା—ଯିବ ତ ବାବୁ, ଇସ୍‌ଟେସନ କେତେ ବାଟ କ ? (ଅଟକାଇ) ଆମ ଅଡ଼ୁଆଟା ଲିସ୍‌ପତ୍ତ କରଦେଇ ଯାଅ ।

ରସିକ—ଆଉ ତମ ଅଡ଼ୁଆ କଅଣ ?

ନବା—ସେ ମାଷ୍ଟ୍ରାଣୀ ତ ନାହିଁ, ସେ ବ କୁଆଡ଼େ ଚଏଲ ।

ରସିକ—ସେ କେଉଁଠି ଥିବ ନାଁ, ମୁଁ ଆସେଁ, ତାକୁ ଖୋଜନେବ । ତୁମେ ଯା । (ଗୁଲିଯିବାକୁ ଉଦ୍ୟତ)

ନଟା—ଶୁଣ ନାଁ ବାବୁ, ଏମିତ ତରତର କାହିଁକ ହଉଚ ? (ହାତ ଧରଲ)

ରସିକ—ମୋର ପରା ତେଣେ ଟାଇମ୍ ହୋଇଯିବ । ତୁମେ ଆଉ କଅଣ କହୁଛ ଯେ ?

ନଟା—କିଛୁ ନାହିଁ ବାବୁ, ଆମ ବସ୍ତିବାଲାର ଘରଭଡ଼ା ଟା ଦେଇଦଅ । ତେଣିକି ତୁମେ ଯିବ ତ ଯା ।

ରସିକ—ମୋ ପାଖେ ତ ଜମା ପଇସା କଉଡ଼ି ନାହିଁ ।

ନବା—ବା, ବାବୁ, ତୁମେ ଯାଉଛ ଗାଡ଼ିକି, ରେଲବାଇ କଅଣ ତମର ବନ୍ଧୁ କୁଟୁମ୍ବ ଯେ ତୁମକୁ ଫୋକଟ୍ ନେଇଯିବ ଭୁବନେଶ୍ୱର ?

ରସିକ—ସେ ଫୋକଟ୍‌ରେ ନେଉ—ନ ନେଉ । ଘର ଯାହାର, ଘରଭଡ଼ା ସେ ନବ, ତମର କଅଣ ଅଛି ?

ନଟା—ସେସବୁ ଲବାଜି ଏଠି ଚାଲିବ ନାହିଁ ବାବୁ ! ସେ ହାମର ବସ୍ତିବାଲା ଅଛି, ନାଇଁ ତ ତୁମେ ଗୁଲି—ତାକୁ ତା'ର ଟଙ୍କା ଦେଇ ଆସିବ ।

ରସିକ—ସେ କଥା ମୁଁ ଫେରି ଆସିଲେ ହବ ।

(ଯିବାକୁ ବାହାରିଲା)

ନଟା—(ହାତଧରି ଟିକିଏ ଟାଣି) ଭଡ଼ା ଟା ଦେଇଯା ବାବୁ !

ରସିକ—ତମ ମତଲବଟା କଅଣ ଶୁଣେ । ତୁମେମାନେ କଅଣ ମୋତେ ଗାଡ଼ି ଫେଲ୍ କରିବ ? ବାକି ଜାଣିରଖ, ମୋର କାମ ମାରା ହେଲେ ତୁମ ନାମରେ କ୍ଷତିପୂରଣ ନାଲିସ କରିବ । ବେଶି ଗୋଳମାଳ କରିବ ତ ଛକରେ ପୁଲିସ ଅଛି, ଜାଣ ତ ?

ନଟା—ବାବୁ, ସେ ପୁଲିସ ଧମକି ଆମକୁ ଡରା ନାଁ—ଆମେ ଲଗିଜ ଗାଁରୁ ପଥର ମୁଣ୍ଡେଇ ଆସିନାହୁଁ, ବଡ୍ ଟାଉନ୍ ବାସିନ୍ଦା । ଆମେ ଗୁେର ନୋହୁଁ ଯେ ଟାଉନ୍, ପୁଲିସ — ଧମକଉଚ । ଭଡ଼ା ଦଅ, ଯାଅ ।

ନବା — ହାଁ, ସାଫ କଥା ସୁେ ।

ରସିକ — ତେବେ କଅଣ ମୋତେ ନିହାତି ପୁଲିସକୁ ଡାକିବାକୁ ହେବ ?

ନଟା—କେତେ ପୁଲିସ୍ ପୁଲିସ୍ ଧମକଉଚ ବାବୁ ? ଆମେ ତମ ପରି ଗୁେର ନୁହଁ ଯେ ପୁଲିସ୍ ଆସିଲେ ତମକୁ ଧରିବ, ବୁଝିଲ ?

ନବା—ତମ ନାଁରେ ଓ୍ୱାରେଣ୍ଟ ପରଓ୍ୱାନା ବୁଲୁଚି । ଏ ଖବର ରଖିଚ ? ଭଲଲୋକ ପରି ସେ ମାଇକିନିଆଁର ମାଲଟି ବାହାର କର ।

ନଟା—ଅଧେ ତୁମେ ନିଅ—ଅଧେ ଆମକୁ ଦିଅ । ଆଉ ବାଟେ ବାଟେ ସୁନାପୁଅ ପରି ଇଷ୍ଟେସନ୍ ଧର ।

ନବା—ରାତି ଗାଡ଼ି ବେଳ ବି ଆସି ହୋଇଗଲା ।

ରସିକ—କି ମାଲ୍ ? କାହାର ?

ନଟା—ବାବୁ, ଆଉ ବେଶୀ ଲବାଜି ଦେଖା'ନା । ତୁମେ ପାଠ ପଢ଼ିଚ । ଭଦର୍‌ଲୋକଙ୍କର ପିଲା । ତୁମକୁ ବୁଡ଼େଇଦେବା ଆମର ମତଲବ ନୁହେଁ । କାଢ଼ । ମାଲ କାହିଁ ? ପକେଟରେ ରଖିଛ ? ନବଘନିଆଁ, ଦେଖ୍ ତ ପକେଟ ଟା । ବାବୁଙ୍କୁ ଅନ୍ଧାରରେ ଦିଶୁନାହିଁ । ମାର୍ ଟେ, ଟର୍ଚର ସୁଇଚ୍ ମାର୍ । ଦେଖ୍ ପକେଟ୍‌ଟା । ( ଦୁଇହାତ ଧରିଲା, ନବଘନ ରସିକର ପକେଟ ଦେଖିଲା )

ରସିକ—ଆରେ ? ତୁମେମାନେ ଏମିତି ବଡ୍ ବଜାରରେ, ବାଟରେ···

ନଟା—ହଲା କରନାଁ ବାବୁ—ତୁମେ ମରିବ, ଆମେ ଭଲ କହୁଚୁ ତୁମର । ଚୁପ୍ ହେଇ ରୁହ ।

( ନବା ଗୋଟିଏ ଲଫାଫା ରସିକର ପକେଟରୁ କାଢ଼ି ଖୋଲି ଟର୍ଚ୍ଚରେ ପଟେ ଦେଖିଲା ସୁନାଚୁଡ଼ି )

ନଟା—( ରସିକର ହାତଛାଡ଼ି ) ବୁଝିଲ ବାବୁ ! ଆମେ ତୁମକୁ ଧରା ପକାଉନାହୁଁ । ତମ ଜୀବନଟି ରହିବ, ତମେ ପରିଶ୍ରମକରି ଆଣିଚ, ତୁମର ଅଧେ—ଆମର ଅଧେ ।

ନବା—ଗୁଲ୍, ଗୁଲ୍ ଫୁର୍ତ୍ତି । ଭାଟିଆ ଦୋକାନଟା ଏଇ ପାଖରେ । ବେଗେ କାମ ସାରିଲେ ଫେର୍ ମାଷ୍ଟରବାବୁ ଗାଡ଼ିକି ଯିବେ ।

ଠାକୁରଙ୍କୁ କେହ୍ଣ ଦେଖି ନାହିଁ—ସେ କାଠ ପଥର, ଏ ଯେ ମୋର ଜୀବନ୍ତ ଠାକୁର ! ନଯ଼ନା ! ଛି, ତୁ କାନ୍ଦୁଛୁ ? ଏ ଆନନ୍ଦ ମୋର କଅଣ ଅଳ୍ପ ବୋଲି ତୁ ମଣୁଛୁ ? (ହାତରୁ ମୁଦିଟି କାଢି) ନଯ଼ନା ! ଆଜି ଦିନଟାର ଏଇ କଥାଟା... ସବୁଦିନକୁ ମନେରଖିଥିବୁ—

(ନଯ଼ନାକୁ ପିନ୍ଧାଇ ଦେଲା)

ସାଗର—(ନଯ଼ନାକୁ) ନଯ଼ନା ! ଆଉ ତ ମୋ ଉପରେ ରାଗିବୁ ନାହିଁ ? କାନ୍ଦିବୁ ନାହିଁ ?

ନଯ଼ନା—(ସେମିତି ନୀରବ)

ସାଗର—କହ ! (ଟାଣି ଆଣିଲେ ପାଖକୁ)

ନଯ଼ନା—(ଦୂରକୁ ଘୁଞ୍ଚିଗଲା)

ବେଲା—କି ରେ ! ନଯ଼ନା ! ତୁ ପୁଣି ରାଗିଛୁ ? ଯା, ତତେ ସେ କେଡ଼େ ଆଦରରେ ଡାକୁଛନ୍ତି । ତାଙ୍କ ପାଖକୁ ଆସିବାକୁ ଲଜ କଅଣ ତୋର ? ସେ ଯେ ତୋ'ର ବଡ଼ ଭାଇ, ଯା ।

ସାଗର—(ଚମକି ଉଠି ନଯ଼ନାକୁ କୋଳେଇଲା) ନଯ଼ନା ! କ୍ଷମା ଦେଲୁ ତ ?

ନଯ଼ନା—(ଦୁହିଁଙ୍କ ଚରଣ ଛୁଇଁ ପ୍ରଣାମ କଲା ଓ ଦୁହେଁ ତାର ଶିରଘ୍ରାଣ କଲେ)

ବେଲା—( ନଯ଼ନାକୁ ଆଲିଙ୍ଗନ କରି ଆଦରରେ କହିଲା) କପଟ ବାଯ଼ାଣୀଟାଏ ! (ସାଗରକୁ ଚାହିଁ)

ସାଗର—(ଚାହିଁ ହସୁଥିଲା)

---

## ଚତୁର୍ଥ ଦୃଶ୍ୟ

[କଟକ ବକ୍‌ସି ବଜାର ପୋଷ୍ଟ ଅଫିସ ପାଖ ରାସ୍ତାରେ ରସିକ ଆଉ ମଳଯ଼ କଥା ହୋଇହୋଇ ଆସୁଛନ୍ତି]

ମଳଯ଼—ସୁବର୍ଣ୍ଣ ସୁଯୋଗ ରେ ! ଅଜଗରକୁ ଦାନାଗମ । ବୁଝିଲୁ ? ଯିବାକୁ ଛାଡ଼ିଲେ ପସ୍ତେଇବୁ ପଛେ ।

ରସିକ—ତୋତେ ଆଉ ପଚାରିଲି କାହିଁକି ?

ମଳଯ଼—ମୋର ତ ମତ କହିଲି । ତୁ ହିଁ କରିଦେଇ ଗୋଟେ ତାର କରି ଦେ ଏଇନେ, ଆଉ ବାହାରି ପଡ଼ ରାତାରାତି ।

ରସିକ—ସେଥି ପାଇଁ ସିନା ହିଁ କରିବି ରେ ମଳଯ଼ !

ମଳଯ଼—କାହିଁକି ? ତୋର ଅସୁବିଧା କଅଣ ?

ରସିକ—ସେଇ ପଏଣ୍ଟରେ,—ସେଠି ରହିବାର ହେଲେ ବିବାହ ନେଇ ଯୋଉ ସର୍ତ୍ତ ?

ମଳଯ଼—ବେଶ୍ ତ, ଭାସିଗଲା କଅଣ ? ଜାତି ? ସେଇଆ କରି କରି ତ ସରିବ ଦେଶଟା ! ଆର୍ଯ୍ୟ ସମାଜର ଆଜିକାଲି ଚଳନ କଅଣ ? ହିଁ, କନ୍ୟାଟି ଅବଶ୍ୟ ଭଲ ହେଲେ ହେଲା । ମୋର ତ ଏଇ ମତ ।

ରସିକ—ତା'ହେଲେ ତ ଏଠି ବିବାହଟା ଜାଣି—ହେଲା ଶୁଙ୍କର ? ସେତକ କରିବାକୁ ନାରାଜ ହେଲେ, ନ ଆସ—ଏଇ ତ ତାଙ୍କର ଚିଠିର ଭିତର ଅର୍ଥ ?

ମଳଯ଼—ଲୋକଟା କିଏ ସେ ଲେଖିଛି ?

ରସିକ—ସେଠା ଗାର୍ଲ୍‌ସ୍ ସ୍କୁଲର ସେକ୍ରେଟାରୀ ଶ୍ରୀମତୀ ନଯ଼ନା ।

ମଳଯ଼—କିଛି ବୁଝାପଡ଼ୁ ନାହିଁ । ନୂଆ ଗୋଟେ ହଉଚି ନାଁ । କାହାର—କଅଣ—କିଛି ଜଣା ଯାଉନାହିଁ । ଆରେ, ନିଜେ ସେକ୍ରେଟାରୀ ତ ଆଉ ପାତ୍ରୀ ନୁହିଁ ରେ ?...(ଭାବି) କେଜାଣି ? ନାଆଁଟି ତ ବେଶ୍ 'ନଯ଼ନା' । ବା ବା !

ରସିକ—ତେବେ କଅଣ କହୁଚୁ ତୁ ? ମୁଁ ଯିବି ?

ମଳଯ଼—ନ ଯିବୁ ତ କଅଣ ଏଠି ନିତି ନିତି ଉପାସରୁ ପୁଳାଏ ପୁଳାଏ ଖାଇ ଆତ୍ମହତ୍ୟା କରିବୁ ?

ଯା—ଆଗେ ଧରନେ ଗୋଟେ ବାଟ । ତା ପର କଥା ତ ଦେଖା ଅଛି ।

ରସିକ—କଅଣ ତାଙ୍କୁ ଜବାବ୍ ଦେବ, କହିଲୁ ?

ମଳୟ—ଲେଖ୍ କହୁଚି, କଲମ ଅଛି ?

ରସିକ—(ପକେଟରୁ ପେନ୍‌ସିଲ୍ କାଢ଼ି) କହ ।

ମଳୟ—ଲେଖ୍—Agreed. Starting to-night.

ରସିକ—ଖାଲି ଏତକ—ସମସ୍ତ ଅଛି—ରାତିରେ ବାହାରୁଛୁ—ଏତକ ଲେଖିବ ?

ମଳୟ—ଆଉ ତାରରେ କେତେ ଲେଖିବୁ ? ଏଇ ଯଥେଷ୍ଟ । ବେଶ୍ ବୁଝିଯିବ । ତାଙ୍କର ପତ୍ରରଥିବା ପଏଣ୍ଟ୍ ଟା କ୍ଳୟର ହେଲେ ଗଲା ।

ରସିକ—ଟଙ୍କାଟାକ ଭିତରେ ହେଇଯିବ ବୋଧେ ?

ମଳୟ—(ପଇସା କାଢ଼ି) ନେ, ଦ'ଟା ଟଙ୍କା ନେଇଥା, ଯାହା ହବ ଦର୍କାର, ଦେଇଦବୁ ।

ରସିକ—ଆ ନାଁ ? ପାଞ୍ଚଟା ତ, ତାରଟା କରିଦେଇ ଯିବା ।

ମଳୟ—ମୋର ଭାଇ (ଘଡ଼ି ଦେଖି) ଅଫିସ୍ ଟାଇମ୍ ହେଲାଣି । ତୁ ଯା—ତାରଟା କରିଦେ, ଯା ।

ରସିକ—ତା' ହେଲେ···ଦେଲି ?

ମଳୟ—କଅଣ ଆଉ ଭାବୁଚୁ ତୁ ଏତେ ? ଜାତି ? ତୋ ଭାଗ୍ୟରେ ଥିଲେ, ତୋ'ର ଜାତି ହୋଇଥିବ ସେ । ନୋହିଲେ, ଯାହା ହୋଇଥିବ ହଉ । ସେ ଯେତେବେଳେ ସନାତନ ହିନ୍ଦୁ ମତରେ ବିବାହ ହେବାକୁ ଲେଖିଛନ୍ତି, କନ୍ୟା ହିନ୍ଦୁ । ଏଥିରେ ସନ୍ଦେହ ନାହିଁ । ଆଉ ତୁ ଭାବୁରୁ କଅଣ ? ଭାଗ୍ୟକୁ ତୋର ସୁନାକୁଳୁଆ ଉଡ଼ୁଚି ମ ! ବୁଝୁନାହିଁ ? କାହାକୁ ଦାନା ମିଳିବାକୁ ନାହିଁ । ତୋତେ ଦାନା ସହିତ ଏକାବେଳେକେ ଦକ୍ଷିଣା । ବୁଝିଲୁ ? ଯାକୁ ଛାଡ଼ିଲେ ଜୀବନଯାକ ହରେଇବୁ ଟି । ସୁଯୋଗ ଦୁଇ ଥର ନ ଆସେ । ଯା—ଚାଲଯା, ସର୍ବମଙ୍ଗଳ ଜଗନ୍ନାଥ କରି—ଯା ।

(ରସିକ ଚାଲିଗଲା)

ମଳୟ—(ହସି, ତାକୁ ଚାହିଁ) ବାଜୁଙ୍ଗା, ଭାବୁଚି ? କର୍ମକୁ ଗୋଟେ ଯୁଟିଗଲା କେମିତି ? ଭୂତ ଏତେ ବେଗେ ମୋ କାନ୍ଧରୁ ଓହ୍ଲେଇବ ବୋଲି ସ୍ୱପ୍ନରେ ଭାବି ନ ଥିଲି ।(ପଇସା ଗଣି)ଉଃ ? ଏକାବେଳେକେ ତା'ର ଗାଡ଼ିଖର୍ଚ୍ଚଟା ଦେଇଦେଲେ ତ ଯାଇଥାଆନ୍ତା ! ଏତିକରେ ରକ୍ଷା ପାଇଗଲେ ଗଙ୍ଗାସ୍ନାନ । ଫେର୍ ମୋର ଦେଖାହେବା ମାନେ; ଆଉ କଛି ନଥ । ରସିକ ! ରସିକ !

(ଡାକି ଡାକି ଗଲା)

---

## ପଞ୍ଚମ ଦୃଶ୍ୟ

[ସାଗରର ଘର—ନୟନା ବସି କାଗଜପତ୍ର ସଜାଉ ସଜାଉ ଗୀତ ଗାଉଥିଲା—ସାଗର ଶୁଣୁଥିଲା ଓ କାମ କରୁଥିଲା]

(ଗୀତ)

କପିନ ଫୁଲେ ମୁଁ ସଙ୍ଗେ ମିଶି—
ପରଶିବି ମଞ୍ଜୁଳ ପ୍ରିୟ ଚରଣେ ।।୦।।
ପ୍ରେମ ବାରି ଭରି ଚନ୍ଦନ ଗୋଳିବି,
ପ୍ରିୟ - ହୃଦୟବରପର ଆଲେପିବି
ଜନମେ ଜନମେ ଅଙ୍ଗ ମିଶାଇବି
ଲଖି ଲଖି ଶରପ୍ରିୟ ମରମେ ।
ଆଖିଧାରେ ପ୍ରେମ ଅଞ୍ଜନ ମାଖିବି
ଅନ୍ତରେ ମୋ ପ୍ରିୟ ମୂରତି ଲେଖିବି
ନୟନ ନୀରେ ମୁଁ ଆଦରେ ପଖାଳିବି
ନଟବର ସୁନ୍ଦର ଶ୍ରୀଚରଣେ ।

(ନୟନା ଗୀତ ଶେଷରେ ଧୀରେ ଧୀରେ ଚାଲି ଯିବାର ସୁବିଧା ଖୋଜୁଥିଲା, ସାଗରକୁ ଅନ୍ୟମନସ୍କ ଦେଖି)

ସାଗର—(ଗୀତ ବନ୍ଦ ହେବାରୁ ପଛକୁ ଚାହିଁ, ନୟନାକୁ କାମ ଛାଡ଼ି ଦେଇ ଓ ପଳାଇ ଯାଉଥିବା ଦେଖି,

ହଠାତ୍ ଉଠି ଡାକନ୍ତି) ନୟନା ! ବାଃ, ତୁ ଗାଉଥିଲୁ ପରା ?

ନୟନା—ଗାଇଲି ତ ।

ସାଗର—ପଳାଉଚୁ ଯେ ?

ନୟନା—ଆଉ କଅଣ ବସିଥାଆନ୍ତି ?

ସାଗର—କଅଣ, ଗୋଟେ ଗୀତ ଗାଇ ପଳେଇବୁ ?

ନୟନା—ତୁମେ ତୁମର କାଗଜ ପତ୍ରରେ ମୁହଁ ମାଡ଼ିକରି ବସିଥିବ, ଆଉ ମୁଁ ରହିଥିବି । ବାଃ, ଭଲ ଗୀତ ଶୁଣିଲାବାଲା ! ମୁଁ ଦଇଟା ଗାଇ ସାରିଚି ।

ସାଗର—ମିଛ । ଜମା ଗୋଟେ ।

ନୟନା—ହେଲେ ହେଲା ଯା—ମୁଁ ଆଉ ଗାଇବି ନାହିଁ ।

ସାଗର—(ଉଠି ନୟନା କାନ ଟାଣିଧରି ନିଜେ ବସି) ଯା—କେମିତି ଯିବୁ ଯା ।

ନୟନା—ଆରେ—ଛାଡ଼ । ମୋର କାମ ଅଛି । ହେଇଟି···ଆସିଲେଣି ।

ସାଗର—କିଏ ?

ନୟନା—କେଜାଣି ମୁଁ ଜାଣିନାହିଁ—ଛାଡ଼ ।

(ବେଲା ଆସିଛି)

ବେଲା—(ହାତରେ ଟେଲିଗ୍ରାମ) ବାଃ, ଏଠି କାନ ଟଣା ଟଣି ଖେଳ ଲାଗିଚି ! ଭଲ, ଭଲ ।

ସାଗର—ପଳଉଚି ପରା ଗୋଟେ ଗାଇକରି ।

ବେଲା—ଛାଡ଼ ତାକୁ, ନେଇ ନେଇବ ନାହିଁ ଆଉ କଅଣ ତମରି ପାଖେ ରହିବ ? ତ' ବର ଟେଲିଗ୍ରାମ କରିଛି ଯିବାକୁ ଯେ ! ହେଇଟି—ସେଇଥି ପାଇଁ ତରତର ହେଉଚି ସେ ।

ନୟନା—ଓଃ (କାନଟାଣି ନେଇ) ଇଏ ଆଇଲେ ଆରକ । (ତଳେ ବସି) ନା, ମୁଁ ଯିବି ନାହିଁ ଯାଃ ।

ସାଗର—ବେଶ୍, ବସ୍, ବସୁନୁ—କିଏ ମନା କଲା ? ବସ୍; ଗାଆ ।

ନୟନା—ନାଁ, ମୁଁ ଗାଇବି ନାହିଁ—ଯାଃ । ଖାଲି ଥଟ୍ଟା କରିବେ !

ବେଲା—ଆଚ୍ଛା ଲୋକ ତୁମେ ତ ! ସେ ଆଗେ ତା ବରର ଟେଲିଗ୍ରାମଟା । ଶୁଣିବ ନା ଗୀତ ଗାଇବ, କହିଲ ? ହେଇ ଦେଖ, ପଢ଼ ।

ସାଗର—(ପଢ଼ିଲେ) ମିସ୍ ନୟନା; ସେକ୍ରେଟେରି, ଗାର୍ଲସ୍‌ସ୍କୁଲ, ମର୍ଦ୍ଦରାଜପୁର, ଏଗ୍ରିଡ୍ । ଷ୍ଟାର୍ଟିଙ୍ଗ ଟୁ ନାଇଟ୍ । ରସିକ ।

ବେଲା—ନୟନା, ଶୁଣିଲୁ ? ରାତିରେ ଆସୁଛନ୍ତି ତୋ ବର । ସ୍ୟାଣ୍ଡ୍ ଏକାବେଳେ ମୁକୁଟ ବାନ୍ଧ ।

ନୟନା—ଏଁ, ପଳେଇବି ଏଠୁ ସେମିତି ହେଲେ ।

ସାଗର—ନାହିଁ ରେ—ତୋ କଥା ନୁହେଁ—ବସ୍ । ସତରେ ଗୋଟେ ବର ଆସୁଛି ଯେ, ସେ ବାହାହବ ଗୃହକର୍ତ୍ତ—କନ୍ୟାକୁ ନୁହେଁ । ତୁ କଅଣ ଗୃହକର୍ତ୍ତା ? ତୋ ନାଁ କଅଣ ଗୃହକର୍ତ୍ତା ?

ନୟନା—ସତେ କିଏ ସେ ସେ ?

ବେଲା—ତୋ ବର ପରା ।

ନୟନା—ଯାଃ, କହନା ସେ କିଏ ।

ସାଗର—ଯାହା ପାଖକୁ ତୁ ଚିଠି ଦେଇଥିଲୁ, ସେଇ । ତୁ ତାକୁ ଚିହ୍ନୁ ।

ନୟନା—ଆଉ କଅଣ ?

ସାଗର—ହଁ, ଚିହ୍ନୁ ।

ନୟନା—କେମିତି ?

ବେଲା—ଯେ ତୋତେ ବାବୁଙ୍କ ଦୁଆରେ ଗୀତ ଗାଇ ମାଗିବାକୁ ନେଇ ଯାଇଥିଲା । ତୋ'ର ଉପକାରୀ ବନ୍ଧୁ ।

ନୟନା—ହଁ···ନାଁ—

ସାଗର—ନାହିଁ ରେ ସତ । ସେଇ, ସେଇ ରସିକ ।

ନୟନା—ଛି, ଛି, ସେଇଟା ମଣିଷ ମରା ଟେ । ସେ ଫେରି ଏଠିକି ଆସୁଛି ?

ବେଳା—ଖାଲି ଆସୁଛି ତ ନୁହେଁ; ପୁଣି ତଳେ ବାହାହେବ ।

ନୟନା—ଆଉ କଅଣ ? ମୁଁ ତ ଅନେଇଁ ବସିଛି ।

ବେଳା—ଭାରି ସୁନ୍ଦର ମ । କ୍ଷତି କଅଣ ?

ନୟନା—ମୁଁ ଯାଉଛି, ଏଇଥିପାଇଁ ମୋତେ ଏଠି ରଖିଥିଲ ?

ସାଗର—ନାଇଁ ରେ ଶୁଣ । ସତରେ ତା'ର ବାହାଘର ହେବ ଯେ—ବାକି ତୋ ସାଙ୍ଗରେ ନୁହଁ ।

ନୟନା—ମୁଁ ତ ଧାଇଁ ପଡ଼ିବି ? (କ୍ଷଣପରେ) ଆଗ କହନା—ତାକୁ ଆଣୁଛ କାହିଁକି ?

ସାଗର—କଅଣ ଶତ୍ରୁତା କରିଥିଲା ବୋଲି—ନା ? କିନ୍ତୁ ନୟନା ! ଶତ୍ରୁତା ସାଧିବାକୁ ହେଲେ ଶତ୍ରୁକୁ ମାରିକରି ନୁହେ—ଶତ୍ରୁକୁ ପାଳ, କ୍ଷମା ଦେଇ ।

ବେଳା—ଖାଲି କ୍ଷମା ଦେଇ ନୁହ, ତାକୁ ବାହାଦେଇ, ଦାନା ଦେଇ—ଆଦର କରି । ଜାଣୁ ? ନୟନା ! ଏଇଟାଇ ଭଲ ପ୍ରତିଶୋଧ ଦୁନିଆଁରେ ?

ସାଗର—ବଡ଼ଲେ ତୁ ସବୁ ଜାଣିବୁ ଯେ; ବାକି ସଞ୍ଜବେଳକୁ ଏଇନେ ନୁହ । ପଛେ ।

ବେଳା—(ନୟନାକୁ ଥଟ୍ଟାକରି) ପଛେ, ପଛେ ଜାଣିବୁ ଯେତେବେଳେ ତାକୁ ବାହାହେବୁ—(ନୟନାକୁ ଟାଣି ମୁହଁକୁ ଟେକି ଦେଇ) ସୁନ୍ଦର କନିଆଟିଏ ! ନୁହଁ ?

ସାଗର—ଥାଉ ଥାଉ, ସେଇଟା ସାଙ୍ଗେ ଲାଗ ନାଇଁ ।

ବେଳା—ନାଇଁ ନାଇଁ, ମୁଁ ଲାଗୁ ନାଇଁ । ତୁ ଯା, ଗୋଟେ କାମ କରିବୁ ତ—ବଗିଚାରୁ ଥୋଡ଼େ ଫୁଲ ଆଣି—ବରପାଇଁ ହାର ଗୁନ୍ଥି ରଖ । ଆଜି ବାହାଘର ପରା ! ରାତିକି ··

ନୟନା—ମୋ ଦ୍ୱାରା ହବୁନାଇଁ ।

ସାଗର—ନାଇଁ ମ ନୟନା—ସତେ । ରସିକର ପରା ଆଜି ବାହାଘର ହବ । ବଡ଼ ବଡ଼ କରି ଦି'ଟା ହାର ଗୁନ୍ଥି ପକା ଗୋଟେ ବର ପାଇଁ, ଗୋଟେ କନ୍ୟା ପାଇଁ ।

ନୟନା—କନ୍ୟା ?

ବେଳା—(ନୟନାକୁ ଠାରି ହସି) ହେଇଟି ।

ନୟନା—(ଛଳ କୋପ) ଉଁ—ଯା ।

ସାଗର—ଓଃ—ନାଇଁ ରେ, ତୁ ଗଲୁ । ଏଠି ରହନା ।

ନୟନା—(ଯାଉ ଯାଉ) ମୁଁ ଗୁନ୍ଥିବିନାଇଁ କେବେ ।

ସାଗର—(କାନରେ କହିଲା) ସତରେ ତୋର ବର ନୁହଁ ମ—ଗୁଲୁଯା—ଗୁନ୍ଥ ଏଥର ।

ନୟନା—ସତେ ? ଯାଉଛି । (ଗୁଲିଗଲା ହସି ହସି)

ବେଳା—ତାକୁ କହିଦେଲ ଯେ, ଏଇନେ ଧେଣ୍ଡ୍ରୁଗି ପିଟିବ ସେ ।

ସାଗର—ଆଉ କଅଣ କରିବ ? ଏଡ଼େ ଓଲିଟା ! ସେଇଟା ତ କିଛି ବୁଝିନାଇଁ । ତୁମେ ବି ତାକୁ ଥରକୁ ପାଞ୍ଚ ଥର କହିଲଣି, ସତ ମଣୁଛି ସେ—ତା'ରି ବାହାଘର ବୋଲି । ଯା ତାକୁ ମନା କରିଦିଅ—ଏଇନେ କାହାକୁ କିଛି କହିବ ନାଇଁ ସେ । ଯା, ଯା ।

ବେଳା—ଯା—ମୋର ତ ଗୋଟେ ବେପାର ଲଗିଲା !

ସାଗର—ଆଉ, ମାଣ୍ଡିଆ ଯାଉ ଖୁଆଇଲ କାହିଁକି ? ତାକୁ ଅଛାଟି ତ କରିଚ···

ବେଳା—ଡାକେଁ—ଯାଇ ନ ଥିବ ଯେ—ନୟନା ! ନୟନା !

ସାଗର—ସେ ଆଉ ଏଠି ଅଛି ? ଫୁଲ ତୋଳିବାକୁ ବାରିଆଡ଼େ ପଳେଇଲାଣି । ଯା, ତୁମେ ଯା—କଅଣ ନାଇଁ କଅଣ କାହାକୁ କହିପକେଇବ । ମୁଁ ଯାଉଛି । ମୋଟର ପାଖକୁ ଗୋଟେ ଲୋକ ପଠାଇବାର ବନ୍ଦୋବସ୍ତ କରିଦେବି । ରସିକକୁ ଆଣି ବସାଘରଟି ରଖେଇ ଦବ ।

ବେଲା—ହଁ, ଯେମିତି ସେ କିଛୁ ନ ଜାଣେ ।

ସାଗର—ମୁଁ ଠିକ୍ ଅଛି । ତୁମେ ଟିକେ ନୟନାକୁ ଦେଖ । (ଦୁହେଁ ବିପରୀତ ଦିଗରେ ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

[ରାଜପଥ—ଭିଖାରୀଟିଏ ଗୀତ ଗାଇ ଗୁଲଚି]

(ଗୀତ)

ଦୁନିଆଁ ଏ ହରରଙ୍ଗୀ, ଭାଇ !
କା' କରମେ କରକା ବରଷେ ଧନ
କା' କରମେ ମିର ଧାରା,
ତୁମର ଛନ୍ଦ- ଚଳେ କେ ବରାଜେ
ନାହିଁ କା'ର ପୁଣି ଠୁଙ୍ଗୀ । ୧ ।
ଖାଲି ଖୋଳେ ପରଲାଗି ସଦା କେ'
କ୍ଷମା କା'ର ଚିର ସାଥୀ,
ଦୁନିଆଁ ସାରା ରାଜ୍ୟ ବସାଟରେ
ଦୁଃଖ, ସୁଖ ଦୁଇ ସଙ୍ଗୀ ॥

---

## ସପ୍ତମ ଦୃଶ୍ୟ

[ମର୍ଦ୍ଦରାଜପୁର ଗାର୍ଲ୍‌ସ୍କୁଲର ଗୋଟିଏ ଘରେ ସାଗର ବସିଥିଲେ । ଖଣ୍ଡି କେତେ ଚୌକି ସେଠି ପଡ଼ିଥିଲା—ଘରଟି ବେଶ୍ ସଜାସଜ ହୋଇଥିଲା । ଗୁମୁକରଣେ ଠିଆ ହୋଇଥିଲେ ]

ଗୁମୁ—ନାଁ, କିଛି ସେ ଜାଣି ନାହାନ୍ତି ।

ସାଗର—କାମ ବଢ଼ିଗଲାଣି ତ ?

ଗୁମୁ—ହଁ, ବଢ଼ିବା ଉପରେ ।

ସାଗର—ବର କନ୍ୟାଙ୍କର ଦେଖାଚାହାଁ ହେଲାଣି ନାଁ ?

ଗୁମୁ—ତା' ଆଉ ହେଲା କୋଉଠି ? କନ୍ୟା ତ ଏଣୁ ଓଢ଼ଣା ଘୋଡ଼ହୋଇ ଯାଇ ଚୁନଟିହୋଇ ବସିଛନ୍ତି । ଏତେବେଳକୁ ଅସି ହାତଗଣ୍ଠି ସରିଯିବଣି ।

ସାଗର—(ପଛକୁ ଫେରି ଚାହିଁ) ନୟନା !

ନୟନା—(ଆସି) ଡାକିଲ ମୋତେ ?

ସାଗର—ଆସିଲେଣି ?

ନୟନା—(ହସି) ହୁଁ, କେତେବେଳୁ ।

ସାଗର—ବେଶି କାମ ସରିଗଲେ ବରକନ୍ୟାଙ୍କୁ ଏଠିକି ପଠେଇ ଦେବେ ଠିକଏ ।

(ଗୁମୁକରଣଙ୍କୁ କହିଲେ)

ଗୁମୁ—ହଉ, ଯାଉଚି । ସରିଥିବ ଯେବେ ତ ପଠେଇ ଦେବି ସାଥେସାଥ । (ଗୁଲିଗଲେ)

ନୟନା—ରସିକ ବାବୁ କିଛି ଜାଣି ନାହାନ୍ତି; ନା ?

ସାଗର—ସେ ଜାଣି ନାହିଁ କି ସେ ଜାଣି ନାହିଁ ।

ନୟନା—ମୋତେ ଚିହ୍ନି ପାରିବେ ନାଇଁ ?

ସାଗର—କେଜାଣି ? ଚେହେରା ଦେଖି ସନ୍ଦେହ କରିପାରେ । ବାକି ତୁ ତ ଆଉ ଏଇନେ ସେ ଅନ୍ଧୁଣୀ ନୁହଁ—ନୟନା ।

ନୟନା—ସେଇଆ ତ । ଚିହ୍ନିବେ କେମିତି ?

ସାଗର—ନୟନା ! ଜୀବନ ଭିତରେ ଆଜି ମୋତେ ଗୋଟେ ନୂଆ ଦିନ ପରି ଲାଗୁଚି । ସେଇ ରସିକ··· ମୋର ଯେ କେତେ ଅନିଷ୍ଟ ପାଞ୍ଚି ନଥିଲା । ଓହୋ !

ନୟନା—(ହସି) କିନ୍ତୁ ଯାହାକୁ ରଖିବେ ଅନନ୍ତ······

ସାଗର—ଛାର୍ ରୂପର ମୋହରେ କଅଣ ସେ ନ କରିଛି ! —ଏମିତିକି ନରହତ୍ୟାର ଚେଷ୍ଟା ପର୍ଯ୍ୟନ୍ତ !

ନୟନା—ବାକି···କଅଣ ହେଲା ? ମଣିଷ ପାଖରେ ହବ କଅଣ ? ଲାଭ ହେଲା ମୋ'ର କିନ୍ତୁ । ନ ହେଲେ ମୁଁ କିଏ—ତୁମେ କିଏ ? କାହିଁ ସେ ଭିଖାରୁଣୀ ଅନ୍ଧୁଣୀ—କାହିଁ ପୁଣି ଅଜି ନୟନା !

ସାଗର—ନୟନା । ସବୁ ତାଙ୍କର ଇଚ୍ଛା ରେ—ତାଙ୍କର ଦରଦ ।

ନୟନା—ଯାହାକୁ ସେ ରଖିବେ—ତା'ର ହାନି କରିବ କିଏ ?

ଛମୁ—(ଆସି) ସବୁ ସରିଲା ! ଏଥର ପଠେଇଦେବି, ଏଇଠିକି ?

ସାଗର—ହଁ, ଦୁହିଁଙ୍କି ପଠେଇ ଦିଅ ।

ଛମୁ—ହଉ । (ଚାଲିଗଲେ)

ନୟନା—ସେ ଫୁଲହାର ଗୁଡ଼ାକ ?

ସାଗର—ଗୁନ୍ଥିଛୁ ? ମନେ ରଖିଛୁ; ନାଁ ? (ଚାହିଁଲା ନୟନାକୁ)

ନୟନା—(ହସିଲା ଖାଲି ଚାହିଁ) ।

ସାଗର—ଯା, ତାଙ୍କୁ ଡାକି ଆଣିବୁ ଏଠିକି, ଫୁଲ ବି ନେଇ ଆସିବୁ । ମୋତେ ଆଜି କେମିତି ଲାଗୁଚିରେ ନୟନା—ଯେମିତି ଗୋଟେ ବଡ଼ ତୃପ୍ତି, ବଡ଼ ଆନନ୍ଦ······

ନୟନା—ଲାଗିବ ତ ! କ୍ଷମା'ର ତ ଆନନ୍ଦ ଅଳ୍ପ ନୁହେଁ । (ଚାଲିଗଲା)

ସାଗର—(କିଛିକ୍ଷଣ ବସି) ବାସ୍ତବିକ । ସେମାନେ ଯେତେବେଳେ ଜାଣିବେ···ସବୁ ହେଉନାହିଁ ଆଉ···ସେତେବେଳେ ତାଙ୍କର ମନର କଥା । (ଚମକି) କିଏ ? (ଉଠି) ନା, ଆସିନାହାନ୍ତି ବୋଧେ । (ଉଠି ବାହାରକୁ ଯିବାକୁ ବାହାରନ୍ତି ଦେଖିବାକୁ, ପଛରୁ ଶୁଭିଲା)

ବେଲା—(ପଛରୁ) ମୁଁ ଯିବି ?

ସାଗର—ଆସ, ଭିତରକୁ ଆସ । (ବେଲା ଆଡ଼କୁ ଯାଇ)

ଛମୁକରଣେ—(ନେପଥ୍ୟରୁ) ଯାଆନ୍ତୁ ।

ସାଗର—(ଫେରି) କିଏ ? (ରସିକ ଓ ରେଣୁ ପ୍ରବେଶ)

ବେଲା—ଆରେ, ରସିକ ବାବୁ ଯେ ! ନମସ୍କାର ନମସ୍କାର ।

ସାଗର—ଆରେ, ରସିକ ! ତୁ ? କେତେବେଳେ ? (କାନ୍ଧରେ ହାତ ଦେଇ) ଆଉ ସେ ?

ବେଲା—ସେଇଟି ? (ଓଢ଼ଣା କାଢ଼ି) ଦେଖ । ସେ ନବବଧୂ ଶ୍ରୀମତୀ ରେଣୁଦେବୀ ।

ରେଣୁ—(ହାତ ଛଡ଼ାଇଲା) ।

ସାଗର—ରେଣୁଦେବୀ ? ନମସ୍କାର ମୋର ।

ରସିକ—ସାଗର ! (ମୁହଁ ତଳକୁ କଲା)

ବେଲା—ରସିକବାବୁ ! ବାହାଘର ନିମନ୍ତ୍ରଣ ତାଲିକାରୁ ବି ଆମ ନାଁଅଟାକୁ କାଟି ଦେଉଥିଲେ—ନାଁ ? ଆମେ କିନ୍ତୁ ଛୁଏଁ ଛୁଏଁ ହଜାର—ବନା ଡକାବାରେ ।

ସାଗର—ସତେ ରେ ରସିକ ! ତୁ ଏତେ ଦୁଷ୍ଟ ନାଁ ? (ଆଲିଙ୍ଗନ)

ବେଲା—ରେଣୁ, ତୁ ବି ତ କମ ନୁହଁ । ତୁ ବି ପାଶୋର ପକେଇଲୁ । (ଆଲିଙ୍ଗନ)

ନୟନା—(ଆସି) ମୁଁ କିନ୍ତୁ କାହାରିକି ଭୁଲି ନାହିଁ । ମନେରଖିଛି ସମସ୍ତଙ୍କୁ (ଆଗେ ବରକନ୍ୟାଙ୍କୁ ହାର ଦି'ଟା ଦେଇ ହାତ ଧରାଇ ଏକ ପାଖରେ ରଖି କହିଲା) ଏ ନୂଆ ବରକନ୍ୟା—ଆଉ—(ସାଗର ଓ ବେଲାକୁ ଦି'ଟା ହାର ଦେଇ) ଏ ପୁରୁଣା ବରକନ୍ୟା । (ମଝିରେ ଠିଆହୋଇ ହସିଲା ଖୁବ୍ ଯୋର ଦୁଇ ଯୋଡ଼ାକୁ ଚାହିଁ) ।

ସାଗର—ଚିହ୍ନିଚୁ ରସିକ ? (ନୟନାକୁ ଠାରି)

ରସିକ—ସେ ବୋଧେ···

(ଭାବିଲା । ଦୋ ଦୋ ଚହଳ ହେଲା)

ସାଗର—ସେଇ···ଭିଖାରୁଣୀ ଅନ୍ଧୁଣୀ···

ନୟନା—(ଆଖି ଦେଖାଇ) ନା ନା, ମୁଁ ନୟନା । ମୋର ଅଖି ଅଛି । ଭାଗ୍ୟ ମୋର, ମୁଁ ସମସ୍ତଙ୍କୁ ଦେଖୁଛି—ଏଇ ଗାର୍ଲସ୍କୁଲରେ । ମୋର ସମସ୍ତଙ୍କୁ ନମସ୍କାର ।

ସମସ୍ତେ—ନମସ୍କାର, ନମସ୍କାର ।

ନୟନା—(ଆନନ୍ଦରେ ହସି ହସି) ନମସ୍କାର ।

( ଯବନିକା ପତନ )



## ପଦେ କହୁଛି—

ଏଇ ନାଟକଟି ଓଡ଼ିଶା ଥିଏଟର୍ସରେ ପଢ଼ିଲେ ପିଲାଙ୍କୁ ଶିଖାଇ ବସିଲି । ଲେଖିଥିଲି ବାଲ୍ୟ—ମୋ ଘରଠି, ମୋର ଅତି ଅନ୍ତରଙ୍ଗ ବନ୍ଧୁ ନଗେନ ଦତ୍ତ ସେତେବେଳେ ବାଙ୍କିରେ ଥିଲେ ମାଜିଷ୍ଟ୍ରେଟ । ସେ ଜଣେ କୃତବିଦ୍ୟ ଲେଖକ । କେତେ ଖଣ୍ଡି ଉପନ୍ୟାସ ଲେଖିଛନ୍ତି । ଶ୍ରୀଚଣ୍ଡୀ—ଚଣ୍ଡୀ ପୁରାଣର ଏକ ଆଲୋଚନା ଗ୍ରନ୍ଥ ତାଙ୍କର ଲେଖା । ଅକାଳରେ ଚାଲି ଗଲେଣି ନଗେନ ବାବୁ, ତାଙ୍କର ପ୍ରେରଣା ମୋତେ ଏ ନାଟକ ଲେଖାଇ ଥିଲା । ବାଙ୍କିରେ ଅଭିନୟ କରାଯାଇଥିଲା ଏ ନାଟକଟି—ଦର୍ଶକଙ୍କ ମନ ନେଇ ବି ହୋଇଥିଲା । ପ୍ରଥମେ ଏ ନାଟକଟି ଓଡ଼ିଶା ଥିଏଟର୍ସର ଛାତ୍ର ଛାତ୍ରୀଙ୍କୁ ଶିଖାଇ ଥିଲେ ହେଁ, ଗାର୍ଲ୍‌ସ୍କୁଲ ପରେ ମଞ୍ଚସ୍ଥ ହେଲା । ଚାଲିଲା ତିନ ମାସ । ତା'ପରେ ବହିଟି ଛପି ନ ରହି ଛପା ହେଲା, ଲୋକେ ପସନ୍ଦ କରିବାରୁ ।

ନାଟକକୁ ରୂପ ଦେଇଥିବା କଳାକାରଙ୍କୁ ଆଶୀର୍ବାଦ କରୁଛି ।

କଟକ-୧୯ । ୧୨ । ୪୧

**ନାଟ୍ୟକାର**

## ପାତ୍ର-ପରିଚୟ

### ପୁରୁଷ ବର୍ଗ :

ଅଶୋକ—ମଧ୍ୟବିତ୍ତ ବ୍ରାହ୍ମଣ ସନ୍ତାନ, ରାମ—ଜନୈକ ଭଦ୍ରବ୍ୟକ୍ତି,
ପୀତାମ୍ବର—ଜମିଦାରଙ୍କ କର୍ମଚାରୀ, ଫୁଲ—ଶୋଭାର ପାଳିତ ପୁତ୍ର,
ରାଜୁ, ଦେବେନ୍ଦ୍ର—କଲେଜ ଛାତ୍ର ।
କୃଷ୍ଣନ, ଶ୍ୟାମ, ପଣ୍ଡା, ପଡ଼ିଆରୀ—ପୁରୀର ପଣ୍ଡାମାନେ ।
ଅନ୍ଧ—ଶୋଭାର ପିତୃବ୍ୟ, ବସନ୍ତ—ଫୁଲର ଖେଳ ସାଥୀ,
ପଥିକ, ଗୁଣ୍ଡାଦଳ ଓ ସାଇ ପିଲା ଉମା, ଦାମା ଇତ୍ୟାଦି ।

### ସ୍ତ୍ରୀ ବର୍ଗ :

ଶାନ୍ତି—କରଣ କନ୍ୟା, ବୁଢ଼ୀ, ରତମା, ରମା—ଗ୍ରାମ୍ୟ ସ୍ତ୍ରୀ,
ଶୋଭା—ଅଶୋକର ବିବାହିତା ପତ୍ନୀ, ନାମା—ଶୋଭାର ରାନ୍ଧୁଣୀ,

# ଆହୁତ

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

[ ଅଶୋକ ଘର ଭିତରେ ବସି ଖିଅର ହେଉଥିଲା, ପଛରେ ଅଳ୍ପ ଦୂରରେ ଗୁଡ଼ାଏ ଖାତାପତ୍ର ଏଣୁ ତେଣୁ ହୋଇ ଜମା ହୋଇଥିଲା । ଖଣ୍ଡେ ହାରମୋନିୟମ୍ ଖୋଲାହୋଇ ରଖା ହୋଇଛି । ଅଶୋକ ସାବୁନ୍ ଲଗାଇ ଖିଅର ହେଉଛି । ଗୁଣୁ ଗୁଣୁ କରି ଗୀତ ଆରମ୍ଭ କଲା ]

-(ଗୀତ)

ସାଗର ପରେ ସପନ ପୁରେ ରାଜକୁମାରୀ ଘର
ଲୁହା ଖାଇ ଯେବେ ତାର ପଥର ଦୁଆର ॥

( ଶାନ୍ତ ପଛରୁ, ଅଣ୍ଟିରେ ଗୁଡ଼ାଏ ଫୁଲ ଯେନ ମାଳ ଗୁନ୍ଥି ଗୁନ୍ଥି ଆସିଲା । ହାରଟି ଗଣ୍ଠି କରି ଗୋଟେ ହାତରେ ଗଳାଇ ଦେଇ ପାଦ ଚପି ଚପି ଚଞ୍ଚଳ ଆସି ବସି ପଡ଼ିଲା ହାରମୋନିୟମ୍ ପାଖେ । ଅଶୋକ ଗାଉଥିବା ଗୀତଟିକ ବଜାଇଲା, ଅଶୋକ ପୁନରାବୃତ୍ତି କଲାବେଳେ ତଳକୁ ଚାହିଁ ହସି ହସି ଥରେ ପଛକୁ ମୁହଁ ଫେରାଇଦେଇ ଭୂନ ହୋଇଗଲା, ଶାନ୍ତ ଗୋଟେ ଧାଡ଼ି ଗୀତ ବଜାଇ, ଚାହିଁ ଦେଖିଲା ଯେ ଅଶୋକ ଭୂନ ହୋଇଗଲାଣି, ସେ ମଧ୍ୟ ହାରମୋନିୟମ ବନ୍ଦ କରିଦେଲା । )

ଅଶୋକ—ଆରେ, ବନ୍ଦ କରିଦେଲୁ ଯେ !

(ଖିଅର ହେଉ ହେଉ)

ଶାନ୍ତ—ତୁମେ ନାଁ ମୁଁ ?

ଅଶୋକ—ତୁ ।

ଶାନ୍ତ—ସ୍ୱାର୍ଥପର !

ଅଶୋକ—ମୁଁ ? (ଚାହିଁଲା ଶାନ୍ତକୁ)

ଶାନ୍ତ—ଚାହୁଁଚ କଅଣ ? ଆଉ ଥରେ କହୁଛି— ସ୍ୱାର୍ଥପର !

ଅଶୋକ—କେମିତି ?

ଶାନ୍ତ—ମୁଁ ତମ ଗୀତଟି ଶୁଣିବାକୁ ଆସିଲି । ଆଉ ତୁମେ ଗୁମ୍ ମାରି ବସିଗଲ, ଖିଅର ହୋଇ ।

ଅଶୋକ—ଆଉ ତୁ ? ମୁଁ ତୋର ସୁର୍ଟା ଶୁଣିବାକୁ ବସିଲି ଯେମିତି···ତୁ ତୋର ହାରମୋନିୟମଟା ଛାଡ଼ିଦେଇ ବସିଗଲୁ ଫୁଲ ଗୁନ୍ଥି । ଯେମିତି ଫୁଲ ଗୁନ୍ଥିବାକୁ ଆଉ ବେଳ ନାହିଁ !

ଶାନ୍ତ—ଆଚ୍ଛା ହଉ, ଭଲ କଥା ।

(ଅଭିମାନରେ ଉଠିପଡ଼ିଲା ଯିବାକୁ)

ଅଶୋକ—ନାଁ, ନାଁ । ଶୁଣ, ଶୁଣ ।

ଶାନ୍ତ—(ଫେରି) ଗାଇବ ତ ?

ଅଶୋକ—(ହସି) ଅଚ୍ଛା, ଚେଷ୍ଟା କରିବ ।

ଶାନ୍ତ—ଓ ଚେଷ୍ଟା ? ସେସବୁ ଗୁଲ୍‌ଫି ରଖ । ଗାଇବ ତ କୁହ, (ଫେରିଆସି ବସି) ଭାରି ତ ! ଟିକିଏ ଗାଇ ଜାଣିଚନ୍ତି ବୋଲି ଏତେ ଖୋସାମତ ଖୋଜା ?

ଅଶୋକ—ଆଉ ତୁ ଟିକିଏ ବଜେଇ ଜାଣିଚୁ ବୋଲି କଅଣ କମ୍ ଖୋସାମତ ଚାହୁଁଛୁ ?

ଶାନ୍ତ—ମୁଁ ତ ରାଜି ଅଛି । (ବଜେଇ ଦେଲା) କାହିଁ ?

(ବାଜା ବନ୍ଦକଲା)

ଅଶୋକ—ଶାନ୍ତ ! (ଚାହିଁ ରହିଲା)

ଶାନ୍ତ—ବାସ୍, ସରିଗଲା ଗୀତ ଏତକରେ, ଶାନ୍ତ ବୋଲି ଡାକଦେଇ ? ଗା···

ଅଶୋକ—କିନ୍ତୁ···କଅଣ ଗାଇବ ? କହ ନାଁ ?

ଶାନ୍ତ—କାହିଁକି ? ଗୀତଟି ଯେ ଖଣ୍ଡିଆ କରିଛ, ସେଇଥି ।

ଅଶୋକ—ପାରୁନାହିଁ ଲୋ, ଶାନ୍ତ !

ଶାନ୍ତ—(ଅଭିମାନରେ) ମୁଁ ଅସିଲାଠୁଁ, ନାଁ ?

ଅଶୋକ—ସତରେ, ତୁ ଆସି ଗୋଳମାଳ କରିଦେଲୁ !

ଶାନ୍ତ—ତେବେ, ମୁଁ ତ ଯାଉଥିଲି···

( ଉଠି ଚାଲି ଯାଉଥିଲା )

ଅଶୋକ—(ଆସି ହାତଧରି) ଶାନ୍ତ ! ମୁଁ ପଥର ନୁହେଁ, ମଣିଷ ।

ଶାନ୍ତ—କିନ୍ତୁ, ପଥରର ମନର ଗୀତ ଗାଏନା । ପଥର ପୂଜା ଗ୍ରହଣ କରେ କି ନା, ଅବଶ୍ୟ ଜାଣିନାହିଁ, ମନୁଷ୍ୟ କିନ୍ତୁ ମନୁଷ୍ୟକୁ ବୁଝେ, ମନୁଷ୍ୟ ପୂଜା ଫୁଲର ସୁଗନ୍ଧ ପାଏ ବୋଲି ମୋର ବିଶ୍ୱାସ ।

ଅଶୋକ—(ବସେଇ ଦେଇ) ଏ ବିଶ୍ୱାସ ଅଛି ତୋ'ର ?

ଶାନ୍ତ—ବହୁତ ପିଲାଦିନୁଁ । ଯେତେବେଳେ ଏକାଠି ବୁଲୁଥିଲେଁ, ଖେଳୁଥିଲେଁ,—ତମର ବାଡ଼ିରେ । କେତେ ଦିନ ଫୁଲ ତୋଳି କେତେ ଥର···

ଅଶୋକ—(ବସି) କେତେଥର, (ଶାନ୍ତ ମୁହଁକୁଟେକି) ମୁଁ ଏଇ ସୁନ୍ଦର ରୂପଟିକି ସଜେଇ ଦେଇଛି, ନୁହେଁ ?

ଶାନ୍ତ—ଆଉ ମୁଁ ?

(ଅଶୋକ ହାତରୁ ମୁହଁ ଛଡାଇବାକୁ ହାତଦେଇ)

ଅଶୋକ—କିନ୍ତୁ ଶାନ୍ତ !···

( ଦୀର୍ଘ ନିଶ୍ୱାସ ପକାଇ ନୀରବ ହେଲା )

ଶାନ୍ତ—(ଉଠି) ମୁଁ ଯାଏଁ, ଘାଇ ଆସିବେଣି । ତୁମେ ତେବେ ଗାଇବ ନାହିଁ, ନାଁ ?

ଅଶୋକ—ଶାନ୍ତ ! (ବସେଇ ଦେଇ) ଦୟାମାୟା କି ଭୁଲିଗଲୁ ?

ଶାନ୍ତ—ନାଁ, ନିର୍ମ୍ମମ ଦେବତା ।

ଅଶୋକ—ମିଛ, ନିର୍ମ୍ମମ ପୂଜାରୁଣୀ ।

ଶାନ୍ତ—ସ୍ୱାର୍ଥପର !

ଅଶୋକ—କେମିତି ?

ଶାନ୍ତ—ନିଜର ଲାଭ ନାହିଁ କିଛି, ଅଥଚ ପରର ସୁଖରେ ବାଧା ଯେ ଦିଏ···

ଅଶୋକ—ସେ···ସେ ନିଷ୍ଠୁର ।

ଶାନ୍ତ—ବେଶ୍, ତମର କଥାରେ କହୁଛି···ସେ ନିଷ୍ଠୁର ।

ଅଶୋକ—ଶାନ୍ତ, କେବେ ତୁ···

ଶାନ୍ତ—ଏଇ, ବର୍ତ୍ତମାନ ତ । ଆଖି ଆଗରେ ।

ଅଶୋକ—ପ୍ରମାଣ ?

ଶାନ୍ତ—ପ୍ରମାଣ ? ଗୀତଟି ଅଧା କରି, ଜଣକର ଆଶାରେ, ଆନନ୍ଦରେ ବାଧାଦେଇ···

ଅଶୋକ—ଓ, ତୋର ଆଶା, ତୋର ଆନନ୍ଦ !

ଶାନ୍ତ—ଅବିଶ୍ୱାସ କେବଳ ପଥର କରିପାରେ ।

ଅଶୋକ—ସତେ—ଆଚ୍ଛା ? ତୁ ସୁର୍ ଦେ ।

( ମୁହଁ ଧୋଇବାକୁ ଯାଇ, ଧୋଇ ସାରି, ମୁଣ୍ଡ କୁଣ୍ଡାଉ କୁଣ୍ଡାଉ )

(ଗୀତ)

ସୁନ୍ଦର, ତାର ତାରଣୀ—ଚଞ୍ଚଳ ତା ଛାଇ
ମଳୟ ତା'ର ଅଞ୍ଚଳ ତଳେ ଲୁଚି ମାରେ ହାଇ
ଆଖିରେ ତା'ର ମତ୍ତ ଅଳି ଗୋ—
ଘୁମାଏ ମଧୁ ଲୋଭେ,
ଯୌବନ ତା ଚରଣ ତଳ ନାଲି ମୁଖେ ଚୁମ୍ବେ ।

( ଭୁଜ ହୋଇଗଲା )

ଶାନ୍ତ—ଏ ଗୀତ ମୁଁ ଶୁଣିବି ନାହିଁ ।

(ହାରମୋନିୟମ ବନ୍ଦକରି ଉଠିବାକୁ ଉଦ୍ୟମ କଲା)

ଅଶୋକ—(ବସେଇ ଦେଇ) ତା' ପରେ କଅଣ ହେଲା ଜାଣୁନାଁ ?

ଶାନ୍ତ—ନାଁ, ଦର୍କାର ନାହିଁ ।

ଅଶୋକ—ଉହୁଁ—ନିଶ୍ଚୟ ଦରକାର ।

(ନିଜେ ବସି, ବାଜାବଜାଇ)

ସାତ ମହଲା ଘରେ ଜଳେ ମଣିଦୀପ ତା'ର
ସପନପୁରୀ, ସରଗପରି, ଗୁନ୍ଥେ ବରଣ ହାର ॥

ଶାନ୍ତ—(ଉଠ ଉଠ ହୋଇ) ସରଲା ତ ?
ଅଶୋକ—(ବସେଇ)···ଗୁନ୍ଥେ ବରଣ ହାର ।
ଶାନ୍ତ—ସେଇଠୁ ? (କାନରେ ହାତଦେଇ)
ଅଶୋକ—(ହାରମୋନୟମ୍ ଛାଡ଼ ଶାନ୍ତକୁ ଆଦର କର କାନରୁ ହାତଛଡ଼ାଇ) କଏ ହେବ ତା ବର···
ଶାନ୍ତ—ଆଉରେ ?
ଅଶୋକ—(ଦୂରକୁ ଦେଖାଇ) ସାଗର ପାରର ।
(ଗୀତ ବନ୍ଦକର ପୂର୍ବପର ଶାନ୍ତର ହାତ ଧର ଗୃହିଁ ରହିଲେ )
ଶାନ୍ତ—ବେଶ୍ ।
ଅଶୋକ—(ଫେରଗୃହିଁ) ମାନେ ?
ଶାନ୍ତ—ସୁନ୍ଦର ।
ଅଶୋକ—ଅର୍ଥାତ୍ ?
ଶାନ୍ତ—ତୁମେ···ଏଁ, ତୁମର···
ଅଶୋକ—ମିଛ ।
ଶାନ୍ତ—ଅନ୍ଧ !
ଅଶୋକ—କାନ୍ତୁ କଏ କରଛ ?
ଶାନ୍ତ—କଏ ?
ଅଶୋକ—(ଶାନ୍ତକୁ କୋଳକୁ ଟାଣିଆଣି ) ଏଇ ଶାନ୍ତ । (ଆଦର କର ବସାଇଲା)
ଶାନ୍ତ—(ଟାଣି ହୋଇ) ଭା···
ଅଶୋକ—(ଛାଡ଼ ଦେଇ) ଭାଇ ? (ଅଲଗା ହେଲେ)
ଶାନ୍ତ—(ହସି) ଭାଇ ? ସେ ଏଠିକ କେମିତ ଆସିବେ ?
ଅଶୋକ—ସତେ ତ ।
ଶାନ୍ତ—ମୁଁ କହିଲ ଭାର ଦୁଷ୍ଟବୋଲ ନାଁ ।
ଅଶୋକ—ହୁଁ ? (ପୁଣି ଧରବାକୁ ଗଲା । ଶାନ୍ତ ପଳାଇ ଯାଉ ଯାଉ ଫୁଲ ହାରଟି ଅଶୋକର ଗୋଡ଼ ତଳକୁ ଫିଙ୍ଗି ପଳାଇ ଗଲା କହ—ଦୁଷ୍ଟ !) (ଅଶୋକ ଉଠିପଡ଼) ଶାନ୍ତ ! ଶୁଣ୍···
ଶାନ୍ତ—ନାଁ । (ବେଗେ ଗୃଲଗଲା)
ଅଶୋକ—ଶାନ୍ତ ! (ହାରଟି ତଳୁ ଗୋଟାଇ ଗୃହିଁ ପୁଣି ଶୂନ୍ୟ ଦୃଷ୍ଟିରେ ଦୀର୍ଘନଶ୍ୱାସମାର) ଶାନ୍ତ !

---

## ଦ୍ୱିତୀୟ ଦୃଶ୍ୟ

[ ଜଣେ ବୁଢ଼ୀ ଓ ଜଣେ ଯୁବତୀ ଗାଆଁ ବାଟରେ ଗରା ଧର ଯାଉଥିଲେ ପାଣିଆଣିବାକୁ, କଥାବାର୍ତ୍ତା ହୋଇ ହୋଇ ]
ରତମା—ଆଲେ ! ପାଠଶାଠ ପଢ଼ି ଯୋଗ୍ୟ ହେଲେ ବୋଲ କ'ଣ ମହତ ବୁଡ଼ଗଲା ?
ବୁଢ଼ୀ—କାଳ କରଉଚ ଲୋ ! ବଅସବେଳେ ଆମେ ଦାଣ୍ଡମୁଣ୍ଡ ଦେଖି ନ ଥିଲୁ, ମଣିପି ଛୁଇ ପଡ଼ୁ ନଥିଲୁ ଅମଠି—ଏବକୁ ତମମାନଙ୍କ ଅମଳ, ରଜା ପାଇଗ୍ଲ ଜାଣିଲେ, ଦାଣ୍ଡରେ ଉବ ଉବ ବାଜଲା, ସଭା ବସିଲା ।
ରତମା—କାହିଁ ମ ମାଉସି, ଆମେ କଅଣ ପାଠପଢ଼ି ନ ଥେଲୁ ? ଗୋଟାଗୋଟାଙ୍କର ଜନମ ନକ୍ଷତ୍ର ସେ ।
ବୁଢ଼ୀ—ହାକମ ଗୁଣ ତ ଦେଖୁଚୁ ।
ନେପଥ୍ୟ—ଆଈ !
ରତମା—କଏ ଡାକୁଚ ତମକୁ ମାଉସି !
( ରମୀ ପ୍ରବେଶ କଲା )
ବୁଢ଼ୀ—( ଫେର ) କାହିଁ ମ କଏ ?
ରମା—ଆଈ, ଆଈମ ! ମଲା, କାନରେ କଅଣ ପଥର ପଡ଼ଉଚ କ ଲୋ ? ଯେତକ ବୁଢ଼ୀ ହଉଚ, ସେତକ ବଗପର ଗୋଡ଼ ଉଗ ଉଗ ପଡ଼ୁଛୁ ! କଲୋ, ଏତେ ତରତର କୋଉ ନାଗର ପାଇଁ ଲୋ ?
ବୁଢ଼ୀ—କଲୋ, ରମି କଲୋ ? ଓ ହୋ, ମୁଁ ତ ଜାଣି ନ ଥିଲି—ନୂଆ ନାଗର ପାଇଛୁ ନାଁ—ସେଇଥିପାଇଁ ତତେ ଗୃହିଁଆଡ଼େ ଖାଲି ସେଇଆ ଦୁଶିଯାଉଛି—ନାଁ ?
ରତମା—କଲେ ରମି ! ତୁ ପଗ୍ ନ ଥେଲୁ ଗାଆଁ ରେ ?
ବୁଢ଼ୀ—ମଲା, ଆଉ କଅଣ ସବୁଦନେ ଶାଶୁଘରେ ଥାଅନ୍ତା କ ? ଏଠି ଫେର୍ ଗାଁ କଥା ମନେପଡ଼ିବ ନାହିଁ ତାର ?

ରତ୍ନମଣି—( ହସିଲା ) ସେଠି ତ ଶାଶୁଘର, ଏଠି କଅଣ ଅଛି ?

ବୁଢ଼ୀ—ଦେଖୁ ନୁ, ଟୋକୀଟାକୁ ତ ଦେଖୁଚୁ ଏଇ ଆଖି ଆଗରେ—ସେମିତି ରମିର ତ ଫେର୍ ଏଠି ଗାଁ ଭୂଇଁରେ କେତ୍ତେ ଲୋକ ଥିବେ ?

ରତ୍ନମଣି—( ହସିଲା )

ରମା—ମଲା, ଏଠି ତ ପୁଣି ବାପା ବୋଉ ସମସ୍ତେ ଅଛନ୍ତି ।

ବୁଢ଼ୀ—ଆଉ କଅଣ ? ରତ୍ନମଣିଟା କଣ ଜାଣେ ନାହିଁ । କଲେ, ରମିର କେତେ ପିଲାଦିନଆଁ ସାଙ୍ଗ ସାଥି ଏଇ ଗାଆଁରେ । ଛୁଡ଼ିକର ମନ ରହିବ ଆଗେ ! ନୁହଁ ଲୋ ରମି ?

ରମା—ହେଁ, ବୁଢ଼ୀ ହେଲୁ, ତେବେକେ ସେଇକଥା ? ଆଗୁ ସତ କହିଲୁ, ଅଜା ଯେତେବେଳେ ତୋ କାନ ପଣନ୍ତକୁ ତାଙ୍କ ବେକଦଉଡ଼ି କରିଥିଲେ, ସେତେବେଳେ···

ବୁଢ଼ୀ—ଆଲୋ ହଁ ଲୋ ହଁ, ମୋତେ କଅଣ ତମର ଗାଆଁ ଟୋକା କରି ପାଇଲୁ କି ? ବାହାନାଇଁ—ଥିଆନାଇଁ, ଜାତିନାଇଁ—ପତିନାଇଁ—ଦିନନାଇଁ—ରାତିନାଇଁ, କଣ ନା ପ୍ରେମ ଲାଗିଛି ।—ଟୋପି ଚନ୍ଦନ—ଜାଇଁଲ ଜହ୍ନ··ମା'ଲୋ ପେରେମ ! ନୁଚତ ନାଁ ଗୋଡ଼ ହାଇଟା ଦୁଶୁଚ !

ରମା—କଲୋ, କାହାକୁ ଏମିତି କହି ହଉଚ କଲେ ? ଭୁଣ୍ଡରେ ତ ବାଟୁଳି ବାଜିବାକୁ ନାହିଁ !

ବୁଢ଼ୀ—ମାଆ ଲୋ, ତାଟକା ହୋଇଗଲୁ କି ? ତୁ ଏ ଗାଁ ଝିଅ ନୁହଁ ପରା ? ଭାଙ୍ଗ ମରିଚ ପାଣି—ନା, ରଜା ପାଇଗୁ ଜାଣି । ରାଇଜ ଯାକରେ ଡୋଲ ବାଜୁଛି, ତୋ କାନରେ କଅଣ ଶିଶା ତଳା ହେଇଚ କଲେ ? ନାଁ-ଅଜଣା ଭାତ ଖାଉଚୁ ମ ? ହାଣ୍ଡିରେ ଖାଏ, ନାଁ ଚୋଡ଼ରେ ପଡ଼ିଲେ ଗାଧୋଇଯାଏ ।

ରତ୍ନମଣି—ମାଉସୀଙ୍କର କେତେ ଢଙ୍ଗ ମାଁଳ ମନନ ଅଛି ମ ?

ରମା—କାହା କଥା ମ, ଫିଟେଇ କହୁନୁ । ପ୍ରେମ କଅଣ ନୂଆକରି ଦେଖିଲୁ ଆଜ ? ବାଳ ପାଚ ଆସିଲା ବୋଲି କଅଣ ଅଜା କଥା ପାଶୋରି ପକେଇଲୁ ?

ବୁଢ଼ୀ—ଅଲୋ, ଆମେ ତ ଆଉ ଦୋ-ଜାତିଆ ନୁହଁ । ଅଜା ଯୋଉ ବ୍ରାହ୍ମଣ---ମୁଁ ସେଇ ବ୍ରାହ୍ମଣୀ । ଆମେ ତ ଆଉ କରଣ ବ୍ରାହ୍ମଣ ହୋଇ ନ ଥିଲୁ ।

ରମା—ମଲା ଯା, ଏତେ ତରକ ରଖି କଥା କହୁଚୁ ଯେ, କିଏ ଫେର ବୁଝିବ ? ଶାନ୍ତ କଥା କଲେ ?

ବୁଢ଼ୀ—ଆଲୋ, ଚୁନ ହ, ଚୁନ ହ । କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସି ଯାଉଚ ।

ରମା—କାହିଁକି ମ ? କୁଳ ଭାସିଯିବ କାହିଁକି ? କଅଣ ହେଲା ଯେ ?

ବୁଢ଼ୀ—କଅଣ ଆଉ ହୁଅନ୍ତା ? ଏଡ଼େ ବଡ଼ ଟୋକାଟା, ଷୋଳ ପୂରି ସତର ହେଲା—ଲାଜ ନାହିଁ କି ମହତ ନାହିଁ ! ଦିନରାତି ଖାଲି ସେ ବ୍ରାହ୍ମଣ ଟୋକାଟା ସାଙ୍ଗରେ ଲାଗିଛି—ହସ, ତାମସା, ଗୀତ, ହାରମାଇନା ! ମୋ ମାଆ ଲୋ, ସାଇ ପଡ଼ିଶା କି ଉଠୁଚ ! ଛି,ଛି, କି ଲାଜ କଥା ଲୋ ମାଆ ! ଆମେ ତ ମରିଗଲୁଣି ।

ରମା—ମଲା, ତମର କାହିଁକି ଦିହ ସହୁ ନାହିଁ ମ ? ଯେ ଯାହା କଲା—ତା ଘରେ କଲା । ତମ ଘରେ କି ଆମ ଘରେ ତ ନୁହଁ--ଯାହା ମନ ଯହିଁକି ରସେ ।

ବୁଢ଼ୀ—ଆଲୋ, ରସୁ ଲୋ ରସୁ । ତୁ ତ ଏଇ ଗାଆଁର ଝିଅ, ତୋର କାହିଁକି ମନ ନ ମାନିବ ? ଏକା ଭାଡ଼ିର ପାରି ନଲା, ଏକା ଭାଡ଼ିର ପାରି—ମନ ରସିଲେ ତୋତେ କଅଣ ନାଗର ନ ମିଳିବେ ?

ରତ୍ନମଣି—ଆସ ମ ମାଉସି, କି ମିଳିବ ସେ କଥାରୁ ? ଏ ରାଇଜ କଥା ତ ଜାଣୁଚ—କୁଆଟାକୁ କୁଆଟାଏ । ହାକିମ ଘର ଲୋକ ଶୁଣିଲେ ଫେର୍···

ବୁଢ଼ୀ—ମଲା, ଆଉ ଶୁଣିବାକୁ ବାକି ଅଛି, ତୁ ଜାଣିବାରେ ? ଆମ ଶାସନ ସାଇ ଦୁଲୁ ଦୁଲୁ କମ୍ପୁଚି ଟି ! ପଞ୍ଚାନନ, ବଡ଼ପଣ୍ଡା, ରାଇଗୁରୁ, ବୁଢ଼ା ପରମଗୁରୁ,—ସଭିଏଁ ଜମାହୋଇ ପଞ୍ଚୁଆତ ବସିଚ ଟି ?

ରମା—ଆଗଲୋ ଆଈ, ଟେଛଉଣ୍ଡ ପିଲା, ମାଉସୀ ଘରେ ବଢ଼ିଚ, ସ୍ନେହ କଅଣ ଆଦର କଅଣ ଜାଣି ନ ଥିଲା । କେହି ଟିକିଏ ସ୍ନେହ ଆଦର କଲା ବୋଲି, ସେ ତାକୁ ଭଲ ପାଇଲା—କି ତା' ସାଙ୍ଗେ ବସ ଉଠ କଲା, ଏଇଟା କଅଣ ତା'ର ଦୋଷ ?

ବୁଢ଼ୀ—ନାଇଁ ଲୋ ମାଆ, କିଏ କହୁଚ ଦୋଷ ବୋଲି ? କାଳ ପରି କଲ ( ନେପଥ୍ୟକୁ ଚାହିଁ ) ମଲା ଯା, ଏ ତୁଠରେ ମିଶିପିଗୁଡ଼ାକ । ଚାଲ, ଚାଲ, ଆର ତୁଠକୁ ଚାଲ ।

ରତମା—ଚାଲ କୁଆଡ଼କୁ ଯିବା, ବେଳ ଆସି ମୁଣ୍ଡ ଉପରେ ।

ରମା—ଆସୁନି ଏଇ ତୁଠକୁ । ମିଶିପି ଲୋକ କେତେ ଦୂରରେ । ସେ କଅଣ ଆମ ଦେହଂରେ ଘଷି ହେଇ ଯାଉଛନ୍ତି କିଲୋ ? ନାଁ ଆମେ ନଙ୍ଗଳା ହୋଇ ଗାଧୋଉଚୁ ?

ବୁଢ଼ୀ—ନଙ୍ଗଳା ହ' କି ମୁକୁଳା ହ', କହିଲି ପରି କାଳ କଲ । ଯାଆ ଲୋ ମା ! ସେଇଠି ଘଷି ମାଜି ହେଇ ଗାଧୋଉ ଥା—ଆମର ଆଉ କୋଉ ବଳ ବଅସ ଅଛି ଯେ···ବୁଢ଼ୀ ହେଲୁଁ···

ରମା—ହଁଲୋ, ମନ ତ ଆଉ ବୁଢ଼ୀ ନୁହେଁ । ଅଜା ଆଖିକି ତ ଏଇ ପାଚିଲା ବାଳରେ ସୁନ୍ଦର ନାଇଲେ ସେଇ ନବ ଯଉବନୀ ଷୋଳବଅଷୀ ! ଆ, ଆ, ଆର ତୁଠକୁ ଗଲେ କାଳେ ବୁଢ଼ାମରବୁ, ଅଜା ମୁଣ୍ଡ ବାଡ଼େଇ ହବ—ମୁଁ ସଙ୍ଗରେ ଥେଲେ ତୋତେ ଟାଣି ଆଣିବ ହେଲେ—ଚାଲ ଯୋଉଠିକି, ମନ ।

( ଫେରିଗଲେ ସମସ୍ତେ ଆର ପଟକୁ )

---

## ତୃତୀୟ ଦୃଶ୍ୟ

[ ନଦୀ ଖର । ସୂର୍ଯ୍ୟ ଅସ୍ତଗାମୀ । ପାଖରେ ପାଣି ଗଡ଼—ତୁଠ ଉପରେ ବସିଚ ଶାନ୍ତ । ପାଣିରେ ପାଦ ବୁଡ଼ଚ—ଗୋଟିଏ ପଦ୍ମଫୁଲ ଧରି ଗୋଟିଏ ଗୋଟିଏ ପାଖୁଡ଼ା ଭସାଇ ଫୁଲଟି ଶେଷ କଲା । ଗାଉ ଥିଲା ଗୀତ, ଅଦୂରେ ଅଶୋକର ବଂଶୀ ବାଦନ ]

(ଗୀତ)

ଝରଣା ଝରେ ଅଶ୍ରୁ ଜଳେ
ପଦ୍ମ ପାଖୁଡ଼ା ଭାସେ ଗୋ,
ବନ୍ଧୁ ଚରଣ ଆଶେ ।
ଲୁଚ ଛପି ତେଉ ଓଢ଼ଣା ଛଳେ
ଜଳ ଭଉଁର ପାଶେ ପାଶେ ।
ମଳୟ ପଛିଁ ଚିର ଗନ୍ଧ ଭରା
କୁସୁମ ପଛିଁ ଛୁଇଁ ନାହିଁ ଜରା
ନନ୍ଦନ ଫୁଲ ବାସେ—ଗୋ
ପ୍ରିୟ ମିଳନ ଦେଶେ ॥

( ହଠାତ୍ ଶାନ୍ତ ଦେହରେ ବାଜିଲା ପଛରୁ ଆଉ ଗୋଟିଏ ପଦ୍ମଫୁଲ, ସେ ଚମକି ଉଠିଲା ପାଟିକରି ପଛକୁ ଚାହିଁଲା—ଦେଖିଲା କେହି ନାହିଁ—ଉଠି ଠିଆ ହୋଇ ଚାହିଁ ଅଶୋକ ଲୁଚିଯିବାର ଦେଖିଲା )

ଶାନ୍ତ—ଦୁଷ୍ଟ !

( ବସିପଡ଼ିଲା ଫୁଲଟିକି ଗୋଟେଇ ଧରି ! )

ଅଶୋକ—( ଉଠି ହସି ) ମୋ ଫୁଲଟା ଧରିଲୁ ଯେ ?

ଶାନ୍ତ—ବେଶ୍ କଲି ।

ଅଶୋକ—ବେଶ୍ କଲି ?

ଶାନ୍ତ—ହଁ, ବେଶ୍ କଲି ।

ଅଶୋକ—ନାଁ, ଭସେଇ ଦେ !

ଶାନ୍ତ—ନ ଦେବ···
ଅଶୋକ—କାହିଁକି ? ମୁଁ ତ ପାଣିକି ଫିଙ୍ଗିଥିଲି ।
ଶାନ୍ତ—ମୋ ଦେହରେ ବାଜିଲା ଯେ ।
ଅଶୋକ—ଭସେଇ ଦେ ।
ଶାନ୍ତ—ନାଁ ।
ଅଶୋକ—ଆଚ୍ଛା, ତୁ ତୁଠ ଜଗି କାହିଁକି ବସିଥିଲୁ ?
ଶାନ୍ତ—କଅଣ ହେଲା ?
ଅଶୋକ—ମୋ ଫୁଲ···
ଶାନ୍ତ—ପାଣିରେ ପଡ଼ିବାକୁ ଦେଲି ନାହିଁ, ଏଇ ତ ?
ଅଶୋକ—ହୁଁ ।
ଶାନ୍ତ—ବେଶ୍ କଲି ? ତୁମେ କଅଣ କରିବ ?
ଅଶୋକ—ଆଚ୍ଛା, ନ ଦେଲୁ ମୁଁ ତ ଛଡ଼େଇ ଫିଙ୍ଗିଦେଇ ପାରିବି । (ପାଖକୁଗଲା)
ଶାନ୍ତ—( ଫୁଲ ମୁଣ୍ଡରେ ଖୋସି ) ଦେଖି, ନେଲୁ ।
ଅଶୋକ—( ଶାନ୍ତ ପାଖରେ ବସି ଏକ ହାତରେ ଶାନ୍ତର ହାତ ଦୁଇଟି ଧରି ) ସେଇଠୁ ? ( ଗୋଟିଏ ହାତ ମଥାର ଫୁଲ ପାଖେ ଦେଇ ) ଏଥର ?
ଶାନ୍ତ—( ନୀରବ )
ଅଶୋକ—କି କହୁନଉଁ ? ଏଥର କଅଣ ହବ ?
ଶାନ୍ତ—କିଛି ନାହିଁ ।
ଅଶୋକ—ଆଉ ଦୁଷ୍ଟ ବୋଲି କହିବୁ ?
ଶାନ୍ତ—ଦୁଷ୍ଟ !
ଅଶୋକ—ଫେର୍ ?
( ଟାଣିନେଇ ଆଦରରେ ଚୁମ୍ବୁଦେଇଲା )
ଶାନ୍ତ—ସଞ୍ଜ ହେଲାଣି, ଭାଇ ଆସିବେ । ମୁଁ ଘରକୁ ଯିବି ।
ଅଶୋକ—ଆରେ, ସତେ ତ ! ତା'ହେଲେ ବେଗେ ଗୀତଟା ଗାଇଦେଇ ଚାଲଯା'—ଡେରି ହଉଚି ।
ଶାନ୍ତ—ଯାଃ, ଭାରି ଦୁଷ୍ଟ ତୁମେ ।
ଅଶୋକ—( ପାଖକୁ ଟାଣି ନେଇ ) ଫେର୍ ?
ଶାନ୍ତ—ନାଁ, ଗାଉଚି—ଗାଉଚି ( ହସି ) କାନଟା ଛାଡ଼ ।
ଅଶୋକ—ନାଁ ।
ଶାନ୍ତ—ସେମିତି ହେଲେ··· ( ଉଠିଯିବା ଉପକ୍ରମ )
ଅଶୋକ—ହୁଁ ? ( ଆହୁରି କାନଟାଣି ) ଆଚ୍ଛା !
ଶାନ୍ତ—ଆରେ ?
ଅଶୋକ—ଗା ।
ଶାନ୍ତ—କହିଲି ପରା ଗାଉଚି !
ଅଶୋକ—କାଇଁ ?
ଶାନ୍ତ—ତୁମେ ସେପାଖକୁ ମୁହଁ କରି ବସ ।
ଅଶୋକ—(କାନ ଧରି ବୁଲିବସି) ଗା, ଏଥର ଗା ।
ଶାନ୍ତ—ଜାଣେ ପରା, ତୁମେ ଭାରି ଦୁଷ୍ଟ ।
ଅଶୋକ—ହୁଁ ।
ଶାନ୍ତ—( ହସି ) ହୁଁ ହୁଁ···( ସ୍ୱର ଧରି ବସିଲା )
ଅଶୋକ—( ପୁଣି କାନ ଟାଣି ) ଏ ଗୋଟେ କଅଣ ଗୀତ ?
ଶାନ୍ତ—( ହସି ) ଆରେ ! ରହ···ସୁରଟା ମନେ ପଡ଼ୁନାହିଁ ଯେ !
ଅଶୋକ—ଭଲ କଥା—ମନେ ପକା ।
ଶାନ୍ତ—(ପୁଣି ହୁଁ ହୁଁ କରି ସୁର୍ ଧରି ଗୀତ ଆରମ୍ଭକଲା)

( ଗୀତ )

ନୀରବେ—ନୀରବ ନୟନ କଥା । ନୀରବ ମରମ ବ୍ୟଥା
ଭାସି ଯାଉ ନୀରବେ ଗୋ, ନୀରବ ନୟନ ଧାରେ ।
ବିମଳ ସରସୀ ଜଳ ଯେସନ ଫୁଟା ଶତଦଳ
ଶତ ଚୁମ୍ବନ ତୁଲେ ପରଶି ସେ ପଦ ମୂଳେ
ଅଶ୍ରୁ-ମୁକୁତା ହାରେ ଭେଟ ପ୍ରେମ ପୂଜାଗାରେ—ନୀରବେ
ଅଶୋକ—ନୀରବେ—ନୀରବେ
ପ୍ରଦୀପ ବସିଛୁ ମୁଁ ଗୋ ଜାଳି—ମୂର୍ତ୍ତି କରି ଗୋ ପୂଜା ଥାଳି
ପ୍ରେମ ପୂଜାରୁଣୀ ଆସ—ଆସ ଆସ—ଭଗ୍ନ କୁଟୀର ଦ୍ୱାରେ
ଦୁହେଁ—ନୀରବେ, ନୀରବେ, ନୀରବେ ।

---

## ଚତୁର୍ଥ ଦୃଶ୍ୟ

[ଗ୍ରାମପଥ । ରାମବାବୁ ଆସୁଥିଲେ, ପୀତାମ୍ବର ଆସିଲେ । ରାମବାବୁଙ୍କୁ ଦେଖି ପ୍ରଣାମ କଲେ]

ରାମ—ନମସ୍କାର, ନମସ୍କାର ।

ପୀତା—କେବେ ଆଇଲ ରାମଭାଇ ? ନୂଆବୋହୂଙ୍କ ଗଲା ବାବୁ ତେମେ ସେ ଏକାବେଳକେ ଗାଁ ଭୂଇଁସବୁ ଛାଡ଼ିଲ । ଆମକୁ ସବୁ ପାଶୋର ଦେଲ । ହିଁ, ଭାଗ୍ୟବନ୍ତ ପରା ତେମେ—ନିତ ଜଗନ୍ନାଥ ଦର୍ଶନ କରୁଛ ।

ରାମ—କାଲି ତ ଆସିଲି, ବର୍ଷକର ଗୋଟାଏ ଅଳଆ ପରା, କୁଡ଼ଆ ଖଣ୍ଡ ଓଲଟ ପାଲଟ କରିଦବା କଥା । ଆଉସବୁ ଭଲ ନାଁ ?

ପୀତା—ହଁ ସେମେତେ, ଆମେ ତ କୂଅ-ବେଙ୍ଗ, କୁଆଡ଼େ ଯିବା ନା ଆସିବା ? ସେଇ ବାରମାଣ ଗୋରଡ଼ା ।

ରାମ—ଯାହା ପାଉଥିଲ ସେତକ, ନାଁ ଦରମା ଫରମା କିଛୁ ବଢ଼ିଛି ?

ପୀତା—ସେ ଅମଳ ଗଲାଣି, ଦରମା ଯାହାଙ୍କର ବଢ଼ୁଛି, ବଢ଼ୁ । ଆମର ତ ଦାନାଟିଏ ରହିବା ଅଠାଠିକ୍, ଘଡ଼ିକେ ଘୋଡ଼ା ଛୁଟିଛି ଏ ଆମଦାନୀରେ ।

ରାମ—ବୁଢ଼ା ଜମିଦାରଙ୍କ କାଳ ଗଲା ବାବୁ ଆମର ତ ସେ ଦୁଆରକୁ ଯାଆସ ବନ୍ଦ ।

ପୀତା—ଗୋସ୍ନାନ ଫଳ ପାଇଛ, ସେ ଦୁଆର ଛାଡ଼ । ତେଲୁଳ ପତରେ ଦାନା ମିଳୁଥିଲେ ସେ ଦୁଆର ଛାଡ଼ିଆସେ । ମହତ, ମର୍ଯ୍ୟାଦା ସବୁ ଗଲାଣି ଆମର, ବାବୁଙ୍କୁ ରାଏ ।

ରାମ—ସେ ତ ହବାର କଥା । (ଠାରି) ସେମିତି ବାବୁରାତ ଆଜକାଲ ଚାଲିଛି ନାଁ ?

ପୀତା—ହଁ, ସେ ବଢ଼ୁଛି ପଛେ ଊଣା ହଉନାହିଁ । ଏବେ ତା ସାଙ୍ଗ କନିଷଗୁଡ଼ା ବଢିଯାଇଛି । ମହତ ବଞ୍ଚାଇ ରହିବାକୁ ଡର ଲାଗିଗଲାଣି । ଏବେ ନଗଦ ଗୋଟେ ଘଟଣା—କାଲିକଥା; ଶୁଣିଲେ କାନରେ ହାତ ଦବ ।

ରାମ—କଅଣ, କଅଣ ?

ପୀତା—କଅଣ ଶୁଣିବ ସେଗୁଡ଼ାକ ? କେହି ନାହିଁ ତ ଏଠି ?

ରାମ—ନାହିଁ ହୋ କିଏ ଅଛି ?

ପୀତା—ଆମେ ଫେର୍ ଚାକରିଆ ସେ ।

ରାମ—ହଇହୋ ! କିଏ କାହାକୁ କହି ପକଉଛ ?

ପୀତା—(ଏଣେତେଣେ ଚାହିଁ) ପରମଗୁରୁ ଘର ଅଶୋକଙ୍କୁ ତ ଜାଣିଥିବ—

ରାମ—ହିଁ, ଶୁଣିଛି, ଦେଖିଲାପରି ମନେ ହଉଛି ପିଲାଟିକି ।

ପୀତା—ଆଉ ଧାନଘର ଗୁମାସ୍ତା କରଣ ସାଇର ରଘୁ ?

ରାମ—ହିଁ, ରାମଦାସଙ୍କ ପୁଅ ତ ?

ପୀତା—ହଁ,ତା'ର ତ ବାପ ମା ମଲେ,ଘରେ ଥାଏ କେବଳ ତା'ର ଦୂର ଲେଖାରେ ଛେଉଣ୍ଡ ଭଉଣିଟିଏ—ବୟସ ୧୭-୧୮ ହେବ । ତା' ନା ଶାନ୍ତ—ପିଲାଟି ବାବୁ ଏଇଠି । ତେମେ ଦେଖିଥିବ ବୋଧେ ?

ରାମ—ଦେଖିଥିବ; ମନେ ହଉନାହିଁ ?

ପୀତା—ଅଶୋକ ଘର ତାଙ୍କଘର ଆଗଗ୍ରୁମୁଆ । ବାହେଁ ପିଲାଟି ବାବୁରୁ ସାଥୀ । ହଉ ହଉ ଏ ଦୁ ବଢ଼ିଲେ, ସେ ବି ବଢ଼ିଲେ—ତା ସାଙ୍ଗେ ସାଙ୍ଗେ ପାଥୀ ବି ବଢିଲା — ଏକଥା ଗଲା ମାଲିକଙ୍କ କାନକୁ ।

ରାମ—ଏଇ କଥା ଏବେ ତାଙ୍କ କାନକୁ ଗଲା କାହିଁକି ? ସେ ବା ଏସବୁକୁ କାନ ଦେଲେ କେମିତି ?

ପୀତା—ଯାହାର ଯେମିତି ସ୍ୱଭାବ—ଗୁରୁ କହିଲେ କସ ହେବ ? ଶାନ୍ତଟି ଦେଖିବାକୁ ସୁନ୍ଦରୀ, ପାଠ ଶାଠ ବି ଅକ୍ଷର ପଢିଛି । ଖୁଆଣିଆ ଥିଲେ, ଫୋଡ଼ିଲେ ସେ କଥା । ସେୟୁ ବି ତ ସେକଥା ଶୁଣିବାକୁ ଚାହାନ୍ତି । କଙ୍କଡ଼ାକୁ ଗୋଳପାଣି ସୁହାଇଲା ।

ରାମ—ବୁଝିଲି, ସେଇଠୁ ?

ପୀତା—ଏଇକ୍ଷଣି ତର୍କରତ୍ନେ, ପଞ୍ଚାନନେ, ବାଚସ୍ପତି ହେଉକାଙ୍କୁ ଡାକି ଖୁବ୍ ଖାଇବା ପିଇବାକୁ ଦେଇ ଅଶୋକକୁ ଏକ ଘରକିଆ କରିବାର ଯୋଗାଡ଼ ଚାଲିଛି । ଚାଲିଛି କଅଣ—ହେଲଣି ବୋଲି । ପରମଗୁରୁ ଜମି ବାଡ଼, ଯାଗିର ସବୁ କାଟି···

ରାମ—କାହିଁକି ?

ପୀତା—ବୁଝୁନା ଭାଇ ! ତା'ର ମୁଣ୍ଡରେ ପରା ସବୁ ଦୋଷ ଲଦା ହେଉଛି । ସମାଜରୁ ସେ ବାସନ୍ଦ ହେବ । ଏବେ ପରା କୋଉ ଦିନ ବୁଢ଼ା ପରମଗୁରୁଙ୍କର ଶ୍ରାଦ୍ଧ ହେବ—ସେଇଦିନ ସବୁ ଫଇସଲା ହେଇଯିବ ।

ରାମ—ସରଳ, ଗଲା ତା କଥା ।

ପୀତା—ସରଳ ବୋଲି ସରଳ ! ଶନିଦୃଷ୍ଟି । ଏକଦମ୍ ରାଜ୍ୟ ନ ଛାଡ଼ିଲେ ତା ଜୀବନ ଅଠାଠିକ୍ ଜାଣ ।

ରାମ—କାହିଁକି ?

ପୀତା—କେତେବେଳେ କୋଉ କଥା । ଘରପୋଡ଼ାଠାଉ, ସମ୍ପତ୍ତି ଲୁଟିଠାଉ···ତା ଅପେକ୍ଷା ନିଜ ଜୀବନ ନେଇ ରାଜ୍ୟ ଛାଡ଼ିବା ଭଲ ।

ରାମ—ଏଥିରେ ଭଲା ଜମିଦାରଙ୍କ ଲାଭଟା କଅଣ ?

ପୀତା—ଭଲ ପଚାରୁଛ ? ଅଶୋକ ପରା ଟିକିଏ ପାଠୁଆ । ସେ ଥିଲେ ଶାନ୍ତିକୁ ଫେର୍ କେମିତି···

ରାମ—ମଲା ! ତାକୁ ମାରି ଫଳ କଅଣ ? ଏଥିରୁ ମୁଁ କିଛି ବୁଝିପାରୁନାହିଁ ।

ପୀତା—ଚାଲ, ଚାଲ । ଘରକୁ ଚାଲ, କହୁଛି । କିଏ ଆସୁଛି କି କଅଣ ।

ରାମ—ହଉ, ଆସ ଭିତରକୁ ଆସ ।

(କହୁ କହୁ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

[ଶାନ୍ତିର ଘର ପଛପଟ ଦୁଆରେ, ପ୍ରାୟ ରାତି ଅଧ ବେଳକୁ ଅଶୋକ ଆସି କବାଟରେ ଧକ୍କା ମାରି ଧୀରେ ଧୀରେ ଡାକୁଛି]

ଅଶୋକ—ଶାନ୍ତି ! ଶାନ୍ତି ! ଶାନ୍ତି ! (କଡ଼ା ହଲାଇବା)

ଶାନ୍ତି—(ଭିତରୁ) କିଏ ?

ଅଶୋକ—ଫିଟା, ମୁଁ । (କବାଟ ଫିଟିଲା)

ଶାନ୍ତି—ଏତେ ରାତି ? ଏ ମେଘ ଅନ୍ଧାରେ ଏ ବାରିପଟଟାରେ ?

ଅଶୋକ—ଗୋଟେ ଗୁରୁତର କଥା ।

ଶାନ୍ତି—ଗୁରୁତର ?

ଅଶୋକ—ହଁ, ଗୁରୁତର ।

ଶାନ୍ତି—ଖୁବ୍ ଓଜନ, ନାଁ ? ବାରିପଟେ ଲୁଚେଇ କରି ଆଣିଛ । ଉଁ ?

ଅଶୋକ—ପରିହାସ ନୁହେଁ ଶାନ୍ତି ! ଗୋଟେ କଥା···

ଶାନ୍ତି—ତା ତ ଶୁଣିଲି ଗୋଟେ କଥା ବୋଲି, ତେବେ କି କଥା ଶୁଣେ । ଠାକୁଆ କୁମର କଥା, ନାଁ କଲୁଷି ବେଣ୍ଟ କଥା ?

ଅଶୋକ—ବାସ୍ତବିକ୍ ଗୋଟେ କଥା, ମୋତେ ବିଶ୍ୱାସ କର ।

ଶାନ୍ତି—ପିଲଟି ଦିନୁ ତ ବିଶ୍ୱାସ କରିଛି । ଆଜି ଆଉ ଥରେ ନୂଆକରି ବିଶ୍ୱାସ କରିବାକୁ ହେବ—ଶିଖିବାକୁ ଡେରି ହେବ ବୋଧହୁଏ ?

ଅଶୋକ—ଶାନ୍ତି !

ଶାନ୍ତି—କହ ।

ଅଶୋକ—ଆଜି ପରିହାସର ବେଳ ନୁହେଁ, ମୁଁ ଗୋଟେ କଥା ପଚାରିବାକୁ ଆସିଛି ।

ଶାନ୍ତି—ଗୋଟେ କାହିଁକି ତୁମେ ଶହେଟା ପଚାର ପାର । ତେବେ ଏଠିଟାରେ କାହିଁକି ? ଘରକୁ ଆସ ।

ଅଶୋକ—କିନ୍ତୁ···

ଶାନ୍ତ—ଆଉ କିନ୍ତୁ କଅଣ ? ଘୋର ଅନ୍ଧାର, ବାରିପଟଟାରେ, କେହି ଯଦି ଦେଖେ—କଅଣ ମନେ କରିବ ? ଘରକୁ ଚାଲ ।

ଅଶୋକ—ଘରକୁ ? ନାଁ ।

ଶାନ୍ତ—ବୁଝିଲି, ଘରେ ଭାଇ ନାହାନ୍ତି ଯେ, ମଫସଲ ଯାଇଛନ୍ତି, ଖମାରରେ କଅଣ ସବୁ ଗୋଲମାଲ ହୋଇଚି, ଆସ ।

ଅଶୋକ—ନାଃ, ଏଠି ପଥର ଉପରେ ଜମି ସତି ଶିବ ।

ଶାନ୍ତ—ଯିବ ତ, ମୁଁ ଧରି ରଖିନାହିଁ ।

ଅଶୋକ—କିନ୍ତୁ ମୁଁ ଯେ ନିଜେ ଧରାଦେବାକୁ ଆସିଛି ।

ଶାନ୍ତ—ଭଲ କଥା ।

ଅଶୋକ—ଶାନ୍ତ, ପାହାଡ଼ର ଗଭୀର ଅନ୍ତଃସ୍ଥଳର ମର୍ମ ଭେଦକରି ଯେଉଁଦିନେ ଝରଣାଟିଏ ବାହାରେ ସେ କଅଣ କହେ—କହି ପାରିବୁ ?

ଶାନ୍ତ—ଓ, ସାହିତ୍ୟର ଚର୍ଚ୍ଚା ? ସ୍ୱପ୍ନରେ ଝରଣାଟା ଦେଖି, ଉଠି ଆସିଲ ବୋଧହୁଏ ସୁଅରେ ଭାସି ଯାଇନାହିଁ, ଭାଗ୍ୟ ।

ଅଶୋକ—ଥଟ୍ଟା ନୁହେଁ ଶାନ୍ତ—କହ ।

ଶାନ୍ତ—କଅଣ କହେ ?

ଅଶୋକ—ହଁ ।

ଶାନ୍ତ—ଅନେକ କଥା ।

ଅଶୋକ—ଶୁଣେଁ ··

ଶାନ୍ତ—କହେ ଅମାନିଆ ପବନ···

ଅଶୋକ—ଏତିକି ?

ଶାନ୍ତ—ଭସା ବଉଦ—ଉଦୁଆଁ ଜହ୍ନ ।

ଅଶୋକ—ଆଉ ?

ଶାନ୍ତ—ଆଉ ଫୁଲର ହସ, ପକ୍ଷୀର ଗୀତ, କେତେ କଥା ।

ଅଶୋକ—ଏତିକିରେ କଅଣ ତୃପ୍ତ ହୁଏ ?

ଶାନ୍ତ—ଆଉ କଅଣ—ମୁଁ ତ ଜାଣିନି ।

ଅଶୋକ—ପାଷାଣି !

ଶାନ୍ତ—ନାଇଁ ସତେ, ସେ କଅଣ ଚାହେ ?

ଅଶୋକ—ଚାହେ···ଚାହେ ମିଳନ ।

ଶାନ୍ତ—ଆରେ ! ତୁମେ ତ ତେବେ ସବୁ ଜାଣିଚ—ଆଉ ମୋତେ ପଚାରୁଥିଲ କାହିଁକି ?

ଅଶୋକ—ପଚାରୁଥିଲି···ବୁଝିବାକୁ ।

ଶାନ୍ତ—ବେଶ୍, ଧର ଯଦି ବାଟରେ ଗୋଟେ ପାହାଡ଼ ଥାଏ, ବାଧା ପାଏ ?

ଅଶୋକ—ବାଧା ? ମିଳନରେ ? ନସ କେବଳ ମନ ।

ଶାନ୍ତ—ନାଁ, ଏ ତୁମର ଭୁଲ କଥା, ମନ ଥିଲେ ଯେ ମିଳନ ହେବ—ଏକଥା ସବୁବେଳେ ଠିକ୍ ନୁହେଁ ।

ଅଶୋକ—ନୁହେଁ ?

ଶାନ୍ତ—ନାଁ, ବୁଝୁନାହିଁ ? ବାଟରେ ଯଦି ଗୋଟେ ପାହାଡ଼ ଭେଟେ ?

ଅଶୋକ—ପାହାଡ଼, କାଇଁ ? ନାଇଁ ତ ।

ଶାନ୍ତ—ସମାଜ ।

ଅଶୋକ—ଭଣ୍ଡ ସମାଜ ! ଜାଣେ ଷଡ଼ଯନ୍ତ୍ର—ଖାଲି ସ୍ୱାର୍ଥପରତା ।

ଶାନ୍ତ—ତଥାପି ତାକୁ ଏଡ଼ିବାର ବଳ ତ ନାହିଁ ।

ଅଶୋକ—ବଳ ନାହିଁ ? ଇଏ ତୁ କଅଣ କହୁଚୁ ଶାନ୍ତ ?

ଶାନ୍ତ—କିନ୍ତୁ, ସମାଜ ଯେ ବଡ଼ ପାହାଡ଼—ତାକୁ ଲଙ୍ଘନ ଅସମ୍ଭବ ।

ଅଶୋକ—ଅସମ୍ଭବ ? ତେବେ ତୁ ସମାଜ ଉପରେ ବିଶ୍ୱାସକରୁ ଶାନ୍ତ !

ଶାନ୍ତ—କଅଣ ତୁମେ ଆଜ ଏସବୁ କହୁଛ ? ତୁମେ କଅଣ ପାଗଳ ହେଲ ?

ଅଶୋକ—ପାଗଳ ! ହଁ । ତୋର ସମାଜ ମୋତେ ପାଗଳ କରିଛି ଶାନ୍ତ ! ଛାଡ଼, ସେସବୁ ଭିନ୍ନ କଥା । ଏଇ କି ତୋର ଦୃଢ଼ ଧାରଣା ?

ଶାନ୍ତ—ମୁଁ ତ ମିଛ କହିନାହିଁ ।

ଅଶୋକ—ହଉ, ମୁଁ ଆସୁଚି ଶାନ୍ତି !

(ଚାଲି ଯାଉଥିବା ଅବସ୍ଥାରେ ଶାନ୍ତି ତାର ହାତ ଧରି ନେଲା)

ଶାନ୍ତି—ଆରେ ? ଏମିତି ଆସିଲ—ଗଲ ? କଅଣ ଏସବୁ ? ହଠାତ୍ ତମ ମନରୁ ଏସବୁ କି ପ୍ରଶ୍ନ ଉଠିଚି ? କଥା କଅଣ ? ବଡ଼ ଚଞ୍ଚଳ ତୁମେ, କାହିଁକି ? ଏସବୁ କି ପାଗଳାମି ?

ଅଶୋକ—ସରଳ ସତ୍ୟ ମଧ୍ୟ ତୋ ଆଖିରେ ଆଜି ପାଗଳାମି ବୋଲି ଦେଖାଗଲା ?

ଶାନ୍ତି—ତୁମେ କଅଣ ଚାହଁ ?

ଅଶୋକ—ଚାହେଁ—ଶାନ୍ତି ! ଆବାଲ୍ୟରୁ ଯେ ଲତାଟି ମୂଳରେ ଦୁହେଁ ଜଳ ଢାଳି ବଢ଼ାଇ ଆସିଚେଁ, (ହାତଧରି) ମୁଁ ଆଜି ଚାହେଁ···ଚାହେଁ ତା'ର ଫଳ ।

ଶାନ୍ତି—(ହାତ ଧରି ରେଖି) ଅବିଶ୍ୱାସର କାରଣ ତ ନାହିଁ ।

ଅଶୋକ—କିନ୍ତୁ ଅଧିକାରର ଆଶା ଯେ ନାହିଁ ।

ଶାନ୍ତି—ଭୁଲ ।

ଅଶୋକ—ଭୁଲ ? ସେ ଫଳ ମୋର ?

ଶାନ୍ତି—ତମର ତ, ସନ୍ଦେହ କଅଣ ? (ମେଘ ଗର୍ଜନ)

ଅଶୋକ—ଶାନ୍ତି ! ଶୁଣୁଚୁ ?

ଶାନ୍ତି—ହଁ, ମେଘ ଗର୍ଜନ ।

ଅଶୋକ—କିନ୍ତୁ ଶୁଷ୍କ । ପିପାସୀ ଚାତକର ଲାଭନାହିଁ କିଛି । (ଓଠରେ ହାତଦେଇ) ଶାନ୍ତି, ଚାହିଁ ଦେଖ—ଆଖି ଆଗରେ ତୋର···

ଶାନ୍ତି—ଆକାଶ ।

ଅଶୋକ—ହିଁ, ଉନ୍ମୁକ୍ତ । ଏଇ ଦେଖ କ୍ଷୀଣ ଚନ୍ଦ୍ରର ଆଲୋକ, କେତେ ପଦମାତ୍ର ଲୋକାଳୟ ପାରହେଲେ, ଏଇ ଉନ୍ମୁକ୍ତ ଆକାଶ ତଳେ ବହେ ଅସରନ୍ତି ନିର୍ଝର—ଅବାଧ ସମୀରଣ । ସେଠାର ଫୁଲ, ସେଠାରେ ମୁକୁଳ, ସେଠାର ବାୟୁ,— ମୁକ୍ତ—ବାଧା ବନ୍ଧନହୀନ । ପାରିବୁ ?

ଶାନ୍ତି—କିନ୍ତୁ···

ଅଶୋକ—ଶାନ୍ତି···

ଶାନ୍ତି—ନାଁ ।

ଅଶୋକ—ନାଁ ?

ଶାନ୍ତି—ନାଁ, ଆଉ ସବୁ ପାରିବ, ଶାନ୍ତି ମରିପାରେ, ମରି ଜାଣେ, କିନ୍ତୁ ତମର ଏଇ କଳଙ୍କ···

ଅଶୋକ—କଳଙ୍କ ? ସମାଜର କଳଙ୍କ ? ମୁଁ ସ୍ୱୀକାର କରୁନାହିଁ, ଭ୍ରୂକ୍ଷେପ ନାହିଁ ମୋର ।

ଶାନ୍ତି—ଆଉ ସବୁ ସହିବ, କିନ୍ତୁ ସେଇତକ···ପାରିବ ନାହିଁ ।

ଅଶୋକ—ତେବେ ମୋତେ···

ଶାନ୍ତି—ମନର ମିଳନଇ ମିଳନ, ଦେହର ମିଳନ ତ ପର କଥା । ଶାନ୍ତିର ମନରେ, ପ୍ରାଣରେ, ଧ୍ୟାନରେ ତମେ;—ଶାନ୍ତି ଏକାନ୍ତ ତମର ।

ଅଶୋକ—କିନ୍ତୁ···

ଶାନ୍ତି—(ହାତ ଛଡ଼ାଇ ନେଇ) ଯାଅ, ଅନେକ ରାତି ହେଲଣି, ପାଗଳାମି କରନାହିଁ ।

(ଚାଲିଯିବା ଉପକ୍ରମ)

ଅଶୋକ—(ଟିକିଏ ନୀରବ) ଶାନ୍ତି ! ଶାନ୍ତି ! ଶୁଣ, ପଦେ କଥା । ଶାନ୍ତି, ଶାନ୍ତି !

(ଉତ୍ତର ମିଳିଲା ନାହିଁ କବାଟ ବନ୍ଦ ହୋ'ଇଗଲା ଅଶୋକ ଚାଲିଗଲା)

(ଗୁଣ୍ଡା ତିନିଜଣ ପ୍ରବେଶ)

ଜଣେ—(କବାଟରେ ହା'ତମାରି) କାହିଁବେ ?

୧ମ—କବାଟଟା ଫିଟିଲା ପରି ଦିଶିଲା, ଗୋଟାଏ ଆଲୁଅ ଦିଶୁଥିଲା, ସେ ବାହାରକୁ ଆସିଥିଲା କି କଅଣ ?

ଜଣେ—ବାହାରକୁ ଆସିଥିଲା ତ ଗଲା କୁଆଡ଼େ ?

୧ମ—ଚାଲିଯିବଣି ଭିତରକୁ ।

ଜଣେ—ଅଚ୍ଛା, ତମେ ଦିହେଁ ଯାଅ, ଭିତରେ ପଶ, ପାରେଟ୍ସି ଟପି ।

୨ୟ—ପାରେଟ୍ସି ଟପି ?

ଜଣେ—ହିଁ, ପାରେଶ୍ୱ ଝପି । ବୋକା ! ଛାଟକା ହୋଇଗଲୁ ଯେ !

୨ୟ—ନାହିଁ ଯେ, ଗୋଟାକ ଘର ଭିତରେ, ପାରେଶ୍ୱଟା ଡେଇଁ, ରାସ୍ତାରେ…

ଜଣେ—ହିଁ ତ, ମରିଯାଉଛୁ କାହିଁକି ? ମାଲିକର ହୁକୁମ—ଯେମିତି ପାରି ସେମିତି ଆଣିବାକୁ ହବ ।

୧ମ—ଆରେ ! ଆମର କ ଥାଏ ରେ ? ଆସ, ହୁକୁମ ମାଲିକର । ମାଇଲେ ସେଇ, ରଖିଲେ ତ ସେଇ ।

ଜଣେ—ହୁକୁମ ନ ମାନଲେ କଅଣ ହବ—ସେଖବର ଜଣା ଅଛି ତ ?

୨ୟ—ଚାଲ ।

ଜଣେ—ହିଁ, ମନେ ରଖ । ସିଆଡ଼୍ ଏକଦମ୍ ଠିକ କରି ଆଣିଥିବ ଯେମିତି ପାଟିଗୁଣ୍ଡ ନ ହୁଏ । ଭିତରକୁ ଯାଇ ଆଗେ ବାର କବାଟଟା ଫିଟେଇ ଦିଅ ।

୧ମ—ଆଜ୍ଞା !

( ଚାଲିଗଲେ କ୍ଷଣକାଳ ପରେ କବାଟ ଫିଟିଲା )

ଜଣେ—(ଭିତରକୁ ଯାଇ ଘରେ ପାରେଶ ଡେଇଁବା ଶବ୍ଦ ହେଲା, ଏତିକବେଳେ ଅନ୍ଧ ଭିକାରି ଗାଇ ଗାଇ ସେବାଟେ ଚାଲିଛି)

(ଗୀତ)

ମେଘୁଆ ନିଝୁମ ରାତିରେ
ଚଢ଼କ ବଜଳି ଖେଳେ କଳା ମେଘ ଛାତିରେ ।

(ଅନ୍ଧର ଗୀତ ପ୍ରାୟ ଶେଷ—ଏଇ ଭିତରେ ଗୁଣ୍ଡାମାନେ ଶାନ୍ତିକୁ ବାନ୍ଧି ନେଇ ଆଣିଛନ୍ତି)

ଗୁମାନସିଂହ—ବାସ, ଚଲୋ ।

(ଅନ୍ଧ ଏକ ଦିଗରେ ଗାଇ ଯାଉଥାଏ । ଗୁଣ୍ଡାମାନେ ଅନ୍ୟଦିଗରେ ଶାନ୍ତିକୁ ନେଇ ଚାଲିଥାନ୍ତି, ଏହି ଅବସରରେ)

(ଗୀତ)

ସେ ଦିନ ସାଧବ ବୋହୂ
ସପନ-ବିଭୋର
ଗୁନ୍ଥୁ ଥିଲା ବସି ମନେ
ଗୋପନର ହାର ।
ଦରିଆ ସେପାରି ବଇଁଶୀ
ରାଧା କାନେ ବାଜିଲାକି
ଜାତି କୁଳ ନାଶି ରେ ।
( ପଟ୍ଟପତନ )

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ କକ୍ଷ--ଶୋଭା ଗାଉଥିଲା ଗୀତ । ଆଗରେ ତାର ସ୍ୱର୍ଗତ ସ୍ୱାମୀର ଫଟୋ, ହାତରେ ଧୂପ । ଆଖିରେ ଲୁହ ପୂରି ରହିଛି ]

(ଗୀତ)

ଅଶ୍ରୁ ଝରେ—କୁସୁମ ଦଳେ—ଗୁନ୍ଥାହାର
ଚରଣେ ନେଇ ମୋର ।
ଭମିର ଦୁଆର ଖୋଲ ଖୋଲ—
ଜଳେ ନୟନେ ଆରତି ଶିଖା—
ସ୍ମୃତି ଚନ୍ଦନ, ନେଇ ବନ୍ଦନ—
ଆସ ନନ୍ଦନ ତେଜି ମନଶ୍ୱେର
ପୂଜା ମୋର—ନେନାକର ।

( ଗୀତ ମଝିରେ, ତାଂର ପଛରେ ରାମବାବୁ ଆସି ଠିଆ ହୋଇଛନ୍ତି । ଶୋଭା ଗୀତଗାଇ ଗଳବସ୍ତ୍ର ହୋଇ ପ୍ରଣାମ କଲାବେଳକୁ ଫୁଲ ରାମବାବୁଙ୍କ ସମ୍ମୁଖ ଦିଗରୁ ଆସିଛି, ରାମବାବୁଙ୍କ ଆସିବା ଶୋଭା ଜାଣି ନ ଥିବାଟା ବୁଝିପାରି, ଫୁଲ ଖାଲି ହସିଲା । ଶେଷରେ ଶୋଭା ଟିକିଏ ବିରକ୍ତ ଭାବ ଦେଖାଇବାରୁ ମଧ୍ୟ ହସି କେବଳ ପଛକୁ ଠାରି

ଦେଲା — ରାମବାବୁ ଠିଆହୋଇ ଥିବାଟା ନେଖାଇବାକୁ । ହସି ହସି ସ୍ଥଳଗଲା ଫୁଲ— ଫୁଲ ଥୋଇଦେଇ । ଶୋଭା ଫେର ସ୍ଥିର ଦେଖିଲା ପଛରେ ରାମବାବୁ )

ଶୋଭା—ମଉସା ! କେତେବେଳୁ ?

ରାମ—ଏଇ ଟିକଏ ହେଲା, ମାଆ !

ଶୋଭା—ଠିଆହୋଇ ରହିଚ ? ଫୁଲ !

ରାମ—କହୁନାହିଁ, କହୁନାହିଁ । ତୁ ପୂଜା ସାର । ମୁଁ ତୋ ପୂଜା ଦେଖୁଥିଲି । ଠାକୁର ଦର୍ଶନ କରୁଥିଲି । (ହାତ ଯୋଡ଼ିଲେ)

ଶୋଭା—(ହଠାତ୍ ଉଠି) ଆହା, ହା । ସେ କଅଣ କରୁଚନ୍ତି ମଉସା ? ହାତ କାହାକୁ ଯୋଡ଼ୁଛନ୍ତି ?

ରାମ—ଆରେ, ବାପ୍ଭାଣୀଟାଏ କି ? ରାମ କହ, ଶିବ କହ, ଦୁର୍ଗା କହ । ସବୁ ଏକ ରେ ସବୁ ଏକା, "ସର୍ବ ଦେବ ନମସ୍କାରଂ କେଶବଂ ପ୍ରତିଗଚ୍ଛତି ।" ସେଥିରେ କଅଣ ଅଛି ? ଯାହାର ଯୋଉଠି ମନ ।

ଶୋଭା—ନାହିଁ, ନାହିଁ ମଉସା ! ଏ ଯେ ଠାକୁର ନୁହେଁ, ଫଟୋ ।

ରାମ—ବେଶ୍ ହେଲା, ମୂର୍ତ୍ତି ହେଉ, ଫଟୋ ହେଉ, ସବୁ ଏକା । ପ୍ରହ୍ଲାଦ ପାଇଁ ଖୁଣ୍ଟ ଭିତରେ ବି ଥିଲେ ତ ସେଇ ହରି; ଏକା କଥା, ଏକା କଥା ।

ଶୋଭା—ଆହା ଭୁଲ ବୁଝିଛନ୍ତି ମଉସା ! କହିଲି ପରା ହାତ ଯୋଡ଼ନ୍ତୁ ନାହିଁ । ମୁଁ ଠାକୁର ପାଇବି କାହୁଁ ? ବାର ବର୍ଷ ହେବ ଗ୍ରୁଡ଼ିଛି । ଏ କେବଳ ଫଟୋଟିଏ । (ଉଠାଇବାକୁ ଗଲେ)

ରାମ—ଆହା ହା, ସେଇଠି ଥାଉ ମାଆ ! ମୁଁ ଏଇଠୁ ଦର୍ଶନ କରୁଛି ।

ଶୋଭା—(ଫଟୋଟି ଉଠାଇ) ଆପଣ ତଥାପି ବୁଝିପାରିଲେ ନାହିଁ ମଉସା ! ସେ ଆଉ କାହାର ନୁହେଁ, କେବଳ ମୋ'ର ଠାକୁର ।

(ଫଟୋଟି ଦେଖାଇଲେ)

ରାମ—ସତେ ତ···ଫଟୋ ? ସୁନ୍ଦର ଚେହେରାଟିଏ ।

ଶୋଭା—ଆପଣଙ୍କ ପୁଅଙ୍କର ।

ରାମ—ଠିକ୍ ତ କହିଚୁ ମା ! ସତ୍ତାର ଠାକୁର ତା'ର ପତି । ତା'ଠୁ ଆଉ ତା'ର ବଡ଼ ଦେବତା କିଏ ଅଛି ? ସେ କେତେ ବର୍ଷ ତଳର ଚେହେରା ?

ଶୋଭା—ପିଲା ଦିନର ତ । ବାପା ବୋଉ ଖେଳଘର କଲାପରି ଯେଉଁଦିନ ତାଙ୍କୁ ମୋତେ ଦେଖାଇଲେ···

ରାମ—ତା' ପରେ···

ଶୋଭା—ଗୋଟିଏ ବର୍ଷ ତ ! ତା' ପରେ···

ରାମ—(ଦୀର୍ଘ ନିଶ୍ୱାସ ପକେଇ) ଓଃ ! କଠୋର ସମାଜର ବନ୍ଧନ ! ଥାଉ ମାଆ, ରଖିଦେ' ନେଇ ଦେବତାଙ୍କୁ ତୋ'ର । ମୁଁ ଆସି ଅସମୟରେ ତୋତେ କଷ୍ଟ ଦେଲି ।

ଶୋଭା—(ଫଟୋଟି ରଖୁ ରଖୁ) କଷ୍ଟ ? ରକ୍ତ ମାଂସ ଯା'ର କଷ୍ଟରେ ଗଢ଼ା, ଏ କଅଣ ଅଧିକ କଷ୍ଟ ତା'ର ? ନାହିଁ ମଉସା ! ବରଂ ନିଜ ଲୋକପାଖେ କଷ୍ଟଟା କହିଦେଲେ ଦଣ୍ଡକପାଇଁ ଗ୍ରୁଡ଼ିଟା ଟିକଏ ଉଶ୍ୱାସ ଲାଗେ । ଆପଣ ଏତେଦିନ କଅଣ କଲେ ଗାଁଆରେ ? (ବସିଲେ)

ରାମ—ଏତେ ଦିନ ଆଉ କଅଣ ? ଦିନ ସ୍ଥିରେଟା ତ ।

ଶୋଭା—ଗ୍ରର ଦିନ ? ନାଇଁପରା ! ମୋତେ ଯେମିତି କେତେ ଦିନ ପରି ଲାଗୁଚି ?

ରାମ—ନାହିଁ ମ । ବୁଧ, ଗୁରୁ, ଶୁକ୍ର, ଶନି,—ଆଜି ତ ରବିବାର—ତୋ ପାଖରେ ।

ଶୋଭା—ମୋତେ କଅଣ କେତେଗୁଡ଼ାରେ ଦିନ ପରି ଲାଗିଲାଣି । ମୁଁ ସବୁଦିନେ ଖବର ନଉଛି । ମୋର ବୋଲି ଏଠି ତ ଆଉ କେହି ନାହିଁ । ମଉସା ! ଆପଣ ନ ଥିଲେ ମୋତେ କେମିତି ହତାଶିଆଟା ଲାଗେ । ଆଉ ତ ଯିବେ ନାହିଁ ?

ରାମ—(ହସି) ନାଇଁ, ଆଉ କାହିଁକି ? ଫେର୍ ଯାଇ ଆଉ ବର୍ଷେ । ଗାଁର ଯେ ଅବସ୍ଥା ! ସେଠିକି କଅଣ

ଯିବାକୁ କେତେବ ମନହୁଏ ? ଖାଲି କଅଣ କରିବା, ଯାତପୁରୁଷୀ ଘରଟା, ଜମିବାଡ଼ି କିଛୁ ଅଛି । ନହେଲେ—ରାମ୍, ରାମ୍ । ଭୂତ ସେଠା ମାଡ଼ିବ ନାହିଁ ।

ଶୋଭା—କାହିଁକି ? ଏତେ ଖରାପ ଯାଗା ?

ରାମ—ଯାଗା କାହିଁକି ଖରାପ ହୁଅନ୍ତା ? କପାଳକୁ ଏକ ଟୋବରଗୋଟିଆ ଜମିଦାର ଯୁଟିଛି ଯେ ତା ଅତ୍ୟାଚାରର କାନରେ ଶୁଣିବୁ ନାହିଁ । ତୁ ଯିବୁ ନାହିଁକି ଆମ ଘରକୁ, ତେଲେ ସେସବୁ ଖବର ଶୁଣିବୁ ଯେ ।

ଶୋଭା—କଅଣ, କଅଣ ମଉସା ?

ରାମ—ଗଲି ତ ଗାଆଁକୁ, ସେଠି ଶୁଣିଲି ନାନା କଥା, କେତେ ରକମର ଅତ୍ୟାଚାର । କାଲି ଘରୁ ଫେରିଲି ବେଳକୁ ପ୍ରାୟ ଛଅ ମାଇଲ ଆସିଲେ ରେଲ ଷ୍ଟେସନ୍, ବାଟଟାରେ ଘଞ୍ଚ ବଣ । ଗୋଟେ ଗଛମୂଳେ ଏକବସ୍ତିଆ ହୋଇ ଗୋଟିଏ ସ୍ତ୍ରୀଲୋକ କିଛି...

ଶୋଭା—ସେଇଠୁ ?

ରାମ—ବାଟୋଇ ଜଣେ ମୋ ସାଙ୍ଗରେ ଥିଲା ସେ ସେ ଡରକରି ଗଲାନାହିଁ । ମୁଁ ଯାଇ ଦେଖେ ତ ବଗୁଆ ମଲାପରି ପଡ଼ିଛି । ଚେତା ଚୈତନ ନାହିଁ । ଫେରି ଚେମାକୁ ପଠେଇ ଗାମୁଛାଟା ପାଣିରେ ବୁଡ଼ାଇ ଅଣେଇ ତାକୁ ଚେତା କଲି । ଦେହମୁଣ୍ଡ ତାର ରକ୍ତ, ମାଡ଼ର ସୀମା ନାହିଁ ।

ଶୋଭା—ଆହା ହା, ସେ କାହିଁ ? ସେଇଠି ?

ରାମ—ତା ଆଉ କେମିତି କରନ୍ତି ? ତାକୁ ସାଙ୍ଗରେ ନେଇ ଆସିଛି ପରା ।

ଶୋଭା—ମାଡ଼ କାହିଁକି ଦେଲେ ?

ରାମ—ତୋ'ର ପର ଏକଜନଦାଆଗୀ । ତୋ' କକାଙ୍କ ସାଙ୍ଗେ ଚୋରି ଅଡେ କାହିଁକି ? ସେ କହିଲେ ତୋତେ ବଧବା ବିବାହ କରିବାକୁ । ତୁ ତା ନ କଲୁ, ଧରିବସିଲୁ, ସ୍ୱାମୀର ଫଟୋଟିକି ଦେବତା କରି ।

ସେମିତି ସେଠା ଯମିଦାର ଗୃହିଁଥିଲେ ତାକୁ ଘରେ ରଖିବାକୁ—ସେ ନାରାଜ, ସମସ୍ତେ ତ ଆଉ ସମାନ ନୁହନ୍ତି ?

ଶୋଭା—ସେଇଠୁ ?

ରାମ—ତାକୁ ଗାଡ଼ି ଖର୍ଚ୍ଚ କରି ଷ୍ଟେସନ ଯାଏ ଆଣି, ଘରେ ଏଠି ରଖିଚି ।

ଶୋଭା—ଭଲ ଅଛି ନା ?

ରାମ—ହଁ, ଚିକିତ୍ସା ତ କରାହେଉଛି, ଡାକ୍ତର କହୁଛନ୍ତି ଦୁଇ ତିନ ଦିନକେ ଭଲ ହୋଇଯିବ । ମୁଣ୍ଡଟା ଫାଟିଯାଇଚି । ଗଲେ ବଳେ ଦେଖିବୁ ନାହିଁ ?

ଶୋଭା—ମୁଁ ଯିବି ।

ରାମ—ହଁ, ଯିବୁ ।

ଶୋଭା—ମୋ ମନଟା କେମିତି ହଉଚି ମଉସା ! ଚାଲନ୍ତୁ, ତାକୁ ଦେଖି ଆସିବି ।

ରାମ—ଏଇନେ ଯିବୁ ?

ଶୋଭା—ହଁ । (ଉଠିଲେ)

ରାମ—ହଉ ଚାଲ୍, (ଉଠିଲେ)

ଶୋଭା—ଫୁଲ ? (ରମବାବୁଙ୍କୁ) ସେ କ ଜାଣେ କ ମଉସା ?

ରାମ—ସେ କରଣ ଘର ଝିଅ, ତା ନାଁ 'ଶାନ୍ତି' ।

ଶୋଭା—ବାଃ, ଭଲ ନାଆଁ ଟି ତ !

ଫୁଲ—(ଦୌଡ଼ିଆସି) କଅଣ ?

ଶୋଭା—ଯା, ନାନୀକି କହିବୁ ମଉସା ଏଠାରେ ଖାଇବେ, ବୁଝିଲୁ ?

ଫୁଲ—ହୁଁ । ( ଦୌଡ଼ି ପଳାଇଲା ) ଅଜା ଏଠାରେ ଖାଇବେ ନାନୀ, ଅଜା ଏଠାରେ ଖାଇବେ ।

ରାମ—ଅରେ ନାଇଁ, ନାଇଁ, ଫୁଲ ! ଫୁଲ !

ଶୋଭା—ଆଉ ସେ ଅଛି ? ଡଆଁ ଟେ ମାରି ଚାଲିଗଲାଣି ।

ରାମ—ମୁଁ ତ ଯିଅଡ଼େ ମୁଠେ ବସେଇ ଦେଇ ଆସିଥିଲି ।

ଶୋଭା—ହଁ, ବସୁ । ମୁଁ ଖାଇ ଆସିବି ଚାଲନ୍ତୁ ।

ରାମ—(ଯାଉ ଯାଉ ହସି) ଯାହା ଜିଦ୍ ଧରିଥିବୁ । ବାଘୁଣୀଟାଏ ତ ! ______ (ଦୁହେଁ ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

[ ରାଜପଥ—ରଜୂ ଓ ଦେବେନ୍ ]

ରଜୂ—ତା'ପର ?

ଦେବେନ୍—ତାଙ୍କ ଜମିଦାର ଶାନ୍ତିକ ଉଠେଇ ନେଇ ଯା'ର—

ରଜୂ—ଫେର୍ ଅଶୋକ ?

ଦେବେନ୍—ଶୁଣିଲ ତ ତାର ଘର ପୋଡ଼ିଦେଇଛି। ଜୀବନଟା' ବଞ୍ଚେଇ ଏ ବର୍ବର ଅତ୍ୟାଚାର ଚମେଇ।

ରଜୂ—ଶାନ୍ତି କଅଣ ନିଜେ ଇଚ୍ଛାକରି··· ?

ଦେବେନ୍—ଧେତ୍, ଜବରଦସ୍ତି ନାଁ।

ରଜୂ—ଆଉ ବାହାଘରଟା ହୁଅନ୍ତା ବା କେମିତି ? ଅଶୋକ ବ୍ରାହ୍ମଣ, ଶାନ୍ତି ପରି କରଣ ?

ଦେବେନ୍—ହଉ ନାଁ, କଅଣ ହେଲା ? Civil marriage—ପ୍ରେ ପ୍ରଗତିର ଯୁଗ ଯେ !

ରଜୂ—ତା' ମାନେ ?

ଦେବେନ୍—ପ୍ରଗତି !

ରଜୂ—ତା ମାନେ ?

ଦେବେନ୍—ମାନେ—ପ୍ରଗତି । ଅର୍ଥାତ୍—ପ୍ରଗତି, ଅର୍ଥାତ୍······

ରଜୂ—ବୁଝିଲି, ବୁଝିଲି ମୁଁ ତୋ ମତଲବଟା, ତା ବୋଲି ସମାଜ···

ଦେବେନ୍—ସମାଜ ? ସମାଜ କଅଣ ? ଏଇ ଆମମାନଙ୍କୁ ନେଇ ତ ? ଆମେମାନେ ଯାହା ଚଳେଇବା—ସମାଜ ସେଇଟା ମାନିବାକୁ ବାଧ୍ୟ।

ରଜୂ—କିନ୍ତୁ ଚିରାଚରିତ ପ୍ରଥା ?

ଦେବେନ୍—Obsolete, Back-date—ସେଟା ସେ ଯୁଗ ପାଇଁ ଥିଲା। ଆଜି ସେ ଯୁଗ ତ ନୁହେଁ, ପ୍ରଗତି ଯେ।

ରଜୂ—ତା' ବୋଲି ଏ ଯୁଗରେ କଅଣ ଦିନଟା ରାତି, ନାଁ ରାତିଟା ଦିନ ? ସୂର୍ଯ୍ୟକୁ ଚନ୍ଦ୍ର ବୋଲି କହିବା, ନାଁ ଚନ୍ଦ୍ରକୁ ଆକାଶ ବୋଲି କହିବା ? ବାଜେ ଯୁକ୍ତି।

ଦେବେନ୍—ବାଜେ ?

ରଜୂ—ବାଜେ ନୁହେଁ ? ପ୍ରଗତି ପ୍ରଗତି ବୋଲି କଅଣ ଦେଶଟା ଅଧଃପାତ ଯିବ ? ସମାଜ ନାହିଁ, ବନ୍ଧନ ନାହିଁ, ଶୃଙ୍ଖଳା ନାହିଁ, ପ୍ରଗତି ଯୁଗରେ କଅଣ ଟକା ତୋଳିବା ବୋଲି ଝାଟି ମାଟି କାନ୍ଥ ଉପରେ ଛାତ ପିଟି ? ବା'ରେ ପ୍ରଗତି !

ଦେବେନ୍—ତେବେ ତୁ କହୁ କଅଣ ତା'ର ଏଇଟା ଅନ୍ୟାୟ ?

ରଜୂ—ନିଶ୍ଚୟ ଅନ୍ୟାୟ।

ଦେବେନ୍—ପ୍ରେମ କଅଣ ପାପ ?

ରଜୂ—ତା' ତ ମୋ କଥାର ଅର୍ଥ ନୁହେଁ।

ଦେବେନ୍—ତେବେ ଅଶୋକ ଶାନ୍ତିକ ଭଲ ପାଇଲା ତ ହୋଇଗଲା କଅଣ ? ଦୋଷ କଅଣ ?

ରଜୂ—ଦୋଷ ? ସେଇଠି ତ ଦୋଷ। ଭଲ ପାଇବା ଭିତରେ କସମ ଅଛି। ଯୁବକ ଯୁବତୀର ଭଲ ପାଇବା ମାନେ ? ନିଆଁ ଆଉ ଘିଅର ଭାବ—ଏଇ ତ ?

ଦେବେନ୍—ତା'ର ମାନେ ?

ରଜୂ—ହସେଇଲୁ, ହସେଇଲୁ ତୁ ରେ ପ୍ରଗତିଶୀଳ ପାଠୁଆ ! ତା'ର ମାନେ ତୁ ବାହାହେଲେ ବୁଝିବୁ। ମୂର୍ଖ।

ଦେବେନ୍—ମୂର୍ଖ ? ମୁଁ ମୂର୍ଖ ? ନାଁ···

ରଜୂ—ନାଁ, ତୁ ପାଠୁଆ ମୁଁ ସ୍ୱୀକାର କରୁଛି। କୁକୁରର ଚାରୋଟି ଗୋଡ଼ ଅଛି, ମଣିଷର ଦିଇଟା ଆଖି ଅଛି, ବଳଦର ଗୋଟେ ଲାଞ୍ଜ ଅଛି। ଏସବୁ ତୁ ନିଶ୍ଚୟ ପଢ଼ି ପାଶ୍ କରିଛୁ, ଆଉ ସେ ପାଶ୍ ତୋର ରୋଜଗାର ପାଇଁ। ବଡ଼ ବଡ଼ ପକ୍କା କୋଠାର ଯେ ବିଦ୍ୟା ମନ୍ଦିର କଲ, ସେଥିରେ ବହୁତ ଅଭଙ୍ଗା କଣ୍ଢେଇ ତିଆରି ହେଉଛନ୍ତି। ତାଙ୍କର ପେଶା ହେଲା ରୋଜଗାର,

ସେଇ ପାଠ ତୁ ତ ପଢ଼ିଚୁ, ସେଇ ତାଲିମ ତୁ ବି ତ ପାଇଚୁ । ଆଉ ସେଇ କଲରେ ତୁ ତ ଗଢ଼ା । ପ୍ରଗତି ଶବ୍ଦଟା ସେଇଠୁ ମୁଖସ୍ଥ କରି ପକେଇଚୁ ବୋଧହୁଏ ।

ଦେବେନ୍—ତେବେ କଅଣ ତୋ ହିସାବରେ ପାଠ ପଢ଼ାଟା ଖରାପ ?

ରାଜୁ—ମୁଁ ତ ତା' କହୁନାହିଁ । ମଣିଷ ହେବାଟା ଖରାପ ନୁହେଁ, କିନ୍ତୁ ଏଇ ପ୍ରଗତି-ପାଠୁଆ ହେବାଟା ମୋତେ କେମିତି ଟିକେ ଅଡ଼ୁଆ ଅଡ଼ୁଆ ଲାଗେ । ପ୍ରଗତି ମାନେ ଯାହାତାହା ନୁହେଁ, ପ୍ରଗତି ମାନେ ଯେ ଯାହାକୁ ପାଇଲା, ବାହାହେଲା—ସ୍ୱା ନୁହେଁ, ପ୍ରଗତି ମାନେ ସ୍ୱା ନୁହେଁ ଯେ, ତୁମେ କୋଟଟା ଗୋଡ଼ଆଡ଼ୁ ପିନ୍ଧିବ, କି ଯୋତାଟା ହାତରେ ପିନ୍ଧିବ ।

ଦେବେନ୍—କିନ୍ତୁ···

ରାଜୁ—ଫେର୍ ଗାଲ୍ ?

ଦେବେନ୍—ଗାଲୁ ତ ନୁହେଁ, ତୋର ଏ କଥାକୁ ମୁଁ ସମର୍ଥନ କରୁନାହିଁ ।

ରାଜୁ—ଉଚିତ ମଧ୍ୟ ନୁହେଁ, ସତ କଥାଟା—ସତ ବୋଲି ମାନିବୁ କେମିତି ? ତାକୁଇ ତ କହନ୍ତି ପ୍ରଗତିଶୀଳ ବିଦ୍ୱାନ୍-ଗାଲୁଆ ।

ଦେବେନ୍—କିନ୍ତୁ ମହାତ୍ମା ଗାନ୍ଧୀ······

ରାଜୁ—ଯା, ଯା, ସମସ୍ତେ ଗାନ୍ଧୀ ନୁହନ୍ତି । କାହିଁ ରାଣୀ, କାହିଁ ଚନ୍ଦର କାଣୀ । ଗାନ୍ଧୀ ଏ ଉପଦେଶ ଦେଇ ନାହାନ୍ତି ଯେ ତୁମେ ଖାଲି ବସି ପ୍ରେମ କରୁଥା—ଦୁ' ଜଣ ଯୁବକ ଯୁବତୀ ମିଶି ।

ଦେବେନ୍—ପ୍ରେମଟା କଅଣ ତେବେ ତୋ ହିସାବରେ ପାପ ?

ରାଜୁ—ପ୍ରେମ କାମ ନୁହେଁ । ସେ ରାଧାକୃଷ୍ଣ ନୁହନ୍ତି କି ମହାଦେବ ନୁହନ୍ତି ଯେ ମଦନକୁ ଭସ୍ମ କରିଦେବେ । ତୁ ଆଉ ବେଶୀ ପ୍ରଗତି ପ୍ରଗତି ହୁଅନା । ପ୍ରଗତି ମାନେ, ସ୍ତ୍ରୀ ଶିକ୍ଷା ମାନେ, ସ୍ତ୍ରୀ ସ୍ୱାଧୀନତା ମାନେ, ଉଲଗ୍ନତା ନୁହେଁ—ଉଚ୍ଛୃଙ୍ଖଳତା ନୁହେଁ ।

ଦେବେନ୍—ତା ତ ନିଶ୍ଚୟ ନୁହେଁ ।

ରାଜୁ—ତେବେ ? ଅଚ୍ଛା, ଗୋଟେ କଥା କହନା ? ଅଶୋକ ତ ବ୍ରାହ୍ମଣ, ଶାନ୍ତି ପରା କରଣ ? ସ୍ୱାଙ୍କର ଔରସ ଜାତ ସନ୍ତାନ କଅଣ ହେବ ? ପ୍ରଗତି ଜାତି ନାଁ ?

ଦେବେନ୍—ଦୁର୍‌ବେ ।

ରାଜୁ—ଆଉ ଦୁର୍‌ବେ ? ହୁଏତ ଏଇଆ ହବ ନଚେତ୍ ପ୍ରଗତିଶୀଳ ଔଷଧ···ନିରାପଦ ।

ଦେବେନ୍—ଧୁତ୍ ଅଭଦ୍ର !

ରାଜୁ—( ଠେଲିଦେଇ ) ଅଶୋକ ଆସୁଚି ରେ !

ଅଶୋକ—(ହଠାତ୍ ଘରେ ପଶିଅଞ୍ଚ, ଛତାଟାକୁ ସୁଟ୍‌କେଶ୍ ଭିତରେ ରଖିବାକୁ ପ୍ରସ୍ତୁତ । ଯେମିତି ନିଜର ଭୁଲ୍‌ଟା ଜାଣି ପାରିଲା ନାହିଁ)

ଦେବେନ୍—(ହସି) ଆରେ ସେଟା ଛତା ଯେ··· ସୁଟ୍‌କେଶ୍‌ରେ ତାକୁ ରଖୁଚୁ ? ତୁ କଅଣ ପାଗଳ ହେଲୁଣି ?

ଅଶୋକ—(ଛତାଟା କାଢ଼ି) ଓ !

(ଉଠି ଲୁଗା ପଟା ସଜାଡ଼ିବାକୁ ବସିଲା)

ରାଜୁ—ଏ ଅଶୋକ, କୁଆଡ଼େ ସକାଳୁ ନ ଖାଇ ନ ପିଇ ଯାଇଥିଲୁ କହ ନାଁ ?

ଦେବେନ୍—ସେ କଅଣ ସେଇ ସକାଳୁ ଯାଇଚି ?

ରାଜୁ—ଆଉ ? ରାତିରେ ଆସି ପଶିଅଛି । ଦେଖୁଁ ତ ପୁଣି ସକାଳୁ କୁଆଡ଼େ ବାହାରିଲାଣି ! ଡାକିଲା ବେଳକୁ ଆଉ କାହିଁ ?

ଦେବେନ୍—ଦାନ୍ତ ଘଷିଚୁ ନାଁରେ ?

ଅଶୋକ—(ଭାବି) ହଁ ?·· ହଁ ।

ଦେବେନ୍—ଆଉ ଏଇନେ ସୁଟ୍‌କେଶର କଅଣ ଦରକାର ? ଛତାଟା ଭର୍ତ୍ତି କରୁଥିଲୁ ଯେ ! ଆ,

ଏଇଠି ବସ। ରାଜୁ ତୋତେ ଅନେଇ ବସିଛୁ ଘଣ୍ଟାଏ ହେଲା, ଏଠିକି ଆ।

ଅଶୋକ—ନାଁ—ମୁଁ ଯିବ ଭାଇ—ଯାଉଛୁ।

(ସୁଟକେଶ ଉଠେଇଲା)

ରାଜୁ—(ଉଠି ସୁଟକେଶ ଛଡ଼ାଇ) ସେ କଅଣ ? କଥା ନାହିଁ ବାର୍ତ୍ତା ନାହିଁ—ଯାଉଚ।

ଦେବେନ୍—ଚାଲ, ଗାଧୁଆ ପାଧୁଆ ଖିଆପିଆ ଆଗେ କର, ତା' ପରେ ଦେଖିବା ଗୋଟେ ଚାକରି ବାକର କୋଉଠି। ଗୋଟାଏ ପେଟ ତାର ଅପୋଷା ରହୁଛି ଏଇ କଟକ ଟାଉନରେ ? ନାଇଁ ତ ଅଧମ ଉଦ୍ଧାରଣ ପନ୍ଥା ଅମର—ଟିଉସନ ତ ମିଳବ।

ରାଜୁ—ଆରେ, ତାର ତ ଗୋଟେ ବଡ଼ ଗୁଣ ଅଛି। ଆଜକାଲ ଯେମିତି ଆମର musicର ଘରେ ଘରେ ଗୋଟାଏ ବେଶ୍ ଆଦର ବଢ଼ୁଛି, ଗୋଟାଏ ଦୁଇଟା ଟିଉସନ ଧରିଲେ ତ ତା'ଭାତ କିଏ ଖାଇବ। ଆ।

ଅଶୋକ—ନାଁ ଭାଇ ! ବେଳ ହେଇଯିବ।

ଦେବେନ୍—ମାନେ ?

ଅଶୋକ—ସନ୍ଧ୍ୟାଗାଡ଼ି ଛଅଟାରେ ପୁରୀ ଯାଏ ନାଁ ? ଏଇ ଯେ ବେଳ ହେଲା। ଫେଲ୍ ହେଇଯିବ ଗାଡ଼ି। ଅଟକାନାଁ ମୋତେ।

ରାଜୁ—ଅଟକାଁ'ନାଁ ? କଥା ହେଲା ତୁ ଏଠି ଆମ ବସାରେ ରହିବୁ —ଦେଖିବା ଚାକିରି ଗୋଟେ କିଛି। 

ଦେବେନ୍—କିଛି ନୋହିଲେ music tution ଧରିଲେ ତ ତା'ର ଚୋଟେ ପେଟ···ଖାଏ କିଏ ?

ଅଶୋକ—ନାଁ ଭାଇ ! ଛାଡ଼ ମୋତେ, ମୁଁ ପୁରୀ ଯିବ।

ରାଜୁ—ପୁରୀ କାହିଁକି···ସମୁଦ୍ରରେ ବୁଡ଼ି ମରିବାକୁ ? ନାଁ, ବସାକୁ ଚାଲ।

ଦେବେନ୍—ରାଜୁ !

(ତାର ମୁଣ୍ଡଟା ବଟିଡ଼ ଯାଇଦେବାର ଅଭିନୟ)

ଅଶୋକ—ମୋତେ କ୍ଷମା ଦିଅ ଭାଇ ! ମୋର ବହୁତ କାମ।

ରାଜୁ—ଅଚ୍ଛା, ସେକଥା ବୁଝାଯିବ ବସାରେ। ଚାଲନାଁ ବାବୁ ! ଖେଳ ଆମର ଆଜ ନୋହିଲା—ତୁ ବସାକୁ ଚାଲ। (ସୁଟକେଶ ଛଡ଼େଇନେଇ ଦେବେନ୍‌କୁ କହିଲା) ନେ ଦେବେନ୍ ! ଆଣ ତ ଏ ପାଗଳକୁ ସଙ୍ଗରେ, ମୁଁ ଏଇ ଛକରୁ ଖଣ୍ଡେ ଗାଡ଼ି ଡେକେଁ।

ଅଶୋକ—ମୋତେ ଟଣାଟଣି କରନାଁ ଭାଇ, ଗାଡ଼ିଟା ଗଲେ ମୋର ଭାରି ଅସୁବିଧା।

ଦେବେନ୍—ବସାକୁ ଆଗେ ଚାଲ ତ ! (ଟାଣିନେଲା)

---

## ତୃତୀୟ ଦୃଶ୍ୟ

[ଅଳନ୍ଦ—ରାମବାବୁଙ୍କ ଠାକୁର ଘର। ରାମବାବୁ ଗୋଟିଏ ପାଖରେ ଖଣ୍ଡିଏ ଆରାମ ଚଉକିରେ ବସିଥିଲେ। ସେ ଚିନ୍ତାନ୍ୱିତ]

ରାମ—(ଟିକିଏ ଭାବି କହିଲେ) ତୁମେ ଏକା ଯିଅଣିଆ ନା ? ଆଚ୍ଛା, ଆଚ୍ଛା, ମୁଁ ବି ତମକୁ ଛାଡ଼ିବା ବାଲା ନୁହେଁ ସେ ! ସେ କିଏ, ମୁଁ କିଏ ? ଅଜାତିକ ବଣିଜ ଅଡ଼ୁଆ ! ଥିଲି ତ ବେଶ୍—ଏକା, ଏକା। ବେକରେ ମୋର ଗୋଟାଏ ଛନ୍ଦା, ଏ କାଳକୁ ମୋତେ ଏମିତି ବନ୍ଧନରେ ପକାଉଛ ? ତାକୁ ମୋତେ ଦେଖାଇବାର କାରଣ ? ସେ ମୋର କଅଣ, ମୁଁ ବା ତାହାର କଅଣ ? ସେ ବା କିଏ ?

ଶାନ୍ତ—(ପୂର୍ବବତ ଦେହିଥ୍) କିଏ ବାବା ?

ରାମ—(ନିର୍ଲିପ୍ତ ଭାବେ ଚାହିଁ ଅପ୍ରତିଭ ହେବାପରି) ନାଁ, କିଛି ନାହିଁ। ଗୁଣ୍ଡାଖୁ ଆଣିଚୁ କି ?

ଶାନ୍ତ—ହଁ ବାବା, (ନାଳଗୁଣ୍ଡା ଦେଇ) ଓଃ, କେତେ ଝାଳ ! (ଝାଳ ପୋଛି) ଏତେବେଳଯାଏ କୁଆଡ଼େ ଆଜି ଯାଇଥିଲ ? ପଙ୍ଖାଟା ଆଣେ। (ଯାଉ ଯାଉ)

ରାମ—ଥାଉ, ଥାଉ, କଅଣ ହବ ? ଶୁଖି ଯାଉନାହିଁ, ରହୁଛୁ ? ପୋଛୁ ତ ହେଲୁଣି, ଆଉ କଅଣ ?

ଶାନ୍ତ—ନାଁ, ମୁଁ ଏଇ ସାଙ୍ଗେ ସାଙ୍ଗେ ନେଇ ଆସୁଚି ଯେ । (ଚାଲିଗଲା)

ରାମ—ଏଇ ବନ୍ଧନ ! ନିଶ୍ଚିନ୍ତ ତ ଥିଲି । କିନ୍ତୁ···

ଶାନ୍ତ—(ଆସି ବିଞ୍ଚୁ ବିଞ୍ଚୁ) ଗୁଡ଼ାଖୁ ଧରିବସିଲ ଯେ ବାବା ! ଖାଅ । ମୁଁ ବିଞ୍ଚି ଦଉଚି ! ଟିକଏ ଝାଳ ମରିଗଲେ ନିତ୍ୟକର୍ମ ସାରିବ ଯେ ! ସଞ୍ଜ ତ ହେଲା ବୋଲି ଜାଣ ।

ରାମ—ତା' ତ ଜାଣିଚି ମା ! କିନ୍ତୁ···(ଅନେକ ସମୟ ଧରି ଗୁଡ଼ାଖୁ ଟାଣିଲେ, ଟାଣୁ ଟାଣୁ ପୁଣି ଅନ୍ୟମନସ୍କ ହେଲେ) କିନ୍ତୁ···ସେ କଅଣ ମୋ' ହାତର କଥା ?

ଶାନ୍ତି—ଆଉ କଅଣ ନମା ହାତର କଥା ?

ରାମ—ଉଁ ? ତୋ' ହାତର କଥା ? ନାଁ । (ପ୍ରକୃତିସ୍ଥ ହୋଇ) ହଁ, ତୋ ହାତରେ ବି ତ କାମ ଅଛି ମା !

ଶାନ୍ତି—ମୋ ହାତ କାମ ମୁଁ ସବୁ ସାରିଦେଇଛି ବାବା !
ଫୁଲ—ଆସନ—ପାଣି—

ରାମ—କିନ୍ତୁ···

ଶାନ୍ତି—କିନ୍ତୁ ଆଉ କଅଣ ? ସନ୍ଧ୍ୟା ସାରିଲେ ପରା ଫେରି ଦେଉଳକୁ ଯିବ ? ଶୋଭା ଅପା ତେଣେ ଚାହିଁ ବସିଥିବେ ତୁମକୁ ।

ଫୁଲ—(ଦୌଡ଼ି ଆସି, ଅଣନିଶ୍ୱାସୀ ହେଲାପରି) ଅଜା !

ରାମ—କଅଣ ରେ ? ଏମିତି ଅଣନିଶ୍ୱାସୀ ହୋଇ ଦଉଡ଼ୁଚୁ ? କଅଣ ?

ଫୁଲ—ଆସ ।

ଶାନ୍ତି—ହେଇଟି ପିଆଦା ଆସିଗଲା ତମର ! ମୁଁ କହୁଚି ଆଗରୁ ସହଳ ସହଳ କାମଦାମ ସାର ବୋଲି ! ଏବେ ହେଲା ?

ଫୁଲ—ଅଜା ! ଆସ ମା ଡାକୁଛନ୍ତି—ଦେଉଳକୁ ଯିବା ପରା ? ବେଳ କଅଣ ଦିଶୁନାହିଁ ତମକୁ ? ଭାରି ଅଳସୁଆ ତେମେ !

ରାମ—(ଗୁଡ଼ାଖୁ ଟାଣୁଥିଲେ ପୂର୍ବ ପରି, ଫୁଲ ତାଙ୍କ ପାଟିରୁ ନଳଟା ଟାଣିନେଲା) ଆରେ !

ଫୁଲ—ନାଇଁ, ଥାଉ ! ଆଉ ତ କିଛି ନାଇଁ, ଖାଇପିଇ, ଦିନ ରାତି ଖାଲି ଭଡ଼ର ଭଡ଼ର—(ଟାଣି ଉଠାଇ) ଉଠ !

ରାମ—ଆରେ, ମୁଁ ଟିକଏ ସନ୍ଧ୍ୟା ସାରେଁ ।

ଫୁଲ—ନାଇଁ, ମା କହୁଛନ୍ତି ସାଙ୍ଗେ ସାଙ୍ଗେ ଯିବାକୁ ।

ରାମ—ଓଃ, ଆଗୁ ଖଣ୍ଡେ ପିଆଦା ତ ଶୋଭା ପଠେଇଲା !

ଶାନ୍ତ—ଫୁଲ ! ସୁନାଟା ପରା, ତାଙ୍କୁ ଛାଡ଼, ସେ ସନ୍ଧ୍ୟା ସାରି ଯିବେ ।

ଫୁଲ—ହଉ, ବେଗେ ସାର । ଯାଉନ, ଏଠି ଆଉ କଅଣ କରୁଚ ?

(ଠେଲି ଠେଲି ଭିତରକୁ ନେଇଗଲା)

ରାମ—(ହସି ହସି ଯାଉଯାଉ) ଶାନ୍ତ ! ଦେ ଠାକୁରଠେଇଁ ସଞ୍ଜ ଦେଇପକା ।

ଶାନ୍ତ—ଦଉଚି !

(ଗୁଡ଼ାଖୁ ହୁକା ଇତ୍ୟାଦି ସଜାଡ଼ିବାକୁ ବସିଲା)

ଫୁଲ—ତମ କାମ ବି ସରି ନାହିଁ ପରା ମାଉସୀ ?

ଶାନ୍ତ—କାହିଁକି ରେ ? ମୋର କଅଣ ଏଇନେ କାମ ସରିବ ?

ଫୁଲ—ମା କହୁଛନ୍ତି ତମକୁ ଯିବାକୁ ଯେ ।

ଶାନ୍ତି—ମୁଁ କୁଆଡ଼େ ଯିବି ?

ଫୁଲ—ନାଁ, ତମେ ଯିବ ।

ଶାନ୍ତି—ଅଚ୍ଛା, ତୁ ଆଗରେ ଯା, ମୁଁ ସଞ୍ଜ ଦେଇକରି ବାବାଙ୍କ ସାଙ୍ଗରେ ଯିବି ।

ଫୁଲ—ବେଗେ । (ଚାଲିଗଲା)

ଶାନ୍ତି—(ହୁକା ଇତ୍ୟାଦି ରଖି ଦେଇ ସଞ୍ଜବତି ନେଇ ଆସି ଠାକୁରଙ୍କ ଚରଣରେ ଦେଇ ଗଳବସ୍ତ୍ର ହୋଇ ଗାଇଲା ଗୀତ)

ହେ ଦେବତା—ଚରଣ ତଳେ
ଦେଲି ମୁଁ ତୋଳି ସଞ୍ଜ ବଳତା
ଅଶ୍ରୁ ମଖା-ପ୍ରଦୀପ ଶିଖା-ଜଳୁ ଲିଭୁ ବା
ତୁମେ ଜାଣ ତା ।
ଆଶା କୁସୁମେ କେତେ ଗୁନ୍ଥି ମାଳ,
ଥିଲି ମାନସେ ପଦେ ଦେବ ଢାଳ
କିଏ ଜାଣେ ଗୋ ! ଝଞ୍ଜା-ଝଡ଼ ହେବ ସେ ଫୁଲ
ଧୂଳି ବଳତା । ୧ ।

(ଗୀତଟା ଗାଇ ପ୍ରଣାମ କଲାବେଳକୁ ରାମବାବୁ ଆସିଲେ ଶାନ୍ତି ଫେରି ଚାହିଁଲା)

ରାମ—ବାହାର କବାଟଟା ଦେଇ ଯାଆ ମା, ମୁଁ ଯାଉଚି ।

ଶାନ୍ତି—ମୁଁ ଯିବି ଯେ । ଶୋଭା ଅପା ଡାକୁଛନ୍ତି ।

ରାମ—ତୁ ଯିବୁ ଦେଉଳକୁ ? ଭଲ କଥା, ଆ ତେବେ ।

ଶାନ୍ତି—(କବାଟ ଦେଇ) ଚାଲ । (ସମସ୍ତେ ଚାଲିଗଲେ)

---

## ଚତୁର୍ଥ ଦୃଶ୍ୟ

[ପୁରୀ ବଡ଼ଦାଣ୍ଡ—ଶ୍ୟାମ ପଣ୍ଡା ଭୋଗ ଓ ଥାଳରେ ଫୁଲ ନେଇ ଦେଉଳକୁ ବାହାରିଚି, ତେଣୁ ତା ଆଗଆଡ଼ୁ ଆସିଲେ କୁସନ ପଡ଼ିଆରୀ—ବଡ଼ ରାଗରେ କାହାକୁ କହି କହି]

କୁସନ—ଯା, ଯା, ବେହିଆପୋ ଧେଡ଼, ଘୋଡ଼ାକୁ ଭାଗବତ ପଢ଼ାଉଚି ।

ନେପଥ୍ୟ—ଆଚ୍ଛା, ଆମିଓ ପୁଲିସକେ ଖବର ଦିଚି ।

କୁସୁନ—ଯା, ଯା, ପୁଲିସିକି ତୁ ଏକା ଜାଣୁ । ଯା ବେହିଆପୋ, ତୋ ହାତରେ କଅଣ ହଉଚି କର ।

(ଶ୍ୟାମ ଦେହରେ ବାଜିଗଲା ପରି ହେବାରୁ)

ଶ୍ୟାମ—ହାଁ ହାଁ, ପଡ଼ିଆରୀଏ ! ସମ୍ଭାଳ ସମ୍ଭାଳ···

କୁସୁନ—(ବୁଲି) ଓହୋ ପଣ୍ଡାଏ କି ? ବିଷ୍ଣୁ ବିଷ୍ଣୁ ।

ଶ୍ୟାମ—କିଏ ! ତମର ଏଡ଼େ ଗରମ ତ କେବେ ଦେଖା ନାହିଁ ?

କୁସୁନ—କଅଣ କହିବ ହେ ପଣ୍ଡାଏ ? ଆଗ୍ରହ ହଇରାଣରେ ମୁଁ ପଡ଼ିଛି । ଗୋଟେ କୋଉଠି ଧେଡ଼ ନାଲିଯାତ୍ରୀ ବେହିଆପୋ ମେଲେରିଆ ରୋଗୀ—ସାଙ୍ଗରେ ଆଣିଛି ଗୋଟେ ମାଇକିନିଆ । ତାର ଦିନକୁ ପନ୍ଦର ଭେଶ । କହୁଛି କଅଣ ନାଁ—ତା ମାଇପ ! ଗୋଟେ କାହା ଝିଅ କି ବୋହୂ, କି ବଜାରର ଏକ ଛତର ଖାଇ କି ସାଙ୍ଗରେ ଆଣି, ଆଜିକି ଦୁଇମାସ ହେବ ଆମ ଯାତ୍ରୀ ଘରେ ନେଇଗଲାଣି ଗୋଟେ ଯାତ ।

ଶ୍ୟାମ—ନେଇଉ, ତମର କଅଣ ଗଲା ? ସମୁଦ୍ର କୂଳେ କଅଣ ଦେଖି ନାଁ ? କେତେ ଏମିତି ସିଆଡ଼ୁ ଗୋଟେ ଗୋଟେ ଧରି ଆସି ଯାତ ଲଗାନ୍ତି ନାଁ, ନୂଆ କଥାଟା ସେ ? ତମର ଏଥିକି ରାଗ କାହିଁକି ? ଯାହାର ଯାହା ମନ—କଲା । ସମସ୍ତେ କଅଣ ପୁରୀ ଆସନ୍ତି ଦିଅଁକୁ ଦେଖିବାକୁ ? ବାରପଣ ତ ଏଇଆ ।

ପଡ଼ି—ଶୁଣିବ ପଣ୍ଡାଏ ! ସେ ମାଇକିନିଅର ଦିନକେ ବାର ବରଦ ।

ଶ୍ୟାମ—ତେବେ ତ ଭଲ, ଦି ଘଣ୍ଟାକୁ ଗୋଟେ ଲେଖାଏ ଭାଗ ପଡ଼ିଲା—ତମର ତ ବାହାଘର । ମନ୍ଦ କଅଣ ?

ପଡ଼ି—ଯାହା ବୋଇଲି—ସର, ପାପୁଡ଼ି, ମାଣ୍ଡୁଅ··· ବେହିଆପୋ ତେଣୁନାଇ ପୁରୁଷରେ ଯାହା ବାକି ନ ଥିବ ତୁଣ୍ଡରେ, ଏ ମେଲେରିଆ ରୋଗୀ—ମାଇପି-ବୋଲା, ଫନ୍ଦାକ୍ରାନ୍ତ ପୁରୁଷ ! ମୋତେ ବରଦ କରିବାରେ ଲାଗିଛି ଗଲା । ଦି' ଦିନଟା ଚାକର ପିଲାଙ୍କୁ ମୋର ପାଣି ତେଣ୍ଡେଇଲାଣି ଗରମ ପାଣି ସିଝେଇ ସିଝେଇ, ଅଲ୍ଲାଏ ଦେଖା ନାହିଁ ! ଆସିବା ଦି ତିନି ଦିନଠି ଦେଇଥିଲା ଟଙ୍କା ପାଞ୍ଚଟା । ଯେତେବେଳେ କହିଲେ, ବୋଇଲା ଚିଠି ଲେଖିଚି । ଟଙ୍କା ଏଲେ ଦେବ ।

ଶ୍ୟାମ—ସେତ ଭଲ କଥା । ଏକା ଥରେ ଯେତେବେଳେ ରାମ ଥୋକ ଗଣି ନେବ, ହାତକୁ କମିତି ଉଷୁମ ଲାଗିବ ?

ପଡ଼ି—ହଁ, ଉଷ୍ମ ! ତତଲାରେ ହାତ ପୋଡ଼ ଗଲାଣି କି ?

ଖେମ—ଆଉ ତେବେ ରାଗ କାହିଁକି ?

ପଡ଼ି—କଅଣ ଶୁଣିଲଣି କି ? ମରଦ ମାଇପି ହେହିଁ ଭୂଆବରଡ଼ ଦେହରେ ବେହ୍ମପୋ ଖଆଖୋଇ ହୋଇ, କାଲି ରାତିରୁ ଲାଗିଛି ବୁଜୁଲା ବନ୍ଧା । ହଅଁ ରଖିଲେ—ପାହାନ୍ତାରୁ ମୁଁ ମଙ୍ଗଳ-ଆରତି କି ବାହାରିଛି, ଆମ ଗଉଡ଼ ପିଲା କହିଲା ପାଣିଘର ହାର ମୁହଁରେ ଯୋଡ଼େ ଗାଡ଼ ଲାଗିଛି, ଆସି ଦେଖେଁ ତ ଗୁଳାଛି ଜନଷ ପନ ବୁହା ! ମରଦ ବେହ୍ମପୋ ଭକୁଡ଼ା ! ଘର କଣଠାରେ ପଶିଛି, ମାଇକିନିଆ ବାହାରିଛି ଦେଖିବୁ । ମୁଁ ତ, ହଁ ହଁ ।

ଖେମ—ଆରେ ତା ମାଆ ମରୁ । ବେହ୍ମପୋ ଅସଲ ଠକ ! ଅଟକା ଅଟକା ବେହ୍ମପୋକୁ ।

ପଡ଼ି—ଅଟେକେଇତ ପରା ! ହ’ ହଠା ଗୁମାସ୍ତାଙ୍କୁ ଡାକି ଜନଷପନ ଘରକୁ ବୋହିନେଇ ଯବତ୍ କରିଦେଇ, ଦର୍ଶନକୁ ଆସିଲି ଦେଉଳକୁ । ବାହାରି ଆସିବା ବେଳକୁ ପଣ୍ଡାବନଙ୍କଠି ଦେଖେଁ ତ ମରଦ ବେହ୍ମପୋ ଛିଡ଼ା ହୋଇଛି । ମୋତେ ହପଠ ଚଡ଼ ଦେଖାଇ ହୋଇଲା ପଣ୍ଡାଙ୍କୁ ବିକେଇ ହଅ, ତମ ଧନ ତୁମେ ନେଇ ଆମକୁ ବାକିତକ ଦେଲେ ଠିକ୍ କାଟିବୁ ଦେଖିବୁ ।

ଖେମ—ଭଲକଥା, ଆମ ଧନ ଆମେ ପାଇଲେ ଗଲା ।

ପଡ଼ି—ଆଉ ଧନ କଥାଟା ଶୁଣିଲଣି ନା ? ଶନେଦରିକୁ ନେଇ ଦେଖାଇଲି—ସେ କହିଲା ଏଗୁଡ଼ା କେମିକଲ୍ ଯେ ଅଣାଏ କି ଛଅପଇସା ହବ । ଏଣେ ମୋର ହ’ ମାସର ଖାଉଟି ଦକ୍ଷିଣା, ଆଠିକା ଗାଧୋଇଗଲା । ଖାଲି ଖରଚ ଷାଠିଏ ସରିକି ।

ଖେମ—ଆଉ କିଛୁ ତାର ଅଛୁ ନାଁ ହବାକୁ ?

ପଡ଼ି—ଅଛୁ ? ମଳି ମଇଲା ଲୁଗା ହଖଣ୍ଡ, ଭଙ୍ଗା ହଦରା ହୋଇ ଠକ୍କ ସୁଟ୍‌କେଶ ଦୁଇ ଗୁଣଠା, ବାକି ଗହଣା କଥା ତ ଶୁଣିଲ ।

ଖେମ—ଆରେ ବେହ୍ମପୋ ଧୋବଲ ଠକଟେ, ଅଟକା ଅଟକା ବେହ୍ମପୋକୁ—ତୁମେ ଆଗେ ଯାଇ ଥାନାରେ ଏତେଲେଇଟାଏ ଦେଇହଅ ।

ପଡ଼ି—ବାହାରିଥିଲି ପରା ।

ଖେମ—ହଁ, ହଁ, ଦେଖା ବେହ୍ମପୋକୁ ଚହଟାର୍ଥ ବାଳ ।

(ଦୁହେଁ ଦୁଇଆଡ଼େ ଚାଲିଗଲେ)

---

## ପଞ୍ଚମ ଦୃଶ୍ୟ

[ବଡ଼ ଦେଉଳର ସାମନା—ଅରୁଣ ସ୍ତମ୍ଭ ପାଖରେ ଅଶୋକ ବସି ଗାଉଥିଲା—ପାଖରେ ସୁଟ୍‌କେଶଟି ସ୍ତମ୍ଭକୁ ଆଉଜା ହୋଇଛି । ଆଖିରୁ ତାର ଲୁହ ଝରୁଥାଏ । ]

(ଗୀତ)

ଚଞ୍ଚଳ ହେନ ହେଲେ ମୋର
ନଶିହିନ ମରମେ, ଲାଗି ଚେତାଏ
ହମନା ସମୀର ଗୈର । ପଦ ।

ନାଚେ ନହ, ହିନ ରଜନୀ ସାରା
ଝରେ ତ ନୟନୁ ଅସରା ଧାରା,
କୁଞ୍ଜେ ନ ବାଜେ ଭ୍ରମରା କଣ୍ଠେ
ମଧୁର ମଧୁର ସ୍ୱର । ୧ ।

(ହଠାତ୍ ଆସିଲା ହୋଟେଲବାଲା)

ହୋ-ବା—(ହଲଇ) ହଇ ଓ ବାବୁ ! ପଇସା ?

ଅଶୋକ—(ଚେତନା ଲଭ କଲପରି) ଉଁ ?

ହୋ-ବା—ପଇସା—ପଇସା ? କଅଣ ଶଶୁର ଘର ଥାନ୍ତି ରଖିଥିଲ ହୋଟେଲରେ ? ଜ୍ୱାଇଁପୁଅ ପରି ଭୋଜନ ପକେଇ—ନ କହି ନ ପୋଛି, ପଇସା ନ ଦେଇ

ସୁଟ୍‌କେଶ୍ ଧର ଚମ୍‌ଚ ! ଭଦ୍ର ଚନ୍ଦନା ଲୋକ ଆମେ ତେଣେ ଶୋଜ ବୁଲୁଚୁଁ ସହରଟା ଯାକ ।

ଅଶୋକ—(ଅନ୍ୟମନସ୍କ ଭାବେ ଗାଉଥାଏ ଗୀତ)

ହୋ-ବା—(ପୁଣି ହଲାଇ) ଆରେ ଶୁଭୁ ନାହିଁ କଅ ?

ଅଶୋକ—ହୁଁ ?

ହୋ-ବା—ଓ ପଇସା, ପଇସା ।

ଅଶୋକ—ହଁ ! (ପକେଟରେ ଯାହାଥିଲା ସବୁ ଦେଇ)

ହୋ-ବା—(ନୋଟ ଦେଖି) ଅହେ, ମୋର ଏତେ କଅଣ ?

ଅଶୋକ—(ପୁଣି ଆଖି ମୁଦି ଗାଇଲା ଗୀତ)

ହୋ-ବା—ଓ ବାବୁ ! ଆରେ ଆସ୍ତ ଲୋକ ତ ? ତମ ଟଙ୍କା ନଅ । ମୋର ଯାହା ହେଲା ତନ ଦନର ହ୍ରସାବ ଚୁକେଇ ଦଅ, ଗଲା । ଆଉ ଏ ନୋଟ ବଡ଼ା ମୁଁ କଅଣ କରିବ ? ହଇହେ ବାବୁ !

ଅଶୋକ—ଉଁ,···ହଁ ।

ହୋ-ବା—ସିଆଡ଼େ ନମା ଗରାଖ ନାଗିଛନ୍ତି ହେ, ମୁଁ ଯାଉଚୁ ଆଉ ତମ ଗୀତ ଶୁଣିବାକୁ ରହି ପାରିବ ନାହିଁ ।

ଅଶୋକ—ଯାଅ ।

ହୋ-ବା—ହଉ ଥାଉ । ମୋ ପାଖେ ଏ ଧନ ରହିଲା । (ଚାଲିଗଲା)

(ଏଇକଟବେଳେ ଫୁଲ ଶୋଭାର ହାତ ଧରି ଟାଣି ଦେଖାଇଲା)

ଫୁଲ—ମା, ଦେଖିଲଣି ।

ଶୋଭା—(ଫେର ରହିଁ ରହିଲା ଏକ ମନରେ)

ଫୁଲ—କି ସୁନ୍ଦର ଗାଉଛି, ମା ।

ଶୋଭା—ତୋର ଏମିତି ଗୀତ ଗାଇବାକୁ ମନ ହଉଛି, ନାଁ ? ତାଠୁ ଶିଖିବୁ ?

ଫୁଲ—ନାଁ ।

ଶୋଭା—କାହିଁକି ? ନାଁ କାହିଁକି ?

ଫୁଲ—ଡର ମାଡ଼ୁଚି ।

ଶୋଭା—ମଣିଷଟାକୁ ଡରୁଚୁ ?

ଫୁଲ—କଏ ନାହିଁ କଏ···

ଶୋଭା—ତାଙ୍କୁ ଘରକୁ ଡାକି ନେଇ ଗୀତ ଶୁଣିବା । ଏଠି ଦାଣ୍ଡଟା । ତାଙ୍କୁ ଡାକିଲୁ ।

ଫୁଲ—ନାଁ, ବାଘୁଆଟାଏ କି କଅଣ ?

ଶୋଭା—ଡାକ, ଦେଖିବା, ଡର କଅଣ ?

ଫୁଲ—ଡାକିବି ?···ନାହିଁ ମାଆ !

ଶୋଭା—ଡାକ, ଯା ।

ଫୁଲ—(କୁଣ୍ଠିତ ହୋଇଗଲା) ଏ ! ଏ ! ଏ ! ଶୁଭୁଚି ? (ଅଶୋକ ଶୁଣିଲା ନାହିଁ) ଶୁଣୁ ତ ନାହିଁ ।

ଶୋଭା—ହଲେଇ ଦେ ।

ଫୁଲ—(ହଲେଇ) ଏ ପାଗଲା ! ନାଁ କଅଣ ? ଡାକୁଚି ପରା !

ଅଶୋକ—(ଆଖି ଫିଟାଇ) ଉଁ,···ହଁ ।

ଶୋଭା—ତୁମେ ଏଠି ଏମିତି କାହିଁକି ବସିଛ ?

ଅଶୋକ—ଉଁ ?

ଫୁଲ—ମାଆ ପଚାରୁଚନ୍ତି ଏଠି ଏମିତି କାହିଁକି ବସିଛ ?

ଅଶୋକ—ନାହିଁ । (ସୁଟ୍‌କେଶ ଧରି ଉଠିଲା ଯିବାକୁ)

ଶୋଭା—(ବାଧା ଦେଇ) କୁଆଡ଼େ ଯିବ ?

ଅଶୋକ—ଯିବ ? ଯିବ—ହଁ ।

ଶୋଭା—କୁଆଡ଼େ ?

ଅଶୋକ—ନାଁ । (ବସି ପଡ଼ିଲା ସୁଟ୍‌କେଶ ଥୋଇ)

ଶୋଭା—ତମ ନାଆଁ କଅଣ

ଅଶୋକ—ଉଁ,···ହଁ । (ଦୀର୍ଘ ନିଶ୍ୱାସ ମାରି)

ଶୋଭା—ନାଁ ତମର କଅଣ ?

ଫୁଲ—ମା । ଆସ୍ତ ତାକୁ ଫଟେଇ ଫଟେଇ ପଚାରୁଛ ? ଦେଖୁନା, ବାଘୁଆଟାଏ ସେ ।

ଶୋଭା—ଆସ୍ତ, ଆସ ମୋ ସାଙ୍ଗରେ ଆମ ଘରକୁ ।

ଫୁଲ—ନାହିଁ ମଆ—ଡର ମାଡ଼ୁଚି । ବାଘୁଆଟା, ତାକୁ ନବା ନାହିଁ ।

ଶୋଭା—ଆସ ଘରକୁ ଆସ ।

ଅଶୋକ—ଘରକୁ !

ଶୋଭା—ହଁ, ଆମ ଘରକୁ ।

ଅଶୋକ—(ପୁଣି ସୁଟ୍‌କେଶ ଧରି ଚାଲିଯିବାକୁ ବାହାରିଲା)
ଶୋଭା—ଏଣେ ଯେ ଘର ।
ଅଶୋକ—ଉଁ ? ଘର ?
ଶୋଭା—(ସୁଟ୍‌କେଶ ଛଡ଼ାଇ) ଏଣେ ଆସ ।
ଅଶୋକ—ଆରେ !
ଶୋଭା—(ସୁଟ୍‌କେଶ ଧରି) ହଁ ଚାଲ !
ଅଶୋକ—(ଠିଆ ହୋଇ ରହିଲା)
ଶୋଭା—(ଫୁଲକୁ ଇଙ୍ଗିତରେ କହିଲା ତାକୁ ନବାକୁ)
ଫୁଲ—(ଆଙ୍ଗୁଠି ଧରି ଟାଣି ଟାଣି ନେଉଥାଏ)
ଶୋଭା—(ଚାହିଁ ରହିଥାଏ ପଛେ ପଛେ ତାର)

---

## ଷଷ୍ଠ ଦୃଶ୍ୟ

[ପୁରୀ ବଡ଼ଦାଣ୍ଡ—ଶୋଭାର ଅନ୍ଧ କକା ଓ ପଥିକ]
(ଗୀତ)

ପାନ୍ଥ ରେ ତୁ ଘରେ ଫେରିଆ
ବାଲି ଘର ଭାଙ୍ଗିଦେ' ତୋର—
ଉଜାଣି ବାଆ ଲଗିଛି ଗରଜୁଛି ମହି ଦରିଆ ॥୦॥
ଯେ ତରୁ ପଲ୍ଲବେ, ତୋହରି ଅଖି ଜଳେ
ସେ କି ରେ ନ ଭରିବ ମଧୁର ଫୁଲ ଫଳେ ?
ସ୍ୱପ୍ନ ତାର ସଫଳ କର—ଗରଜୁଛି ମହି ଦରିଆ ।
(ଜଣେ ପଥିକ ଅନ୍ଧକୁ ପଇସା ଦେଇ ଚାଲିଗଲା, ପୁଣି ଫେରି ଚାହିଁ ଅନ୍ଧକୁ ଡାକିଲା)

ପଥିକ—ଏ, ଏ ଭିକାରୀ । ରହିଲୁ, ରହିଲୁ ।
ଅନ୍ଧ—(ରହି) ମୋତେ ଡାକିଲ ବାପା ?
ପଥିକ—ହଁ, (ପାଖକୁ ଯାଇ ଭଲକରି ଚାହିଁ) ତୁମେ କଅଣ ଜନ୍ମାନ୍ଧ ?
ଅନ୍ଧ—ନାଇଁ ବାପା ! କୋଉ ପାପରୁ ଭଗବାନ ଏ ଦଣ୍ଡ ଦେଇଛନ୍ତି । ବାର ବରଷ ହେବ ବସନ୍ତରେ ଏ ଅବସ୍ଥା ।
ପଥିକ—ତୁମ ନାଁ କଅଣ ? କି ଜାତି ?
ଅନ୍ଧ—ମୁଁ ବ୍ରାହ୍ମଣ, ଆଉ ନାଆଁରୁ କି ମିଳିବ ?
ପଥିକ—ନାଇଁ, ମୋର ଟିକିଏ କେମିତି ସନ୍ଦେହ ହେଉଛି—ତମରି ପରି ଜଣେ ଲୋକ···
ଅନ୍ଧ—କିଏ ବାପା ! କାହା କଥା କହୁଚ ?
ପଥିକ—ତମ ନାଁ କଅଣ କହନା ଦେଖି ? ଘର କଅଣ ଏଇ ପୁରୀରେ ?
ଅନ୍ଧ—ହଁ ବାପା ! ଘର ଏଇ ପୁରୀରେ ଥିଲା, ଆଉ ଏଇନେ ଘର କାହିଁ ? ବାରି ଦୁଆର·ଶୁଣ୍ଡିପିଣ୍ଡା—ନାଁଆଟା ଆଉ କାହିଁକି କହିବ ? ଶୁଣି ଲାଭ ନାହିଁ କିଛି !
ପଥିକ—ନାଆଁଟା କହିଲେ କଅଣ ଦୋଷ ଅଛି ?
ଅନ୍ଧ—ଦୋଷ କଅଣ ? ଦୋଷ କିଛି ନାହିଁ । ଆପଣ କିଏ କହିଲେ । ଆଖି ତ ନାଇଁ ଯେ ଚହ୍ନିବି ।
ପଥିକ—ଆମ ଘର ଏଇ ରତନପୁର । ମୋ ନାଁ ଦେବେନ୍ଦ୍ର ଶତପଥୀ । ଆସିଥିଲି ଦର୍ଶନକୁ ।
ଅନ୍ଧ—ରତନପୁର ବାମ ଶତପଥୀଙ୍କ ପୁଅ ତେବେ ଆପଣ ?
ପଥିକ—ହଁ ଆପଣଙ୍କ ନାଁଆଟା ତ କହିଲେ ନାହିଁ ?
ଅନ୍ଧ—ମୋତେ ଆପଣ ବୋଲି କାହିଁକି କହୁଚ ବାପା ? ମୁଁ ମହାପାପୀ, ଅନ୍ଧ-ଭିକାରୀଟାଏ, କେତେ ପାପ କରିଛି, ଭଗବାନ ତାରି ବିଚାର କରି ମୋତେ ଏ ଦଣ୍ଡ ଦେଇଛନ୍ତି । ମୋର ସଖା ନାଇଁ, ସୋଦର ନାଇଁ । କେବେ ଉପାସ—କେବେ ମୁଠାଏ ମିଳୁଛି । ଜୀବନଟା ଯାଉନାଇଁ ବାପା !
ପଥିକ—ଅଚ୍ଛା, ଆପଣ ହରେନ୍ଦ୍ର ବାବୁ ଓକିଲଙ୍କୁ ଜାଣନ୍ତି ?
ଅନ୍ଧ—ହଁ ବାପା । ମୁଁ ତାଙ୍କ ମୋହରିର ଥିଲି, କେତେ ଘର ବୁଡ଼େଇଚି—ତା'ରି ଫଳ ଏଡ଼େ ।
ପଥିକ—ଆପଣଙ୍କର ତ ଅଚଳାଚଳ ସମ୍ପତ୍ତି ଥିଲା ।
ଅନ୍ଧ—ସମ୍ପତ୍ତି ? ସେ କାହାର ହୁଏ ବାପା ! ଲକ୍ଷ୍ମୀ ପରା ଚଞ୍ଚଳା ? ହାତ କରିଥ ଖାଇବାପରି,

ଗଳ୍ପବେଳେ ଆଉ କ କହିବ ହୁଏ ? ସବୁ ସାଇଛୁ । ଅଶି ହଓଟି ବ ଶେଷରେ ଗଲ୍ପ । ଛାଡ଼ ମୋ କଥା, ନନା ଭଲ ଅଛନ୍ତି ?

ପଥିକ—ନନା ଆସିଛନ୍ତି ଯେ, ଆସନ୍ତୁ ଯିବା । ମୁଁ ନେଇ ଯାଉଛୁ ଆପଣଙ୍କୁ, ନନା ଏଇନେ ବସାରେ ଅଛନ୍ତି ।

ଅନ୍ଧ—ଆଉ କାହିଁକି ? ତାଙ୍କୁ ଖାଲି ମୋ ନାଆଁରେ ଟିକିଏ କହିଦେବ । କୋଉ ସୁଖ, କେଉଁ ମୁହଁ ମୋର ଅଛି ଯେ ତାଙ୍କ ପାଖକୁ ଯିବ ? ସେ ଜମିଦାର ! ମୁଁ ଭିକାରୀଟାଏ ଘର ।

ପଥିକ—ଆହା, ସେ କଥା କାହିଁକି କହୁଚନ୍ତି ? ଆପଣ ଆମର ତ କିଛି କ୍ଷତି କରି ନାହାନ୍ତି, ଓଲଟି ଉପକାର କରିଛନ୍ତି । ମଣିଷର ଅବସ୍ଥା କଅଣ ସବୁବେଳେ ସମାନ ଥାଏ ? ଆସନ୍ତୁ । ଅଚ୍ଛା, ଆପଣଙ୍କର ସେ ଯେଉଁ ଝିଅଟିଏ ଥିଲେ ?

ଅନ୍ଧ—କିଏ ଶୋଭା ? ଏଇଠି ଅଛି ବୋଲି ଶୁଣିଛି ତ । ମୁଁ ଆଉ ସେ ବାଟେ ଯାଏ ନାହିଁ ଦିନେ ହେଲେ !

ପଥିକ—ସେ ବ ଆଉ ପଚୁରନ୍ତି ନାହିଁ ?

ଅନ୍ଧ—କେମିତି ପଚାରିବ ? ତାର ଦୋଷ ଅଅଣ ? ସବୁ ମୋର କର୍ମଦୋଷ ।

ପଥିକ—ଆସନ୍ତୁ, ମୋ ହାତ ଧରନ୍ତୁ ।

ଅନ୍ଧ—କଅଣ ଆଉ ଯିବି ବାପା ?

ପଥିକ—କିଛି ନାହିଁ, ସେଥିରେ କଅଣ ଅଛି ? ଆପଣ ଆସନ୍ତୁ ନାଁ । (ନେଇଗଲା)

---

## ସପ୍ତମ ଦୃଶ୍ୟ

[ରାମ ବାବୁଙ୍କ ଘର—ଖଦାଶାଳ ସାମନା ବାଟ ମେଲରେ ଫୁଲ ଖାଇବସିଛି]

ଫୁଲ—ଦବ ନାଁ ?

ଶାନ୍ତି—ନଷ୍ଟେ ଦେବ ।

ଫୁଲ—ଅଚ୍ଛା । (ବେଗେ ଖାଇଲା ପିଠା ଖଣ୍ଡିକ । ଶାନ୍ତି ଗଲା ଭିତରକୁ । ଆଉଖଣ୍ଡେ ପିଠା ଆଣିଲା ବେଳକୁ ଫୁଲ ଖାଇଦେଇ ପାଣି ପିଇସାରି ଚକାମାଲି ପକାଇ ବସି) କାହିଁ ଦଅ ।

ଶାନ୍ତି—ଭାରି ଶିଅଣିଆଁ (ଦେଦେଇ) ହେଇଛି ?

ଫୁଲ—ଦଅ ।

ଶାନ୍ତି—ତୁ ଆଗେ ଗାଆ ।

ଫୁଲ—ଆଗେ ଦଅ ।

ଶାନ୍ତି—କ ? ତୁ ଆଗେ ଗାଆ ।

ଫୁଲ—ଅଚ୍ଛା, ଆଜ ଗୋଟିଏ ନୂଆ ଗୀତ ଗାଇବ ଶୁଣିବ ?

ଶାନ୍ତି—କାହିଁ ?

ଫୁଲ—ଶୁଣ, ବସୁନା ମାଉସୀ, ବସ ।

(ଗୀତ

ଥିଲି ଭୁଲରେ ଭୁମେ ମାୟା ମନ-ଗ୍ରେରକୁ
ରଜନୀ ଅଧରେ କେ ତୁ ଫୁଟାଇଲୁ ଘୁମ୍ବା ମୋ ନୟନେ ।
ଶଶୀ ନଶାରେ, ରଜନୀ ସାରେ
ଆଖି ମୁଦି ମୁଁ ଲୋତକ ଧାରେ
ତିର-ପର କୋଇଲି
ତାନ ଫୁକାରେ, କୁହୁ କୁହୁ ଶ୍ରୋ କାନେ ।

ଫୁଲ—କେମିତି ଗୀତ ? (ଶାନ୍ତି ପିଠାଦେଲା—ଖାଇ ଖାଇ କହୁଥାଏ)

ଶାନ୍ତି—ସୁନ୍ଦର ।

ଫୁଲ—ନୂଆ ଗୀତ ନୁହେଁ ?

ଶାନ୍ତି—ହଁ, ନୂଆକରି ଶୁଣିଲି ତ । ଏ ଗୀତ କାହାଠୁଁ ଶିଖିଲୁ ?

ଫୁଲ—ଆମ ବାପ୍ପା ମଉସା ଶିଖେଇଛନ୍ତି ।

ଶାନ୍ତି—ସେ କିଏ ?

ଫୁଲ—ତେମେ ଦେଖିନ ମାଉସୀ ? ବାପ୍ପା ମଉସୀ ! ମା ତାଙ୍କୁ ଖୁବ୍ ସୁଖ ପାଆନ୍ତି ।

ଶାନ୍ତ—କାହିଁ ରେ ? ସେ ଦିନ ତ ମୁଁ ତମ ଘରକୁ ଯାଇଥିଲି, ଦେଖି ନାହିଁ ।

ଫୁଲ—ହଁ, ସେଦିନକୁ କଅଣ ସେ ଆସିଥିଲେ କି ତୁମେ ଦେଖନ୍ତ ?

ଶାନ୍ତ—କେବେ ଆଇଲେ ?

ଫୁଲ—ଏବେ ତ ମାଆ ଆଣିଛନ୍ତି ।

ଶାନ୍ତ—ସେ ଖୁବ୍ ଭଲ ଗାଇ ଜାଣନ୍ତି, ନାଁ ?

ଫୁଲ—ହଁ, ବାଜା ବଜେଇ ଗାଆନ୍ତି । ଗାଉ ଗାଉ କାନ୍ଦିପକାନ୍ତି, ମା କହୁଥିଲେ ତାଙ୍କର ଚେତା ରହେ ନାହିଁ ।

ଶାନ୍ତ—ଆଚ୍ଛା ମୋତେ ଥରେ ତାଙ୍କ ଗୀତ ଶୁଣେଇବୁ ନାଇଁ ?

ଫୁଲ—ସେ କଅଣ ମୁଁ କହିଲେ ଗାଇବେ ?

ଶାନ୍ତ—ଅଉ ?

ଫୁଲ—ମନ ହେଲେ ନାଁ, ସେ ପରା ବାୟା ମଉସା, ଗାଉଛନ୍ତି ବୋଇଲେ ଖିଆନାଇଁ ପିଆନାଇଁ—ଗାଉଛନ୍ତି । ନ ଗାଉଛନ୍ତି ବୋଇବେ ଖୁଣ୍ଟଟା ପରି ବସି ରହିଛନ୍ତି । କେହି ତାଙ୍କୁ କହି କହି ମୁଣ୍ଡପିଟି ହେଲେ ଆଉ ନ ଗାଆନ୍ତି ।

ଶାନ୍ତ—ଆଚ୍ଛା, କେତେବେଳେ ସେ ଗାଉଥିବେ, ବେଳ ଦେଖି ମୋତେ ଟିକିଏ ଡାକ ନେବୁ ତ ।

ଫୁଲ—ହଉ, ମୁଁ ଯାଉଛି, ମା ଗାଳି ଦେବେ ।

ଶାନ୍ତ—ଆଉ ଟିକିଏ ବସ ।

ଫୁଲ—ଗାଳି ଦେବେ ।

ଶାନ୍ତ—କାହିଁକି ଗାଳିଦେବେ ? ତୁ ତ ମୋ ନାଆଁ କହିବୁ । ଗା, ଆଉ ଗୋଟିଏ ଗୀତ ଗାଆ କି ଯିବୁ । ନୂଆ ଗୀତଟିଏ ଗା । ମିଠେଇ ରଖିଛି, ଦେବି । ଆଣିବ ?

ଫୁଲ—(ବସି ରହିଲା ଓ ଶାନ୍ତି ମୁହଁକୁ ଚାହିଁଲା)

ଶାନ୍ତ—ଦେଉଛି ତୁ ଗା, ମୁଁ ଦେବି ।

ଫୁଲ—(ପୁଣି ଗାଇଲା)

(ଗୀତ)

ମନ କୁଞ୍ଜେ ବସ ମମ ସାଥୀ
ସମୀର ଅଧୀର, ଚଞ୍ଚଳ ନୀର
ଯୌବନ ବନ ଉଠୁ ମାତି ॥୦॥
କୁଞ୍ଜ ପୁଞ୍ଜ, ଭରେ ପିକ କୁହୁରେ
ଚନ୍ଦ ହସେ, ମଧୁରାତି
ମଞ୍ଜୁ ଗୁଞ୍ଜନେ ଭ୍ରମର ରଞ୍ଜେ
ବଧିଲ କୋମଳ ଗୀତି ।

(ଗୀତଟା ଶୁଣି ଶାନ୍ତିର ପୁରୁଣା କଥା ମନେ ପଡ଼ିଲାପରି ଟିକିଏ ଭାବିଲା)

ଫୁଲ—ଏଇଟା କଅଣ ନୂଆ ନୁହେଁ ? ମିଠେଇ ଦିଅ ।

ଶାନ୍ତ—(ମିଠେଇ ଦେଇ, କଅଣ ଭାବିଲା ମନେ ମନେ)

ଫୁଲ—ଏଇଟା ଭଲ, କି ସେଇଟା ଭଲ, କହିଲ ମାଉସୀ !

ଶାନ୍ତ—ଗୀତ ସବୁ ସୁନ୍ଦର । ଗୀତର ଫେର୍ ଭଲ ମନ୍ଦ କଅଣ ? ଗାଇ ଜାଣିଲେ ହେଲା । ଏ ଗୀତ କଅଣ ତାଙ୍କଠୁ ଶିଖିଲୁ ?

ଫୁଲ—ହଁ, ଆଉ କାହାଠୁଁ ? ମା ପରା ମୋତେ କହିଛନ୍ତି ତାଙ୍କଠୁ ଶିଖିବାକୁ ଗୀତ ।

ଶାନ୍ତ—ଏ ଗୀତଟା ମୁଁ କୋଉଠି ଶୁଣିବା ପରି ଲାଗୁଛି ।

ଫୁଲ—ଉଁ ? ମିଛ କଥା । ଏ ଗୀତ ତ ବାୟା ମଉସାଙ୍କ ଗୀତ । ତୁମେ କଅଣ ତାଙ୍କୁ ଦେଖିଚ ଯେ ଶୁଣିବ ?

ଶାନ୍ତ—ତୋ ମାଆ କଅଣ ତାଙ୍କ ଆଗକୁ ଆସନ୍ତି ?

ଫୁଲ—ବରାବର । ତାଙ୍କୁ ପାଖେ ପାଖେ ରଖିଥାଆନ୍ତି । ଘର ସୁଖ ପାଆନ୍ତି ? ସେ ନ ଖାଇଲେ ମା ଖାଇବେ ନାହିଁ ଟି ? ଆଗକୁ ଆସିବେ ନାହିଁ କାହିଁକି ?

ଶାନ୍ତ—ସେ କେତେ ବଡ଼ ?

ଫୁଲ—ମୋଠୁ ବଡ଼ ।

ଶାନ୍ତ—ତୋଠୁ ବଡ଼ ବୋଇଲେ ?

ଫୁଲ—ହୁଁ କେତେ ବଡ଼ (ହାତ ଦେଖାଇ) ଏତେ ହେବେ ।

ଶାନ୍ତ—ଏତେ ବଡ଼ କଅଣରେ ? (ହସିଲା)

ଫୁଲ—ମାଆଙ୍କଠୁଁ ବ ବଡ଼ ।

ଶାନ୍ତ—ତାଙ୍କ ନାଆଁ କଅଣ ରେ ?

ଫୁଲ—ଦେଖ ମ ଓଲ ମାଉସିଟାକୁ, କହିଲ ପରା ବାପୁା ମଉସା ।

ଶାନ୍ତ—ଅରେ ତାଙ୍କ ନାଆଁ କଅଣ ବାପୁା ମଉସା ।

ଫୁଲ—ହୁଁ ।

ଶାନ୍ତ—ମାଆ କଅଣ ବୋଲି ଡାକନ୍ତି ?

ଫୁଲ—ମା ? (ଭାବି) କେଜାଣି ମନେ ପଡ଼ୁନାହିଁ ।

ଶାନ୍ତ—ତେବେ ତୋତେ ବୋଧେ ତାଙ୍କ ନାଆଁ ଆସେ ନାହିଁ, ତୁ ଜାଣିନାହୁଁ ।

ଫୁଲ—ଆଉ କଅଣ ? ମୁଁ ଜାଣିନାହିଁ ନା ! ମୁଁ ଡାକିଲେ ପରା ସେ ଶୁଣନ୍ତି ସବୁବେଳେ ।

ଶାନ୍ତ—ଆଚ୍ଛା, ଆଚ୍ଛା, ତାଙ୍କ ନାଆଁଟି ପଚାରି ଆଉ ଥରେ ମୋତେ କହିବୁ, ବୁଝିଲୁ ?

ଫୁଲ—ମୁଁ ବୁଝିଛି । ତାଙ୍କ ନାଆଁଟି ବାପୁା ମଉସା, ତୁମେ ଆମ ଘରକୁ ଗଲେ ପଚାରିବ ।

ଶାନ୍ତ—ସେ ଏଇନେ କଅଣ କରୁଥିବେ ?

ଫୁଲ—ଆମ ବଗିଚା କାମିନୀ ଗଛମୂଳେ ଗୀତ ଗାଉଥିଲେ ବସି ।

ଶାନ୍ତ—ଗାଉଥିବେ ନାଁ ?

ଫୁଲ—ତମ ବାଡ଼ପଟେ ମୁଁ ଦେଖି ଆସେ, ରହ ।

(ଦୌଡ଼ ପଳାଇଲା)

ଶାନ୍ତ—ଆମ ବାଡ଼ିକି କଅଣ ଦୁଶିବ ?

ଫୁଲ—ହଁ ଦୁଶିବ । ବାଟ ଅଛି । (ନେପଥ୍ୟରୁ କହିଲା)

ଶାନ୍ତ—(ଫୁଲର ଖାଇବା ବାସନ ଉପରେ ପାଣି ପକେଇ) ଭଗବାନ ଏଠି କଅଣ···ଏ ଗୀତ···

ଫୁଲ—(ଦୌଡ଼ିଆସି) ଗାଉଚନ୍ତି, ଗାଉଚନ୍ତି । ଯେମିତି ବସିଥିଲେ ସେମିତି । ଦୁଶୁଚ ବାଡ଼ିକ, ଆସ । ତୁମେ ଗୀତ ଶିଖିବ ମାଉସି ?

ଶାନ୍ତ—(ହସି) ମତେ କିଏ ଶିଖେଇବ ? ତମ ଘରେ ସିନା ମଉସା ଅଛନ୍ତି ସେ ତୁ ଶିଖୁଛୁ ।

ଫୁଲ—ସତେ ମାଉସି ! ତମ ଘରକୁ ଗୋଟେ ମଉସା ଆଣୁନା ? ଗୀତ ଗାଆନ୍ତା, କାନ୍ଦନ୍ତା, ହସନ୍ତା ଆମ ମଉସା ପରି ।

ଶାନ୍ତ—ମଉସା ପରା ତମ ଘରେ ?

ଫୁଲ—(ହସି) ମୁଁ କହୁଚ ପରା ଓଲ୍ ମାଉସୀଟା ମୋର ! ସେ ସିନା ମୋ ମଉସା ?

ଶାନ୍ତ—ହଉ, ହଉ, ତୁ ଖିଆ୍ ଶିଅଣିଆ, ଗୁଲ ।

ଫୁଲ—ରହ, ମୁଁ ଆଜ ମାଆଙ୍କୁ କହେ ··

ଶାନ୍ତ—କଅଣ କହିବୁ ?

ଫୁଲ—କହିବ କ, ମା ଗୋ ! ଶାନ୍ତି ମାଉସୀ ଗୀତ ଶିଖିବେ, ଗୋଟେ ମଉସା ଆଣିଦିଅ ।

ଶାନ୍ତ—ଚୁପ୍ ! କଣ୍ଠ କହିବୁ ନାହିଁ, ଦୁଷ୍ଟ ! ଯେମିତି ହେଲେ ତୋତେ ଆଉ ଗେଲ କରିବ ନାହିଁ ।

ଫୁଲ—କାହିଁକି ? କହିଲେ ତ ମା ଗୋଟେ ଆଣି ଦିଅନ୍ତେ ।

ଶାନ୍ତ—ବୋକା ! ମଉସାଗୁଡ଼ା କଅଣ ଦାଣ୍ଡରେ ହାଟରେ ଗଡ଼ୁଛନ୍ତି ?

ଫୁଲ—ଆଉ ? ମା କେମିତି ବାପୁା ମଉସାଙ୍କୁ ବଡ଼ଦାଣ୍ଡରୁ ପାଇଲେ ?

ଶାନ୍ତ—ବଡ଼ ଦାଣ୍ଡରୁ !

ଫୁଲ—ଆଉ ? ସେ ସିଂହ ଦୁଆର ପାଖେ ବାପୁା ହେଇ ବୁଲୁଥିଲେଣି ! ନାଇଁ ନାଇଁ । ମୁଁ ମା'ଙ୍କୁ କହି ତମ ପାଇଁ ଗୋଟେ ମଉସା ଆଣିଦେବି ।

ଶାନ୍ତି—ଚୁପ୍, ତୋତେ କିଛି କହିବା'କୁ ହେବ ନାଇଁ, ଚାଲ । ମୁଁ ଗୀତ ଶିଖିବି ନାଇଁ, ଶୁଣିବି ଖାଲି ।

ଫୁଲ—ତମେ ତ ଉତ୍ତର କରୁଛ, ଆସ । (ଜାମ ଟାଣି ଟାଣି ନେଲା) ତମ ବାଡ଼ି କଣ୍ଟା ବାଡ଼ଟାକୁ ଟିକିଏ ଆଡ଼େଇ ଚାହିଁଲେ ଦିଶିବ । ଆସ ଏଇବାଟେ, ମୁଁ ବାଟ କଢ଼ାଉଛି ।

ଶାନ୍ତି—(ଫୁଲ ପିଠିରେ ହାତ ଦେଇ) ହଉ, ହଉ, ଚାଲ । (ଚାଲିଗଲେ)

---

## ଅଷ୍ଟମ ଦୃଶ୍ୟ

[ ଶୋଭାର ବାଡ଼ିଆଡ଼—ଏଣୁ ତେଣୁ ଗୁଡ଼ାଏ ଗଛ ଅଛି । ଏକ ପାଖରେ ଗୋଟିଏ କାମିନୀ ଗଛ । ଗଛଟାର ମୂଳ ପାଖରୁ କିଛି ଦୂର ଯାଇ ଗୋଟେ ବେଦୀ ଥିଲା, ତା'ର ଉପରେ ଦେହର ଭରଦେଇ ଛିଡ଼ା ହୋଇ ମୁଣ୍ଡ ନୁଆଁଇ ଅଶୋକ ଗାଉଥିଲା ଗୀତ ]

(ଗୀତ)

ମନ୍ଦିଆଁ—ଘଡ଼ି ଘଡ଼ି ମୋହ ଲଗାଉ
ନୟନେ ପଲକେ, ପଲକେ ତୁ ଚେତାଉ ॥୦॥
ଫଳ ବନେ ଫୁଲ ସଙ୍ଗେ ତୁ ମହକୁ
ପକ୍ଷୀ ତୁଣ୍ଡେ ଗୀତ ଗାଉ,
ତରୁଣ ଅରୁଣ ପରଭାତ ସମୀରେ
ଜାଗୁ, ଜଗତ ଜଗାଉ । ୧ ।

(ଏକ ଦିଗରୁ ଫୁଲ ଆସିଲା । ବାଡ଼ ଆରପାଖ୍, ଉଣ୍ଡି ଦେଖିଲା ଅଶୋକ ଗାଉଛି—ବାଡ଼ ଭିତରୁ ଦେଖାଯାଉଛି । ଫୁଲ ଦୌଡ଼ି ପଳାଇଲା ଘର ଭିତରକୁ ଓ ଶାନ୍ତିକୁ ଟାଣି ଟାଣି ଆଣିଲା)

ଶାନ୍ତି—ତୁ ଆଗେ ଠିକ୍ କରି ଦେଖିଲୁ । (ଦୂରରୁ କହିଲା)

ଫୁଲ—ହୁଁଶୁଚି ମ, ତୁମେ ଆଉ ଟିକିଏ ଆଗକୁ ଆସ ।
(କହି ଶାନ୍ତିକି ଟାଣି ଟାଣି ଆଣିଲା)

ଶାନ୍ତି—(ଲୁଚି ଲୁଚି ଗଲା ପରି ଯାଇ ଗୋଟିଏ ଜାଗାରେ ଅଶୋକକୁ ଦେଖିଲା, ପଛ ଗହଳରେ । ଅଶୋକକୁ ସେ ଡାଳରୁ ଯେପରି କିଛି ନ ଦିଶେ, ଏହିଭଳି ଜାଗାରେ ଥିଲା ଶାନ୍ତି । ଅବହିତ ଚିତ୍ତରେ ଗୀତଟି ଶୁଣୁଥାଏ, ଫୁଲ ତା ପାଖରେ ଥାଏ । ଥରେ ଥରେ ଏଣେ ତେଣେ ଦୌଡ଼ି ଦେଖୁଥାଏ—ବାଳକ ସୁଲଭ ଚପଳତାରେ)

ଫୁଲ—ହଁଶୁନାଇଁ, ମୁଁ କଅଣ କହୁଥିଲି ?

ଶାନ୍ତି—(ହାତଠାରି ଫୁଲକୁ ତୁନି କରାଇ ଦେଲା ।
(ଅଶୋକ ଗାଉଥିଲା ଗୀତ)

ଫୁଲ—(ଗୀତଟି ସରିବା ବେଳକୁ ପ୍ରାୟ ଟିକିଏ ମୁଣ୍ଡ ଟେକି ଡାକିଲା) ବାପୁା ମଉସା ! (ଡାକଶୁଣି ଅଶୋକର ଯେମିତି ଚେତନା ଆସିଲା । ସେ ମୁହଁ ଫେରାଇ ଲୁହଭରା ଆଖିରେ ଶାନ୍ତି ଓ ଫୁଲ ଥିବା ଦିଗକୁ ଚାହିଁଲା । ଠିକ ଫୁଲର ଡାକ ଶୁଣି ଶାନ୍ତି ତୁନି କରିବା ଅଭିପ୍ରାୟରେ ଫୁଲର ମୁହଁ ଚିପି ନିଜେ ବସି ପଡ଼ିଲା, ଲୁଚି ଯିବାକୁ । ଅଶୋକ ସେଇଠାରେ ବସି ରହିଲା । )

(ପଟ୍ଟପତନ)

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ ଶୋଭାର ଶୋଇବାଘର—ରାତି ୪ଟା ବେଳ ପ୍ରାୟ । ଶୋଭା ଶୋଇଥିବା ଘରର ଗୋଟାଏ କଣରେ, ଖଟ ଉପରେ । ଖଟରେ ମଶାରି ଦିଆ । ଶୋଭା ହଠାତ୍ ନିଦରୁ ଉଠିଲା । ମଶାରି ଭିତରୁ

ଉଠି ସେ ବସିଲା । କଅଣ ମନରେ ଭାବିଲା, ଆଲୁଅଟା ଜାଳଦେଇ ଟେବୁଲ୍ ଉପରେ ଥିବା ଫଟୋକୁ ନେଇ ଅତି ନିରେଖି ଚାହିଁଲା ]

ଶୋଭା—ଠିକ୍ ଏଇ ଆଖି, ଏଇ ନାକ, ମୁହଁ, ଠିକ୍ ଏଇ ଗଢ଼ଣ ସଙ୍ଗେ ତ ମିଶି ଯାଉଛି ! ଲୋକେ କହନ୍ତି ସୃଷ୍ଟି କେବେ ସମାନ ନୁହେଁ, କେମିତି ? ମୋର କଅଣ ଆଖିର ଭୁଲ ? ନାଁ—ସେ ଜୀବନ୍ତ । ( ହଠାତ୍ ବସିବାଠାରୁ ଉଠି ଖଟ ଉପରେ ପଡ଼ିଗଲା ଭୁସ୍‌କରି, ଫଟୋଟି ଧରି ) । ଭଗବାନ୍ !

ଫୁଲ—( ଆସି ) ମା ! ମାଗୋ !···

ଶୋଭା—( ଫଟୋ ରଖି, ସପତ ହୋଇ ) କରେ ! ଏତେ ରାତିରେ ?

ଫୁଲ—ଏତେ ରାତି ? ( ପିଠାଘଣ୍ଟା ବାଜିଲା—ଫୁଲ ଗଣିଲା ଛଅ ) ହେଇଟି ପରା ! ରଜାଘର ଘଣ୍ଟା ବାଜୁଛି ଛଅ । ବାପା ମଉସାଙ୍କୁ ମୁହଁ ଧୋଇବାକୁ ପାଣି ଦେବ ବୋଲି ଡାଳଟା ଖୋଜୁଛି ।

ଶୋଭା—ସେ କଅଣ ଉଠିଲେଣି ?

ଫୁଲ—ନିତି ଉଠନ୍ତି ତ, ଏତିକବେଳେ ଉଠି ଗାଆନ୍ତି । ଶୁଣୁନାଁ । ଗାଉଛନ୍ତି—ହେଇ । ମୁଁ ତ ଏତିକବେଳେ ଗୀତ ଶିଖେ ତାଙ୍କଠୁ । ଆଉ ସେ ଉଠିବେ କଅଣ ? ରାତିଯାକ କଅଣ ସେ ଶୁଅନ୍ତି ?

ଶୋଭା—ଆଉ ?

ଫୁଲ—କେଜାଣି କେତେବେଳେ ଘଡ଼ିଏ ପଡ଼ନ୍ତେ ଶୋଉଥିବେ । ନୋଇଲେ ରାତିଯାକ ତ ବଡ଼ର ବଡ଼ର ହୋଇ ଯିବ । ଖାଲି ଉଠ, ବସ, ଗୀତ, କଥା ।

ଶୋଭା—ରୋଜ ?

ଫୁଲ—ହଁ ସବୁଦିନ—ଆଗେ ମତେ ଡର ଲାଗୁଥିଲା, ଏବେ ଜାଣିଗଲିଣି ଯେ ଆଉ ଡରେଁ ନାହିଁ ।

ଶୋଭା—କଅଣ ସବୁ ରାତିରେ ସେ କହନ୍ତି ରେ ?

ଫୁଲ—କେଜାଣି ? ମୁଁ କିଛି ବୁଝେ ନାହିଁ । ତାଙ୍କର ସେ ମନେ ମନେ ବଡ଼ର ବଡ଼ର ହେଉଥାଆନ୍ତି । ମୁଁ ମୋର ଶୋଇପଡ଼େଁ ।

ଶୋଭା—ଆଗେ ଯେମିତି ହଉଥିଲେ ଏବେ ସେମିତି—ନାଁ ?

ଫୁଲ—ଏବେ ? ଏବେ କେତେ କମିଲାଣି । ବେଳେ ବେଳେ ଖୁବ ଭଲ କଥାବାର୍ତ୍ତା କରୁଛନ୍ତି ।

ଶୋଭା—ଭଲ ବୋଇଲେ ?

ଫୁଲ—ଖାଇବା, ପିଇବା, ଗୀତ ଶିଖେଇବା···

ଶୋଭା—ମୋ କଥା କିଛି କହନ୍ତି ?

ଫୁଲ—ତମ କଥା ଆଉ କଅଣ ? ଭଲ ମନଷ ବୋଲି କହନ୍ତି ।

ଶୋଭା—ଖାଲି ଏତିକ ?

ଫୁଲ—(ଭାବି) ଏତିକ ତ । ଭଲ ମନଷ—ଏତିକ ତ ।

ଶୋଭା—ଆମ ଘର ଦ୍ୱାର କଥା କିଛି ?

ଫୁଲ—ନାଇଁ ତ, ଦିନେ ବାକି ଆମ ବାଡ଼ପଟେ ମୋତେ ମା କାହାନ୍ତି ବୋଲି ପଚାରୁଥିଲେ ।

ଶୋଭା—କେବେ ?

ଫୁଲ—ଏବେ ତ ? ଶାନ୍ତି ମାଉସୀ ଯେଉଁଦିନ ତାଙ୍କୁ ଦେଖିଲେ ।

ଶୋଭା—( ଚମକି ) କୋଉଠି ?

ଫୁଲ—ତାଙ୍କ ବାଉଆଡ଼ ଖାଇ ଆଡ଼ୁଆଳରୁ । ବାପା ମଉସା ଗାଉଥିଲେ ଯେ ସେ ଶୁଣୁଥିଲେ, ତାଙ୍କ ଗୀତ କେମିତି ଗାଉଛନ୍ତି ବୋଲି ।

ଶୋଭା—ଓ, ଶୁଣିକରି କଅଣ କହିଲେ ?

ଫୁଲ—ଭଲ ବୋଲି କହିଲେ ।

ଶୋଭା—ମଉସାଙ୍କୁ ସେ ଦେଖିଛନ୍ତି ?

ଫୁଲ—ହଁ ।

ଶୋଭା—କଏ ବୋଲି ପଚାରିଲେ ନାହିଁ ?

ଫୁଲ—ମୁଁ ତାଙ୍କୁ ଆମ ବାପ୍ପା ମଉସା ବୋଲି ଚହ୍ନେଇ ଦେଲି ।

ଶୋଭା—ଆଚ୍ଛା, ତୁ ଚହ୍ନିଲୁ ଦେଖି ଏ ଛବି । କାହାର ?

ଫୁଲ—କାଇଁ ?

ଶୋଭା—( ଦେଖାଇ ) ଏହିଇଟି ।

ଫୁଲ—( ଦେଖି ଭାବି ) ସେ ଆଉ ଜଣକର କାହାର, ତମର ନୁହେଁ ମା, ଗୋଟେ ମରଦ ଟୋକାଟାଏ ! କଏ ସେ ମା ?

ଶୋଭା—କେଜାଣି, ମୁଁ କଅଣ ଚହ୍ନିଛି ?

ଫୁଲ—ଆଉ ?

ଶୋଭା—ବଡ଼ ଦାଣ୍ଡରୁ ପାଇ ଆଣିଛି, ସେଅଁଙ୍କ ପାଖକୁ ଗଲାବେଳେ ।

ଫୁଲ—ନାଁ, ତେମେ ନିଶ୍ଚେ ଚହ୍ନିଛ । କହ ମା, କଏ ସେ ?

ଶୋଭା—ଆରେ ମୁଁ କେମିତି ଚହ୍ନିଲି ? କାହା ପରି ଦିଶୁଛି, ତୁ କହୁନୁ ?

ଫୁଲ—( ନିରେଖି ଚାହିଁଥାଏ )

( ଅଶୋକ ଦୂରରୁ ଗାଇ ଗାଇ ଆସୁଥିଲେ )

(ନେପଥ୍ୟରୁ ଗୀତ)

ଡାକେ ଭରତିଆ—ସପନ ସଗ ଚେତାଏ
ପୁକାର କେ ମଧୁରେ—କୁମାରୀ ଲଜ ଭୁଲଏ ?
ନୟନ କ ଭୁଲ ଗୁଞ୍ଜମ ୲ ସ୍ୱା,
ଦେଖେ ସପନେ ସତେ ସୁନ୍ଦର କାୟା
ବସୋର କଥା କ ବତାଏ ? ୧ ।
ଝଲକେ ଛବିଟି ଦୂର ଦିଗନ୍ତେ
ବାଏ ଝରେ କ ମନ ବ ନ୍ତେ
କେ ସେ ରାଗ ଶୁଣାଏ ?

ଫୁଲ—ମା, ବାପ୍ପା ମଉସା ।

ଶୋଭା—କେମିତି ଜାଣିଲୁ ? ( ଅଶୋକ ଏତିକିବେଳେ ଆସି ଦ୍ୱାର ବନ୍ଧ ଧରି ଛିଡ଼ା ହେଲେ )

ଶୋଭା—( ଉଠି ପଡ଼ିଲେ ଫଟୋଟରେ )

ଅଶୋକ—ଓ ! ଫୁଲ, କଅଣ କାମ କରୁଛୁ ? ଆଚ୍ଛା ଆଚ୍ଛା । ( ଫେରି ଚାଲିଗଲେ )

ଶୋଭା—ତୁ ଯା, ଉତ୍ତର ହେବ ।

ଫୁଲ—( ଫଟୋଟି ଧରି ପ୍ରବେଶ ) ଫଟୋଟି କା'ହାର ମା ?

ଶୋଭା—ଚହ୍ନିଲୁ ପରା !

ଫୁଲ—ନାଇଁ ତ, କାଇଁ ?

ଶୋଭା—କହିଲୁ ପରା ବାପ୍ପା ମଉସା ?

ଫୁଲ—( ଫେରିଚାହିଁ ) ସତେ ଏକା, ତାଙ୍କର ମୁହଁ ପରି ଟିକିଏ ଟିକିଏ ଦିଶୁଛି । ଏଇନେ ସେ ବଡ଼ ହୋଇଗଲେଣି—ନିଶ, ଦାଢ଼ି—ଏଇଟା । ତାଙ୍କ ପିଲାଦିନ ଚେହେରା ।

ଶୋଭା—ତୋର ପରି ନାଁ ?

ଫୁଲ—ହଁ, ନାଁ ! ଆହୁରି ସାନ । କେତେ ସାନ ଦିଶୁଛି ।

( ଆଙ୍ଗୁଠିରେ ଫଟୋର ପରିମାଣ ମାପି, ଦେଖାଇ )

ଶୋଭା—ପାଗଳ, ଫଟୋରେ ଆଉ କେତେ ବଡ଼ ହୁଅନ୍ତା ରେ ? ତୁ ଠିକ୍ ଚହ୍ନିଲୁ ନା ବାପ୍ପା ମଉସା ବୋଲି ?

ଫୁଲ—ହଁ, ସେଇ ତ । ତମେ କଅଣ ଚହ୍ନି ପାରୁନାଁ ? ଦେଖୁନା, ଠିକ୍ ତାଙ୍କର ମୁହଁ—ଏଇଟା । ବାକି କି ସୁନ୍ଦର କୁଲୁକୁଲୁଆ ହୋଇଛି,—ପିଲାଟିଏ !

ଶୋଭା—ଆଚ୍ଛା, ତୁ ଆଜି ଏ ଫଟୋଟି ନେଇ ଫୁଲ ଦେଇଗଲାବେଳେ ତୋ ଶାନ୍ତ ମାଉସୀଙ୍କୁ ଦେଖାଇବୁ ଟି—ଦେଖିବା, ସେ ଚହ୍ନି ପାରୁଛି କି ନାହିଁ—ସେ ପରା ଦେଖିଛି ତୋ ବାପ୍ପା ମଉସାଙ୍କୁ ?

ଫୁଲ—କେଜାଣି ଚିହ୍ନି ପାରିବେ କି ନାହିଁ ?

ଶୋଭା—କହିବୁ, ସ୍କୁଲ୍ ରୁ ଦାଣ୍ଡରୁ ପାଇଲୁ ବୋଲି;
ମୁଁ ଦେଇଛି ବୋଲି କହିବୁ ନାହିଁ ।

ଫୁଲ—ଦେଖାଇ କରି ପୁଣି ନେଇ ଆସିବ, ତମେ ଦେଇଛ ବୋଲି କହିବ ନାହିଁ । ଏଁ ?

ଶୋଭା—ହଁ, ତୁ ଯା ।

ଫୁଲ—ତମେ ଚାଲୁନ ମା ଗୀତ ଶୁଣିବ । (ଫଟୋଟା ଧରି) ଏଇଠି ଥାଉ, ମୁଁ ଗଲାବେଳେ ନେବି ।
(ରଖିଦେଇ ଚାଲିଗଲା)

ଶୋଭା—ଅଚ୍ଛା ଚାଲ । (ପଛେ ପଛେ ଫଟୋଟିକୁ ରଖିବାକୁ ଧରି, ଚାହିଁ) ଭଗବାନ !
(ପଛକୁ ଚାହିଁଲେ)

ଅଶୋକ—(ନେପଥ୍ୟରୁ ଗୀତ)

(ଗୀତ)

ଶିହରଣେ ବଧୂଲି ଆଜ—ଜାଗି···ଆ
ଅଧରେ ମଧୁର ଲଜ ଆବୋରି ରଙ୍ଗେ
ଚନ୍ଦ୍ର ବିଜଡିତ ଆଖିରେ
ସପନ ମାଳା ଧରି ସରମ କରେ
ଅଳସ ଛଳ ଛଳ ଆଖି ଚାହାଣୀ
ଉଠ ବଧୂ ଡାକେ କଜଳପାଣିଆ ॥୧॥

ଶୋଭା—(ଫଟୋଟି ଟେବୁଲରେ ରଖି ଗୀତ ଶୁଣୁଥାଏ)

ଫୁଲ—ମା !

ଶୋଭା—ଚ' ଗଲି (ପୁଣି ଫଟୋଟି କଅଣ ମନେ କରି ଧରି ଚାଲିଗଲା ଚାହିଁ ଚାହିଁ ଦୀର୍ଘ ନିଶ୍ୱାସ ସହ)

---

## ଦ୍ୱିତୀୟ ଦୃଶ୍ୟ

[ ରାଜପଥ—ଗୋଟିଏ ଅନ୍ଧ ଗୀତ ଗାଇ ଚାଲିଛି ]

(ଗୀତ)

ମୂରୁଖ ମନ ଭୁଲି ଯା ନା, ଭୁଲିଯା ନା ।୦।
ପ୍ରେମ ନଗର-ପରଦେଶୀ ମନୁଆ !
ହିଆ ଦୁଆରେ ଧାରି ତୁ ନ ବୁହାନା
ପ୍ରେମ କୁଞ୍ଜେ ଯଦି ଫୁଲ ନ ଫୁଟେ
ବନ ବାଟେ ତୁ ଅନା ନାଁ—ଭୁଲି ଯା ନା ।୧।
ପ୍ରେମ ନୟନ ଯଦି ଢାଳେ ଦର ଦର ବାରି
ମରମେ ମରି ମରି ଯା'ଏ ମନ ଫୁଲ ବାରି,
କଣ୍ଟ ପଛେ ତୋ ଜୀବନ ଯିବ ତୁ
ପ୍ରେମ ବନ୍ଧନ ତୁଟା ନା—ଭୁଲି ଯା ନା—।୨।
ଜନମେ ଜନମେ ତୋ ସେ ଯେ ମରମର ସାଥୀ
ପ୍ରେମ ଜୀବନ କି ଜାଣେ ଜାତି ଅଜାତି ?
ପ୍ରେମ ଚରଣ ଛାୟା ଅନୁସରି ତୁ
ଯା ଯା ପ୍ରୀତି ଲଭନା—ଭୁଲି ଯା ନା—।୩।

---

## ତୃତୀୟ ଦୃଶ୍ୟ

(ରାମବାବୁ ଭାତ ଖାଇ ବସିଥିଲେ, ଅନେକ ଥିଲା ତରକାରୀ, ଶାନ୍ତ ବସି ବାଛୁ ଦଉଚି—'ଏଇଟା ଖା, ସେଇଟା ଖା' କହୁଛି ରାମବାବୁଙ୍କୁ ରାମବାବୁ ଖାଉ ଖାଉ ମଝିରେ ଟିକିଏ ଅଟକି ଗଲେ, ଶାନ୍ତ ପଚାରିଲା କାରଣ, ରାମବାବୁ କହିଲେ)

ରାମ—ଭାବୁଚି ଏତେ ତରକାରୀ···

ଶାନ୍ତ—ହଁ, କଅଣ ହେଲା ? କଅଣ ପାଗଳ ପରି ଯେ କୁହ ।

ରାମ—ପାଗଳ ତ ମତେ କରିଚୁ ତୁ ।

ଶାନ୍ତ—ମୁଁ ?

ରାମ—ଆଉ ?

ଶାନ୍ତ—କେମିତି ?

ରାମ—ଏଇ ସବୁ ତୁଣ ତରକାରୀ ଦେଖି ପାଗଳ ହେଇଚି ମୁଁ !

ଶାନ୍ତ—ହେଃ, (ହସି) ସେମିତ ଆଉ କହବ ନାହିଁ ବାବା ! ମୋର ମନ କଷ୍ଟ ହେବ ।

ରାମ—ତା ତ ମୁଁ ଜାଣେ, ଆଉ ସେଇଥିପାଇଁ ତ ମୁଁ ପାଗଳ ।

ଶାନ୍ତ—ଫେର୍ ସେଇ କଥା ?

ରାମ—ନାଇଁ ରେ ପାଗଳ, ଶୁଣିବୁ ?

ଶାନ୍ତ—କଅଣ କହୁନା ?

ରାମ—(ଭାବି) ନାଁ, ହଁ ତୁ କଅଣ ଖାଇବାକୁ କହୁଥିଲୁଟି ? କହ ।

ଶାନ୍ତ—ତେମେ କଅଣ କହୁଥିଲ, ରହିଗଲ ଯେ, ଖାଉଥା, କହୁଥା । ମୁଁ ଏଇ ରାଇତାଟା ଖାଇବାକୁ କହୁଥିଲ । ତମକୁ ପରା ଭାଇରେ ଦହି ଦେଲେ ଭଲ ଲାଗେ ?

ରାମ—ହଁ ଭଲଲାଗେ । ଖାଉଛି । (ଖାଇ) ବାଃ, ଭାରି ଭଲ ହୋଇଛି ତ ! ମୁଁ ଜାଣି ନଥିଲି ।

ଶାନ୍ତ—ଆଉ ତୁମେ କଅଣ କହୁଥିଲ ?

ରାମ—ଆଜ ନୁହେଁ, ଆଉ ଦିନେ ।

ଶାନ୍ତ—କାହିଁକି ଆଜ ଶୁଣିଲେ ?

ରାମ—ନାଇଁ, ମୁଁ କଅଣ କହୁଥିଲି କି···

(କଥାଟା ଗୋଟେଇ ଦେଲେ)

ଶାନ୍ତ—ହଁ, କହ ।

ରାମ—ତୋ ମାଆ ଗଲା ଦିନୁ—ଆଜକୁ ଷୋଳ ସତର ବର୍ଷ ହେବ—ଆଉ ଏ ସବୁ ଜାଣି ନ ଥିଲି । ଏ କାଳକୁ ତୁ ପୁଣି ଏ ବୁଢ଼ାକୁ ଛଅ ତରକାରି, ନଅ ଭଜା ଚଖେଇଲୁ ।

ଶାନ୍ତ—ହଁ କଅଣ ହେଲା ସେଇଠୁ ?

ରାମ—ହବ କଅଣ ? ମୋତେ ପାଗଳ କଲୁଣି ଆଜଠୁଁ ।

ଶାନ୍ତ—ଫେର୍ ତ ସେଇ କଥା କହିଲ ?

ରାମ—ସତ କହୁଚ ରେ ପାଗଳ ! ମୁଁ ସତ କହୁଛି—ମୁଁ ସତ କହୁଛି ।

(କାନ୍ଦି ପକାଇଲେ)

ଶାନ୍ତ—(ଉଠି ଲୁହ ପୋଛି) ବାବା, ତୁମେ କାନ୍ଦୁଛ ?

ରାମ—ନାଁ, ମୁଁ କାନ୍ଦୁନାହିଁ ।

ଶାନ୍ତ—ତେବେ ମୁଁ କଥାଟା ପଚାରି ତମ ମନରେ ଦୁଃଖ ଦେଇଛି ବାବା ?

ରାମ—ଦୁଃଖ ଆଜ ନ ଦେଲେ କାଲି ଦବୁ । ଗୋଟାଏ ଜଞ୍ଜାଳ ବଢ଼େଇଛୁ ତୁ ମୋର ।

ଶାନ୍ତ—କାହିଁକି ବାବା ? ମୁଁ ତମ ପାଖରେ ଥିବାରୁ ସେତେବ···

ରାମ—ମୋତେ ଭଗବାନଙ୍କର ବରଦ !

ଶାନ୍ତ—ତେବେ ମୁଁ ଗଲେ ତ···

ରାମ—ସେଇ କଥା, ସେଇ କଥା ଭାବୁଥିଲି ।

ଶାନ୍ତ—ମୋତେ ବିଦାୟ ଦେଲେ ଯେବେ ତମେ ସୁଖୀ ହେବ ବାବା, ଯେବେ ତମର ଜଞ୍ଜାଳ ଯିବ ବାବା—

ରାମ—ସୁଖୀ ହେବ, କି ଦୁଃଖୀ ହେବ,—ଜଞ୍ଜାଳ ଯିବ କି ବଢ଼ିବ— ସେଇଟା । କହିପାରୁ ନାହିଁ ତାଙ୍କଲୁ ତତେ ବିଦାୟ ଦେବାକୁ ଯେ ହେବ ମୋତେ ।

ଶାନ୍ତ—ମୋତେ ଆଜ ଏହି ମୁହୂର୍ତ୍ତରୁ ବିଦାୟ ଦିଅ ବାବା ! ମୁଁ ହସି ହସି ଚାଲିଯିବି ।

ରାମ—ହସି, ହସି ଏ ବୁଢ଼ାକୁ ଛାଡ଼ି ପାରିବୁ ତ ?

ଶାନ୍ତ—ପାରିବି ବାବା ! ତମର ଦୁଃଖ, ତମର ଜଞ୍ଜାଳ ସେଥିରେ ସରିଯିବ ବୋଲି ।

ରାମ—ତୁ ବୁଝିବୁ ନାଇଁ ରେ ପାଗଳ ! ମୋର ଦୁଃଖ କଅଣ—ଆଉ ତୁ ଗଲେ ଯେ ଦୁଃଖ, ବଢ଼ିବ କି କମିବ; ତଥାପି ଯେତେ ଦିନ, ଦୁଃଖ ଭିତରେ ଟିକିଏ ସୁଖ ପାଇପାରେଁ···

(ଦୀର୍ଘଶ୍ୱାସ)

ଶାନ୍ତ—ମୁଁ ବୁଝୁନାହିଁ ତମ କଥା କିଛି ବାବା ! ଶାନ୍ତ ବୋଲି ତମର ଯଦି ନିଜର ଗୋଟିଏ ଝିଅ ଥାଆନ୍ତା, ତମେ ତାକୁ ଏମିତି କଥା କହନ୍ତ ନାଁ ?

ରାମ—ତୁ କଅଣ ମନରେ ଭାବୁଛୁ, ଶାନ୍ତ ମୋର ନିଜର ଝିଅ ନୁହେଁ ? କପଟ ତ କିଛି କରିନାହିଁ ତୋ ପାଖେ । ଏ ସବୁ ତ ସଂସାରର କଥା, ଗୋଟେ ମାୟା । ଆଉ ଶାନ୍ତ ମୋର ନିଜର ଝିଅ କି ନୁହେଁ ସେ କଥା ତୁ ଆଜି ବୁଝିବୁ ନାହିଁ । ଯୋଉଦିନ ଏ ନବଗ୍ରହର ଘର ଭାଙ୍ଗି—ଗ୍ରହର କବାଟ ଭାଙ୍ଗି ତୁ ଚାଲିଯିବୁ··· (ଲୁହ ଆସିଲା)

ଶାନ୍ତ—ମୁଁ କୁଆଡ଼େ ଯିବି ନାହିଁ ବାବା !

ରାମ—ଯିବୁ ନାହିଁ ? ଏ କମିତି କଥା ? ତୋତେ ଯେ ଯିବାକୁ ହେବ ମା ! କହିଲି ପରା ଏଇଟା ସଂସାର ।

ଶାନ୍ତ—ମୁଁ ତ ସଂସାରରୁ ବାହାର । ସମାଜରୁ···

ରାମ—ବୁଝିଛି, କିନ୍ତୁ···

ଶାନ୍ତ—ଆଉ କିନ୍ତୁ କଅଣ ?

ରାମ—ନା, କିଛି ନୁହେଁ । ତୁ ଚାଲୁ, ଟିକିଏ ରାଇ ଆଣିଲୁ ।

ଶାନ୍ତ—ଅଣୁଚି । (ଗଲା)

ରାମ—(ପଛରୁ ତାକୁ ଚାହିଁ) କେମିତି ଏବେ ସ୍ୱାକୁ କହିବି ବିବାହ କଥା ? ଏ ଯେ ମୋ ଛଡ଼ା ଆଉ କିଛି ବୁଝେ ନାହିଁ । ଦେଖି, ଆଉଦିନେ ।

ଶାନ୍ତ—(ଫେରି) ବସି ରହିଲ ଯେ ନ ଖାଇ ଫେରୁ ? କଅଣ ଭାବୁଛ ମନେ ମନେ ବାବା ! କାହିଁକି ? ମୋତେ ଖୋଲି କରି କହୁନାହିଁ କଥାଟା କଅଣ ?

ରାମ—ନାଃ, କିଛି ନାହିଁ ।

ଶାନ୍ତ—ତେବେ ଚୁପ ହୋଇ ବସି ରହିଛ ଯେ ?

ରାମ—ତୋତେ ଅନାଇ ଥିଲି ପରା ? ଆଣିଲୁ ?

ଶାନ୍ତ—ହଁ (ଦେଇ) ସବୁତକ ଭାତ ଖାଇଦିଅ ।

ରାମ—ଆଉ ମୋର ଭାତ ଖାଇବାର ଇଚ୍ଛା ନାହିଁ ଯେ, ରାଇ ଟିକିଏ ଚାଖିବାକୁ ଆଉଥରେ ମନ ହେଲା ।

ଶାନ୍ତ—ସେ କଅଣ ? ଭାତ ଛାଡ଼ିଯିବ ?

ରାମ—ଦେଉଳରୁ ଫେରିଲା ବେଳକୁ ଶୋଭା ଘରବାଟେ ଆସିଲି । ସେ ନହାତ ଜିଦ ଧରି ବସିଲା, ମଉସା ମହାପ୍ରସାଦ ଟିକିଏ ସେବା କରିଯାଅ । ସେ ବି ଆରଜ ପାଗଳ ! ଆଉ ଘରେ ଖାଇବାର ଇଚ୍ଛା ନଥିଲା, ମାତ୍ର ତୋର ଚର୍ବାଶ ଲୋଭଟାକୁ ଛାଡ଼ି ପାରିଲି ନାହିଁ । ବୁଢ଼ା ହେଲି ନାଁ, ଲାଳସା, ଲାଳସା ! (ଟିକିଏ ହସିଲେ)

ଶାନ୍ତ—ଅଚ୍ଛା, ଆଉ ଦ'ଗୁଣ୍ଡା, ମୋ ରାଣ ।(ଖାଇ ବସିଲା)

ରାମ—ଅଃ, ରାଣ କାହିଁକି ? ଖାଉଛି ଯାଃ ।

ଶାନ୍ତ—ବାବା, ସତେ ଅନେକ ଦିନୁ ପଚାରିବି ଭାବେଁ— ଶୋଭା କିଏ ?

ରାମ—ସେ ବି ଏକ ଇତିହାସ, ତୋ'ରି ପରି ।

ଶାନ୍ତ—ମୋ ପରି କଅଣ ଦୁଃଖିନୀ ଆଉ କିଏ ଏସଂସାରରେ ଅଛନ୍ତି ବାବା ? ଜନ୍ମରୁ ବାପ ମାଆ ଖାଇ···

ରାମ—ଥାଉ, ଥାଉ ସେ ସବୁ । ତୁ ଶୁଣୁ, ଶୋଭା ହେଲା ବ୍ରାହ୍ମଣ ଘର ଝିଅ, ଖୁବ୍ ବଡ଼ ଲୋକ ।

ଶାନ୍ତ—ତା ତ, ଜଣା ପଡ଼ୁଛି । ପୁରୀ ସହରରେ ଏତେ ବଡ଼ ଘର ବାଡ଼ି ! ସବୁ ତାଙ୍କ ନିଜର ନାଁ ଭଡ଼ା ?

ରାମ—ନାଁ, ନିଜର ।

ଶାନ୍ତ—ଅଳ୍ପ ବୟସ—ଯୁବତୀ, ଖୁବ୍ ସୁନ୍ଦରୀ, ଏକା ରହିବା ତ କମ୍ ସାହସର କଥା ନୁହେଁ ।

ରାମ—ତା ନିଶ୍ଚୟ । ସେ ବିଷୟରେ ସେ ତୋରି ପରି ଖାଣ୍ଟି ସୁନା । ଚରିତ୍ର ବଳଟା ବଡ଼ ବଳ ନା ।

ଶାନ୍ତ—ହଁ ବାବା, ସେ କିଏ ? ଏତେ ବଡ଼ ଲୋକ, କେହି ତାଙ୍କର ନାହିଁ ଆଉ ?

ରାମ—କିଏ ଥିଲେ, କୁଟୁମ୍ବ ବାଟମ୍ବ ଥିବେ । ନିଜର ତାର କେହି ନାହିଁ, ସେଇଟା ମୁଁ ଜାଣେ । (ହସି)

ସଂସାରଟା ହରିକଯମର ଛଡ଼ଆ ଖାନା ! ତା'ର ଜୀବନ ବ ଗୋଟେ ପ୍ରକାର ।

ଶାନ୍ତ—କେମିତ ବାବା ?

ରାମ—ଏ ଗୁରୀବ ଦୁଃଖର କଥା ନାଁ, ମାଆ ! ମୁଁ ତାକୁ ବେଶି ପଚ୍ଚରବାକୁ ମନ କର ନାହିଁ, ତଥାପି ଶୁଣିଛୁ ଯାହା,—କହୁଛୁ ।

(ହାତଟେକ ରହିଲେ)

ଶାନ୍ତ—ଆଉ ସେ ଗୁଣ୍ଡାକ ରହିଲ କାହିଁକ ଫେରି ?

ରାମ—(ହସି) ଓଃ, ତୁ ଏ ବୁଢ଼ାକୁ ନହାତ ପିଲା କର ପାଇଲୁ, ନାଁ ?

ଶାନ୍ତ—କାହିଁକ ?

ରାମ—ଆଉ ? କଥା ବାର୍ତ୍ତା କୁହାଇ ଭଣ୍ଡେଇ ଭଣ୍ଡେଇ ସବୁତକ ଖୁଆଇ, ତେବେ ଛାଡ଼ବୁ, ନା ? ଏଇ ତ ତୋ'ର ଇଚ୍ଛା ?

ଶାନ୍ତ—ନାଁ, ତା ନୁହେଁ । ଅନେକ ଦିନୁ ପଚ୍ଚରବ ବୋଲ ଭୁଏଁ—ମନେପଡ଼େ ନାହିଁ ପଚ୍ଚରବାକୁ ।

ରାମ—ଆଗ୍ର କହିବ । ଉଚ୍ଚୁର ହେଲାଣି ପରା···

ଶାନ୍ତ—ଖାଇ ଖାଇ, କହ ।

ରାମ—ବେଳ ହେଲାଣି, ତୁ ଖାଇସାର, ମୁଁ କହୁଛୁ ।

(ପାଣିପିଇ ଉଠିଲେ)

---

## ଚତୁର୍ଥ ଦୃଶ୍ୟ

[ ଶୋଭାର ଘର । ଅଶୋକ ବାଜା ସହ ଫୁଲକୁ ନେଇ ପହୁଞ୍ଚିଲ ]

ଅଶୋକ—(ସୁରି ଠିକ କର ସାର ଫୁଲକୁ କହିଲ) ବସ୍ ଏଇଠି ବସ୍, ଗା ।

ଫୁଲ—(କୁଣ୍ଠିତ ହୋଇ) ଉଁ, ଏକା ?

ଅଶୋକ—ହୁଁ ।

ଫୁଲ—(ଗୀତ ଆରମ୍ଭ କଲା)

[ଅଶୋକ ଫୁଲର ପ୍ରଥମ ଚରଣ ପରେ ନିଜେ ଗାଇବାକୁ ଆରମ୍ଭ କଲା ଫୁଲ ସହିତ]

(ଗୀତ)

ଯଦ ବାସନ୍ତ ଘନ ନଶୀଥେ
ତବ ପରାଣ ଗୃହେଁ ଗୋ ମୋତେ
ନବୀନ ମୁକୁଳେ, କଶଳୟ ବକୁଳେ
ନିରେଖ ବଣାଣି ହାତେ
ହିଆ ମମ ସଂଗୋପନେ, ଥିବ ଗୋ ତାହାର—
ସ୍ମରଣ ପ୍ରାନ୍ତେ ॥

(ଗୀତଟି ଫୁଲ ଗାଇସାର ବନ୍ଦ କର ଦେଲେ ମଧ ଅଶୋକ ତନ୍ମୟ ହୋଇ ଆବୃତ୍ତି କରୁଥାନ୍ତି । ଫୁଲ ବାଳକ ସୁଲଭ ଚପଳତାରେ ଅଶୋକକୁ ହଲାଇ ହସି ହସି କହିଲା)

ଫୁଲ—ସରଲାଣି ଯେ !

ଅଶୋକ—(ଯନ୍ତ୍ର ଗୁଳନା ବନ୍ଦ କର) କଅଣ ?

ଫୁଲ—ଗୀତ ସରଲାଣି,—ଶେଷ । (ହସି ହସି)

ଅଶୋକ—(ହସି) ନାଁ, ନାଁ, ଗୀତ ସରେ ନାଇଁ ରେ, ଗୀତ ସରବାର ନୁହେଁ । ପାଗଳ !

ଫୁଲ—ମୁଁ ପାଗଳ, ନାଁ ? ଆଉ ତୁମେ ? ଗୀତ କେତେବେଳୁ ସରଲାଣି, ତମର ବାଜା-କେଁ କେଁ···

(ମୁଣ୍ଡ ହଲାଇ)

ଶୋଭା—(ହସି ହସି ଘର ଭିତରକୁ ଆସି) ଗୀତ ସରଲାଣି କ ?

ଫୁଲ—କେତେବେଳୁ, ଆଗରୁ ତ ଆସିଲ ନାଇଁ ମାଆ ! ସରଲାଣି ଗୀତ ।

ଅଶୋକ—ନାଁ, ନାଁ, ଗୀତ ସରେ ନାଇଁ—ସରନାଇଁ !

ଶୋଭା—ବନ୍ଦକରି ଦେଲ ଯେ ?

ଫୁଲ—ଭଲ ଗୀତ । ନୁହେ ମାଆ ?

ଶୋଭା—ଭଲ ଲଗିଲ ବୋଲ ତ ଉଠି ଆସିଥିଲ ଶୁଣିବାକୁ । ମୋ ଭାଗ୍ୟରେ ନାହିଁ,ଶେଷ । ତୁ ଏକା ଗାଉଥିଲୁ ?

ଫୁଲ—ନାଁ ବାପ୍ପା ମଉସା ବି ଗାଉଥିଲେ ।

ଶୋଭା—ଖୁବ ସୁନ୍ଦର ଲାଗୁଥିଲା ।

ଫୁଲ—ମାଆ, ମୋ ଗୀତ, କି ତାଙ୍କ ଗୀତ—କେଉଁଟା ସୁନ୍ଦର ?

ଶୋଭା—ତୁ ପିଲାଟା, ଶିଖୁଛୁ । ତୁ ଗୀତର କଅଣ ଜାଣିଲୁଣି ? ଭାବ ନ ବୁଝି, ନ ଫୁଟାଇ, ନିଜେ ଅନୁଭବ ନ କରି, ଗାଇଲେ ଗୀତ ଭଲ ଲାଗେ ନାହିଁ ରେ !

ଫୁଲ—ତେବେ ବାପ୍ପା ମଉସାଙ୍କ ଗୀତ ଭଲ ଲାଗିଲା, ନୁହେଁ ?

ଶୋଭା—ନିଶ୍ଚୟ, ଭଲ ଲାଗିବ ନାହିଁ ? ସେ ତ ଆଉ ତୋ ପରି ଖାଲି ବାହାରେ ଗାଆନ୍ତି ନାହିଁ—ତାଙ୍କ ମନ ଗାଏ ।

ଫୁଲ—ମନ ଗାଏ ? କେମିତି ମାଆ ?

ଶୋଭା—ତୁ ଏଇନେ ବୁଝି ପାରିବୁ ନାହିଁ ? ମନ ଗାଇଲେ ଆଖିରୁ ବି ଲୁହ ଆସେ ।

ଅଶୋକ—(ଆଖି ପୋଛି) ଲୁହ ? କାହିଁ ? ନାହିଁ ତ ।

ଶୋଭା—ମୁଁ ଦେଖିଛି ଯେ ! ଏଇ ଆଖିରେ ଦେଖିଛି ମୁଁ, ସେ ଲୁହଭରା ଆଖି ।

ଅଶୋକ—(ଉଠି) ମୋ'ର ?

ଶୋଭା—ହଁ, ତମର । ଖୁବ ଭଲ ଲାଗିଲା ।

ଅଶୋକ—(ଚାହିଁ ରହିଲା ଖାଲି)

ଶୋଭା—(ଚାହିଁ) ମୋତେ କଅଣ ଅବିଶ୍ୱାସ ହେଉଛି ?

ଅଶୋକ—ଅବିଶ୍ୱାସ ? ନାଁ, କାହିଁକି ?

ଶୋଭା—ଆଉ ଚାହିଁ ରହିଲ ଯେ !

ଅଶୋକ—(ପ୍ରକୃତିସ୍ଥ ହୋଇ) ଓଃ, ଚାହିଁଥିଲି ? (ମୁଣ୍ଡ ଝାଡ଼ିଦେଇ) ନାଃ, ଓଃ, !

(ଚାଲିଗଲେ ଅନ୍ୟ ଘରକୁ ହଠାତ୍ ଉଠି)

ଶୋଭା—(ଚାହିଁ) ଆରେ, ପାଗଳ ପରି ହଠାତ୍ ଚାଲିଗଲ ଯେ !

ଫୁଲ—(ହସି) ତୁମେ ବି ପାଗଳୀ ମା !

ଶୋଭା—ମୁଁ ?

ଫୁଲ—ଆଉ ? ପଚାରୁଚ ପାଗଳପରି କଅଣ ଚାଲିଗଲେ ? ସେ ଆଉ କଅଣ କି ?

ଶୋଭା—( ହସି ) ନାଁ ରେ ! ସେ କଅଣ ପାଗଳ ?

ଫୁଲ—ଆଉ କଅଣ ?

ଶୋଭା—ନାଁ, ନାଁ, ପାଗଳ ନୁହେଁ ।

ଫୁଲ—ହଁ, ତୁମେ ତ ସେଇଆ କହୁଚ ବରାବର । ତୁମେ ତେବେ ତାଙ୍କୁ ଚିହ୍ନି ନାହଁ ମାଆ !

ଶୋଭା—ଚିହ୍ନି ନାହିଁ ? ମୁଁ ? ମୁଁ ଚିହ୍ନିଛି—ତୁ ଜାଣିନାହୁଁ । ଡାକ୍ ତାଙ୍କୁ ଡାକ୍, ଗୀତ ଶୁଣିବା ।

ଫୁଲ—ହଁ, ଧାଉଁଥିଲି ଡାକିବାକୁ ।

ଶୋଭା—ଚାଲିଗଲେ ଯେ !

ଫୁଲ—ଯାଆନ୍ତୁ, ବଳେ ଆସିବେ ।

ଶୋଭା—ଡାକିଲେ ନାଁ···

ଫୁଲ—ଦେଖିବ—ବଳେ ଆସିବେ ? ତୁମେ ତରତର ହେଉଚ କାହିଁକି ? ରହ ।

ଅଶୋକ—( ନେପଥ୍ୟେ )

(ଗୀତ)

ଧୀରେ ଧୀରେ ପରଶିଆ ମୋର ଘର-ପରବାସୀ ରେ !
ଚୁମ୍ବି ତୁ ପ୍ରିୟ ନୟନ ଅଧରେ
କହ ତୁନ ତୁନ ରଜନୀ ଅଧରେ—
ଏ ପରଦେଶୀ ସମୀରରେ !
ସରେ ଜାଗରେ ମୋ ନିଶିରେ ॥

ଶୋଭା—ସତେ ତ ରେ ! (ଅଶୋକର ଗୀତ ଭିତରେ)

ଫୁଲ—ମୁଁ କହୁନାହିଁ, ତୁମେ ତାଙ୍କୁ ଚିହ୍ନି ନ ପାର ! ଆହୁରି ଦେଖ ( ଅଶୋକ ଗାଇଲା ଏ ପରଦେଶୀ ସମୀରରେ )

ଅଶୋକ—( ଗୀତ ) ସରେ ଜାଗରେ ମୋ ନିଶିରେ

( ଗାଇ ଗାଇ ଆସୁଥାଏ,
ଫୁଲ ଖୁବ ହସୁଥାଏ ।)

ଫୁଲ—( ହସି ହସି ଶୋଭାକୁ କହିଲା ଅଶୋକଆଡ଼କୁ ଠାରି ) ଦେଖିଲ ? ( ଶୋଭା ଗୃହିଁ ରହିଥାଏ ଅଶୋକକୁ । ଅଶୋକ ଗାଇ ଗାଇ ଆସୁଥିଲେ ଅନ୍ୟ ଘରୁ,—ସେମିତି ପାଦ ତାଙ୍କୁ ଟାଣି ଆଣୁଥିଲା ତାଙ୍କ ଅଜଣାରେ )

---

## ପଞ୍ଚମ ଦୃଶ୍ୟ

[ ଭିକାରୀଟିଏ ଗାଇ ଗାଇ ଯାଉଛି ରାଜପଥରେ ]

(ଗୀତ)

ସପନେ ଭୁଲନା—ଭୁଲନା—ମାୟା ମୋହିନୀ !
ଏ ତୋ ମିଛ ସପନ ନଶି ଶେଷେ ନ ଥିବ
ସୁଖର ତୋର ଏ ଦୁନିଆଁ—ପଲକରେ ସରିବ,
ଏ ତ, ମୋହ ଦେବୀ ରଜନୀ—ମାୟା ମୋହିନୀ ।୧।
ସପନ ସବୁ ତୋର ସମ୍ପଦ ସାଥୀ
ସପନ ରାଜପୁରୀ ଗ୍ରମର ଛତୀ
ମିଛ ତୋର ପ୍ରିୟ-ସଜନୀ—ମାୟା ମୋହିନୀ ।୨।

---

## ଷଷ୍ଠ ଦୃଶ୍ୟ

[ ରାମ ବାବୁଙ୍କ ଶୋଇଲା ଘର—ଶାନ୍ତି ଘର ଝାଡ଼ ସାରି ରାମ ବାବୁଙ୍କ ଖଟ ଉପରେ ବିଛଣା ଉଠାଇ ସଜାଡ଼ୁଥିଲା । ମନେ ମନେ ଗୁଣୁ ଗୁଣୁ କରି ଗୀତ ଗାଉଥିଲା । ଚକଆ ତଳେ ଖଣ୍ଡେ ଚିଠି ନାଲି କାଳିରେ ଲେଖା ହୋଇଥିବା ଦେଖି, ଟିକାଇ ପଢ଼ିବସିଲା ]

ଶାନ୍ତି—( ଖଟରେ ଗୋଟାଏ କରକୁ ଆଉଜି ବସି ଟିକଏ ବସ୍ମିତ ହେଲାପରି ବୋଧ ହେଲା, ମନେ ମନେ କହିଲା ) କନ୍ୟାର ବିବାହ ? ବାବାଙ୍କର କଅଣ ଆଉ କନ୍ୟା ଅଛି କୋଉଠି ? ମୁଁ ତ ଆଜଯାଏ ଜାଣିନାହିଁ । ଏବେ କେତେ ଦିନ ହେଲା ବୋଧେ ସେଇ କଥା ସେ ଭାବୁଛନ୍ତି । ମୋତେ ଲୁଚାଇବାର କାରଣ କଅଣ ?

ଫୁଲ—( ନେପଥ୍ୟରୁ ) ମାଉସି !

ଶାନ୍ତି—( ଚମକି, ଚିଠି ଲୁଚାଇ ଚକଆ ତଳେ, ବିଛଣା କରିବାରେ ଲାଗିଲା ) ଫୁଲ ବୋଧହୁଏ…

ଫୁଲ—ମାଉସି ! କୋଉ ଘରେ ?

ଶାନ୍ତି—କିଏ ରେ ? ଫୁଲ ?

ଫୁଲ—( ନେପଥ୍ୟ ) ହଁ ମାଉସି !

ଶାନ୍ତି—ଏଣେ ଆ ( ଫୁଲ ଆସିଲା )

ଫୁଲ—( ଫୁଲଡାଲା ଦେଖାଇ ) ମାଉସୀ ! ମାଆଙ୍କ ଦେହ ଭଲ ଲାଗୁ ନାହିଁ ସେ କହିଛନ୍ତି, ସବୁତକ ଫୁଲ ତମେ ଟିକିଏ ଆଜି ଗୁନ୍ଥି ଦେବ ।

ଶାନ୍ତି—ଦେଖେଁ ··

ଫୁଲ—( ତଳେ ବସି ଡାଲା ଖୋଲିଲା )

ଶାନ୍ତି—ବହୁତ ଫୁଲ ତୋଳିଚୁ ତ ଏତେ ସକାଳୁ ?

ଫୁଲ—ମୁଁ ଏକା କୋଉଠି ତୋଳିଥାଏନ୍ତି ? ବାପା ମଉସା ମିଶିଗଲେ ବୋଲି ନା ।

ଶାନ୍ତି—ସେ କୋଉ ଫୁଲ ତୋଳିଛନ୍ତି, ଆଉ ତୁ କୋଉ ଫୁଲ ତୋଳିଚୁ ଦେଖି ?

ଫୁଲ—କେମିତି କହିବ ? ସବୁ ତ ମିଶିଚି । ଗୋଟାଏ ଯାଗା ଆଣ, ଫୁଲତକ ରଖିଦେଇ ମୁଁ ଯାଗାଟା ନେଇଯିବି । ଏଇଟା ଆମ ଠାକୁରଙ୍କ ଥାଳୀ ।

ଶାନ୍ତି—ଅଚ୍ଛା ।

( କିଛି ଯାଗା ଆଣିବାକୁ ଗଲା, ଫୁଲ ଶୋଭା ଦେଇ ଥିବା ଫଟଟି କାଢ଼ି ଦେଖୁଥାଏ )

ଫୁଲ—( ହସି ) ଏ ବାପା ମଉସାଙ୍କ ଛଡ଼ା ଆଉ କେହି ନୁହେଁ, ତାଙ୍କର ମୁହଁପରି…

ଶାନ୍ତି—( ହସି ଫୁଲ ହାତେ ଫଟଟି ଦେଖି ପଚାରିଲା ) ସେଇଟା କଅଣ ରେ ?

ଫୁଲ—ଛବିଟାଏ ।

ଶାନ୍ତି—କି ଛବି ?

ଫୁଲ—କେଜାଣି ?

ଶାନ୍ତି—କାହାର ? ( ଡାଲାରୁ ଫୁଲ କାଢ଼ୁଥାଏ )

ଫୁଲ—ମୁଁ ଜାଣିନାହିଁ—ଦେଖନାଁ...

(ଶାନ୍ତ ଆଖି ଆଗରେ ଦେଖାଇଲା)

ଶାନ୍ତି—(ଫଟଟି ଦେଖି ହାତରୁ ଫୁଲ ଖସିପଡ଼ିଲା, ଫୁଲହାତରୁ ଫଟୋଟି ଆଣିବାକୁ ଯାଇ) ତୁ ଏ୍ବାକୁ କୋଉଠୁ ଆଣିଲୁ ?

ଫୁଲ—ଦାଣ୍ଡରେ ପଡ଼ିଥିଲା ପାଇଲି । ଏଢ଼େ କାହାର ଛବ ମାଉସି ?

ଶାନ୍ତି—(ଫଟଟି ଧରି ଛିଡ଼ା ହୋଇ ପଡ଼ିଲା, ଏକ ଦୃଷ୍ଟିରେ ଗୁହିଁ ଫୁଲକୁ କହିଲା—ଭାବିଲା ପରି) ଏ ଛବ...

(ବସି ପଡ଼ିଲା ଖଟରେ)

ଫୁଲ—କଏ ସେ ?

(ହଠାତ୍ ସେ ଘରେ ପହଞ୍ଚିଲେ ରାମବାବୁ)

ରାମ—ଶାନ୍ତି

(ଖଟରେ ଭୁସ୍ କରି ବସି ପଡ଼ିଲେ ଥକ୍କାମରା ହେଲା ପରି)

ଶାନ୍ତି—(ଚମକି ଠିଆ ହେଲା, ଫଟଟି ଖଟ ଉପରେ ରହିଗଲା)

ରାମ—ଗୋଟେ ପଙ୍ଖା ଦେଲୁ ମା ! ଓଃ ବଡ଼ ଗରମ !

ଶାନ୍ତି—(ପଙ୍ଖା ପାଇଁ ଗୁଲିଗଲା)

ରାମ—(ଫଟୋଟି ଧରି) ଏ କାହାର ଫଟୋରେ ?

ଫୁଲ—ମୋର ସେଇଟା । ବାଟରୁ ପାଇଲି—

ରାମ—(ଦେଖି) କଏ ? ଚହ୍ନିଲି ଚହ୍ନିଲା ପରି ଲାଗୁଛି ।

ଫୁଲ—କଏ ସେ ସିଏ ?

ରାମ—(ଭାବିଲାପରି) କୋଉଠି ଦେଖିଲାପରି ମନେ ହଉଚ, ନାଆ ଟା ଠିକ୍ ମନେ ପଡ଼ୁ ନାହିଁ । (ବପାଖ ଓଲଟାଇ) ଏଟା ତୁ ବାଟରୁ ପାଇଲୁ ? ଧୂଳି ଫୁଲ ତ କଛି ଲାଗିନାହିଁ ?

ଫୁଲ—ପଡ଼ିଥିଲା ତ ପାଇଲି ।

ରାମ—ହଉ ନେ ଖେଳ୍ ।

(ଦେଇ ଦେଲେ ଫୁଲକୁ, ଶାନ୍ତି ଏତିକି ବେଳେ ପହଞ୍ଚି ରାମବାବୁଙ୍କୁ ବଞ୍ଚିବାକୁ ଆରମ୍ଭ କଲା)

ଫୁଲ—(ଫଟୋଟି ଧରି ଖେଳିବା ପରି) ପଛକୁ ଆସିବ ମାଉସି, ମୁଁ ଯାଉଚ ।

ଶାନ୍ତି—ଯାଉଚୁ ?

ଫୁଲ—(ଯାଉ ଯାଉ) ପଛକୁ ଆସିବ ଯେ !

(ଥାଳି ଉଠାଇ ଫଟୋଟି ଦେଖିଲାପରି ଗୁହିଁ ଗୁହିଁ ଗୁଲିଗଲା ମନ ସୁଖରେ ଗାଇ ଗାଇ ଗୀତ । ଶାନ୍ତ ତାକୁ ଗୁହିଁ ରହିଥାଏ, ଏକ ଧ୍ୟାନରେ । ଗୀତଟି ମଧ୍ୟ ଶୁଣୁଥାଏ ଓ ରାମବାବୁଙ୍କୁ ବଞ୍ଚ ଦଉଥାଏ ।)

ରାମ—ଓଃ ! (କ୍ଳାନ୍ତ ମେଣ୍ଟାଉଥିଲେ, କିଛିବେଳ ପରେ ଡାକିଲେ) ଶାନ୍ତ ! ଶାନ୍ତ ! ଶାନ୍ତ ! ତୁ କାନ୍ଦୁଚୁ ? ଏଁ ? ଶାନ୍ତ ?

ଶାନ୍ତ—(ଗୋଡ଼ଧରି) ବାବା !

(କାନ୍ଦ ଉଠିଲା । ରାମବାବୁ ଉଠି ତାକୁ ଉଠାଇଲେ ।)

(ପଟ୍ଟପତନ)

---

## ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

[ଶୋଭାର ଶୋଇଲା ଘର । ଶୋଭା ହାର୍ମୋନିୟମ ଧରି ଗୀତଟିଏ ଗାଉଛି, ବେଶ୍ ଭାବ ଅନୁଭବ କରି । ମଝିରେ ଫୁଲ ଆସିଲା ଫଟୋଟି ନେଇ]

(ଗୀତ)

ଅଚହ୍ନା ପକ୍ଷୀ, ଅଜଣା ପକ୍ଷୀ,
କେ ତୁ ଆସିଲୁ ଦୁଆରେ ?
ଅକାଳେ କୁଞ୍ଜ ମମ—ସାଜିଲା, ରେ ସାଜିଲା,
ନବ ଦଳ ମାଳତୀ ମାଳେ । ୦ ।
ଯାମିନୀ କାମିନୀ ଭରା—ସୁଗନ୍ଧେ ମେଲା ପସରା
ତୋ ଲାଗି ବଉଦ ତଳେ—ଶଶିଟି ମୁରୁକି ହସେ
ମଦିର ନୟନ ଢ଼ାଳେ—କେ ତୁ ରେ ? । ୧ ।

ଫୁଲ—(ଅଶୋକର ଫଟୋଟି ନେଇ ଆସି ଛିଡ଼ା ହେଲା)

ଶୋଭା—(ଗୀତ ବନ୍ଦକରି) ଆଣିଲୁ ?

ଫୁଲ—ହଁ ମା !
ଶୋଭା—ଦେଖି ।
ଫୁଲ—(ସେଇଠୁ ଥାକ ବନ୍ଧାହୋ ଫଟୋଟି ଟେକ ଦେଖାଇ ଦେଖାଇ ପାଖକୁ ଆସିଲା )
ଶୋଭା—ରଖିଲୁ ରଖିଲୁ ଦେଖି, ସେଇ ଟେବୁଲଉପରେ ଡେରକରି ରଖ ।
ଫୁଲ—(ରଖି ଗୁଲି ଯାଉଥିଲା, ଶୋଭା ପଛରୁ ପୁଣି ଡାକିଲା)
ଶୋଭା—ଫୁଲ ! (ଫୁଲ ଫେରି ଆସିଲା)
ଫୁଲ—ମା !
ଶୋଭା—ତୋ ବାପୁ। ମଉସା କଅଣ କରୁଛନ୍ତି ରେ ?
ଫୁଲ—ଦେଖି ନାଇଁ ।
ଶୋଭା—କୋଉଠି ଥିବେ ଦେଖି ପଠେଇ ଦବୁ ତ, ମୁଁ ଅଜ ଗୀତ ଶିଖିବ ।
ଫୁଲ—ମୁଁ ଆସିବ ମା ?
ଶୋଭା—ଛି, ତୋ ଆଗରେ ମୋତେ ଲଜ ମାଡ଼ିବ ନାହିଁ ?
ଫୁଲ—କାହିଁକି ?
ଶୋଭା—ତୁ ପର ପିଲଟା । ତୋ ଆଗରେ ଶିଖି ବସିଲେ, ଭୁଲ ହୋଇଗଲେ ମୋତେ ଲଜମାଡ଼ିବ ।
ଫୁଲ—(ହସି ଗୁଲିଗଲା) ।

ଶୋଭା—(ଫଟୋଟିକି ଗୁହିଁଲା, କିଛି ବେଳ ପରେ ପୁଣି ଗାଇଲା । ଗୀତ ଭିତରେଆସିଲା ଅଶୋକ, ଅବହିତ ଚିତ୍ତରେ ଗୀତଟିକି ଶୁଣିଥାଏ । ଶୋଭା ସେ ଆସିବାର ଜାଣିଛି କି ନାହିଁ କହି ହେବ ନାହିଁ—ଗାଉଥାଏ । କେତେବେଳକରେ ଗୀତ ବନ୍ଦକରି ହଠାତ୍ ଫେରିଗୁହିଁ ଅଶୋକଙ୍କୁ ଦେଖି ଚମକିପଡ଼ିଲା)
ଶୋଭା—(ଲଜରେ) ମୁଁ ଜାଣିନାହିଁ ।
ଅଶୋକ—ଗା,ଗା, ମୁଁ କେବେ ଶୁଣି ନ ଥିଲି, ଭଲ ତ ।
ଶୋଭା—(ସେଇ ଫଟୋ ଆଗରେ ଥିବା ଚୌକିକୁ ଠାରି କହିଲା) ବସନ୍ତୁ ସେଠି ।

ଅଶୋକ—ହଁ । ( ବସିବାକୁ ଯିବାବେଳେ ଫଟୋ ଉପରେ ଆଖି ପଡ଼ିଲା—ସେ ହଠାତ୍ ବସିପଡ଼ି ଫଟୋଟି ଧରି ପଗ୍ଭରିଲା) ଏ ଫଟୋ !
ଶୋଭା—(ଗୁହିଁ ରହିଲା ଭାବ ଉତ୍କଣ୍ଠାରେ) ମୋର ଜଣେ ବ ।
ଅଶୋକ—ବନ୍ଧୁ !
ଶୋଭା—ହଁ ସେ । ସେ ଆଉ ନାହାନ୍ତି ।
ଅଶୋକ—ନାହାନ୍ତି !
ଶୋଭା—ହଁ ନାହାନ୍ତି, ସେ ଅନେକ ଦିନ ତଳର କଥା···
ଅଶୋକ—(ଫଟୋକୁ ଗୁହିଁ ସେମିତି କେତେ ଭାବ ବସିଲା)
ଶୋଭା—(ଅବସର ପାଇ) ମୋତେ ସେତେବେଳକୁ ପ୍ରାୟ ୬।୭ ବରଷ, ଆମ ଗାଁଠି ତାଙ୍କର ମୋର ଦେଖା । ଏକା ଗୃହଶାଳୀରେ ପଢ଼ୁଥିଲୁ ପାଠ—ସେ ଉପର ଶ୍ରେଣୀରେ, ମୁଁ ତଳ ଶ୍ରେଣୀରେ, ସେ ବଡ଼ । (ଟିକଏ ରହି) ତା'ପରେ ତାଙ୍କୁ ଆଉ ଦେଖି ନାହିଁ—ଲୋକେ କହିଲେ ସେ···
ଅଶୋକ—ମରିଛି ? ନାଁ ? (ସନ୍ଦିଗ୍ଧ ଚିତ୍ତରେ ସେ ମନେ ମନେ କହିଛି—ଏ କଅଣ ସେଇ···ଏ ପର୍ଯ୍ୟନ୍ତ ତା ମନରେ ରହିଗଲା ତୁଣ୍ଡରୁ ବାହାରି ପଡ଼ିଲା) ଶୋଭା ?
ଶୋଭା—ହଁ, (ଅଶୋକ ଗୁହିଁ ରହିଲା )ଆପଣ ଚିହ୍ନନ୍ତି ?
ଅଶୋକ—ମୁଁ ? (ହଠାତ୍ ସେଠୁ ଉଠିପଡ଼ିଲା ଫଟୋଟି ଥୁଇ) ମୁଁ···
ଶୋଭା—ହଁ ।
(ଫଟୋ ନେଇ କୋଳେଇ ଉଦ୍‌ଗ୍ରୀବ ଦୃଷ୍ଟିରେ)
ଅଶୋକ—(ଘରୁ ବାହାରି ଯିବା ଭଳି ହୋଇ) ମୁଁ ? ନା ଚିହ୍ନେ ? ନାଁ,ହଁ-ହଁ(ବ୍ୟସ୍ତ ହୋଇ ଘରୁ ବାହାରିଗଲା)
ଶୋଭା—(ଖଟରୁ ଉଠି ହଠାତ୍ ତାଙ୍କ ପଛେ ପଛେ ବସ୍ତ୍ରାଣୀ ଭଳି ସେମିତି ଦୌଡ଼ିଗଲା ପରି) ଆପଣ···

ରାମ—(ପଛରୁ ଆସି) ଶୋଭା !

ଶୋଭା—ଆପଣ···

ରାମ—ହଁ ମା ! ବଡ଼ ଅସମୟ ମୋର ! ହତଭାଗ୍ୟ ନାଁ ! ଅଭାଗା ଯେଣେ ଯାଏ, ସମୁଦ୍ର ଲାଗେ ଶୁଖି ପଳାଏ ।

ଶୋଭା—କଅଣ ହେଲା ମଉସା ?

ରାମ—(ଫଟୋଟି ଦେଖି) ଏଇଟି ?

ଶୋଭା—ଖଣ୍ଡେ ଛବି ।

ରାମ--ଦେଖି ।

ଶୋଭା—ଦେଖିବେ ଯେ, କଅଣ ବିପଦ କହନ୍ତୁ ନା ଆଗେ ।

ରାମ—ଆଉ କଅଣ ? ସେଇ ଶାନ୍ତ, ଫି ଦିନ ଲାଗିଛି ତାର ମୂର୍ଚ୍ଛା ।

ଶୋଭା— ! ?

ରାମ—ହଁ, ମୂର୍ଚ୍ଛାପରେ ମୂର୍ଚ୍ଛା ? କୋଉ ଦିନ ତିନି ଥର, ଚାରି ଥର ।

ଶୋଭା—ଏସବୁ କେବେ ହେଲା ?

ରାମ—ଏଇ ଦିନ ଚାରି ଛଅ ହେବ ତ ! (ଭାବି) ସେଇ ସେଉଁଦିନ ତୁ ଫୁଲ ଗୁନ୍ଥିବାକୁ ଦେଉ ନ ଥିଲୁ ଫୁଲ ହାତେ··

ଶୋଭା—ହଁ, ମୋ ଦିହଟା ସେଦିନ କେମିତି ଲାଗୁଥାଏ ।

ରାମ—ସେଇଦିନ ରାତିରେ ପ୍ରଥମ ।

ଶୋଭା—କାହିଁକି, ସେ ତ ଖୁବ୍ ଭଲଥିଲା ?

ରାମ—ଭଲ ତ ଥିଲା (ଟିକିଏ ଭାବିଲାପରେ) ଫେର (ହଠାତ କଥା ପକାଇଲେ) ବୁଝୁନାହିଁ ? କଥାଲ ପରା ଅଭାଗା ଯେଣେ ଯାଏ···ଯାହାକୁ ଧରେ ସେ ସୁନା ପରା ମାଟି ପାଲଟିବ ।

ଶୋଭା—କଅଣ ଏମିତି କହୁଚନ୍ତି ? ବେରାମ ଆରାମ ନାହିଁ କାହାର ?

ରାମ—ଅଛି ଯେ, ତାର କିଛୁ କିଛି ନ ଥିଲା । ସେଇ ଥରକ ଯାହା ତାର ମୂର୍ଚ୍ଛା ହୋଇଥିଲା, ତାକୁ ପାଇବାବେଳେ—ଅବଶ୍ୟ ସେ ଦିନ·· ······

ଶୋଭା—ଓଃ, ଯେତେବେଳ କଥା ତ ଆଉ ଆଜ ନାହିଁ ।

ରାମ—ସେଇଆ ତ, ହଁ ଦେଖିଲୁ ? ମୁଁ ଭୁଲିଗଲି, କଅଣ ପାଇଁ ଆସି କଅଣ କରୁଛି । ମୋତେ ଅଧା ପାଗଳ କଲଣି ଶାନ୍ତ ।

ଶୋଭା —(ଉଠି ଛବି ମେଜରୁ ଆଣି ବାହାରିଗଲା) ଆପଣ ପାଗଳ ହୁଅନ୍ତୁ ଆଉ କଅଣ କ ?

ରାମ—ହଁ, ଶୁଣିଲି—ମା ତୁ ଗୋଟାଏ ପାଗଳ କାହାକୁ ରଖିଚୁ, ଭଲ ଗାଏ ସେ ।

ଶୋଭା—ହଁ, ସେ ପାଗଳ ସେ···

ରାମ—ବେଶ୍, ଏଥର ଦୁଇ, ହେଲ ସମ୍ଭାଳ ।

(ମୁଣ୍ଡରେ ହାତ ଦେଇ ବସିଗଲେ)

ଶୋଭା—ଏ ଭାଗ୍ୟରେ ଥିଲେ ତ ? (ଉଠିଲା)

ରାମ—ଶୁଣିଲୁ ଯେ ? ମୁଁ ଆସିଥିଲି ତତେ ଟିକିଏ ଆମ ଘରକୁ ନେବାକୁ । ଶୁଣିଲୁ ତା'ର କଅଣ ହଉଚି ଦେଖିଲୁ ।

ଶୋଭା—ଶାନ୍ତର ? ହଉ ଚାଲନ୍ତୁ । (ଉଠିଲେ ଦୁହେଁ)

---

## ଦ୍ୱିତୀୟ ଦୃଶ୍ୟ

[ଶୋଭା ଘର ସାମନାରେ ଗାଇ ଗାଇ ଯାଉଥିଲା ସେହି ଅନ୍ଧ ଭିକ୍ଷୁକ, ଭିକ ମାଗି ମାଗି]

(ଗୀତ)

ମନ, ସେପାରି କଥା ଦିନେ ଭାବିଲୁ ନାହିଁ
ବସିଛୁ ପାରି ହେବୁ ଯମୁନା ନଈ ॥୦॥
ଏ ତୋର ଛିଣ୍ଡା ପାଲ—ହାତ ମାରିବ କୋଲ
ବୋଲ ନ ମାନ ନାଆ—ନେବ ଭସାଇ—ମନ···
ଦିଦିରି ନାଆ ଟୋଟି—ମେଘ ଆସୁଛି ଘୋଟି
ଝଞ୍ଜା ପବନ ପୁଣି, ତା ତୁଲେ ବାଇ—ମନ ··

( ଫୁଲ ଓ ବସନ୍ତ ଆସିଲେ
କଥାବାର୍ତ୍ତା ହୋଇହୋଇ )

ବସନ୍ତ—ପୁରେଇବାର କଏ ହବ ?

ଫୁଲ—(ବସନ୍ତ ପାଖିରେ ହାତ ଦେଇ) ଭୁଲ ହ, ରହ, ଏଇଟା ଗୋଟେ ଫେର୍ କୋଉଠୁ ଆଇଲାଣି ? (ଅନ୍ଧପ୍ରତି) କଅଣ ରେ ?

ଅନ୍ଧ—ଭିଖ ଟେଣ୍ଡିଏ ବାବା ।

ଫୁଲ—ଆଉ ଗୀତ ଗାଉନୁ କାହିଁକି ?

ବସନ୍ତ—ମଲା, ଗାଇଲାର ତ ମାଗୁଚ, ଆଉ କଅଣ ?

ଫୁଲ—ତୁ ଜାଣୁନାହୁଁ ମ ବସନ୍ତ ! ତାର ଆଉ ଯୋଉଠି ପାର ସେଠି ଗାଉ, ଆମ ଏଠି ନ ଗାଇଲେ ହେଲା । ମାଆଙ୍କ କାନକୁ ଯେବେ ଶୁଭିବ, ମୋ କଥା ସରିଲା ।

ବସନ୍ତ—କାହିଁକି ?

ଫୁଲ—ଏଇମିତି ଗାଉଥିଲା, ଦାଣ୍ଡରୁ ଧରିନେଲେ ଗୋଟେ ବାପୁଟାକୁ ଯେ, ହନଗାଡ ମୋତେ ଗାଆ ଗାଆ କରି ବସେଇ ଉଠେଇ ଡାକୁନାହିଁ । ଫେର୍ ଯଦି ଯ୍ୱା ଗୀତ ଶୁଣି, ଏ ଅନ୍ଧଟାକୁ ପୋଷନ୍ତି, ମୋ କଥା ଶେଷ । ଖଟି ଖଟି ମରିବ ମୁଁ ।

ବସନ୍ତ—ଯେମିତି ହେଲେ ତଡ଼ ତାକୁ ଆଗ ଦୁଆରୁ । ଯା ରେ ଯା' । ଏଠି ଭିଖ-ଫିକ ମିଳିବ ନାହିଁ ।

ଅନ୍ଧ—ଗଣ୍ଡିଏ ଦିଅ ବାବା !

ଫୁଲ—ଏଠି ନାଇଁ ବୋଲି କହିଲେ କଅଣ ଶୁଭିଲା ନାଇଁ ? ଆଖିତ କୋଉ ଜନ୍ମରୁ ଫୁଟି ଯାଇଛୁ, କାନରେ ବି କଅଣ ପଥର ପଡ଼ିଲାଣି ତୋ'ର ?

ଅନ୍ଧ—(ଗାଇ ଗାଇ ଚାଲିଯିବାକୁ ବାହାରିଲା । ପୂର୍ବଗୀତ ପୁଣି ଗାଇଲା)

ଫୁଲ—ଆରେ, ଗୀତ ଗାଉଚୁ କାହିଁକି ? କଅଣ ସେମିତି ଚାଲିଯାଇ ପାରୁନାହୁଁ ? ଭୁଲ ହ । (ଧରି ଟାଣି ନେଇ) ଚାଲ, ତୁ ଯେଉଁ ଗାଇ ଗାଇ ଯିବୁ ।

ବସନ୍ତ—(ଟିକିଏ ଦୂରକୁ ଯାଇ) ଇସ୍, କି ଜାତି ନାଇଁ କି ଜାତି—ତୁ ଛୁଇଁଲୁ ତାକୁ ?

ଫୁଲ—ଭାରିଗଲା ସେଇଠୁ ? ଏ ଅମଳରେ ଛୁଆଁ-ଛୁତ ଗୋଟେ କଅଣ ରେ ? ସବୁ ସମାନ । ମାଆ କେମିତି ବାପୁ ମଉସାଙ୍କୁ ଛୁଇଁଲେ ? ସେ ତ ଏମିତି ଦାଣ୍ଡରେ ବୁଲୁଥିଲେ, ବାପୁ ହୋଇ—କି ଜାତି ନାଇଁ କି ଜାତି ।

ବସନ୍ତ—ଆଉ କଅଣ ? ତାର ତ ପଇତା ଅଛି । ତୁ ଯା, ଗାଧୋଇ ଆ, ନଇଲେ ମୋତେ ଛୁଅଁ ନା ।

ଫୁଲ—ନିଶ୍ଚେ ଛୁଇଁବି ।

ବସନ୍ତ—ହଁ ନାଁ ? (ପଳେଇଲା)

ଫୁଲ—(ଗୋଡ଼େଇଲା)

---

## ତୃତୀୟ ଦୃଶ୍ୟ

[ ଶୋଭାର ବାଡ଼ି ବଗିଚା—ଶୋଭା ଫୁଲ ବଣ ଭିତରୁ ଫୁଲ ତୋଳି ତୋଳି ଆସୁଥିଲା । କେବେ କେବେ ଗୁଣୁ ଗୁଣୁ କରି ଗୀତ ଗାଉଥିଲା, ଦୁଇଟି ଗୋଲାପ ଫୁଲ ତୋଳିଙ୍କୁ ଧରି କହିଲା ]

ଶୋଭା—ବାଃ, ଭାରି ସୁନ୍ଦର ତ ! (ତୋଳି, ମନୋନିବେଶ କରି ଦେଖିଲା, ତାପରେ ହସ ହସ ମୁଖରେ ଏଣେ ତେଣେ ଗୁହିଁ କଅଣ ଖୋଜିଲା । ନ ପାଇ ନିଜ କାନରୁ ଖିଏ ସୁତା କାଢ଼ି ଫୁଲ ଦୁଇଟିକୁ ଏକାଠି କରି ବାନ୍ଧିବାକୁ ଆରମ୍ଭ କଲା, ଗାଇ ଗାଇ)

(ଗୀତ)

ଫୁଲ ରସିଆ ଫେରି ଯା' ନା
ଯା' ନା ଭ୍ରମର ଫୁଲ ବନେ,
ପ୍ରୀତି ଚନ୍ଦନ ଗନ୍ଧ—ପ୍ରେମ ଜରଜର ଚିତ୍ତ
ଭୁଲି ତୁ ଯା' ନା—ଧୂପ ଲଗନା
(ଫେରି) ଯା ନା ଭ୍ରମର କୁଞ୍ଜ ବନେ ॥୦॥
ତୋ ପରଶ ଝୁରି କରମ ଧିକ୍କାରେ
(ସଜନୀ) ନୟନୁ ନୀର ଝରାଏ
ନିଶି ଦିନ ଝୁରି ଯାଏ
(ଭ୍ରମର) ବିରହ ରାଗ ଶୁଣାଏ
ଭୁଲି ତୁ ଯା'ନା, ପ୍ରୀତି ଲଗନା
ଭୁଲନା ଭ୍ରମର ଫୁଲ ବନେ ॥୧॥

(ଅଶୋକ ବୋଧହୁଏ ସେଇ ବଗିଚ୍ଚ ଭିତରେ ପଛଆଡ଼େ କୋଉଠି ଥିଲା ଗୀତ ଶୁଣି ଉଠିଲା । ଗୋଟିଏ ଗଛର ଦୁଇ ଶାଖାରେ ହାତ ଦେଇ, ଗଛ ଆରପାଖରୁ ଉଦ୍‌ଗ୍ରୀବ ଭାବରେ ରହିଁ ରହିଲା—ଶୋଭାକୁ କମ୍ପା ଶୁଣୁଥିବା ଗୀତକୁ କହି ହେଉ ନାହିଁ, କିନ୍ତୁ ତାର ଦୃଷ୍ଟି ଅବଚଳ ଥିଲା)

ଶୋଭା—(ପୁଣି ଗାଇଲା ଗୀତ । ବେଳେ ବେଳେ ତାର ଅସାବଧାନତା ହେତୁରୁ ଗୋଟିଏ ଫୁଲ ତଳେ ପଡ଼ିଗଲାରୁ ଗୋଟେଇ ନେଇ ପୁଣି ବାନ୍ଧିବାର ଚେଷ୍ଟା କରେ, ଅଶୋକ ଶୁଣୁଥାଏ, ଦେଖୁଥାଏ । ଫୁଲ ଯୋଡ଼କ ବାନ୍ଧି ସାରି ଆନନ୍ଦରେ ଘଡ଼ିଏ ସୌନ୍ଦର୍ଯ୍ୟ ଉପଭୋଗ କଲା ଶୋଭା । ତା'ପର ଗାଇବାକୁ ଆରମ୍ଭ କରନ୍ତି—ତା'ର ପଛରୁ ଆସିଲେ ଫୁଲ ଓ ବସନ୍ତ । ଅଶୋକ ଏମାନଙ୍କୁ ଦେଖି ଚାଲିଗଲା ସେଠାରୁ । ଯିବାଟାରୁ ବୁଝାଗଲା ଯେମିତି ଇଚ୍ଛା ନ ଥିଲା ତାର ଯିବାକୁ ସେଠାରୁ । )

ବସନ୍ତ—(ଆଗରେ ତାର ଫୁଲ ଖୁବ୍ ସାବଧାନ ହୋଇ ଗୋଡ଼ ଚିପି ଚିପି ଆସି ପହଞ୍ଚିଲେ ଦେଖିଲା ଶୋଭାକୁ, ରହିଁ ରହିଲା । ଭାବିଲା ବୋଧହୁଏ, ସେ ମାଆଙ୍କୁ ଏମିତି ଭାବରେ ଆଉ କେବେ ଦେଖିନାହିଁ । ବସନ୍ତକୁ ଡାକି ତା' କାନ୍ଧରେ ହାତଦେଇ ଠାରି ମାଆଙ୍କୁ ଦେଖାଇ ଦେଲା ଓ ଚୁପ୍‌ହେବାକୁ ନିର୍ଦ୍ଦେଶ କଲା । ବସନ୍ତ ପେଲି ଦେଲା ଫୁଲକୁ ଟିକିଏ ଆଗଭର ହେବାକୁ ଆଉ ଆସ୍ତେ ଆସ୍ତେ କହିଲା) କହ ନାଁ ?

ଫୁଲ—(ତାକୁ ତାଡ଼ନା କରି 'ରହ' ବୋଲି ଠାରି ଦେଇ ଅବସର ଅପେକ୍ଷା କଲା । ବସନ୍ତ ମଝିରେ ମଝିରେ ତାଗଦା କରୁଥାଏ, ଅବଶେଷରେ ଫୁଲ ଶୋଭାର ନିକଟବର୍ତ୍ତୀ ହୋଇ ବଡ଼ ସଂକୋଚରେ ଡାକିଲା) ମାଆ ଟିଗା !

ଶୋଭା—(ଫେରି ରହିଁ) କଅଣ ରେ ଫୁଲ ?

ଫୁଲ—(ନୀରବ ରହିଲା, କଥାଟା କେମିତି ତାର ଅଗ ଜିଭପାଏ ଆସି ଫେରି ଯାଉଥାଏ)

ଶୋଭା—କଅଣ କହୁନୁ ? କ'ଣ ଭୋକ ହେଉଛି ? ଯାଆ ନାନୀକୁ କହିବୁ, ମାଆ କହିଲେ ମୋତେ ଖାଇବାକୁ ଦିଅ ।

(ମୁହଁ ଫେରାଇ ଫୁଲ ବସନ୍ତକୁ ଡାକିଲା)

ବସନ୍ତ—(ଫୁଲକୁ କହିବାକୁ ତାଡ଼ନା କଲା ।)

ଫୁଲ—(ଟିକିଏ ନୀରବ ରହି ପୁଣି କହିଲା । ) ମାଆ !

ଶୋଭା—ଆଉ କଅଣ ?

ଫୁଲ—ମୋର ଗୋଟିଏ ସାଙ୍ଗ ଆସିଛି ।

ଶୋଭା—କାହିଁ ?

ଫୁଲ—ବସନ୍ତ ! ଆସୁନାହୁଁ ।

ବସନ୍ତ—(ମନଟି ଥାଏ ଆସିବାକୁ ମାତ୍ର ସଂକୋଚରେ ଆସି ଶୋଭା ପାଖରେ ଠିଆହେଲା)

ଶୋଭା—(ବସନ୍ତକୁ ଭଲକରି ଦୃଷ୍ଟି ଦେଲା, ଫୁଲକୁ ପଚାରିଲା) ଏଇ ତୋର ସାଙ୍ଗ ?

ଫୁଲ—ହଁ, ସେ ବସନ୍ତ ।

ଶୋଭା—ହଉ, କୁଆଡ଼େ ଆସିଥିଲ ? ବୁଲି, ନାଁ ?

(ଦୁହେଁ ନୀରବ)

ଶୋଭା—କହିଲେ ସିନା ମୁଁ ଜାଣିବ । ନ କହିଲେ କେମିତି ତୋ ମନ କଥା ବୁଝିବ ?

ଫୁଲ—ମାଆ ଗୁରଣା ପଇସା ?

ଶୋଭା—ଆଚ୍ଛା ଦବା, ତୁମେ କଅଣ କରିବ କହନା ଆଗ ?

(ଫୁଲ ଓ ବସନ୍ତ କଥାଟା କହିବାକୁ ପରସ୍ପର ଠେଲାଠେଲି ହେଲେ )

ଶୋଭା—(ଟିକିଏ ଅପେକ୍ଷା କରି) ତୁ କହୁନୁ ବସନ୍ତ ? ତୁ କହ କଅଣ କରିବ ?

ବସନ୍ତ—ବାହାଘର ।

ଶୋଭା—(ବାହାଘର ନାଁ ଶୁଣି ଚମକି ଉଠିଲା ପରି) ବାହାଘର ?

ଫୁଲ—(ଟିକିଏ ସାହସ ପାଇ) ହଁ । (ବସନ୍ତକୁ ଠାରି) କନ୍ୟା, ଆଉ (ନିଜକୁ ଠାରି) ବର ।

ଶୋଭା—ଧ୍ୟତ୍, ତୁ ତ ମରଦ ସେ ତ ମରଦ ! ବର କନ୍ୟା ଗୋଟେ କଅଣ ହବ ରେ ?

ଫୁଲ—ହଁ ମା ! ତାର କନ୍ୟା ମୋର ବର । ଶାନ୍ତ ମାଉସୀ ଦେଇଛନ୍ତି ଗୋଟିଏ ବର । ଖୁବ୍ ସୁନ୍ଦର । ଦେଖିବ ?

(ଦୌଡ଼ିଗଲା ଆଣିବାକୁ)

ବସନ୍ତ—ମୋ କନ୍ୟାଟି ବ ଭରି ସୁନ୍ଦର ମା, ମୁଁ ଆଣେ । (ଚାଲିଗଲା)

ଶୋଭା—(ଭାବବା ପରି ରହିଲା ଟିକଏ, ନିଶ୍ୱାସ ମାରି) କୁଣ୍ଢେଇ ବାହାଘର ! ପ୍ରଭେଦ ଏତିକ ଯେ, ଆମେ ମନଷ ମଧ କୁଣ୍ଢେଇ ପାଳିଥିଲୁ । ଯାଙ୍କର କୁଣ୍ଢେଇ ମାଟିର, ସତରେ କୁଣ୍ଢେଇ ।

ଫୁଲ—(ଦୌଡ଼ି ଅସି) ଦେଇ ମା ମୋ ବର ।

ଶୋଭା—ତୋର କେମିତି, ଶାନ୍ତ ମାଉସୀର ପରି ?

ଫୁଲ—ହଁ, ଶାନ୍ତ ମାଉସୀର ବର ଯେ, ମୋ ପାଖରେ ଅଛି । ମୁଁ ତାକୁ ବାହା ଦେବ । ମୁଁ ତାର ବାବା ।

ଶୋଭା—ମଣିଷର ସିନା ବାହାଘର ହୁଏ । କୁଣ୍ଢେଇର କ ବାହାଘର ହେବରେ ?

ଫୁଲ—ହବନାଇଁ ? ହୁଏ ବୋଲିତ ବସନ୍ତ କହିଲା ।

ଶୋଭା—ସେ ଖେଳଘର ବାହା । ସେ ଗୋଟାଏ କଅଣ ?

ଫୁଲ—ହଁ ମା, ସେଇ ଖେଳଘର ବାହା, କେତେ ଲୋକ କରୁଛନ୍ତି ।

ଶୋଭା—କଏ କରୁଚ ?

ଫୁଲ—ବସନ୍ତ କହିଲା ତା'ର ପୁଅଟିଏ ହେବ, ଫେର୍ ଅଜା ବୋଲି ମୋତେ ଡାକିବ ।

ଶୋଭା—ହଁ, ତୋତେ ଛେନା ବୋଲି ଡାକିବ ! ପାଗଳ ! (ହସି) ତୁ କୋଉଠି ବାହାଘର ଦେଖିନୁ ନା ଆଗ ?

ଫୁଲ—ମୁଁ ? (ଭାବି) ନାଁ, କେଜାଣି ମନେ ନାହିଁ । ଆମର ଗୋଟେ ବାହାଘର କରୁ ନାଁ ମା ?

ଶୋଭା—ଏମିତି ମିଛୁ ମିଛୁକା ବାହାଘର ? କୁଣ୍ଢେଇ ବାହା ?

ଫୁଲ—ନାଇଁ ମା ସତରେ ।

ଶୋଭା—ସତରେ ? କଏ ବାହା ହବ ? ତୁ ବଡ଼ ହୁଅ ।

ଫୁଲ—ନାଁ ।

ଶୋଭା—ଆଉ ?

ଫୁଲ—ତେମେ ।

ଶୋଭା—(ହସି) ମୁଁ ? ମୋର ଫେର୍ ଗୋଟେ ବାହାଘର କଅଣ ରେ ଦୁଷ୍ଟ ?

ଫୁଲ—କାହିଁକି ? ଶାନ୍ତ ମାଉସୀର ଫେର୍ କେମିତି ହବ ?

ଶୋଭା—କଏ କହିଲା ?

ଫୁଲ—ଅଜା । ବାଜା ଯିବ, ବର ଆସିବ, ଭୋଜି ହବ । ଅଜା ମୋତେ ନୂଆ ଲୁଗା ଦେବେ କହିଛନ୍ତି ।

ଶୋଭା—ଶାନ୍ତ ମାଉସୀ ସୁନ୍ଦର, ଶାନ୍ତ ମାଉସୀର ବର ଅଛି, ଆସିବ ତାର ବାହାଘର ହବ ।

ଫୁଲ—ଉଁଃ, ତେମେ କଅଣ ଅସୁନ୍ଦର ? ଖାଲି ଗହଣା ପିନ୍ଧୁନା ବୋଲି ସିନା ! ପିନ୍ଧିଲେ ତ କେତେ ସୁନ୍ଦର ଦୁଶନ୍ତ ।

ଶୋଭା—ହୁଁ ?

ଫୁଲ—ହଁ ସତରେ ମା ଆ ! ଖାସା ମାନବ ।

ଶୋଭା—ଶାନ୍ତ ମାଉସି ଘରେ ସିନା ଅଜା ଅଛି ଯେ, ଶାନ୍ତ ମାଉସି ପାଇଁ ବର ଖୋଜି ଆଣିବ, ବାହାକରି ଦେବ । ମୋର କଏ ଅଛି ?

ଫୁଲ—କ ? ମୁଁ ବାହାକରି ଦେବ । ମୋର କଅଣ ବଳ ନାଇଁ ? ବାଜାବାଲାଙ୍କ ଘର ଦେଖିଛି ମାଆ, ଡାକ ଆଣିବ, ସବୁ କରିଦେବ ।

ଶୋଭା—ଆଉ ବର ?

ଫୁଲ—କ ? (ଭାବି) ଆମ ବାପୁ ମଉସାଙ୍କୁ ବର କରିବା, ସେ କଅଣ ଅସୁନ୍ଦର ?

ଶୋଭା—ଚୂପ୍ ଦୁଷ୍ଟ ! ସେ କେମିତି ମୋର ବର ହେବେ ? ଆଉ ମୋର କେହି ବର ହେବେ ନାହିଁ । ମୁଁ କୁଟୁଣୀଇ ବାହାଘର କରୁଛି ପିଲାଙ୍କନେ ।

ଫୁଲ—କଲେ କଅଣ ହେଲା ? ପିଲାଙ୍କନେ ସିନା ଠିକ ବରୁଚିଏ ! ସେ କାହିଁ ମା ?

ଶୋଭା—(ଆଖିରେ ଲୁହ ଆସିଲା)

ବସନ୍ତ—(ଦୌଡ଼ି ଅଣନିଶ୍ୱାସି ହୋଇ) ମୁଁ ଆଣିଛି, ଦେଖ, ହେଇଟି ମୋ କନିଆଁଟି ଖୁବ ସୁନ୍ଦର । ନୁହେଁ ?

ଶୋଭା—ହିଁ, ତୋ କନ୍ୟା ଯେମିତି ସୁନ୍ଦର, ତାର ବର ବ ସେମିତି ସୁନ୍ଦର । ଆଚ୍ଛା, ବାହାଘର କରିବା ।

ବସନ୍ତ—ବାଜା ବାଜିବ ନାଁ ?

ଶୋଭା—ବାଜା ବାଜିବ, ଖିର ପିଠା ହବ, ବନ୍ଧୁ ବାନ୍ଧବ ଆସିବେ, ଚାଲ ବେଳ ହେଲାଣି ।

ଫୁଲ—ଅଜାଙ୍କୁ ଡାକିବା, ଶାନ୍ତ ମାଉସି କ ଡାକିବା ।

ଶୋଭା—ହିଁ, ଚାଲ ଉତ୍ସବ ହବ, ଦର୍ଶନକୁ ଯିବା ପରୁ ? ସଞ୍ଜ ହେଲାଣି, ଅଜା ଆସିବେ ଏଇକ୍ଷଣେ ।

(ଚାଲିଗଲେ)

---

## ଚତୁର୍ଥ ଦୃଶ୍ୟ

[ବଡ଼ଦାଣ୍ଡ—ଦୁଇଜଣ ଲୋକ କଛି କଛି ଛୁଣ୍ଡାକନା ଧରି ପ୍ରବେଶ କଲେ ଟର ଟର ହୋଇ । ]

ଅନ୍ଧ—ବଡ଼େ ହରହରଙ୍କ ଯାତ୍ରୀରେ ଯବର ବଡ଼ଲୋକ ! ବେହିପୋ ସାହାଣ ମେଲଣ୍ଠାକର ଲୋକ ସାଙ୍ଗରେ ଆଣିତ—ଚଟାପଟ ତଆରି ହେଇପଡ଼ । ଆରେ, ସ୍ୱେ ବ ଜଗବନ୍ଧୁଙ୍କ ବରଦ ରେ ! ନୋହିଲେ ଅମକୁ ଦାନା ଯୁଟନ୍ତା କାହୁଁ ? ବାଟ ଜଗି ବସ, ଠିକଣା ବକତ ଏକା—ଆଉ କେହି ଭିକାରି ନାହାନ୍ତି । ତୁ ଆଉ ମୁଁ, ଯାହା ପାଇବା ଭଗ୍ନା ମଯ୍ନା ଅଧା ଅଧା, ବୁଝିଲୁ ?

କୋଢ଼ୀ—ଦେଖ, ବେଶଟା ଏମିତି ବନେଇବୁ, ଯେମିତି ଧରିହିଁ ନ ପଡ଼ୁ ।

ଅନ୍ଧ—ବେହିପୋ, ପର୍ବତ ଗିଳା ହନୁକୁ କେନ୍ଦୁମଞ୍ଜି ଚଖଉଛୁ ! ଆରେ ଭୁଲିଁ ଫୁଟା ଆମେ, କାହୁଁ ଅଇଲୁ ତ ନୁହେଁ । ବେଉଶା ତ ଏଇଆ, ହନବେଳେ ତ ଜଗନ୍ନାଥ ବଲ୍ଲଭ ଆଗରେ ବସେଁ, ଯାତ୍ରୀ ଏ ଧରି ପାରି ନାହାନ୍ତି ରେ ! ଆଉ ଏ ତ ଜହ୍ନପକ୍ଷ ରାତି; ମାରୁଥିଲେ ମହାପାପେ, ଗୃହିଁଥିଲେ ଜାଲକା ।

କୋଢ଼ୀ—ଆଉ କଥା ହେବାକୁ ବେଳ ନାହିଁ, ଧୂପ ବଢ଼ିଗଲା । ଚାଲ ଲାଗିବ ଯାତ୍ରୀ ଗଡ଼ବେ । ବସ୍ । ଜୟ ଜଗବନ୍ଧୁ !

(ଦୁଇଜଣ ଗୀତ ଗାଇ ବସି କନାପଟା ସଜାଡ଼ିଲେ)

( ଗୀତ )

ଜଗବନ୍ଧୁ ଭଲ ନାଟୁଆ, ଭବ ଦରିଆରେ ଲଗାଏ ନଆଁ ।୦।
ପୋକା କନ୍ଦ ଅଚାନ୍ଥା ସାରୁ, ସୁଖେ ଖାଏ ସେ ହଅଁ ଦାରୁ
ଭଲ ସେ ସୁଆର, ବାହାଦୁର ତାର
ଗୁଡ଼ ଦେଖା ନାହିଁ, ବନାଏ ମୁଆଁ ।୧।

କୋଢ଼ୀ—ତୋ ଅଖିରେ ଅନ୍ଧ ପୁଟୁଲିଟା ଭିଡ଼ିଦିଏ । ବେହିପୋ କାଳେ ଗୃହିଁବୁ, ଚହ୍ଳା ପଡ଼ିଯିବୁ ।

ଅନ୍ଧ—ଆରେ ତା ମାଆ ମରୁ । ବେହିପୋ ଓଲୁ, ସେମିତି ହେଲେ ମନରେ କାହାର ସନ୍ଦେହ ଆସିବ । ଦଶ ପନ୍ଦର ମିନଟ ଆଉ ଅଖି ବୁଜି ପାରିବ ନାହିଁ ଯେ, ବେହିପୋ କହୁଚ ଅନ୍ଧ ପୁଟୁଲୀ ଭିଡ଼ିବ । ଆଗ ତୋ ହାତ ଗୋଡ଼ରେ କନା ଭିଡ଼, ଆରେ ଅଲତା ଅଣିଚୁ ?

କୋଢ଼ୀ—(ଅଲତା ଦେଖାଇ ଦେଇ ପୁଣି ଗୀତ ଧରିଲା । ଦୁହେଁ ହାତ ଗୋଡ଼ରେ କନା ଗୁଡ଼ାଗୁଡ଼ି ହୋଇ ବସିଲେ । )

( ଗୀତ )

ବଣିଠାରୁ ଖଣ୍ଡିଙ୍କ ଯାଏ, ଶତାକଷା ଏଠି ସଭଏଁ,
ମଶା, ମୂଷା, ମାଛି, ମାହାଗ୍ର ମହନ୍ତ
ମାଙ୍କଡ଼ ପୋଷା ଏ ଦେଉଳ ଦୁଆ ।

( ଗୀତ ଶେଷ ବେଳକୁ ଶୋଭା ଓ ରାମବାବୁ ଆସୁଥିବାର ଦେଖି, କୋଢ଼ୀ ଅନ୍ଧକୁ ଚରଚର କରି କହିଲା)

କୋଢ଼ୀ—ଭୁନହ, ଭୁନହ, ବେହିପୋ ଯାତ୍ରୀ ଗଡ଼ଲେଣି ରେ । ଆଗେଇ ଯା, ଆଗେଇ ଯା, ବୋଲ ଧର ।
( ଅଣ୍ଡାଳିଲା ପରି ଯାଇ ଅନ୍ଧ ତାଙ୍କ ଆଗେ ଛିଡ଼ା ହେଲା ।)

ଅନ୍ଧ—ଅନ୍ଧକୁ କିଛି ମିଳୁ ମାଆ, ଦୁ'ଦିନ ହେଲା ପେଟ ଦାନା ଦେଖି ନାହିଁ । ମା' ଦଶୁନାହିଁ କିଛି, ଭଗବାନ ତମର ବଡ଼ତି କରିବେ ମାଆ, ଜଗବନ୍ଧୁ ପିଲା ବାଲକଙ୍କୁ ଗୁହିଁଥିବେ । ଅନ୍ଧକୁ କିଛି ମିଳିଯାଉ । (ଶୋଭା ଗୋଟିଏ ସୁକି ଦେଲେ)

ରାମ—ବାବା, ରାତ୍ର ଅଧରେ ବ ନସ୍ତାର ନାହିଁ ? ଅଜବ ସହର ପୁରୀ ।

ଅନ୍ଧ—ଜଗବନ୍ଧୁ ତମର ମଙ୍ଗଳ କରନ୍ତୁ ମାଆ, ପିଲା-ବାଲକ ଚିରଜୀବୀ ହୋଇ ଥାଆନ୍ତୁ ।
(ପଛେଇ ଆସି ଇଙ୍ଗିତରେ କୋଢ଼ୀକି ସୁକି ଦେଖାଇଲା ।)

କୋଢ଼ୀ—ମା', କୋଢ଼ୀଟା କେହି ନାହିଁ ମା', ହାତ ଗୋଡ଼ ଚଳୁ ନାହିଁ, ଉପାସ ପଡ଼ୁଛି, କିଛି ମିଳିଯାଉ ମାଆ ! (ଘୁସୁରି ଘୁସୁରି ଗଲା)
( ଶୋଭା ଓ ରାମବାବୁ ଆଗରେ ଗଲେ, କୋଢ଼ୀ ତାଙ୍କ ପଛେ ପଛେ ଯାଇ ) ମା', ମା', କିଛି କୋଢ଼ୀଟାକୁ ଦୟାକର ।
(ତାକ ତାକ ଘୁସୁରି ଘୁସୁରି ଗଲା ଓ ଶୋଭା ତାକୁ ଦୋଅଣୀଟେ ଫିଙ୍ଗିଦେଇ ଗୁଲିଗଲା ।)

ଅନ୍ଧ—କେତେ ରେ ବେହିପୋ କୁଢ଼ୀ ?

କୋଢ଼ୀ—କେତେ ଦେଖିବୁ । ମୋଟେ ତ ଦୋଅଣୀଟେ ! ଚିଲମକୁ ନଅଣ୍ଟ ।

ଅନ୍ଧ—ଆରେ ରଖ ତୋ ଚିଲମ । ଆଗେ ଅଣୀଟେ ଆଣ—ଭାଗ ମୋର । ଗୁଲିକ ଗୃଟ ହେବ, ବେହିପୋ ଚିଲମି, ଗ୍ଲେଟଲୋକ !

କୋଢ଼ୀ—ହଁ, ମୁହଁ ସମ୍ଭାଳ । ମତେ ଗ୍ଲେଟଲୋକ କହୁଛୁ । ଗୁଲିଆ ବେହିପୋ, ତୋ ଭାଗ ବେଳକୁ ଛଆର ? ମୋ ଭାଗ ବଖରା କର, ପକା ବେହିପୋ ଦୁଅଣୀ,—ଭଲ ଲୋକ ପିଲା ଯେବେ ।

ଅନ୍ଧ—କହ ବେହିପୋ ମାଲଚନ୍ଦକୁ ଗୁହିଁ । ମୁଁ ଭାଗ ବଖରା କଥା କହୁଛୁ ?

କୋଢ଼ୀ—ବେହିପୋ ହଲପି ! କହିଲୁ ଲୋକନାଥଙ୍କୁ ଗୁହିଁ, କହିବୁ ତୁ ? ଅଧା ଅଧା କଥା କହିବୁ ?

ଅନ୍ଧ—କୁଢ଼ୀ ବେହିପୋ, ରାତ୍ର ଅଧରେ—ପୁରନ୍ଧା ଘର ମୋର,—ଲୋକନାଥଙ୍କ ନାଆଁ ଧରୁଛୁ ? ବାଜେଇବଟି ଦୁ'ଟା · ·

କୋଢ଼ୀ—ହଁ, ହଁ, ବଜାନା, ବଜାନା, ଗୁରୁବାରଟା ଆଜ, ଯା ବେହିପୋ । ଭାଗ ଦେବ ନାହିଁ, କ ନେବ ନାହିଁ । କଅଣ କରିବୁ କର ।

( ପ୍ରସ୍ଥାନ )

ଅନ୍ଧ—( ଅନ୍ୟ ଦଗରେ ଯାଉ ଯାଉ ) ହଉ ଥା, ବେହିପୋ କାଲ ବଡ଼ଦାଣ୍ଡକୁ ଆ । ମୋ ରୋଜଗାର ଦନଟାଏ ମାଟିହେଲେ ହବ । ତତେ ନଷ୍ଟେ ଚିହ୍ନା ପକାଇ ଧରି ପକାଇ ଦେବ । ବେହିପୋ କେମିତି କୋଢ଼ୀ ହୋଇ ଜାଣୁ ଦେଖିବ—ଥା, ଥା ।

( ଗୁଲିଗଲା )

---

## ପଞ୍ଚମ ଦୃଶ୍ୟ

[ଶୋଭାର ଶୋଇବା ଘର, ଭିତରେ ନାନୀ ବସି ତରକାରୀ ବାଛୁଛି, ଶୋଭା ଦୁଆର ବନ୍ଧ ଉପରେ ଗୋଡ଼ ଦେଇ ଛିଡ଼ାହୋଇ କଥାବାର୍ତ୍ତା ହେଉଥିଲା ।]

ଶୋଭା—ଟିକିଏ ଟିକିଏ ହୋଇ ସବୁକଥା ଏବକୁ ଫୁଟୁଚି ନାନୀ ! ମର ଜନ୍ମହେଲା ପରି ଲାଗୁଛି ମୋତେ । ଏବେ ମୁଁ ବୁଝିଲି, ପ୍ରଭୁ ମୋତେ ସେତେବେଳେ କକାଙ୍କ କଥାରେ ରାଜି କରେଇଲେ ନାହିଁ କାହିଁକି ?

ନାନୀ—ଜାଣିବା ଶୁଣିବା ଲୋକ ସେ, ଏମିତି କେମିତି କଲେ ମ ଆଗ ? ଖବରଟେ ପଠେଇ, ନିଜେ ଯାଇ ନଇଲେ ଦେଖି ଶୁଣି କରିବା ତ ତାଙ୍କର ଉଚିତ୍ ଥିଲା ?

ଶୋଭା—ଗାଁ ଭିତରେ ଆମର ଘରଟି ଥିଲା ବଡ଼ ଘର, ମଫସଲ ଯାଗା, ଶାଗଖିଆକୁ ପେଜଖିଆ ଦେଖି ପାରେ ନାହିଁ । ଭାଇ ଭାଇରେ ଅପଡ଼ ! ଗାଁରେ ମୋର ଯେଉଁଠି ଆଗ ବାହାଘର ଲାଗିଥିଲା, ଭାଙ୍ଗି ଗଲା । ବାପା ବୋଉଙ୍କ କାଳ ବେଳକୁ ତ ମୁଁ ପିଲା, କକାମାନେ ତ ଭଗବାନ । କଥାରେ ଅଛି ପରା—ଭଗବାନ ଆପଣା ମାଆ ପେଟରେ ।

ନାନୀ—ନିଆଁ ପଡ଼ୁ କନା, ଭଗବାନ ବୋଲି ତେଣିକି ଏମିତି ଦୂର କରିଦେବେ ? ଗୋଟେ କଅଁଳା ମଣିଷଟାକୁ ମଲା ଦୂର କରି ··

ଶୋଭା—ଛାଡ଼ ସେ କଥା ନାନୀ !

ନାନୀ—କଅଣ ଛାଡ଼ ବୋଲି କହୁଚ ମାଆ ! ତମେ ତ ଭଲ ସହୁଚ ?

ଶୋଭା—ନ ସହି ଗତି କଅଣ ? ସମାଜ ପରା ?

ନାନୀ—ନିଆଁ ପଡ଼ିଯାଉ କନା ! ସେ ସମାଜ ମୁହଁରେ ନିଆଁ ପଡ଼ୁ ।

ଶୋଭା—ସେ ତ ଯାହା ହବାର ହେଇଛି ।

ନାନୀ—ନାଇଁ, ମତେ ତମ କକାଙ୍କ କଥା ଲାଗିଛି । ହଉ, ଭଗବାନ ଭଲ ମନ୍ଦ ଦୂରକଲେ, ଏ ପରା ପାଞ୍ଚ ପଚିଶରେ ଭଲଲୋକ ହୋଇଥିଲେ ? ଗାଁ ଗଣ୍ଡାରେ ନାଆଁ ପଡ଼ୁଥିଲା ? ସେ ଖବରଟା ତଥ୍ୟକରି ବୁଝନ୍ତେ ନାଇଁ ?

ଶୋଭା—ବୁଝିବେ କଅଣ ମ, ବର ଘର ଠିକଣା କରି ମୋତେ ପରା ଆଉ ଗୋଟେ ବାହାଦବାକୁ ବସିଥିଲେ ? ଧର୍ମ ସିନା ରଖିଲା ମୋତେ ! ସେଇଥି ପାଇଁ ତାଙ୍କର ମୋର ଅପଡ଼ ଯାଏ ଗଲା ।

ନାନୀ—ତାଙ୍କର ଫେର୍ ହେଲା କଅଣ ?

ଶୋଭା—କିଏ କେତେ କଥା କହୁଛନ୍ତି, ପିଲାଝିଲା ତ ନ ଥିଲେ, ଓକିଲ ମୋହରିର ହୋଇ କେତେ ଘର ଯେ ବୁଡ଼ାଇଛନ୍ତି ତାର କି ଠିକଣା ? ଲୋଭ ବୋଇଲେ ତ ସରିତ ତାଙ୍କଠୁ ! କିଏ କହୁଛି ଅନ୍ଧ ହୋଇ ବୁଲୁଛନ୍ତି, କିଏ କହୁଛି ରୋଗରେ ଗଲେ,···ମୁଁ ଆଉ ସେଇଦିନୁ କିଛି ଖବର ଜାଣିନାହିଁ ।

ନାନୀ—ଜାଣିବା ଦର୍କାର ନାହିଁ,—ଏଭଳି ଉପକାରିଆ ଲୋକର ଖବର ଅନ୍ତର ।

ଶୋଭା—ତେମେ ଟିକିଏ ଅଳ ସଜ ଦେଖି ପଚାରି ବୁଝିବ—ସେତିକି ଖାଲି ଜାଣିବାକୁ ମୋର ବାକି ।

ନାନୀ—ବୁଝିବି ନାହିଁ ? ଜାଣିଥିଲେ ତ କୋଉକାଳୁ କଥାଟା ମୁଁ ବୁଝି ସାରନ୍ତିଣି । ସେ ଫଟ ସଙ୍ଗେ କଅଣ ବରାବର ମିଶିଯାଉଛି ?

(ଭିତରୁ ଅଶୋକ ଗଳା ଖଙ୍କାରିବା)

ଶୋଭା—(ଓଢ଼ଣା ଟାଣିବା)

ନାନୀ—ହେଇଟି ବାପୁବାବୁ ଆଇଲେଣି ।

ଶୋଭା—ତୁମେ ସବୁ ବୁଝି, କହିବ । ମୁଁ ଯାଉଛି ।

(ପ୍ରସ୍ଥାନ)

ନାନୀ—ଏ କଥା ପଚାରିବାକୁ ଅଛି ? ତୁମେ ଯା ।

(ଅଶୋକ ପ୍ରବେଶ)

ନାନୀ—ହେଇଟି ପାଣି । ହାତ ଧୁଅ ।

ଅଶୋକ—ହାତ ଧୋଇଛି ତ !
ନାମି—ତେବେ ଖାଇ ବସ ।
ଅଶୋକ—ହଁ । (ଥରେ ଅଧେ ଖାଇ କଅଣ ଭାବପାର ରହିଗଲେ )
ନାମି—କଅଣ, ଭଲ ହୋଇନାହିଁ ?
ଅଶୋକ—କଅଣ ? ନାଁ ସବୁ ଭଲ ହୋଇଛି ତ ।
ନାମି—ଆଉ ବସି ରହିଲ ଯେ ? କଅଣ ସବୁବେଳେ ଭାବୁଛ ? ଆଗ୍ର ବାପୁବାବୁ ! ଗୋଟିଏ କଥା ପଚାରନ୍ତି ?
ଅଶୋକ—ଉଁ ?
ନାମି—ତମର ମିଳିମିଳି କଅଣ ? ନାଆଁ କଅଣ ତାଙ୍କରସବୁ ?
ଅଶୋକ—(ହସି ଦେଇ ଖାଇ )
ନାମି—ହସିଦେଲ ଯେ ? ଅଛନ୍ତି ତେବେ, ନାଁ ?
ଅଶୋକ—(ମୁଣ୍ଡ ହଲାଇ ନାହିଁ କଲା)
ନାମି—ନାଇଁ ? ଆଉ ବୋହୂ ?
ଅଶୋକ—(ଭାବଲା କଅଣ)
ନାମି—ବାହାଘର କଅଣ ହୋଇନି ?
ଅଶୋକ—(ଉତ୍ତର ଦେଲେ ନାହିଁ)
ନାମି—କହୁନା କହୁ, ହୋଇନି ତେବେ, ନାଁ ?
ଅଶୋକ—ନାଁ ନାଁ, ହୋଇଛି ତ ।
ନାମି—ଆଉ, ଏମିତି ପାଗଳ ହେଲ କାହିଁକି ? ଆହା ! କେ କସମର୍ଥ ଭେଣ୍ଡାପିଲା ! ଆଜ କେତେ ସୁଖରେ ଘରଦ୍ୱାର କରୁ ଥାଆନ୍ତ ! ବୋହୂ, ପିଲାଟି କଅଣ ହଉଥିବ କି, ତମର ଏ ବାପୁପଣିଆ ଦେଖି ! ବୋହୂ କଅଣ ବାପଘରେ )
ଅଶୋକ—(ଉପରକୁ ଠାଉଦେଲେ)
ନାମି—ଆହା ! ସେଇଥିପାଇଁକି ଘରଦ୍ୱାର ଛାଡ଼ି···
ଅଶୋକ—(ପାଣି ପିଇଲା)
ନାମି—ଏ କଅଣ, ଆଉ ଖାଇବ ନାହିଁ କି ?
ଅଶୋକ—ନାଁ !
ନାମି—ଭାତ ଗୁଡ଼ଗୁଣ୍ଡା ଖାଇନା, ବସ ବସ, ମୋ ଗଣଟି ଆଉ ଦ ଗୁଣ୍ଡା ଖା । ଭୁଜଣ କଅଣ ଅସୁଆଦ ହୋଇଛି ?
ଅଶୋକ—ନା ।
ନାମି—ତେବେ ଖାଇବ ନାହିଁ କାହିଁକି ? ଏମିତି ହେଲେ ଦେହ ତମର କଅଣ ହବ କହିଲ ? ବସ, ଆଉ ଗୁଡ଼ଗୁଣ୍ଡା ଖା ।
ଅଶୋକ—ଇଛା ନାହିଁ । (ଗୁଣ୍ଡାଏ ଖାଇଲେ)
ନାମି—ହଁ, ଭଲ ମନେ ପଡ଼ିଲା, ପଚାରିବ ପଚାରିବ ହୁଏଁ; ଆଉ ମନେ ପଡ଼େ ନାହିଁ । ତମର ସତ ନାଆଁ କଅଣଟି ବାପୁବାବୁ !
ଅଶୋକ—ବାପୁ ପରା ।
ନାମି—ସମସ୍ତେ ସିନା ଡାକୁଛନ୍ତି । ତମର କଅଣ ଏଇ ନାଁ ?
ଅଶୋକ—ଆଉ କଅଣ ?
ନାମି—ସେ କମିତି କଥା ? ମୋ ପୁଅକୁ ସମସ୍ତେ ଏବେ ଟୁନିଆ ବୋଲି ଡାକୁଛନ୍ତି—ହେଲେ ତା ନାଆଁ ଅଛି ନାଁ—ବନମାଳୀ ବୋଲି ? ସେମିତି ତମର ତ ଥିବ ନିଶ୍ଚେ ।
ଅଶୋକ—ମୋର ମନେ ନାଇଁ ତ ଆଉ କିଛି ନାଆଁ ?
ନାମି—ମିଛ କହୁଛ । ନାଆଁ ଟା ମନେ ନ ଥାଏ କାହାର ଆଗ କହିଲ ?
ଅଶୋକ—(ନୀରବ)
ନାମି—ଠିକ୍ ତମର ପରି ଗୋଟିଏ ଲୋକଙ୍କୁ ଦେଖିଥିଲି ଯେ, ତା ନାଆଁ···
ଅଶୋକ—କୋଉଠି ?
ନାମି—ଆମର ଏ ମାଆଙ୍କ ଗାଆଁଠି । ସେତେବେଳକୁ ସେ ପିଲା । ଆଜକୁ କେଜାଣି କୋଡ଼ିଏ ବର୍ଷ ହବ । ତାକୁ ଅଶୋକ ବୋଲି ସମସ୍ତେ ଡାକୁଥିଲେ ।
(ଅଶୋକ ହାତରୁ ଗିଲାସ ପଡ଼ିଗଲା)
ନାମି—ଆହା ! ପଡ଼ିଗଲା ?
ଅଶୋକ—ନାମି !

ଫୁଲ—(ଦଉଡ଼ି ଆସି) ନାନା ! ମାଆ କାହାନ୍ତି ? ଓହଳି ପଡ଼ିଲା ନାନା ଉପରେ ।

ନାନା—ଓଃ ! (ବିରକ୍ତ ହୋଇ) ବ୍ରାହ୍ମଣ ଘର ପିଲା । ଏଇଟା ଏଡ଼ିଟାଏ ହେଲଣି, ପାଠ ନାଇଁକି ଶାଠ ନାଇଁ ! ଆଚ୍ଛା ଗେଲବସର କଲେ ଏଇଟାକୁ ମାଆ ! ଅସି ଝୁମ୍ କରି ପଡ଼ୁଛି, ଏଇନେ ପଡ଼ିଯାଇ ଥାଆନ୍ତି ? କଅଣ ହେଇ ଥାଆନ୍ତା ?

ଫୁଲ—(ଗୁଡ଼ିଦେଇ) କହ ମ, ମାଆ କାହାନ୍ତି ?

ନାନା—ଆରେ ମାଆ ତାଙ୍କ ଘରେ ଥିବେ ନା, ମୋତେ ପଚାରୁଚୁ ଯେ ମୁଁ ଦେଖିବି କେମିତି ? ମୁଁ ପରା ଖଦାଶାଳେ ଅଛି, ଦୁଶୁନାଇଁ ? ମାଆଙ୍କୁ ମୁଁ ଦେଖିନାଇଁ, ଯା ଉଠ୍ । କାହିଁକି ଖୋଜା ପଡ଼ୁଛି ? କଅଣ ପେଟ ଶୀତଳ ହୋଇନାଇଁ ? ମାଆଙ୍କ ଠେଇଁ ଆଉ କଅଣ କାମ ?

ଫୁଲ—ହଁ, ଗୋଟେ କାମ ଅଛି । ବାହାଘର ହଉଚି ପରା ?

ଅଶୋକ—(ଏତିକି ଶୁଣି ଉଠି ଚାଲିଗଲା)

ନାନା—କି ବାହାଘର ? କାହାର ? ତୋର ?

ଫୁଲ—ଉଁ ? (ପଳେଇଲା)

ନାନା—ମଲା ଯା' ପ୍ରେ କେତେବେଳୁ ଉଠି ଗଲେଣି, ବାପୁବାବୁ ! (ନୋଟା ନେଇ) ମଲା ପାଣି ତ ନେଇ ନାହାନ୍ତି କଅଣ !

(ଉଠିଗଲା)

---

## ଷଷ୍ଠ ଦୃଶ୍ୟ

[ ପୁଷର ଗୋଟେ ଗଳି ରାସ୍ତା—ଦାମୀ ଓ ଉମା ଦୁହେଁ କାନ୍ଧରେ ହାତ ପକାପକି ହୋଇ ଆସୁଛନ୍ତି]

ଦାମୀ—ଆରେ, ବସନ୍ତର କପାଳ ମ, ଖିରି ହାଣ୍ଡିରେ ଗୋଡ଼ ପଡ଼ୁଛି ।

ଉମା—କୋଡ଼ିଏ ଟଙ୍କାର ଆଗ ମାହାର୍ଦ ବରାଦଟି !

ଦାମୀ—ବେହିପୋ, ଝଡ଼ା ମିଛୁଆ ଟେ ! କୁଆଟେ ଉଡ଼ିଗଲେ ଛୁଆଟେ କହିବୁ ।

ଉମା—ଆଇଲୁ ପରୁଶିବା । ମୁଁ ମିଛୁଆ ? ଆମ ସାଇରେ ବରାଦଟି ? ସୁଆର ବାଆଜୀ ମହାପାତ୍ର ନେଇଛି, କାଲି ଦହିପହର ଧୂପକୁ ପରା ସବୁ ସାମଗ୍ରୀ ବରାଦ । ଛେନାଚାଡ଼ଆ, ଅମାଲୁ, ଝିଲି ମହୁର, ବେଶର, ପିଠା, ଗୋଟି ବାଇଗଣ···ହଟରକ ରକମ ।

ଦାମୀ—ବାକ, ବାଆଜୀ ମହାନ୍ତ ନେଲା ଯେ, ଗୁେରଟା, ବେହିପୋ ଅଧେ ମାରିନବ । ଭଲ ରକମ କରିବ ନାହିଁ, କାଳଆ ସୁଆର ନେଇଥାଆନ୍ତା କି···

ଉମା—ହଁ, ସେ କଥା ସତ ।

ଦାମୀ—ଫୁଲର ଖାଉଦାଣୀ ନୋଇଲେ ମନଷ ଭାରି ଭଲ, ଗୋଟେ କୁଣ୍ଢେଇ ବାହାଘର ନା ଆଉ କଣ ? ଖିଆ ପିଆ, ଫୁଲ ପଣୁସିଆ, ବାହାଘରଟାକର ଆୟୋଜନ !

ଉମା—ବସନ୍ତ ମତେ ଡାକୁଛି । ତତେ ?

ଦାମୀ—ମୁଁ ପରା ବରଯାତ୍ରୀ, ନନା ଆମ ଖାଉଦାଣି ଘରର ଫୁଲ ଚଢ଼ାନ୍ତି ଦେଉଳରେ । ମୁଁ ବର ବେ, ତୁ କନିଆଁ । ବେହିପୋ ଓଢ଼ଣା ପକା—

(ଚଦର ମୁଣ୍ଡରେ ଟାଣି ଦେଲା)

ଉମା—ବଜେଇବ ଯେ ବେହିପୋକୁ । (ଟାଣିଧରି)

(ବାହାଘର ବାଜା ବାଜିଲା)

ଦାମୀ—ହେଇ ରେ ଉମା ! ଚାଲ ଯିବା, ବାଜା ବାଜୁଛି ।

ଉମା—ଆରେ ବଡ଼ ମୁଗଯାଇ ରଗଡ଼ା ମ । ଆଜି ମଙ୍ଗନ । ଯିବା ?

ଦାମୀ—ମୁଁ ଖଣ୍ଡେ ଲୁଗା ପିନ୍ଧି ଆସେଁ ।

ଉମା—ଏବେ କଅଣ ତୁ ଲଙ୍ଗଳା ହୋଇଛୁ ? ଆ, ସେଇମିତି ଯିବାନାଇଁ ଯେ !

ଦାମୀ—ନଇଲେ ଗାମୁଛାଟାଏ ଆଣେ । ଟିକିଏ ଏଇଠି ଥାଆ ।

( ଚାଲିଗଲେ )

ଉମା—ବେଗେ ଆସିବୁ ଟି ? ନଇଲେ ବେହ୍ବପା ଦେଖିବୁ ଫେର୍ ।

ଅନ୍ଧ—( ଡେଣ୍ଡୁ ଗାଇ ଗାଇ ଆସି ) ହୋ ଦାତା କଏ ଯାଉଚ ? ଅନ୍ଧକୁ ଗୋଟିଏ ପଇସା ଦଅ ।

ଉମା—କଅଣ ରେ ବେହ୍ବପୋ ଅନ୍ଧ !

( ଅନ୍ଧ ଛୁଡ଼ା ହେଲା ଉମା ପାଖେ )

ଅନ୍ଧ—ପଇସାଟିଏ ବାପା ! କିଛି ଖାଇ ନାହିଁ ।

ଉମା—ବେହ୍ବପୋ ଛକକୁ ଯାଉନୁ । ଯା, କୋହ୍ବଲେ ଦୋଳମୁଣ୍ଡିରେ ବାହାଘର ହଉଚ । ଯା ।

ଅନ୍ଧ – କାହା ବାହାଘର ବାପା ?

ଉମା—କନକପୁର ଜମିଦାର ଝିଅ ଘର ।

ଅନ୍ଧ—ସେ କଅଣ ଏଇଠି ?

ଉମା—ଏଠି ନଇଲେ ଦୋଳମୁଣ୍ଡିରେ ତ ! ଗୃହ ଆଡ଼େ ବୁଲୁଚୁ । ଆଉ ଦୋଳମୁଣ୍ଡି ଯାଇ ପାରିବୁ ନାହିଁ ?

ଅନ୍ଧ—ନାହିଁ ଯିବ ଯେ ।

ଉମା—ଯିବୁ ତ ଆଉ କଅଣ ? ଯା ।

ଅନ୍ଧ—ନାହିଁ ବାପା, ମୁଁ ଶୁଣୁଥିଲି ସେ ବିଧବା । ତାର ଆଉ ବାହାଘର କଅଣ ?

ଉମା—ଆରେ, କୁଣ୍ଢେଇ ବାହାଘର । ସେ କଅଣ ଆଉ ବାହା ହଉଚ ? ତାର ଯୋଉ ପିଲାଟି ପାଳୁଛୁ, ତା'ର ସବୁ ନାଚ ।

ଅନ୍ଧ—ବାପା, ସେଇ ସାଇରେ ଆଉ ଜଣକ ଘର ତମେ ଜାଣିଚ ?

ଉମା—କାହା ଘର ? ( ଦାମୀ ପହଞ୍ଚିଲା )

ଦାମୀ—କଅଣ କରେ ?

ଉମା—ଏଇ ଅନ୍ଧ କାହା ଘର କଥା ପଚାରୁଛୁ ।

ଦାମୀ—ମୋତେ ପଚାର, ମୋତେ ପଚାର । ସେଇଟା କଅଣ କହିବ—କାଲିକାର ପିଲାଟା !

ଅନ୍ଧ—ମାଗୁଣି ମହାପାତ୍ରଙ୍କ ଘର । ଦୋଳମୁଣ୍ଡେଇରେ, ଜାଣିଚ ?

ଦାମୀ—ସେଇ ସାଇରେ ମାଗୁଣି ମହାପାତ୍ର ?

( ଭାବିଲା )

ଅନ୍ଧ—ଓକିଲ ମୋହରିର ଥିଲା ?

ଉମା—ଆରେ ହଁ ହଁ, ମୁଁ ଶୁଣିଚ, ଶଳା ସ୍ଲେଠା । ସବୁଗିଲା କୁଳବୁଡ଼ା ବେହ୍ବପୋ ! କେତେ ଘର ବୁଡ଼େଇଚ ସେ । ତାର ଆଉ କିଛି ନାହିଁ । ସେ ଘର ଏବେ ଇସ୍ପାୟାର ଗୋଦାମ୍ ହେଇଚ । ଏବେ ସେ ବେହ୍ବପୋ ଅନ୍ଧ କ କୋଡ଼ି ହୋଇ କୋଉଠି ଭିକ ମାଗୁଛୁ । ସକାଳୁ ବେହ୍ବପୋ ତା ନାଆଁ ପଡ଼ିଲଣି, ରାମ୍ ରାମ୍ ।

ଅନ୍ଧ—ସିଧା ଯିବ ନାଁ ? ( ଚାଲିଗଲା )

ଦାମୀ—ହଁ ହଁ ସିଧା, ତୋ ନାକ ସଳଖା । ବେହ୍ବପୋ ଘଣ୍ଟେ ହେଲା ବକର ବକର ଲଗେଇଲଣି ।

ଉମା—ହଁ, ତୁ ବେହ୍ବପୋ କଅଣ ଭଲା ? ତୁ ତ ଆଗେ ଗ୍ଲାକ ଚକଣ ହେଇ, ଏମାର ଝିଲଣ ଗୋଟି ପିନ୍ଧି ଦେହରେ ବେଶହୋଇ, ମାଙ୍ଗପାର, ମାଠିଣି ପଟକେଇ, ନକଠକପର ଆସୁ ଆସୁ ବେହ୍ବପୋ କଣ୍ଢିଆ ତମ୍ବା ଉଆଇଲୁଣି ।

ଦାମୀ— (ବିଧାଏ ମାରି ) ଚାଲ୍ ବେ ।

( ଦୁହେଁ ପ୍ରସ୍ଥାନ )

---

## ସପ୍ତମ ଦୃଶ୍ୟ

[ ରାମବାବୁଙ୍କ ଘର—ରାମବାବୁ ବସିଥିଲେ ଖଟରେ—ଶାନ୍ତ ବସି ଛି ତାଙ୍କ ମଥା ଉପରେ ]

ରାମ—ଆହା, ଥାଉ, ଥାଉ । ତୋ'ର ତ ନଜର ଦେହ ଯେ—ବାର ଦିନେ ତେର ରୋଗ । ସେତିକ ଥାଉ, ହାତ ବଥା କରିବଣି ତୋର, ଛାଡ଼ ଛାଡ଼ ।

ଶାନ୍ତ—କହିଲ ନାହିଁ ବାପା, ତମର ଝିଅ କାହିଁ ?

ରାମ—ଝିଅ କାହିଁ ? ତୁ ପରା ? ଆଉ ମୋର କଏ ଅଛି ? ତୋ'ର କଥା ଯେ । ତୁ ଏବେ କଅଣ କହୁଚୁ,

କହୁଥିଲୁ ? ମୁଁ ଏକପ୍ରକାର ଯବାବ ଦେଇ ଦେଇଛୁ । ଘର ଭଲ, ବର ଭଲ ।

ଶାନ୍ତ—ଜାଣିଲି ଯେ, ସେଥିପାଇଁ ସେଦିନ ଖାଇଲା ବେଳେ ମୋତେ ଚଢ଼ିବା କଥା କହୁଥିଲ, ନାଁ ?

ରାମ—ଆଲୋ ମା ! ଆଉ କଅଣ ଝିଅ ବାପଘରେ ରହେ ସବୁଦିନେ ?

ଶାନ୍ତ—ବାବା ! ତମକୁ ଦେଖାଶୁଣା କରିବ କିଏ ଏ ବୟସରେ ?

ରାମ—ଆଉ କିଏ ? ଜଗବନ୍ଧୁ । ପାରୁଥିଲା ତକ ମୁଠାଏ ଖାଇବି । ପଡ଼ିଗଲେ ଗଲି । ତୁ ଯେବେ ଖବର ପାଇବୁ ମା, ମଲାବେଳକୁ ହେଲେ ଟିକିଏ ବୁଢ଼ାଟାକୁ ଦେଖିବୁ ।

ଶାନ୍ତ—ବାବା, ପାରିବି ନାହିଁ । ଅନେକ ଦିନୁ ମୁଁ ତମ ମତଲବଟା ବୁଝିଲିଣି ଯେ, ଯାହା ନ ହବ ସେଥିରେ କାହିଁକି ମାତିଛ ?

ରାମ—ନ ହେବ ? କାହିଁକି ନ ହେବ ? କହିଲି ପରା ଫସାର କଥା ସେଇଟା !

ଶାନ୍ତ—ମୁଁ କଅଣ ଫସାରରେ ଅଛି ବାବା ? ମୋ କଥା ପରା ଫସାରୁ ବାହାର ।

ରାମ—ସେ କି କଥା ? ମୁଁ ସବୁ ଠିକ କରି ସାରିଛି । ତୁ ନାହିଁ କଲେ କେମିତି ହବ, କହିଲୁ ମା ?

ଶାନ୍ତ—ତମର ଏଇ କଥାଟା ମୁଁ ରଖି ପାରିବି ନାହିଁ । ମୋତେ କ୍ଷମା ଦିଅ ।

( ଗୋଡ଼ଧରି ପକାଇଲା )

ରାମ—( ଉଠାଇ ) ଆହା, ତୁ କଅଣ ବାୟାଣୀ ହେଲୁ ? କାନ୍ଦୁଛୁ ? ଛି, ଛି, ଛି, !

ଫୁଲ—( ଦୌଡ଼ି ଆସି ଧଇଁସଇଁ ହୋଇ) ବାଃ, ତେଣେ କନିଆଁ ସଜହୋଇ ସାରିଲଣି, ମଠିଆ ବୁଢ଼ା ! ଆସ, ତମେ ଗଲେ ପରା ବାହାଘର ହବ ?

(ଶାନ୍ତ ଗୁଳିଗଲା)

ରାମ—ତେମେ ବାହାଘର କରୁଥା' । ମୁଁ ଯାଉନାହିଁ ?

ଫୁଲ—ବାଜା ତମକୁ ଶୁଭୁନାହିଁ କି ମ ? ( କାନେଇଁ ) ହେଉଛି କାହିଁ । ଅଜା, କାଲି ହେଲାଣି କି ?

ରାମ—ଆରେ ଫୁଲ, ମୁଁ ଫେର୍ ବେଶ ହେଇ କରି ଯିବି ନାଁ ?

ଫୁଲ—ପୁରୋହିତ କଅଣ ବେଶ ହୁଅନ୍ତି ?

ରାମ—ମୁଁ କଅଣ ପୁରୋହିତ ?

ଫୁଲ—ମାଆ କହିଲେ, ଏ ବାହାଘରେ ପରା ତୁମେ ପୁରୋହିତ ହବ ?

ରାମ—ଲୁଗା ?

ଫୁଲ—ଅଛି, ତମ ପାଇଁ ଲୁଗା ହେଇଚ, ମାଉସୀ ପାଇଁ ହେଇଚ ।

ରାମ—ତୋ ମାଉସୀ କଅଣ ଯିବ କି ?

ଫୁଲ—ହଁଃ, ବୁଢ଼ା ଏକା ସିଆଣିଆ ! ମାଉସୀ ଯିବେ ନାହିଁ ? ବାହାଘର କେମିତି ହବ ? ମୁଁ ଡାକି ଆଣେ । ( ଦଉଡ଼ିଗଲା )

ରାମ—ହଁ ଯା, ମାଉସୀକୁ କହିବୁ, ଲୁଗାପଟା ପିନ୍ଧି ଆସିବ । ଯା

ଫୁଲ—( ଯାଉ ଯାଉ) ତେମେ ବେଗେ ପିନ୍ଧ ।

ରାମ—( ଭାବିତ ହେଲେ ବଡ଼,—ଶାନ୍ତଠୁ ଏମିତି କଥା ଶୁଣି ଦୀର୍ଘ ନିଃଶ୍ୱାସ ମାରି, ଦେଖିଲେ ଚାଙ୍କ ଚିଠେଖଣ୍ଡି । ଖୋଲୁ ଖୋଲୁ, ଆଙ୍ଗୁଠି ଗଣି କହିଲେ) ଦିନ କୋଡ଼ିଏ—ପନ୍ଦର ଦିନ ମୋଟେ ସମସ୍ତ ନବନ୍ଧକୁ । ଏ ବାୟାଣୀଟା ଯିଦ୍ ଧରି ବସୁଚ (ଦୀର୍ଘ ଶ୍ୱାସ ) ହଁଃ, ( ଚିଠିଟା ଖୋଲି ଦେଖିଲେ ଆଉ ଖଣ୍ଡେ ଚିଠି ତଳେ ପଡ଼ିଗଲା) ଆରେ ଏଇଟା ଫେର୍ କଅଣ ? ( ଗୋଟାଇ ଆଣି ପଢ଼ିଲେ ) "ଈଶ୍ୱର ସାକ୍ଷରେ ମୁଁ ବିବାହିତ ।" ଶାନ୍ତ ବିବାହିତା ! କିଏ ? କାହାକୁ ? ଅଶୋକକୁ ? ଅଶୋକ ଶାନ୍ତକୁ ଶ୍ରଦ୍ଧା କରିଥିଲା, କିନ୍ତୁ ଶାନ୍ତି ପ୍ରତି ସନ୍ଦେହ ତ ଅସମ୍ଭବ । ( ପୁଣି ଚିଠି ପଢ଼ିଲେ ) ଜୀବନରେ ସ୍ୱାମୀସ୍ପର୍ଶ ନ କରିଥିଲେ ମଧ୍ୟ ମୁଁ ଧର୍ମ

ସାକ୍ଷରେ ବିବାହିତା । ( ଦୁଇଥର କରି ପଢ଼ିଲେ ଶଠିଟିକି ) ସ୍ୱାର ଅର୍ଥ ? ( ଭାବିଲେ ) କଏ ହୋଇପାରେ ତେବେ ? ଅଶୋକ ଛଡ଼ା ଶାନ୍ତି ସାଙ୍ଗରେ ଆଉ କାହାର କିଛି ସମ୍ବନ୍ଧ, ସମ୍ପର୍କ, ଭାବଲାଭ ନ ଥିଲା—ଏକଥା ଜଣାଶୁଣା । ଧର୍ମ ସାକ୍ଷରେ କଅଣ ତେବେ ସେ ଅଶୋକକୁ···ନାଃ, ଅଶୋକ ବ୍ରାହ୍ମଣ ( ଭାବି ) ପତ୍ନୀର ଦେଲେ ତ ସନ୍ଦେହ ଯିବ । ( ହଠାତ୍ ଉଠି କିଛିବାଟ ଯାଇ ସେମିତି ଶଠିଟା ଧରି ଫେରି ଆସି ବସି ପଡ଼ିଲେ ଖଟ ଉପରେ )

ଫୁଲ—( ଫେରି ଆସି ) ଦେଖିଲ ତ ! ଅଳସୁଆ ଅଜା ପରି ? ମୁଁ କହୁନାହିଁ !

ରାମ—( ଧ୍ୟାନ ଭାଙ୍ଗିଗଲା ପରି ) ଏଁ ?

ଫୁଲ—ଯିବା ପରା ?

ରାମ—ହଁ ଯିବା ।

ଫୁଲ—ଆଉ କେମିତି ଯିବା ? ଲୁଗା ପିନ୍ଧିଲଣି ?

ରାମ—ମୁଁ ପିନ୍ଧୁଚି । ମୋର କେତେ ଘଡ଼ି ? ତୋ ମାଉସୀ ?

ଫୁଲ—( ଶାନ୍ତ ତେଣୁ ଆସୁଥିବାର ଦେଖାଇଦେଇ ଫୁଲ ) ମୋ ମାଉସୀ କଅଣ ତମରିପରି ଅଳସୁଆ ?

ଶାନ୍ତ—( ରାମବାବୁଙ୍କ ହାତେ ଶଠି ଦେଖି ଶଙ୍କିଗଲା )

ରାମ—ଯିବା ମାଆ ?

ଶାନ୍ତ—ହଁ । ( ମୁହଁ ପୋତି )

ରାମ—ଆଲୋ ମା, ଏ ତୋ ଶଠି ?

ଶାନ୍ତ—( ଶୁହିଁ ମୁହଁ ତଳକୁ କଲା )

ରାମ—କିନ୍ତୁ, ମୁଁ ତ ସେତେ ଦୂର ଜାଣେ···

ଶାନ୍ତ—( ଖାଲି ଥରେ ଟିକିଏ ଚାହିଁଲା )

ଫୁଲ—ଅଜା ଯିବ ପରା ? ମାଉସୀ ! ବୋଧେ ସଜହୋଇ ବସିଛି ପରା !

ଶାନ୍ତ—ଯିବା ?

ରାମ—ହଉ, ହଉ, ଯିବା ଟିକିଏ ରହ । ( ଶାନ୍ତକୁ ) କଏ ଆଉ ଅଶୋକ ? ଅଶୋକକୁ ତୁ···

ଶାନ୍ତି—ଧର୍ମ ସାକ୍ଷରେ । କିନ୍ତୁ···

ରାମ—ବୁଝିଲି ମା, ସେ ବ୍ରାହ୍ମଣ । ଆଉ ତତେ ବ ଚିହ୍ନିଛି ମାଆ । ତୁ ମୋର ଇଷ୍ଟା ସୁନା । ପୋଡ଼ିଲେ ଆହୁରି ଉଜ୍ଜ୍ୱଳ ହେବ ସିନା ! ପାଉଁଶ ହେବ ନାହିଁ, ଭେଲ ନୁହେଁ । ( ଶାନ୍ତି ମଥା ଉପରେ ହାତ ଦେଇ ଶଠିଟା ଶରିଲେ )

ଫୁଲ—ଚାଲ ମ ଅଜା ! କଅଣ ତମ ଗପ ସରୁ ନାହିଁ ? (ଟାଣିଲା)

ରାମ—ଓଃ, ଅଚ୍ଛା କୁଣ୍ଡେଇ ବାହାଘର କଲା ପ୍ରେ ଟୋକାଟା ସେ···

ଫୁଲ—ଉଁଃ । ତମ ବାହାଘରେ ଆଗ ଏମିତି ପିଠାପଣା ହୋଇଥିବ ନାଁ ? ଚାଲ, ତମ ପେଟ ଫଟାଉଛି ।

ରାମ—ହୁଁ ।

ଫୁଲ—ଆଉ ? ଆସ ମାଉସୀ ! ଆସ ଆମର ନଇଲେ, ଥାଆନ୍ତୁ ଅଜା ।

ରାମ—ହଉ ଭଲକଥା, ତୁ ତୋ ମାଉସୀକି ନେଇ, ଯା ।

ଫୁଲ—ଆଉ କଅଣ ? ସିଆଣିଆ ? ପୁରୋହିତ କଏ ହବ ? ବୋଧେ ପରା ସଜହୋଇ ବସିଛି !

ରାମ—ତୁ ତେବେ ପାନ ଦିଖଣ୍ଡ ନେଇଆ ମାଆ ! ଦୁଷ୍ଟ ଆଉ ରଖେଇ ନଦିଏ । ( ଶାନ୍ତ ଚାଲିଗଲା )

ଫୁଲ—ଆଉ କଅଣ ? ତମର ପଛେ କ୍ଷୀରି ପିଠା ଖାଇବାକୁ ମନ ଯେ ଆପେ ଆପେ ଆସୁଛି ।

ରାମ—ସେମିତେ ହେଲେ ଆମେ ଯିବା ନାହିଁ ।

ଫୁଲ—ନାହିଁ ନାହିଁ, ମୁଁ ଡାକୁଚି, ଆସ, ତୁମେ ପରା ପୁରୋହିତ ? ( ଟାଣିଲା )

ରାମ—ଚାଲ୍ ଚାଲ୍ । ପିନ୍ଧା, ଦକ୍ଷିଣା, ସବୁ ନେବି ତୋ'ଠୁ । ମୁଁ, ଆଉ ମା ଫା ଜାଣେ ନାଁ ।

ଫୁଲ—ହଉ । ( ଯିବାବେଳେ ) ମାଉସୀ !

ରାମ—ସେ ପାନ ଦିଖଣ୍ଡ ଆଣୁଚି । ସେ ତ ବାରବାଟେ ଯିବ ଚାଲ ଆଉ ମଠ କରନା ।

ଫୁଲ—ମୋର ମଠ ? ନାଁ—ଚେଣେ ବୋଧେ ସଜ ହୋଇ ବସିଥିବ ତମକୁ ଅନେଇଁ ।

ରାମ—ଅଚ୍ଛା ହଉ, ଚାଲ । କେତେ ବେଗେ ଯିବୁ ଚାଲ୍ ।

( ପ୍ରସ୍ଥାନ )

---

## ଅଷ୍ଟମ ଦୃଶ୍ୟ

[ ଜଣେ ଅନ୍ଧ ଭିକ୍ଷୁକ ରାସ୍ତାର ଏକ କରକଆ ହୋଇ ଠିଆ ହୋଇଛି । ଆଖିରେ ତାର ଲୁହ ପୂରି ରହିଛି ]

ଅନ୍ଧ—କ୍ଷମା, କ୍ଷମା, କ୍ଷମା···

ନେପଥ୍ୟରୁ—ସେଇ ଘର, ସେଇ ଘର ।

ଫୁଲ—(ରାମ ବାବୁଙ୍କୁ ସେଇବାଟେ ନେଉ ନେଉ) ଅଜା ! ବାଜା ଶୁଭୁନାହିଁ ତମକୁ ?

ରାମ—ଶୁଭୁଛି ।

ଫୁଲ—ଶୁଭୁଛି ତ ଗୋଡ଼ କାହିଁକି ପଡ଼ୁନାହିଁ ?

ରାମ—ଆରେ, ତୋ'ର ସିନା ବାହାଘର ଯେ ତୁ ନାଚୁ ଛୁ ! ମୋର କଅଣ ?

ଫୁଲ—ତୁମେ ଯେ ପୁରୋହିତ, ବୁଜୁଲା ବାନ୍ଧିବ ବେଗେ ଚାଲ । (ଟାଣି ଟାଣି ନେଇ) ଏଇମିତି ।

ରାମ—ଆରେ ରହ, (ଅନ୍ଧକୁ ଦେଖି) ତମ ଘର କାନ୍ଥ ପାଖେ ଦେଖିଲୁ କିଏ ଏ ଲୋକଟି ? (ରହିଗଲେ)

ଫୁଲ—ସେ ଗୋଟେ ଅନ୍ଧ, ଭିକ ମାଗୁଛି । ଚାଲ ।

ରାମ—ଦୂର୍, ଭିକ କଅଣ କାନ୍ଥକୁ ମାଗୁଛି ? ରହ, ତାର କଅଣ ହୋଇଚି ଦେଖିବା । ତୁ ଆଗରେ ଚାଲ, ଦୁଆରେ ଥା, ମୁଁ ଯାଉଚି ।

ଫୁଲ—ବେଗେ । (ଚାଲିଗଲା)

ରାମ—ଏ ଭିକାରି ! ସେଇଟା ଦୁଆର ନୁହେ । ସେଠି କଅଣ ମାଗୁଚ ? ଏଣେ ବାଟକୁ ଆସ !

ଅନ୍ଧ—ଏଇଟା କାହାଘର ବାପା ?

ରାମ—ଏଇଟା କନକପୁର ଜମିଦାର ଘର । ତୁମେ ଦୁଆରେ ମାଗିଲେ ସିନା ଭିକ ମିଳିବ । ଏଠି କାନ୍ଥଟାକୁ ଧରି ଠିଆ ହୋଇଛ ଯେ !

ଅନ୍ଧ—ଏଠି ତାଙ୍କର କିଏ ଥାଏ ?

ରାମ—ତାଙ୍କ ବଂଶରେ ତ ଆଉ କେହି ନାହିଁ ! ଗୋଟିଏ ବିଧବା ଝିଅ ।

ଅନ୍ଧ—ହଁ ଶୋଭା, ଶୋଭା ତା ନାଆଁଟି ?

ରାମ—(ସନ୍ଦେହରେ ଅନ୍ଧକୁ ଚାହିଁ) ତୁମେ···

ଅନ୍ଧ—ମୁଁ, ମୁଁ ଭିକାରିଟାଏ । ଆପଣ କିଏ ବାବା ?

ରାମ—ମୋ ନାଁ ରାମ, ଏଇ ପାଇରେ ଥାଏଁ ।

ଅନ୍ଧ—(ଆହୁରି ପାଖକୁ ଆସି) ଡର ନାଇଁ ବାବା ! ମୁଁ ଅଛିବ ନୁହେଁ, ବ୍ରାହ୍ମଣ । ମୁଁ ଟିକିଏ ଆପଣଙ୍କୁ ଅଣ୍ଟାଳ ଦେଖେଁ । ଆଖି ତ ନାଇଁ ବାପା ! ଆପଣ ରାମବାବୁ ନାଁ ? ମନସ୍ତ ନୁହଁ ଦେବତା ।

ରାମ—କିଏ ଆପଣ କହନ୍ତୁ ନା ! ମୋତେ କେମିତି···

ଅନ୍ଧ—ମୁଁ ଜାଣେ, ସବୁ ଜାଣେ । ମୋର ବି ଦିନେ ଘର ଏଇଠି ଥିଲା । ମୋର ବି ଆଖି ଥିଲା—ନାଁ, ନାଁ, ମୁଁ ଅନ୍ଧ ସେତେବେଳେ ବି ଅନ୍ଧ ଥିଲି ।

ରାମ—ଆପଣ କଅଣ ଶୋଭାର···

ଅନ୍ଧ—ହଁ କକା, କକା, ତାର ବେକରେ ଛୁରି ଦେଇଛି । ସେଇ, ସେଇ କକା ମୁଁ ।

ରାମ—ଓ ନମସ୍କାର ।

ଅନ୍ଧ—ନମସ୍କାର ? ନମସ୍କାର ମୋତେ ? ଅନ୍ଧ, ଭିଖାରି, ପାପୀ, ନରାଧମ—ନମସ୍କାର କର ନାଁ । ପାପ ହେବ ବାବା ! ମୁଁ ତମର ସବୁ କଥା ଶୁଣିଛି । ଶୋଭାକୁ ତୁମେ ସଂସାରରେ ରଖିଚ । ମୋର ଗୋଟେ ଆଶା ପୂରଣ କରିବ ନାହିଁ ? ମୁଁ ଟିକିଏ ଶାନ୍ତିରେ ମରନ୍ତି ।

ରାମ—କହନ୍ତୁ ।

ଅନ୍ଧ—ଜାଣ, ଶୋଭା ବିଧବା ନୁହେଁ ।

ରାମ—ସେ କଅଣ ଆପଣ କହୁଛନ୍ତି ?

ଅନ୍ଧ—ବହୁ ପାପ, ବହୁ ପାପ କରିଛି, ତାର ପରିଚୟ ଦେଉଛି ଏଇ ଅନ୍ଧ ଆଖି; ମିଛର ଶେଷ ସୀମାକୁ ଯାଇଛି । ଆଜି ଆଉ ମୋତେ ଅବିଶ୍ୱାସ କରନା ବାପ ! ମୁଁ ସତ କହୁଛି । ସେ ବିଧବା ନୁହେଁ । ଭଗବାନ ରକ୍ଷା କରିଛନ୍ତି ତାକୁ । ମୋର ମିଥ୍ୟା ରଚନାର ଫଳ ମୁଁ ପାଉଛି । ମୋତେ ଟିକିଏ ସାହା ହୁଅ ବାପା, ଶାନ୍ତିରେ ମରେଁ ।

ରାମ—ମୋତେ ସ୍ୱପ୍ନ ପରି ଲାଗୁଛି ସବୁ ।

ଅନ୍ଧ—ଲାଗିବ ତ । ମୁଁ ଜାଣେ, ସ୍ୱପ୍ନ ପରି ଲାଗିବ । କିନ୍ତୁ ମୋ କଥା ବିଶ୍ୱାସ କର । ଶୋଭାର ସ୍ୱାମୀ ବୋଧହୁଏ ଆଜି ବି ଜୀବିତ । ତୁମେ ସେତିକି କରିଦିଅ । ମୁଁ ଶାନ୍ତିରେ ମରେଁ ।

ରାମ—ଶୋଭାର ସ୍ୱାମୀ ଜୀବିତ ? କିଏ ସେ ?

ଅନ୍ଧ—ହରିପୁର ପରମଗୁରୁଙ୍କ ପୁଅ ଅଶୋକ ।

ରାମ—(ଚମକି) ଅଶୋକ ! ତା ନାଆଁ ଅଶୋକ ?

ଅନ୍ଧ—ହଁ, ହଁ, ମୋର ଠିକ୍ ମନେ ଅଛି । ଆଉ କେହି ପାରିବେ ନାହିଁ ବାବା ! ତୁମେ ସନ୍ଧାନ ନିଅ ତାର । ମୋର ଠିକ ମନେ ଅଛି ତାର ନାଆଁଟି ଅଶୋକ ।

ରାମ—ତେବେ ସେ ଶାନ୍ତି···

ଅନ୍ଧ—ହଁ ଶାନ୍ତି ଶାନ୍ତି, ଶାନ୍ତିର ମରଣ । ସେତିକିରେ ଶାନ୍ତି ।

ରାମ—(ମୁଣ୍ଡ ଝାଡ଼ିଦେଇ) ଓଃ, ମୁଁ ଏସବୁ କିଛି ବୁଝି ପାରୁନାହିଁ ଯେ ! ଆପଣ ଆସନ୍ତୁ ତ ଦେଖି ଶୋଭା ଘରକୁ, ମୋ ସଙ୍ଗେ ।

ଅନ୍ଧ—ନା, ନା, ବାବା ଡାକନା ମୋତେ । ମୁଁ ସେଠିକି ଯିବି ନାହିଁ । ମୋର ଠାବ ନାହିଁ ତା ଘରେ, ମୁଁ ପାପୀ, ମୁଁ ଅନ୍ଧ, ମୁଁ ଭିକାରି, ମୋତେ ମରିବାକୁ ଦିଅ । କିନ୍ତୁ, ମୁଁ ଖୋଜୁଛି ଟିକିଏ ଶାନ୍ତିରେ ମରଣ ।

ରାମ—ଆପଣ ଟିକିଏ ଶୋଭା ଘରକୁ ଆସନ୍ତୁ ତ । ଥରେ ମାତ୍ର ଆପଣ ତା ସଙ୍ଗେ ଦେଖାକରି ଆସିବେ ।

ଅନ୍ଧ—ଦେଖା, ଶୋଭାର ? ନାଁ, ନାଁ, ତା ହେଲେ— ତା ହେଲେ ହୁଏତ ମୋର ପ୍ରାୟଶ୍ଚିତ୍ତ ହେବ ନାହିଁ । ତୁମେ ମୋ କଥା ବୁଝିବ ନାହିଁ ବାବା, ନାଁ, ନାଁ, ଯିବି ନାହିଁ ମୁଁ ।

ରାମ—ନା, ମୁ ଆପଣଙ୍କୁ ରହିବାକୁ ବାଧ କରିବି ନାହିଁ । ଖାଲି ଥରେ··· (ରାମବାବୁ ଧରିଲେ)

ଅନ୍ଧ—(ଭାବି) ଆଚ୍ଛା, ଏହି ମୁହଁରେ କହି ଆସିବି— 'ମାଆ' ତୁ ବିଧବା ନୁହେଁ, ତୋତେ ବିଧବା କରିଛି··· ।

(କହୁ କହୁ ଚାଲିଗଲେ)

---

## ନବମ ଦୃଶ୍ୟ

[ ଶୋଭାର ଘର ବାହାରେ କଣ୍ଢେଇ ବାହାଘର ବାଜା ବାଜୁଛି । ଗୁରିଆଡ଼େ ଆନନ୍ଦର କୋଳାହଳ । ଶୋଭାର କୋଠରୀ ଭିତରେ ଶୋଭା ଗହଣା ପିନ୍ଧୁଛି । ସେ ଗୋଟେ ନେଳୀ ଶାଢ଼ି ପିନ୍ଧିଥିଲା । ଅଶୋକର ଗୋଟେ ବଡ ଆକାରର ଫଟୋ ମେଜ ଉପରେ, ତା ପାଖରେ ଫୁଲହାର । ଶୋଭା ଅଇନା ଦେଖି ମଥାରେ ସିନ୍ଦୁର ପିନ୍ଧିସାରି ଫୁଲ ହାରଟି ଫଟୋରେ ପିନ୍ଧାଇ ଦେଲା, ଗଳବସ୍ତ୍ର ହୋଇ ପ୍ରଣାମ କଲା ]

ନାମ—(ଆସି) ଠିକଣା କରିଦେଲ ମାଆ ।

ଶୋଭା—କଅଣ ବୁଝିଲ ?

ନାମ—ବୁଝିବାକୁ କିଛି ଆଉ ନାହିଁ ମାଆ, ସେ ସେଇ ।

ଶୋଭା—ଫୁଲ ?

ନାମ—ତାର ଗୋଡ଼କୁ ତଳ ଅଛି ? ଯାଇଥିଲା ରାମବାବୁଙ୍କ ଘରକୁ ତ !

ଶୋଭା—ଏତେ ବେଗେ ଡାକ ଗଲାଣି ଘର ? ଯାହା ତାକୁ କହିଥିବ···ଛୁଟ୍ ବୋଇଲେ ଚୁଟ୍ ! ସାଙ୍ଗେ ସାଙ୍ଗେ ହବା ଦର୍କାର ।

ନେପଥ୍ୟେ ଫୁଲ—ଅଜା ଆଇଲେ, ଅଜା ଆଇଲେ ।

ଶୋଭା—ହେଇଟି କେମିତି ପାଟି କରୁଚ, ଦେଖ !

ନାମା—ରାମବାବୁ ଆଇଲେଣି କ କଅଣ ! ସୁନ୍ଦରଟା ନାଇନା ?

ଶୋଭା—ହଁ । (ଦୁହେଁ ଚାଲିଗଲେ)

ଫୁଲ—(ରାମ ବାବୁଙ୍କୁ ଆଣି ବସାଇ) ଏଇଠି ବସ ।

ରାମ—ମାଆ ?

ଶୋଭା—(ଭିତରରୁ) ଯାଉଛି ମଉସା ! ବସନ୍ତୁ ।

ରାମ—ଆଜି ବାହାଘର କଲୁ । ଏ ପାଗଳାଟାକୁ ପିଆଦା କରି ପଠେଇଲୁ ଯେ, ଖଣ୍ଡିଆ ପିଆଦା ତ ! ଦଣ୍ଡେ ବସାଇ ଉଠେଇ ନ ହଏ । ଆଣିଲି—ଆସିଲି ।

ଫୁଲ—ମାଉସୀ ଏତେବେଳ ଯାଏ କଅଣ କଲେ ?

ରାମ—ତୋର ତ ବାହାଘର ବେଳ ହୋଇନାହିଁ । ସେ ଧୀରେ ଧୀରେ ଆସିବ ନାହିଁ !

ଫୁଲ—ବାପ୍ପା ମଉସାଙ୍କୁ ଧରି ଆଣେ, ସେଇଠୁ ମାଉସୀକି ପଛେ ଆଉ ଥରେ ଡାକିଯିବ । ତମେ ଏଇଠି ବସ । (ଦୌଡ଼ିଗଲା)

ରାମ—(ଅଶୋକର ଫଟୋକୁ ଦେଖୁଥିଲେ) ହଇଲୋ ମାଆ, ଏଇମିତି ଖଣ୍ଡେ ଫ୍ରେଟ ଛବି ଦିନେ ଫୁଲ ହାତରେ ଦେଖିଥିଲି ଶାନ୍ତ ପାଖେ ।

ଶୋଭା—(ଘର ଭିତରୁ) ଶାନ୍ତ ପାଖେ ?

ରାମ—ହଁ ଫୁଲ କୋଉଠୁ ପାଇ ଆଣିଥିଲା । ଶାନ୍ତ ଦେଖୁଥିଲା । ତାକୁ କୋଉଠି ଦେଖିଲି ଦେଖିଲି ପରି ମନେ ହୁଏ—ଖୁବ୍ ଚିହ୍ନା ଚିହ୍ନା—ଏ କଅଣ··· (ଶୋଭା ଭିତରୁ ଆସିଲା)

ରାମ—(ଶୋଭାକୁ ଗହଣା ପିନ୍ଧିବାର ଦେଖି ଓ ତାଙ୍କୁ ପ୍ରଣାମ କରିବା ଦେଖି ଟିକିଏ ବିସ୍ମିତ ହୋଇ ପଚାରିଲେ) କିଏ ? ଶୋଭା ?

ଶୋଭା—(ଉଠି ଠିଆ ହୋଇ) ହଁ ମଉସା, ଶୋଭା, ବାକି ସେ ଶୋଭା ନୁହେଁ, ସେ ତ ମରିଛି ।

ରାମ—ମରିଛି ?

ଶୋଭା—ହଁ ସେ ମରିଛି । ମୁଁ ସେ ଶୋଭା ନୁହେଁ ଯେ···

ରାମ—( ଶୋଭାକୁ ଖାଲି ଏକ ଦୃଷ୍ଟିରେ ଚାହିଁ ) ଶୋଭା ?

ଶୋଭା—ହଁ ମଉସା । ଅବିଶ୍ୱାସ କରୁଛନ୍ତି ମୋତେ ? ମୋ ପାଖରେ ମୋର ସ୍ୱାମୀ ମରିବାର ଯେପରି ରଷ୍ଟ କରିଥିଲେ, ମୋ ସ୍ୱାମୀ ଘରେ ମଧ ମୁଁ ମରିଥିବାର ଖବର ସେମିତି ଦିଆ ହୋଇଛି । କିନ୍ତୁ···

ରାମ—କିନ୍ତୁ ? ସେ ଜୀବିତ, ନାଁ ?

ଶୋଭା—(ଫଟୋଟି ପ୍ରତି ରାମ ବାବୁଙ୍କ ଦୃଷ୍ଟି ଆକର୍ଷଣ କଲେ ।)

ରାମ—ଏ କଅଣ ତେବେ···

ଫୁଲ—(ଅଶୋକକୁ ଟାଣି ଟାଣି) ହେଇଟି, ବରଧରା କୁଣିଆ ।

ରାମ—ଅଶୋକ !

ଶୋଭା—(ଅଶୋକ ଗଳାରେ ହାର ପିନ୍ଧାଇ ଦେଇ) ହଁ ମୋର ପତିଦେବତା !

ରାମ—ଶୋଭା !

ଶୋଭା—(ପ୍ରଣାମ କରିବାକୁ ଅଶୋକ ପାଦତଳକୁ ଗଲା )

ଅଶୋକ—(ଉଠାଇ ଦେଇ ଧରି) ଶୋଭା !

ଫୁଲ—ଆଉ ମାଉସୀ କୁଆଡ଼େ ଗଲେ ମ ଏତେବେଳ ଯାଏଁ ? ଧରିଆଣେ ଫେର୍ ତାଙ୍କୁ—

(ଯାଉଥିଲା)

ରାମ—ଆରେ ଫୁଲ । ରହ, ରହ, ତୋ—ମାଉସୀ ଆସିବ ଯେ—ଦୁଆରେ ଜଣେ ଅନ୍ଧ ଅଛନ୍ତି ନେଇ ଆସିଲୁ ତାଙ୍କୁ ଏଇଠିକି ଆଗେ ।

ଫୁଲ—ଯାଉଚି । (ଚାଲିଗଲା)
ରାମ—ଶୋଭା, ମା, ସ୍ୱପ୍ନ—ସ୍ୱପ୍ନ ଖାଲି ମୁଁ ଦେଖୁଚି । ମୁଁ ଆଜି ମୁଁ ବୁଢ଼ୀ ମାଆ ! ଆଉ ଜଣଙ୍କୁ ବଞ୍ଚିତ କରନି । କ୍ଷମା—କ୍ଷମା; ଦେବୁ । ତୁ ନ ଦେଲେ ବୋଧହୁଏ ଭଗବାନ ବି ତାଙ୍କୁ ଆଉ କ୍ଷମା ଦେଇ ପାରିବେ ନାହିଁ ।
ଶୋଭା—କଅଣ ଏମିତି ଆପଣ କହୁଛନ୍ତି ?
ରାମ—ନାଁ, ନାଁ, ଏକା ତୁ ବୁଢ଼ୀ, ତୁମେ ଦୁହେଁ । (ଦୁଜଣଙ୍କୁ ହାତ ପାଖକୁ ନେଇ) ତୁମେ ଦୁହେଁ ତାଙ୍କୁ କ୍ଷମା ଦିଅ । ସେ···
ଫୁଲ—(ଅନ୍ଧକୁ ନେଇ ପହଞ୍ଚିଲା) ଏଇ ନାଁ···
ରାମ—(ଧରିଆଣି) ହଁ ଶୋଭା ! ତୋର କକା ସେ ! ପ୍ରଣାମ କର ଦୁହେଁ । (ଶୋଭା ଓ ଅଶୋକ ପ୍ରଣାମ କଲେ)
ଅନ୍ଧ—ନା, ନା, ପାପୀ ଅନ୍ଧ, ଭିକାରି···
ରାମ—କନ୍ତୁ···ଶୋଭାର କକା ! ଆପଣଙ୍କୁ ପ୍ରଣାମ କରୁଛନ୍ତି ଶୋଭା ଆଉ ଅଶୋକ ଦୁହେଁ ।
ଅନ୍ଧ—(ହସି ହସି) ଶୋଭା ! ଅଶୋକ ! ଦୁହେଁ ? (ଦୁଇହାତରେ ଆଶୀର୍ବାଦ କଲା) ବେଶ୍, ଏଥର ମୋର କାମ ସରିଛି । ମୁଁ ଯାଏ, ମୋତେ ବାଟ ଦେଖାଅ । ଏଥର ମୋର ମରଣ···
ଶୋଭା—କକା ! ଆଉ ଆପଣ ଯିବେ କୁଆଡ଼େ ?
ଅନ୍ଧ—ନା ମା, ଏଇଯେ ମୋର ଆଖି ଫିଟିଛି—ମୋତେ ବାଟ ଦିଶୁଚି । ଯାଏଁ । ଏଥର ମୋର ମରଣ ।
ନେପଥ୍ୟରୁ ଶାନ୍ତ ଡାକୁଛି—ନାନା ! (ସେ ଚାଲିଆସିଛି)
ଅନ୍ଧ—ଶାନ୍ତ, ଶାନ୍ତର ମରଣ ।
(ଅନ୍ଧ ଚାଲିଯିବା ପଥରେ ଫୁଲିଥାଳ ଧରି ଶାନ୍ତ ଆସିଚ—ଅଶୋକ ଶୋଭାପାଖରୁ ଘୁଞ୍ଚିଯାଇ)
ଅଶୋକ—ଶାନ୍ତ !
ଶାନ୍ତ—(ଅଶୋକକୁ ଦେଖି ହାତରୁ ଥାଳ ଦୁମକରି ଖସିପଡ଼ିଗଲା । ସେ ମଧ୍ୟ ଥର ଥର ସେଇଠାରେ ପଡ଼ିଯାଇଛି । ଅନ୍ଧ ଇତି ମଧ୍ୟରେ ଚାଲିଗଲାଣି)
ଅଶୋକ—(ଶାନ୍ତ ଉପରେ ହାମୁଡ଼େଇ ପଡ଼ି, ଡାକ ଡାକ ଛାଡ଼ୁଛି) ଶାନ୍ତ, ଶାନ୍ତ, ଶାନ୍ତ ।
ରାମବାବୁ—ଶାନ୍ତ ! (ପାଖକୁ ଆସି ଅଶୋକକୁ ଟିକିଏ ଆଡ଼େଇ ଶାନ୍ତ ମୁଣ୍ଡରେ ହାତଦେଇ)
ଶୋଭା—(ବେଗେ ଶାନ୍ତ ପାଖକୁ ଯାଇ) ଶାନ୍ତ !

---

## ଶେଷ ଦୃଶ୍ୟ

[ ସମୁଦ୍ର ତଟ—ଶାନ୍ତକୁ କୋଳରେ ନେଇ ଅଶୋକ ସମୁଦ୍ର କୂଳକୁ ଚାଲିଛି । ତାର ମନର ସ୍ଥିରତା ନାହିଁ । ଏତିକି ବେଳେ ଅନ୍ଧ ସେଇବାଟେ ଗାଇ ଗାଇ ଯାଉଛି । ଅଶୋକ ତାକୁ ଥରେ ଚାହିଁଛି, ଗୀତ ଶୁଣୁଛି—କ୍ରମେ ଶାନ୍ତକୁ କୋଳରେ ଧେନି ସମୁଦ୍ର ଭିତରେ ପଶୁଛି । ]

ଅନ୍ଧ— ( ଗୀତ )

ପରଦେଶୀ ! ଫେରିଯା ତୁ—
ଫେରି ଯା, ଘରେ ଫେରିଯା—
ସପନେ ଦେଖା ତୋ ଗୁଇ—
ନୟନେ ଘୁମ ଘେରିଯା—
ମରମେ ଜାଳି ଯେ ଚିତା
ଜୀବନେ ଦେଲି ଆହୁତି—
ସରମେ କହି ନାହିଁ ସେ—
ଫାଟିଲି ପଛେ ତା ଛାତି—
ଆଜିରେ ମରଣ ମାରେ
ହେରିଯା ଥରେ ହେରିଯା—

(ଅନ୍ଧ ଗାଇ ଗାଇ ଯାଉଥାଏ । ଅଶୋକ ସମୁଦ୍ର ଭିତରେ ପଶୁଥାଏ, ଧୀରେ ପରଦା ପଡ଼ିଲା ।)

(ଯବନିକା ପତନ)



## କୁଶୀଲବ

**ପୁରୁଷବର୍ଗ :**

ଗୌର, ମୁକୁନ୍ଦ, ଗୋପ, ରାଜୁ, ଟୁନୁ, ଅନ୍ଧ, ଡମ୍ବୀ, ଲୁଶୁନ, କେଳା ।

**ସ୍ତ୍ରୀବର୍ଗ :**

ଆରଣ୍ଣ, ଲବଙ୍ଗ, ଉଷା, କେତ୍ରଣୀ ।

# ପରିବର୍ତ୍ତନ

## ଉପକ୍ରମ

[ ଆରତି ସ୍ୱପ୍ନ ଦେଖୁଛି--ସମ୍ମୁଖରେ କମଳା ବ୍ୟାଙ୍କ । Bank Manger ଗୌରମୋହନ ଦାସ ଗାଡ଼ିରୁ ଓହ୍ଲାଇ ଆସୁଛନ୍ତି । ଆଗରେ ତାଙ୍କର Cash Box ଓ File ନେଇ Office ଭିତରକୁ ଗଲା ଚପରାଶୀ । ଗୌର ବାବୁ ରାସ୍ତାରୁ ଗଡ଼ିଗଲା ବେଳକୁ ତାଙ୍କୁ ପଛରୁ କିଏ ଡାକିଲା ]

ପିଲା—ବାବୁ !

ଗୌର—(ପଛକୁ ଚାହିଁ କହିଲେ) କିଏ ?

ପିଲା—ଗୋଟିଏ ପଇସା ।

ଗୌର—ଯାଃ । (ଚାଲି ଯାଉଥିଲେ)

ପିଲା—କାଲିଠୁ କିଛି ଖାଇନି ବାବୁ, ଗୋଟିଏ ପଇସା ଦିଅ; ପଇସାକର ମୁଢ଼ି ଖାଇବି ।

ଗୌର—ଆରେ ! ବଡ଼ ଦୁଷ୍ଟ ପିଲା ତୁ । ମନାକଲେ ଶୁଣୁ ନାହିଁ ? ବାଟରେ ପଇସା କାହିଁ ? ଯାଃ—

(ମୁକୁନ୍ଦ ଛଅ ବର୍ଷର ଝିଅ ଆରତିକି ନେଇ ଆସିଲା । )

ଗୌର—ଆରତିକି କୁଆଡ଼େ ନେଇ ଆସିଲୁ ମୁକୁନ୍ଦ ?

ମୁକୁନ୍ଦ—ଜିଦ୍‌ଧରି ବସିଲେ—ବାପାଙ୍କ ପାଖକୁ ଯିବି ।

ଗୌର—ତୁମେ ଆଉ ତାକୁ ସମ୍ଭାଳି ପାରିଲ ନାହିଁ ଯେ ଏଠିକି ନେଇଆସିଲ ? ଯା—ନେଇଯାଅ ଘରକୁ ।

ପିଲା—ବାବୁ ! (ଆକୁଳରେ ଚାହିଁ ରହିଲା)

ଗୌର—ଯା ଆରତି ! ଘରକୁ ଯା । କଚେରୀରେ ପରା ମୁଁ କାମ କରିବି, ତୁ କୋଉଠି ରହିବୁ ? ମୁକୁନ୍ଦ ସାଙ୍ଗେ ଯା, ଖେଳୁଥା । ଏଇନେ କଚେରୀରେ ଏଇଠା ଘାଣ୍ଟି, ସେଇଠା ଘାଣ୍ଟି ବାର ଦୁଷ୍ଟାମି କରିବ । ନେଇଯାଅ ତାକୁ ଘରକୁ ମୁକୁନ୍ଦ !

ଆରତି—ମୁଁ ଥିଇରି ହୋଇ ତମ ପାଖରେ ବସି ରହିବି ବାପା !

ଗୋପ—ବଡ଼ ଅମାନିଆଁ ହେଲୁ ତୁ ଆରତି ।

ଆରତି—(ମୁହଁ ପୋତି କାନ୍ଦିବା ପରି ହେଲା ।)

ମୁକୁନ୍ଦ—(ଆରତିକୁ କୋଳେଇ ନେଇ) ନାଇଁ । ନାଇଁ, ଆମର ବଜାରକୁ ଯିବା, ବଜାରରୁ ମୁଁ ଗୋଟେ ବାଜା କିଣିଦେବି, ଚାଲ ।

ଆରତି—ନାଇଁ । (କାନ୍ଦିଲା)

ମୁକୁନ୍ଦ—ବାବୁ ! ମାଆ ଛେଉଣ୍ଡ ପିଲା, ତାଙ୍କ ଆଖିରେ ଲୁହ ଦେଖିଲେ ମୁଁ ସହି ପାରେନାଇଁ; ଘରେ ତ ପିଲା ବୋଲି ଗୋଟିଏ କେହି ନାହିଁ ଯେ କାହା ସଙ୍ଗେ ଖେଳିବେ । ମୁଁ ତାଙ୍କୁ ଟିକିଏ କଚେରୀକି ନେଇ ଯାଉଛି, ସାଙ୍ଗେ ସାଙ୍ଗେ ମନ ବଦଳିଲେଇ ଫେରି ଘରକୁ ନେଇଯିବି ।

ଗୌର—(ଫେରି ଚାଲି) ଦେଖୁଛ ତୁମେଇ ତାକୁ ମୁହଁ ଦେଇ ଦେଇ ନଷ୍ଟ କରିଦେବ ;

ପିଲା—ବାବୁ !

ଗୌର—ଆରେ, ଥରେ ମନା କଲେ ବି ମାନୁ ନାଇଁ ? ଚପରାସୀକି ଡାକିଲେ ଯାଇଁ ଯିବୁ ତୁ, ନାଁ ?

ପିଲା—ମୋର କେହି ନାହିଁ ବାବୁ, ବାପା ବୋଉ ଝାଡ଼ାବାନ୍ତିରେ ମଲେ—ଗୋଟିଏ ପଇସା ।

ଗୌର—ଘର କେଉଁଠି ତୋର ?

ପିଲା—ନରହରପୁର । ବାପା ବୋଉ ସମସ୍ତେ ମରିଗଲେ, ଦାଦା ଖୁଡ଼ୀ ମୋତେ ଛଡ଼ିଦେଲେ । ଖାଇବାକୁ ଦଉନାହାନ୍ତି ।

ଗୌର—ନରହରପୁର କାହା ପୁଅ ତୁ ?

ପିଲା—ଶ୍ୟାମସୁନ୍ଦର ମହାପାତ୍ରଙ୍କ ପୁଅ ।

ଗୌର—ତୋ ନାଁଆ ?

ପିଲା—ମୋ ନାଁଆ ଗୋପାଳ ଯେ, ମୋତେ ଗୋପ ଗୋପ ଡାକନ୍ତି ।

ଗୌର—ତୁ ଶ୍ୟାମ ମହାପାତ୍ରଙ୍କ ପୁଅ ? ତାଙ୍କର ତ ଅନେକ ସମ୍ପତ୍ତି ଥିଲା ରେ !

ମୁକୁନ୍ଦ—କେଉଁ ଶ୍ୟାମ ମହାପାତ୍ର ଅଜ୍ଞା ?

ଗୌର—ଆରତି ବୋଉ ଥିଲାବେଳେ ସେ ବରାବର ଆମ ଘରକୁ ଯା ଆସ କରନ୍ତି । ଆମର ଜ୍ଞାତି—ଖୁବ୍ ଭଦ୍ରଲୋକ, ତାଙ୍କର ମରିବାର ତିନି ବର୍ଷ ହବନାହିଁକି ?

ଗୋପ—ହଁ ବାବୁ, କେତେ ଗୁଡ଼ାଏ ଦିନ ହେଲାଣି ।

ମୁକୁନ୍ଦ—ମାଆଙ୍କର କାଳ ହେବାର ତ ସେଇ ତିନି ବର୍ଷ ହବ । ଆରତି ମାଆ ମୋର ସେଇଦିନୁ···

(ଦୀର୍ଘଶ୍ୱାସ ମାରିଲେ)

ଗୌର—ତୁ କିଛି ପଢ଼ିଛୁ ?

ଗୋପ—ଗାଁ ସ୍କୁଲରେ ପଢ଼ୁଥିଲି । ଦାଦା ପଢ଼ା ଛଡ଼େଇ ଦେଲେ, ଖୁଡ଼ୀ ମୋତେ ମାରିକରି···

(ଆଉ କହି ପାରିଲା ନାହିଁ)

ମୁକୁନ୍ଦ—ବାବୁ !

ଗୌର—ଯା, ଏଇ ମୁକୁନ୍ଦ ସାଙ୍ଗରେ । ଆମର ଘରେ ରହିବୁ । ମୁକୁନ୍ଦ, ଏହାକୁ ନେଇଯାଇ ସାବୁନ-ପାଣିରେ ଦେଇ, ଗାଧୋଇଦେଇ ଲୁଗାପଟା ଦିଅ । ରହୁ ସେ ଆଜଠୁ ଆମ ଘରେ । ଯା ।

ମୁକୁନ୍ଦ—ଭଗବାନେ ବାବୁଙ୍କୁ ମୋର ରଖିଥାନ୍ତୁ । ଆସ ବାବା ! ପ୍ରଭୁ ଲକ୍ଷ ପରମାୟୁ ଦିଅନ୍ତୁ—ତମ ସାଙ୍ଗକୁ ବାପା ତ ଗୋଟିଏ ସାଥୀ ଦେଲେଣି, ଆଉ କଚେରୀକୁ କାହିଁକି ଯିବ ଦେଇ ? ବାପା ତାଙ୍କର କଚେରୀ କରନ୍ତୁ । ଆମର ଚାଲ, ଏ ପିଲାଟିକି ଖାଇବାକୁ ଦେବା, ତୁମେ ତା ସଙ୍ଗେ ବୁଲିବ, ଖେଳିବ—ଚାଲ ।

ଆରତି—ମୁକୁନ୍ଦ, ନସ କଏ ?

ଗୌର—(ଟିକିଏ ସେମାନଙ୍କ ଯିବା ବାଟକୁ ଚାହିଁ ଅଫିସ ଭିତରକୁ ଚାଲିଗଲେ)

( ହଠାତ୍ ମସାଣି ଟେକି ଆରତି ଦେଖିଲା କେହି ନାହିଁ, ଉଠିଆସିଲା ଘର ଦୁଆର ମୁହଁକୁ । )

---

● କୋଡ଼ିଏ ବର୍ଷ ପରେ ●

## ପ୍ରଥମ ଅଙ୍କ—ପ୍ରଥମ ଦୃଶ୍ୟ

[ ପୁରୀ—ଗୋପର ଘର । ଗୋପର ଫଟୋକୁ ଆରତି ଧୂପଦୀପ ଦେଇ, ଫୁଲ ସଜାଇ ପୂଜା କରୁ କରୁ ଗାଉଛି ]

ଆରତି—

( ଗୀତ )

ସୁନ୍ଦର ହେ ମନ ଚୋର !
ମନ-ମନ୍ଦିର ଉଜ୍ଜ୍ୱଳ କର ନଶିଦିନ ମୋର । ୦ ।
କରବଧି ଦେଖା ଦିଅ ଶଶି ଲେଖା
ପିଆସୀ-ଚିତ୍ତ-ଚକୋର
ନୟନେ ମୋର କର ଘର । ୧ ।
ଘନ-ତମିରେ, ଘନ ମହୀରେ
ମନକ୍ରସା ଶଶି କରଣ ସେ କ ରେ ?
ବଧୂରା ନରେଖେ ବଢ଼ୋରେ
ପିଏ କ ସୁଧା ନଶି ଭୋର । ୨ ।

[ ଗୋପବାବୁଙ୍କ ଘରେ ଗୋଟିଏ କଡ଼ରେ ଖଣ୍ଡେ ଆଇନା ଥିଲା । ଆରତ୍ତି ଲୁଗା ସଜାଡ଼ୁ ଥିଲା ଓ ଗୁଣୁ ଗୁଣୁ କରି ଗୀତଟିଏ ଗାଉଥିଲା । ତା ପରେ ଗୋପର ଖଣ୍ଡିଏ ରଙ୍ଗିନ୍ ବଡ଼ଆକାର ଫଟୋକୁ ମଇଳା ଯା'ଇଥିବା ଫୁଲହାରଟି କାଢ଼ିନେଇ ଚାଲିଗଲା ଗୀତ ଗାଇଗାଇ । କିଛିକ୍ଷଣ ପରେ ବୁଢ଼ା ମୁକୁନ୍ଦକୁ ଟାଣି ଟାଣି ଆଣିଛି, ଗୋପାଳର ପୁଅ ଗୋବନ୍ଦ ଓରଫେ ଟୁନୁ ।]

ଟୁନୁ—(ମୁକୁନ୍ଦକୁ ଟାଣି) ଏଇଠି, ଏଇଠି, ଏଠିକି ଆ ।

ମୁକୁନ୍ଦ—ଆରେ ରହ ରେ, ବୁଢ଼ା ହେଲିଣି, ଏଡ଼େ ବେଗେ ଚାଲି ପାରୁଛି କୋଉଠି ? ଦେହି ନଡ଼ୁଛି, ପଡ଼ିଗଲେ ଅଣ୍ଟାଗଣ୍ଠି ଛିଡ଼ିଯିବ !

ଟୁନୁ—ଯାଉ, ରକ୍ତ ବୋହୁ । ବାପାଙ୍କୁ ଦେଖିବାକୁ ଯୋଉ ଡାକ୍ତର ଆସୁଛନ୍ତି, ତାଙ୍କୁ କହିଲି ତତେ ସେ ଭଲ କରିଦେବେ ଯେ, ଆ, ତୁ ଘୋଡ଼ା ହ ।

ମୁକୁନ୍ଦ—ଆରେ ବାବୁ, ମୁଁ ତ ମଣିଷଟାଏ, ଘୋଡ଼ା ହେବି କେମିତି ?

ଟୁନୁ—ହାମୁଡ଼ି ପଡ଼ ।

ମୁକୁନ୍ଦ—ଏଇଥି ପାଇଁ ଏଠି ଟେଲି କରି ଡାକି ଆଣୁଥିଲୁ ?

ଟୁନୁ—ଠିକଏ ଘୋଡ଼ା ହ ।

ମୁକୁନ୍ଦ—ତୁ ଚଢ଼ିବୁ—? (ହାମୁଡ଼ି ପଡ଼ିଲା)

ଟୁନୁ—ସେମିତି ଆ, ମୁଁ ଗୋଟେ ଚାବୁକ୍ ଆଣେ ?

ମୁକୁନ୍ଦ—କି ? ମୁଁ ଘୋଡ଼ା ହେବି, ତୁ ଚଢ଼ିବୁ, ଫେର୍ ଚାବୁକ୍ ମାରିବୁ ଆରେ ବାଃ ! ଘରି ସିଆଣିଆ ତ !

ଟୁନୁ—ନାଇଁ ମ, ବଡ଼େ ମାରିବି ନାହିଁ—ଥାଇଣ, ଥାଇଣ । (ଚାଲିଗଲା)

ମୁକୁନ୍ଦ—(ହସି) ବାପା, ମାଆ ତ ଚଢ଼ି ଚଢ଼ି ଗଲେ, ତୁ ଆଉ କେତେ ଛାଡ଼ିବୁ ? ଚଢ଼ ।

ଟୁନୁ—(ଗୋଟେ ବଡ଼ ବାଡ଼ି ନେଇ ଆସିଲା) ଚାଲ୍, ଘୋଡ଼ା, ଚାଲ । (ମୁକୁନ୍ଦ ଘୋଡ଼ା ହେଲା, ଟୁନୁ ଚଢ଼ି, ବେଗେ ଚାଲ କହି ପାହାରେ ପାହାରେ ମାରୁଥାଏ; ହସୁଥାଏ, ମୁକୁନ୍ଦ ମଧ୍ୟ ହସୁଥାଏ ।)

ମୁକୁନ୍ଦ—ଆରେ ଥାଇଣ ଥାଇଣ ମାରି—ବୁଢ଼ା ଘୋଡ଼ା ଯେ । (ଏତିକବେଳେ ଆରତ୍ତି ହାତରେ ଫୁଲମାଳ ନେଇ ଆସିଲା ।)

ଆରତ୍ତି—(ଧମକଇ) ଟୁନୁ ! କେଡ଼େ ଦୁଷ୍ଟ ତୁ ? (ଗୋଟେ ହାତରେ ତାକୁ ଟାଣିଆଣି) ଆଣିବୁଟି ସେ ବାଡ଼ି, ଦିଏଁ ତୋତେ ଦି' ପାହାର । ମନେ ମାଡ଼ ଖାଇଲେ ଜାଣିବୁ ଲୋକଙ୍କୁ କେମିତି କାଟେ । ଉଠ୍, ମଣିଷ ଉପରେ ଘୋଡ଼ା ଚଢ଼ିବୁ—ନାଇଁ ? (ବାଡ଼ି ଉଞ୍ଚେଇଲେ)

ମୁକୁନ୍ଦ—(ବାଡ଼ି ଛଡ଼େଇ ନେଇ) ଥାଉ ଥାଉ, ଓଃ । ମାଆପଣିଆଁ ଦେଖେଇଦେଲେ ! ଆ'ରେ ବାବୁ, ଆମର ଦାଣ୍ଡକୁ ବୁଲିଯିବା ଚାଲ । (ଟାଣିନେଲେ ଟୁନୁକୁ)

ଆରତ୍ତି—ଏମିତି ମୁହଁ ଦେଇ ତୁ ପିଲାଟାକୁ···

ମୁକୁନ୍ଦ—ହଁ, ହଁ, ଏଡ଼େ ବେଗେ ପାଶୋରି ପକାଇଁ ମ ଦେଇ, କାଲିପରି ଲାଗୁଚି ମତେ—ଯାହା ଜିଦ୍ ଧରି ବସିଥିବ ସେଇଆ । କିଏ ସମ୍ଭାଳି ଥିଲା ? ଏଇ ମୁକୁନ୍ଦ ତ ? ମନେ ଅଛି ଦେଇ, ଯୋଉଦିନ କଚେରୀକି ଯିବାକୁ ଜିଦ୍ ଧରି ବସିଲା—କଚେରୀକି ନଉ ନଉ ବାପା ମତେ ରାଗ ହେଲେ, ମନେ ପଡ଼ୁଛି—ଯୋଉଦିନ ଗୋପାଳ ସଙ୍ଗରେ ଦେଖା ? ଏତକ ବକଟେ ପିଲା, ହାଡ଼ ମାଉଁସ ହେଇ ଦି'ପଲ ହବ ନାଇଁ—ଆମର ଏଇ ଟୁନୁପରି । ସେଇ ଫେର୍ ଆଜି ପାଠ ଶାଠ ପଢ଼ି ଓକିଲ । ତାଙ୍କୁ କାଖେଇଚି ଏଇ ମୁକୁନ୍ଦ—ଫେର୍ ତାଙ୍କରି ପୁଅ···

(ଟୁନୁକୁ କୋଳେଇ ନେଇ)

ଆରତି—ତା ବୋଲି ସେ ପିଟିବ, ମାରିବ—ତୋତେ ?

ମୁକୁନ୍ଦ—ଜମା ମାରିଥିବ କ, ଜମା ପିଟିଥିବ କ ? ଖରି ସୁଧାର ପିଲା ହୋଇଥିଲ ନାଁ ? ତମର ପୁଣି ଯୋଉ ଝଙ୍କ ! କାଣିଚ୍ଛ କାହିଁ ସେ ପିଲାର ? ମୁଁ ମୁକୁନ୍ଦ ବୋଲି···

ଆରତି—ପିଲାଙ୍କୁ ତ ମାଆ ବୋଲି କଅଣ ଜାଣି ନାହିଁ । ତୁ ନ ଥିଲେ କଅଣ···

ମୁକୁନ୍ଦ—ହଁ, ହଁ, ଗୁରେ କହନାଇଁ ଦେଇ ! ଆରେ ଟୁନୁ ! ଚାଲ, ଚାଲ ସେ ମାଆପଣିଆଁ ଆଉ କାହାକୁ ଦେଖାଇବ । (ନେଇଗଲେ ଟୁନୁକୁ)

ଆରତି—(ମୁହଁରେ ହସ, ଆଖିରେ ଲୁହ ପୋଛୁ, ଫୁଲମାଳ ନେଇ, ଗୋପାଳର ଫଟୋ ପାଖକୁ ଗଲା, ଫଟୋଟି ପୋଛୁ ପୁଣି ଗୀତ ଗାଇଲା, ଗୀତ ମଝିରେ ମାଳଟି ପିନ୍ଧାଇ ଦେଇ, ସେମିତି ଗୀତ ଗାଇ ଗାଇ ଭିତରକୁ ଗଲା । ଧୂପ ଆଣି ଫ୍ରେମ ପଙ୍ଖାଟିରେ ବନ୍ଧୁଛି, ଗୋପାଳ ଆସି ପଛରେ ଥିବା ଚୌକିରେ ବସିଲେ—ମୁହଁରେ ସନ୍ତୋଷର ଚିହ୍ନ, ଆରତିର ଲକ୍ଷ ନାହିଁ, ସେ ଗୀତ ଗାଇ ଗାଇ ପ୍ରଣାମ କଲାବେଳକୁ ପଛରୁ ଆଖି ମୁଦି ଆଉଜି ପଡ଼ିଲେ ଗୋପ । ଆରତି ଧଡ଼ପଡ଼ ହୋଇ ଉଠି ଲାଜରେ ମରିଗଲାପରି ହେଲା । ଧୀରେ ଧୀରେ ଘରୁ ବାହାରି ଯିବାକୁ ବସିଲା, ଗୋପାଳର ବସିବା ପାଖର ବାଟଦେଇ । ଗଲାବେଳେ ଗୋପାଳ କାନଟା ଟାଣିଧରିଲେ )

ଗୋପ—ହୁଁ, ଯାଅ ।

ଆରତି—ଓଃ, ଛାଡ଼, ବଡ଼ ଦୁଷ୍ଟ ହେଲଣି ତୁମେ ।

ଗୋପ—ପିଲାଟି ହୋଇଚ୍ଛ, ନା ଆଜ ?

ଆରତି—ଛାଡ଼, ମୋର କାମ ଅଛି ।

ଗୋପ—କଅଣ କାମ ଅଛି ? ମୁଣ୍ଡିଆ ମାରିବାଟା ବାକି ରହିଯାଇଛି—ସେଇତକ ସାରିବ ? ନାଁ ? ଧୂପ, ଫୁଲ—ଗୋଟେ ନବରଙ୍ଗ ଲଗିଛି ? ଦେବ ସେ ଫଟୋକୁ କାଲି···

ଆରତି—( ଗୋପାଳର ମୁହଁ ବନ୍ଦକରି ) ନାଁ, ମୁଁ କୁଅଡ଼େ ଯାଉନାହିଁ, ତୁମେ ଏମିତି କେତେବେଳୁ ଆସି କାହାକୁ ଡକାନାଇଁ ହକାନାଇଁ, ଚୋର ପରି ଚୁପହୋଇ ଏଠି ଆସି ପଛରେ ବସିଥିଲ କାହିଁକି ?

ଗୋପ—ଦିହଟା ଭଲ ଲାଗିଲା ନାହିଁ, ଥକା ମରା ହୋଇ ଆସି ବସିଗଲି । ( ହାଇ ମାରିଲେ ସେମିତି ଆଖି ମୁଦି, କାନଧରି )

ଆରତି—କାନଟା ଛାଡ଼, ଏଇକ୍ଷଣି ମୁକୁନ୍ଦ ଆସିବ ଯେବେ···

ଗୋପ—ମୁକୁନ୍ଦ ତ ନୋଇଲେ କହୁ ଜାଣେ ନାଇଁ ।

ଆରତି—ତମର ଯୋଉ କଥା···

ଗୋପ—ଆରେ ବାବୁ, ସେଇ କଥା ଦେକେଇ ତ ଆମର ପଇସା ।

ଆରତି—ହଉ, ଚୁପ ହୋଇ ବସ । ଯେତକ ବକର ବକର ହୋଇ ଆଇଲେ—ଫେର୍ ଏଠି ଲାଗିଲା ପୁରାଣ । ହଉ, ବସ ଚୁପହୋଇ, ମୁଁ ଟିକିଏ ଚାଲୁଛିଏ ।

ଗୋପ—( ହାତ ଚେକଧରି ) ଥାଉ ଥାଉ, ବହୁତ ହେଲାଣି ।

ଆରତି—ଉଠ, ଜାମାଟା ଖୋଲି ଦିଅ ? ବାହାରକୁ ଆସି ଟିକିଏ ଥଣ୍ଡାରେ ବସ, ମୁଁ ଚା ଆଣିଦିଏଁ ।

ଗୋପ—ଟିକିଏ ଯାଉ ।

ଆରତି—ଆଉ ଫେର୍ ଟିକିଏ ଯାଉ କାହିଁକି ମ ?

ଗୋପ—ଦେହଟା ଭଲ ଲାଗୁ ନାହିଁ ପରା !

ଆରତି —ଦିନ କେଇଟା ହେବ ଜର ଛାଡ଼ିଲା । ଡାକ୍ତର କହିଛି ଘରି ଦୁର୍ବଳ ହୋଇପଡ଼ିଛ । ଏଇନେ ପରିଶ୍ରମ ଉଚିତ ନୁହେଁ । ଆଉ ଉପବାସରେ ଗଡ଼

ପଡ଼ି ଗଲପରେ ଆଜ କଚେରୀକୁ ନ ଗଲେ ଯେମିତି ଚଳନ୍ତା ନ ଥିଲା ।

ଗୋପ—ଗୋଟେ ବଡ଼ କେଶ୍‌ର ଆଜ ତାରିଖ ଥିଲା । ହାକିମ ଆଉ ମହଲତ ଦେଲା ନାହିଁ, ଲୋକଟା ଆସି ଗୋଡ଼ତଳେ ପଡ଼ କାନ୍ଦିଲା, କଅଣ କରନ୍ତି ଆଉ ? ( ବ୍ୟାଗ୍ କାଢ଼ି ପକେଟରୁ ) ରଖିଦିଅ ଏ ଟଙ୍କାଟା ।

ଆରତି—( ଟଙ୍କାଧରି ) ଟଙ୍କାଇ ଯେମିତି ମୋର ସବୁ ! ମଣିଷର ଦେହ ଆଗେ ନାଁ ଟଙ୍କା ଆଗେ !

ଗୋପ—କଅଣ କରିବା —ବୁଝୁ ନାଁ ? ଲୋକଟା ଯେ ମରି ଯାଇଥା'ନ୍ତା । ନ ହେଲା ବା ମୋର ଟିକିଏ କଷ୍ଟ ହେଲା ! ତୁମେ ଆଉ ପାନେ ଔଷଧ ଆଜ ଦିଅ ତ ।

ଆରତି—କୋଉ ଔଷଧ ?

ଗୋପ—ସେଇ ବୋତଲଟାରୁ ମ, ଗୋଟେଡ଼ୋଜ ଦିଅ ।

ଆରତି—ସେଗୁଡ଼ାକ ସବୁବେଳେ ଭଲ ନୁହେଁ ।

ଗୋପ—ସବୁବେଳେ ମୁଁ କଅଣ ଖାଉଛି ?

ଆରତି—ନ ହେଲେ ବା ? ଆଜ ତ ଏବେ ଦିଥର ହେବ ।

ଗୋପ—ସେଥିରେ କଅଣ ଥାଏ ? ସ୍ପିରିଟସ୍ ଗାଲସିଆଟା ଏମିତି କିଛି ଖରାପ ଜିନିଷ ନୁହେଁ ।

ଆରତି—ନୁହେଁ କେମିତି—ନିଶା ତ ?

ଗୋପ—ହଁଅ ! କି ନିଶା ସେ, ସେମିତି ହେଲେ ଡାକ୍ତର କଅଣ କହିଥାନ୍ତା ?

ଆରତି—ଡାକ୍ତର କଅଣ କହିଛି ଯେତେବେଳେ ମନ ଯେତେବେଳେ ଖାଇବାକୁ ? ସେମିତି ହଉ ହଉ ଗୋଟାଏ ଖରାପ ଅଭ୍ୟାସ ହୋଇଯିବ । ଛି !

ଗୋପ—ଭଣ ଅଛି, ଭାରି ଟାୟାର୍ଡ଼୍ ଲାଗୁଛି, ଟିକିଏ ଫୁର୍ତ୍ତି ଲାଗିବ । ଏଇଥିରେ କଅଣ ଗୋଟାଏ ଅଭ୍ୟାସ ହେଇଯାଉଚି ? ଭଲ ହେଇଗଲେ ମୁଁ ତାକୁ ବନ୍ଦ କରିଦେବି ନାହିଁ ?

ଆରତି—କିନ୍ତୁ ଅଜ ଦିନକୁ, ଆଉ ଦିନେ କହିଲେ ଦି'ଥର ଦେବ ନାହିଁ । ସେଇ ସକାଳେ ଅଣ୍ଡାଦୁଧ ସାଙ୍ଗରେ ଥରେ,—ଏଇ ଶିଶିଟା ସରିଲା ସାଏଁ । ତା ପରେ ବନ୍ଦ । ( ଚାଲିଗଲେ )

ଗୋପ—ମୁଁ କଅଣ ଆଉ ଘରେ ତା ପରେ ଖାଉଚି ଯେ, ତୁମେ ବନ୍ଦ ବୋଲି କହୁଚ ? ଟିକିଏ ପାଣି ନାହିଁ ତ ସୋଡ଼ା ସାଙ୍ଗରେ ଦିଅ, ଭାରି କଡ଼ା ସେଗୁଡ଼ାକ ।

( ଆରତି ବ୍ରାଣ୍ଡିଶିଶି ଓ କାଚ ଗ୍ଲାସଟା ଆଣି ଟେବୁଲ ଉପରେ ରଖି ପାଣି ଆଣିବାକୁ ଗଲା । ଗୋପ ଇତିମଧ୍ୟରେ ଶୀଘ୍ର ଉଠି ବୋତଲରୁ ଢାଳି ଖାଇଦେଇ, ବୋତଲ ଦେଖି ଯଥା ସ୍ଥାନରେ ସାବଧାନସହ ରଖିଦେଇ ବସିଗଲା । )

ଗୋପ—( ମୁହଁ ପୋଛୁ ପୋଛୁ ) ବାସିବ ଯେବେ ଏଇନେ ଘରଟାଯାକ ! ( ସିଗାରେଟ କାଢ଼ି, ନିଆଁ ଲଗାଇ ଦୁଇ ଗୁରିବାର ଗୁରିଅଡ଼େ ଧୂଆଁ ଗୁଡ଼ଦେଇ ବସିଗଲା )

ଆରତି—( ପାଣିନେଇ ଆସି ବୋତଲରୁ ଢାଳିଲା, ଟିକିଏ ବେଶି ହେବାରୁ ଶିଶିରେ ଢାଳି ପାଣି ମିଶାଇଲା—ଗୋପ ଦେଖୁଚି । )

ଗୋପ—ଆଉ ପାଞ୍ଚଟା ବୁନ୍ଦା ଅଧିକା ଦିଅ, ଟିକିଏ ଭଲ ଲାଗିବ ।

ଆରତି—( କଡ଼ା ଆଖିରେ ଚାହିଁ ) ଗୋଟିଏ ଚାଲି ନିଆଁ ଅଭ୍ୟାସ ହେଲାଣି—ନାଁ ? ଏତିକି ଖାଇବ ତ ଖାଅ, ନୋଇଲେ ଢାଳିଦେବି ।

ଗୋପ—(ହସି) ନାହିଁ ମ ଦିଅ, ସତରେ କଅଣ ମୁଁ ମାଗୁଥିଲି ? ନିଶାଗୁଡ଼ା—ସେ କଥା ମୁଁ ଜାଣୁନାହିଁ ? ତମକୁ ଚିଡ଼େଇବାକୁ କହୁଥିଲି ନା ? ( ହସି ହସି ) ଦିଅ, ଦିଅ ।

ଆରତି—( ଗ୍ଲାସ ବୋତଲ ଧରି ) ମୁକୁନ୍ଦକୁ ଡାକ ଦଉଚି ସେ ଟିକିଏ ବାନ୍ଧି ଦଉଥିବ । ମୁଁ ଗୃ କରି

ନେଇ ଆସୁଛ । ( ଯାଉ ଯାଉ ) ଆଜ ଫେର୍ ସଞ୍ଜବେଳକୁ କୁଆଡ଼େ ଯିବାକୁ ନାହିଁ ତ ?

ଗୋପ—ବସି ବସି ଖଣ୍ଟା ଲାଗୁଚ, କାମ କରିବାକୁ ତ ମନାକଲ—କଅଣ ନାଁ—ଦେହ ଖରାପ ହେବ । କେତେ ଘରକଣ୍ଟାରେ ବସିବ କହନା ?

ଆରତ୍ତି—ଓଃ, ଆମେ ଯେ ଫେର୍ ଘରେ ବସିରହୁଛୁ !

ଗୋପ—( ହସି ) ତମର ସେଇଟା ଜାତିର ଅଭ୍ୟାସ, ଘରକଣ୍ଟା-ପଣା ।

ଆରତ୍ତି—ଆଉ ତମର ତ ନୋଇଲେ ଘର ଭଲ ଅଭ୍ୟାସ – ବଜାରବୁଲା ?

ଗୋପ—ନାଇଁ ହୋ, ରାଜୁ ସଞ୍ଜ ଆସେ ତ ଟିକିଏ ଏଇଠି କୋଉଠି ବୁଲି ଆସିବ, ନାଇଁତ, ନାଇଁ ।

ଆରତ୍ତି—ରାଜୁବାବୁଙ୍କର ଦେଖା ନାହିଁ କାହିଁକି ଆଜ ?

ଗୋପ—କୋଉଁଠି କାହାର ନିଜ ଧନ୍ଦାରେ ଲାଗିଥିବ । ବେଳ ପାଇଲେ ସେ ଆଉ କୋଉଠିକି ନ ଯାଏ ।

ଆରତ୍ତି—ବଡ଼ ପରୋପକାରୀ ଲୋକଟେ କିନ୍ତୁ । ତମ ଦେହ ବେମାର ବେଳେ ପାଖରେ ଆଖରେ ଯେମିତି କେହି ନ ଥିଲେ···

ଗୋପ—ବରାବର ଦିନରାତି ପହରା ଦେଲା ପରି, ସେ ଯେମିତି କରିଛି, ନିଜର ଭାଇ ତ ଏମିତି କରିବ ନାହିଁ । ତମକୁ ବି ଖୁବ୍ ସ୍ନେହ ଆଦର ତା'ର । ବଜାରକୁ ଗଲେ ତମର ଯେତେକ ଶାଢ଼ୀ କିଣା, ସବୁ ତା'ର ବରାଦରେ ନାଁ,—ସେ କଅଣ କେବେ କମ୍ ଦାମର ଶାଢ଼ୀ କିଣାଇଦେବ ତମପାଇଁ ?

( ଝୁନୁ ଓ ମୁକୁନ୍ଦ ହସିହସି ଆସିଲେ )

ଝୁନୁ—ବାପା, ବୋଉ ମୋତେ ଆଜ ଗାଳି ଦେଇଛି, ମାରିବାକୁ କହୁଛି ।

ଆରତ୍ତି—ଓଃ, ନାଲିସ ହେଇଗଲା ବାପାଙ୍କ ଆଗେ, ବାପାଙ୍କୁ କହି ମୋତେ ଏଇନେ ଘରୁ ତଡ଼ି ଦେବ ? ଯା—ମୁଁ ଯାଉଛି । ତୁ ତୋ ବାପାଙ୍କ ପାଖରେ ଥା । ଆ ମୁକୁନ୍ଦ, ମୋତେ ଆମ ଗାଁରେ ଛାଡ଼ିଦେଇ ଆସିବୁ । ( ଚାଲିଗଲେ )

ଝୁନୁ—ନାଇଁ ନାଇଁ ବାପା, ବୋଉକୁ ଡାକ ।

ମୁକୁନ୍ଦ—ଆଉ କାହିଁକି ? ବାପା, ବୋଉକୁ ଡାକ, ବାପାଙ୍କ ପାଖେ ନାଲିସ କଲାବେଳକୁ ?

ଝୁନୁ—ନାଇଁ ବାପା ! ଡାକ ।

ଗୋପ—ଆରେ ନାଇଁମ, ବୋଉ କଅଣ ସତରେ ବାହାରି ଯାଉଚି ? ଅମକୁସବୁ ଛାଡ଼ି କୁଆଡ଼େ ଯିବ ?

ଝୁନୁ—ଅଜା ଘରକୁ ଚାଲିଯିବ ।

ଗୋପ—ନାଁ, ସେ ଯିବ ନାଇଁ । ମୁକୁନ୍ଦ ତମ ଦେଇ ଘରୁ ଯିବେ ନାହିଁ । ହୁଁ, ତୁ କହିତ ଝୁନୁ, ବୋଉ ତୋତେ କାହିଁକି ଗାଳିଦେଲା ?

( ଝୁନୁ ମୁକୁନ୍ଦ ମୁହଁକୁ ଚାହିଁଲା )

ମୁକୁନ୍ଦ—କହିଦେ—କହୁନୁ ?

ଝୁନୁ—ନାଇଁ ।

ଗୋପ—କହ, ମୁ ତୋ ବୋଉକୁ କହିବି ନାଇଁ, କହ ।

ଝୁନୁ–ମୁଁ ଘୋଡ଼ା ଚଢ଼ୁଥିଲି ।

ଗୋପ—ଘୋଡ଼ା ? ପୋଷାକଗୁଡ଼ା ରଖ ତ ମୁକୁନ୍ଦ । (ପୋଷାକ କାଢ଼ୁ କାଢ଼ୁ ) କି ଘୋଡ଼ା ରେ ?

ମୁକୁନ୍ଦ—(ବାଞ୍ଚୁ ବାଞ୍ଚୁ ) ନ' ନାଙ୍ଗୁଡ଼ିଆ ଘୋଡ଼ା,— ଯୋଉ ଘୋଡ଼ା ଭାତ ଖାଏ, କଥା କହେ ।

ଗୋପ–କାଇଁରେ ତୋ ଘୋଡ଼ା ଝୁନୁ ? (ଝୁନୁ ଚାହିଁ ରହିଲା) ଘୋଡ଼ା କାଇଁ ?

ମୁକୁନ୍ଦ—(ହସି) ମୁଁ ଘୋଡ଼ା ହେବି, ସେ ଚଢ଼ିବ । ବେଗେ ନ ଚାଲିଲେ ଗୋଟେ ଏଡ଼କ ମୋଟ ଠେଙ୍ଗା ଅଛି ଯେ, ସେଇଟା ହେବ ଘୋଡ଼ା ଚାବୁକ । ଦେଇ ସେତକ ଦେଖିଲେ ।

ଗୋପ—ଭୁତ ଖାଇ ଦୁଷ୍ଟ ହେଲୁଣି ଟୁନୁ । ମୁକୁନ୍ଦ ବୁଢ଼ାଲୋକ, ତାକୁ ଏତେ କଷ୍ଟ ଦଉଚୁ ? ତୁ ତା ଉପରେ ଘୋଡ଼ା ଚଢ଼ିବୁ ?

ମୁକୁନ୍ଦ—ମୋ ଉପରେ କଅଣ ? ଅଜା ତା'ର ଯଦି ଆଜି ଥାଆନ୍ତେ ··

ଗୋପ—ଛି, ଛି, ଆଉଦିନେ ସେମିତି କରିବୁ ନାହିଁ । ତୋତେ ଗୋଟିଏ ସାନ ସାଇକଲ ଆଣିଦେବା, ତୁ ସେଇଥିରେ ଚଢ଼ି ବୁଲିବୁ ।

ଟୁନୁ—ମୁକୁନ୍ଦ ମୋ ସାଙ୍ଗେ ଚଢ଼ିବ ।

ମୁକୁନ୍ଦ—ଆଉ, ମୁକୁନ୍ଦ ନ ଚଢ଼ିଲେ ହଉଚି ?

ଟୁନୁ—ହଁ, ସାଙ୍ଗହୋଇ ବଜାରକୁ ବୁଲିଯିବା, ଲବଙ୍ଗକୁ ଡାକିନେବା, ଲେମେନଡ୍ରପ୍ ମିଠାଇ କିଣିବା ।

ଗୋପ—ତା ଛାଡ଼ । ବଜାରରେ ଆଉ କିଛି ମିଳେ କି ?

ଟୁନୁ—ବାପା ମୁଁ ବୋଉ ପାଖରୁ ଆସେଁ ।

ଗୋପ—କାହିଁକି ? ଏତେ ବେଗେ ବୋଉର ଦର୍କାର ପଡ଼ିଗଲା ?

ଟୁନୁ—ହଁ, ଆସେଁ । (ଚାଲିଗଲା)

ଗୋପ—(ହସି ହସି) ତା ମନେ ମନେ ସତେରେ ଯେମିତି ତା ବୋଉ ଚାଲିଗଲେ ।

ମୁକୁନ୍ଦ—(ହସି) ବଡ଼ବାବୁଙ୍କଠାରୁ କିଛି ଚିଠି ପତ୍ର ଆଉ ଆସିନାହିଁ ?

ଗୋପ—ନାହିଁକି ପନ୍ଦର କୋଡ଼ିଏ ଦିନ ହେବ ତ କିଛି ଖବର ନାହିଁ ।

ମୁକୁନ୍ଦ—ଦେହ କଅଣ ହେଲା କି ଆଉ କିଛି ହେଲା—କେହି ତ ଗୋଟିଏ ପାଖରେ ନାହିଁ, ତମ ବାପ୍ପଙ୍କି ପଡ଼ିଲା କାଳକୁ ଭରସା କଲେ ଯେ···ଘର ଶୁନ କରି ବର୍ଷେ ଉଡ଼ି ଅସିଲି ।

ଗୋପ—ଆଉ ତମେ ?

ମୁକୁନ୍ଦ—ପିଲାଦିନରୁ ତ ତମମାନଙ୍କୁ କୋଳେଇ କାଖେଇ କରି ମଣିଷ କଲି । ତମେ ତ ତମେ, ଦେଇଙ୍କି ଛାଡ଼ି ମୁଁ କେଉଁଠି ରହିପାରିବି ନାହିଁ ।

ଗୋପ—ଆଉ, ମୋ କଥା କହିଲ ଯେ ମୁକୁନ୍ଦ, ସବୁ ତ ତମେ ଜାଣ, ପଢ଼େଇ ବଢ଼େଇ ମଣିଷ କଲେ ଆମକୁ ସେ, ଆଉ କେତେଦିନ ତାଙ୍କ ଗଳଗ୍ରହ ହୋଇ···

ମୁକୁନ୍ଦ—ସେଇଠି କଣ ଓକିଲାତି କରିଥିଲେ ହେଇ ନ ଥା'ନ୍ତା ?

ଗୋପ—କଲେ ବି ତାଙ୍କର ଗଳଗ୍ରହ ତ ହୋଇଥାନ୍ତି ।

ମୁକୁନ୍ଦ—ଗଳଗ୍ରହ ଗୋଟିଏ କଅଣ ? ତାଙ୍କର ଆଉ କିଏ ଅଛି ? କିଅନ୍ତେ ତୁମେ—ମଲେ ତୁମେ । ସମ୍ପତ୍ତି ଆଉ ଖାଇବ କିଏ ?

ଗୋପ—ଆରେ ସେ କଥା ତ ଅଛି, କାହା ସମ୍ପତ୍ତି କିଏ ଖାଇବ—ତାର ଠିକଣା କଅଣ ?

ମୁକୁନ୍ଦ—ସାନବାବୁ, କେମିତି କଥା ଗୁଡ଼ାଏ ଯେ କହ···

ନେପଥ୍ୟ—କର୍ତ୍ତା ଅଛନ୍ତି ଘରେ ?

ଗୋପ—କେହି ନାହିଁ ରେ ଆ—ଚାଲିଆ, କେତେ ଫାକଲମି ଦେଖାଉଚୁ ?

ରାଜୁ—ମନେ କଲି କାଳେ ପ୍ରବେଶ ନିଷେଧ—(ଆସି) ଓ, ନାହାନ୍ତି ତା ହେଲେ ?

ଗୋପ—କିଏ ରେ ?

ରାଜୁ—ଆରେ 'ପ୍ରବେଶ ନିଷେଧ' ମ ।

ଗୋପ—ମାନେ ?

ରାଜୁ—ତମ ଶ୍ରୀମତୀ, ତାଙ୍କୁ ଅମେ ପ୍ରବେଶ ନିଷେଧ କହୁଁ ।

ଗୋପ—ଧେତ୍, ଦୁଷ୍ଟ । ବସ୍ ।

ରାଜୁ—ଆରେ ଦୁଷ୍ଟ କଅଣ ? ସେ ଥିଲେ ତ ପ୍ରବେଶ ନିଷେଧ । ଆଉ କଅଣ ?

ଗୋପ—ବସ୍ ବସ୍ । Every thing ଓ· କେ· ?

ରାଜୁ—ଓ· କେ· । (ପକେଟରୁ ଖଣ୍ଡେ କ୍ୟାସ୍‌ମେମୋ ଓ କିଛି ଟଙ୍କା ପଇସା ଫେରାଇ ଦେଲେ । ମୁକୁନ୍ଦ ଏ ସବୁକୁ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲା । )

ଗୋପ—ଯାଆ ତ ମୁକୁନ୍ଦ, ତମ ଦେଈଙ୍କି କହ—ତାଙ୍କ ରାଜୁବାବୁ ଆସିଲେଣି, ଦ ଜଣଙ୍କର ଚା ଆଣିବେ ।

ମୁକୁନ୍ଦ—(ପଙ୍ଖାଟା ରଖିଦେଇ ସନ୍ଦେହ ଦୃଷ୍ଟିରେ ରାଜୁକୁ ଚାହିଁ ଚାଲିଗଲା ।)

ଗୋପ—(କ୍ୟାସ୍‌ମେମୋ ଦେଖି) ବଡ଼ ଦାମ ତ ରେ ?

ରାଜୁ—ମାଲ ମିଳିବାକୁ ନାହିଁ । ଓଆରଟାଇମ୍ । ବଡ଼ କଷ୍ଟରେ ଏତକ ଷ୍ଟେସନ ରିଫ୍ରେସମେଣ୍ଟ ରୁମ୍‌ରୁ ମିଳିଲା କେମିତି କହ ! (ପକେଟରୁ କାଢ଼ି ଦେଖାଇଲେ ଗୋଟିଏ ପୁରା ଅଫିଟା ବ୍ରାଣ୍ଡି ବୋତଲ ।

ଗୋପ—(ଏଣେ ତେଣେ ଚାହିଁ) ଆରେ ଆରେ, ରଖ, ରଖ ତାକୁ ସେଣେ କୁଆଡ଼େ । ଶ୍ରୀମତୀ ବଡ଼ କଡ଼ା—ଜାଣୁ ତ ? ଅଫିସଘର ଟେବୁଲ ଉପରେ ରଖି ଦେଇ ଆ—(ରାଜୁ ପ୍ରସ୍ଥାନ ଓ ମୁକୁନ୍ଦ ପ୍ରବେଶ) କହିଦେଲୁ ମୁକୁନ୍ଦ ?

ମୁକୁନ୍ଦ—ହଁ, ମଲା ଯା—ରାଜୁବାବୁ ଫେର୍ ଗଲେ କୁଆଡ଼େ ?

ଗୋପ—ବାହାରକୁ ଯାଇଛି, ଆସୁଛି ।

ମୁକୁନ୍ଦ—ଅଚ୍ଛା ବାବୁ, ଏଇ ରାଜୁବାବୁଟି କିଏ ? ତମ ସାଙ୍ଗେ ତ ଆଗରୁ ଚିହ୍ନା ପରଚେ ନ ଥିଲା !

ଗୋପ—ସେ ଏଇ ପୁରୀର ଜଣେ ଜମିଦାର ପିଲା, ଏଠିକି ଆସି ତାଙ୍କ ସଙ୍ଗେ ଚିହ୍ନା ଜଣା ।

ମୁକୁନ୍ଦ—ରାଜୁବାବୁ ଜମିଦାର ପିଲା !

ଗୋପ—କାହିଁକି ମୁକୁନ୍ଦ ? ଏ କଥା ଆଜି କାହିଁକି ପଚାରିଲୁ ?

ମୁକୁନ୍ଦ—ନାଇଁ କିଛି ନାଇଁ, ଏମିତି ପଚାରି ଦେଲି ଜାଣିବାକୁ । ଲୋକେସବୁ କହନ୍ତି···

ଗୋପ—କଅଣ ?

ରାଜୁ—(ଆସି) କାଇଁ, କଅଣ ?

ଗୋପ—କୋଉଠି ରହିଲୁ ?

ରାଜୁ—ଯୋଉଠି ରହି ଅସୁଛି ।

ଆରତି (ନେପଥ୍ୟରୁ ଡାକିଲେ)—ମୁକୁନ୍ଦ !

ଗୋପ—ନେଇଆସ । ରାଜୁ ବସିଛି, ଏଇଟାକୁ କଅଣ ଲୁଚଉଛ ?

(ଆରତି ଓଡ଼ଣୀ ଟାଣି ଚା ନେଇ ଆସି ଟେବୁଲ ଉପରେ ରଖିଲେ, ରାଜୁ ତାଙ୍କୁ ନିର୍ନିମେଷ ଦୃଷ୍ଟି ଦେଇଥିଲେ । ମୁକୁନ୍ଦ ମଧ୍ୟ ରାଜୁର ଗତିବିଧି ଲକ୍ଷ କରୁଛି )

(ଆରତି ଚାଲିଗଲେ)

ଆରତି(ଭିତରୁ) —ମୁକୁନ୍ଦ !

ମୁକୁନ୍ଦ—ହଁ ଯାଉଚି ଦେଈ !

(କପ୍ ଉଠାଇ, ଗୋପାଳ ଚା'ଖାଇଲା, ରାଜୁ ଅନ୍ୟମନସ୍କ ଭାବରେ କପ୍‌ଟା ଧରି ରଖିଲା, ଆରତିର ଯିବା ପଥକୁ ଚାହିଁ)

ଗୋପ—ଖାଉ ନାହୁଁ ରେ ? କଅଣ ବୋକା ପରି ଭାବୁଛୁ ?

ରାଜୁ—(ପ୍ରକୃତିସ୍ଥହୋଇ) ନାଁ,

(କପ୍ ମୁହଁପାଖକୁ ନେଲେ)

ମୁକୁନ୍ଦ—ଦେଈ ପଚାରୁଛନ୍ତି ମିଠା କିଛି ଦେବେ ?

ଗୋପ—ରାଜୁ ! ଦେବେ ?

ରାଜୁ—ନାଁ ।

ଗୋପ—ଦର୍କାର ନାହିଁ ।

ରାଜୁ—ନାଁ ନାଁ, ତାଙ୍କର ଯାହା ଇଚ୍ଛା ହଅନ୍ତୁ ।

ଗୋପ—ନାଁ, ନାଁ, ଫେର ହଁ ହଁ ! ମୁକୁନ୍ଦ ! ଯା ନେଇ ଆସ, ମୋର ଦର୍କାର ନାହିଁ ।

ରାଜୁ—ଆଜିର ଫେର୍ ପ୍ରୋଗ୍ରାମ କଅଣ ରେ ? ବୁଲି ଯିବାର ହୁକୁମ ମିଳିବ ତ ?

ଗୋପ—ମିଳନ୍ତା ନ ମିଳନ୍ତା, ତୁ ଅଛୁନା ? ସହଜେ ମିଳିଯିବ ।

ରାଜୁ—ମାନେ ?

ଗୋପ—ତୋ ଉପରେ ଶ୍ରୀମତୀଙ୍କର ଭାରି ବିଶ୍ୱାସ ।

ରାଜୁ—କେମିତି ?

ଗୋପ—ସେଇ ମୋର ଜର ହବାରୁ ।

ରଜୁ—ଓଃ, ସତ୍ୟ ତ ମୁଁ ଚୋର କରି ପକାଇଛି !

ଗୋପ—ଆଉ କଅଣ କରନ୍ତୁ ? ସେତିକିରେ ସେ ଏତେ ଖୁସି ଯେ ଠିକ୍ ତୋ ଆସିବା ଆଗରୁ ତୋ କଥା ପଚାରୁଥିଲେ ।

ରାଜୁ—କଅଣ, ମୁଁ କେମିତିକା ଲୋକ ବୋଲି ?

ଗୋପ—ନାଁ, ସେ କଥା କାହିଁକି ?

ରାଜୁ—ଆଉ କଅଣ ମୋର ଶାରୀରିକ ଅବସ୍ଥା ?

ଗୋପ—ଧେତ୍, ଏଇଆ ଗୋଟେ କେହି ପଚାରେ ନାଁ ? ତୁ ଆସିନାହୁଁ କାହିଁକି ସକାଳୁ ବୋଲି ପଚାରୁଥିଲେ ।

ରାଜୁ—ମୁଁ ଆସନ୍ତି କେମିତି ? ତୁ ତ ପଠେଇଲୁ ଟେଣ । ସାରା ବଜାର—କୋଉଠି ମିଳିଲା ନାହିଁ । ଆଉରି ଗଲି ଷ୍ଟେସନକୁ ।

ମୁକୁନ୍ଦ—(ମିଠାଇ ନେଇ ଆସି ରଖି) ଷ୍ଟେସନକୁ ଯିବେ, କିଏ ଆସିବ ବାବୁ ? ବଡ଼ବାବୁ ଆସୁଛନ୍ତି କି ? (ହଠାତ୍ ହସିଲେ) ହସିଲେ ଯେ, ଆସୁଛନ୍ତି—ନା ? ହଁ, ସାନବାବୁଙ୍କ ବଡ଼ ଦୁଃଖ ଖବର ପାଇଥିବେ ନା, ବାପ ମନ—ସମ୍ଭାଳେ କେତେକେ ? ସେ ତ ଆଉ କଳିଯୁଗର ମଣିଷ ନୁହନ୍ତି । ମୁଁ ତେବେ ଦେଖନ୍ତି କହି ଦେଇ ଆସେ—ଘ’ ଜଳଖିଆ ଠିକ୍ କରି ରଖିଥିବେ ।

ଗୋପ—ଆରେ ନାଇଁ ହୋ ! କା’ଲିଁ କାହାରି ଦେଖାନାଇଁ । ସେ ଷ୍ଟେସନର ଆଉ ଜଣକ କଥା ।

ମୁକୁନ୍ଦ—ମୁଁ ମନେ କଲି ବଡ଼ବାବୁ ଆସୁଛନ୍ତି ବୋଲି ।

ଗୋପ—ନଅ, ଏଗୁଡ଼ାକ ନେଇ ଯାଅ ।

ମୁକୁନ୍ଦ—(ନେଇଗଲା ବାସନ ଉଠାଇ ଭିତରକୁ)

ଗୋପ—କଅଣ ରେ, ଆଜି କୁଆଡ଼େ ଯିବା ? ସମୁଦ୍ର କୂଳକୁ ?

ରାଜୁ—ସେଦିନ ଯେ ଭଦ୍ର ମହିଳାଟିକୁ ହୋଟେଲରେ ଦେଖିଥିଲୁ···ସୁନ୍ଦର ଗାଆନ୍ତି ।

ଗୋପ—ସତେ ସେ କଥା ମୋର ମନେ ନାହିଁ ମୋଟେ ।

ରାଜୁ—ଚାଲ ନା, ବୁଲି ଆସିବା । ତାଙ୍କୁ ତୁ ଯିବାକୁ କଥା ଦେଇଥିଲୁ ଯେ !

ଗୋପ—ସତେ, ସତେ ! ସେ କଅଣ ସତେ କହୁଥିବେ କହନାଁ । ତୁ ହେଲେ ମୋତେ ମନେକରିଦେଲୁ ନାହିଁ ?

ରାଜୁ—ଆଉ ମନେ କରନ୍ତି କେବେ ? ସ୍ତ୍ରୀ ଭିତରେ ତ ତୋର କାମର ଝମେଲା ଥିଲା—ତା’ ପରେ ତ ଜର । ଆଜି ଚାଲ ।

ଗୋପ—ବେଶ୍ ।

ରାଜୁ—ଉଠ୍ ତା’ହେଲେ ।

ଗୋପ—(ବୋତଲକୁ ଠାରି) ସେଇଟା ?

ରାଜୁ—ସାଙ୍ଗରେ ନେଇଯିବା ।

ଗୋପ—ମାନେ ?

ରାଜୁ—ସେଇଠି ମୁଁ ତା’ର ଯୋଗାଡ଼ କରିଦେବି ।

ଗୋପ—ଧେତ୍, ଗୋଟେ ଭଦ୍ର ମହିଳାର ଘରେ···

ରାଜୁ—ଆରେ ସେ ଭଦ୍ରମହିଳା କ୍ୱାଇଟ୍ ଅପ୍‌ଟୁଡେଟ୍, ପ୍ରଗତିଶାଳୀ ।

ଗୋପ—ଯେତେ ଅପ୍‌ଟୁଡେଟ୍ ହେଲେ ବା···

ରାଜୁ—ଗୋଟେ ଗୈର ମୁହାଁଟେ ତୁ । ଅଚ୍ଛା, ସେ ତ ନ ଜାଣିଲେ କିଛି ଗଲା ।

ଗୋପ—ହଁ, ତା’ ହେଲେ ହବ ।

ରାଜୁ—ତେବେ ଯା ପରମିଟଟା ନେଇଆ ।

ଗୋପ—ମୁକୁନ୍ଦ !

ନେପଥ୍ୟେ ମୁକୁନ୍ଦ—ବାବୁ !

ଗୋପ—ଦେଖନ୍ତି କହ—ମୁଁ ଟିକିଏ ବୁଲି ଆସୁଚି ରାଜୁବାବୁଙ୍କ ସାଙ୍ଗରେ । ପ୍ୟାଣ୍ଟଟା ଛାଡ଼ି ଆସୁଛି ରାଜୁ ! (ଚାଲିଗଲେ)

ରାଜୁ—ରାଜୁବାବୁ ସାଙ୍ଗରେ କାହିଁକି କହୁଛୁ ରେ ?

ଗୋପ—ଅରେ, (ଭିତରୁ କହିଲା) ରାଜୁବାବୁ is in her good books ଯେ ! ଗୋରୁ ଲାଞ୍ଜ ଧର ବୈତରଣୀ ପାର୍ ।

ରାଜୁ—ବେଶ୍ ବାବା, ଲାଞ୍ଜ ଧର୍ । (ଫଟୋ ଦେଖିବାକୁ ଉଠିଗଲେ ଓ ଡାକଲେ) କଓ, ମୁକୁନ୍ଦ !

ମୁକୁନ୍ଦ—(ଭିତରୁ) କହନ୍ତୁ ।

ରାଜୁ—କଓ ଦେଖ କଅଣ ତମର ଭଦ୍ରତା ଭୁଲିଗଲେଣି କି ? ଚା ଜଳଖିଆ ପରେ ଭଦ୍ରଲୋକ ପାନ ଖାଆନ୍ତି ଯେ—

ଗୋପ—ଓ ଯୋଉ ଭଦ୍ରଲୋକ !

(ଆସି ମୁଣ୍ଡରେ ଠଣା ମାରିଲା)

ମୁକୁନ୍ଦ—(ଆସି ପାନଡ଼ବା ଦେଲା) ଦେଈ କହିଲେ ଥଣ୍ଡାକୁ ବେଶି ରହିବେ ନାହିଁ, ଯଲଦି ଆସିବେ ।

ଗୋପ—ହିଁ, ହିଁ । (ଦୁହେଁ ବାହାରିଗଲେ)

ମୁକୁନ୍ଦ—(ଚେୟାର, ଟେବୁଲ ଯଥା ସ୍ଥାନରେ ରଖିବାରେ ଲାଗିଲା । ଇତି ମଧ୍ୟରେ ଅନ୍ୟ ଘରେ ଗୋଟେ ଶବ୍ଦ ଶୁଭିଲା) କଅଣଟେ ପଡ଼ିଗଲା ?

(ମୁକୁନ୍ଦ ଦେଖିବାକୁ ଗଲା)

ଆରଖି—(ଆସି) ବାଡ଼ଟା ନେଲେ ନାହିଁ ?

(ଗ୍ଭଲିଗଲେ)

ମୁକୁନ୍ଦ—(ଫେରିଆସି ମ୍ଳାନ ମୁଖରେ) ହିଁ, ଜମିଦାର ପିଲା !

ରାଜୁ—(ଆସି) ମୁକୁନ୍ଦ ?

ମୁକୁନ୍ଦ—(ଚୌକଟା ଘରକୁ ନେଉଥାଏ, ଶୁଣି ଶୁଣିଲା ନାହିଁ)

ରାଜୁ—ମୁକୁନ୍ଦ ?

ମୁକୁନ୍ଦ—କଅଣ କହନ୍ତୁ ?

(ବିରକ୍ତ ହେଲାପରି ଠିଆହେଲା)

ରାଜୁ—ତମ ଦେଈଙ୍କି କହିବ ଗୋପାଳର ହାତ ବାଡ଼ଟା ଦେବେ । ନବାକୁ ଭୁଲିଯାଇଛି ।

ମୁକୁନ୍ଦ—(କିଛି ନ କହି ଭିତରକୁ ଗ୍ଭଲିଯାଇ) ଦେଈ, ବାବୁଙ୍କ ହାତ ବାଡ଼ଟା···

ଆରଖି—ନେଇକରି ତ ଫେରିଲେ ଆଣିଲି—ନଉଚ ।

(ଆସି ଦେଖନ୍ତି ରାଜୁ । ସଙ୍କୁଚିତା ହୋଇ ଠିଆହେଲେ, ଚମକ ଖାଇ)

ରାଜୁ—ଗୋପ'ଲ ବାହାରେ ଠିଆ ହେଇଚ, ଦିଅନ୍ତୁ । (ହାତ ବଢ଼ାଇଦେଲା, କେମିତି ଏକ ଲୋଲୁପ ଦୃଷ୍ଟିରେ ଗ୍ଭହିଁ ଆରଖିର ମୁହଁକୁ । ଆରଖି ମୁହଁରେ ଓଢ଼ଣା ଦେଇ ବାଡଟି ବଢ଼ାଇଦେଲେ, ବାଡ଼ ନେବାବେଳେ ରାଜ୍ ହାତ ଥରିଲା । ବାଡ଼ଟି ପଡ଼ିଗଲା) ଓ ହୋ ! (ରାଜ୍ ଗୋଟେଇ ନେଇ ଗ୍ଭହିଁ ଗ୍ଭଲିଗଲାବେଳେ ଗୋଟେ କାନ୍ଥରେ ଧକ୍କା ବାଜନ୍ତି)

ମୁକୁନ୍ଦ—(ଆସି) ଫେର୍ କଅଣଟେ ପଡ଼ିଲା ଏ ଘରେ ?

ଆରଖି—ନାଇଁ ବାଡ଼ଟା ।

ମୁକୁନ୍ଦ—କଏ ? ରାଜୁବାବୁ ନେଲେ ?

ଆରଖି—ହିଁ, ଧରୁ ଧରୁ ପଡ଼ିଗଲା ଯେ—

ମୁକୁନ୍ଦ—ହୁଁ । ଲୋକଟା···

ଆରଖି—କଅଣ ମୁକୁନ୍ଦ ?

ମୁକୁନ୍ଦ—ନାଇଁ କିଛିନାଇଁ, ତମେ ଆସ ତ ଦେଈ ଟିକେ କଚେରିଘରକୁ । (ଆଗେ ଆଗେ ଗ୍ଭଲିଲା)

---

## ଦ୍ୱିତୀୟ ଦୃଶ୍ୟ

[ରାଜପଥ—ଜଣେ ଘୁଙ୍ଗୁର ଦାନା ବିକାଳୀ ଗାଇ ଗାଇ ଘୁଙ୍ଗୁରଦାନା ବିକିଚ୍ଭଲିଛି । ଲୋକେ ଶୁଣୁଛନ୍ତି]

(ଗୀତ)

ହାଏ ରେ—
ଘୁଙ୍ଗୁର ଦାନା,
ବାବୁ ଖାଏ ଗାନା ଗାଏ, ଗ୍ଭଖେ ସାହେବ ଖାନା
ବିବି ଖାଏ, ମଜ୍ଜା ଲୁଟାଏ ଉଡ଼େ ଫର୍ ଫର୍ ବାନା । ୀ

(ଖାଏ) ଡିନ୍ନ ଅଷ୍ଟିନ୍ ବାଲ୍ର  ସାଦା  ଲଫାଫା ବାଲ୍ର
ଗଜଲ୍ ଗାଏ,  ସିଟି ବଜାଏ, ହୋଏ ମଦନମସ୍ତାନା ।୧।

ଏ ଯେ  ଦୁନ୍ୟାର  ଦାନା,
ଚୁଙ୍କ୍  ଚୁଙ୍କ୍  କରୁ  ଖାନା,
ଯେ ଜଣ୍ଟଲମେନ୍ କା ଖାନା
ଘର୍  ଘର୍  ଫେର  ଯାନା
ନ ଖାନା—ପସ୍ତାନା,  ନ  ଖାନା—ପସ୍ତାନା ।୨।

---

## ତୃତୀୟ ଦୃଶ୍ୟ

[ ଉଷାର ଘର ଭିତରେ ସେ ବୁଲି ବୁଲି ଫୁର୍ତ୍ତିରେ ଗାଉଚି ଗୀତ—ଘର ସଜାଉ ]

(ଗୀତ)

ଉଷା—ମାଧବୀ ଶଶୀ ନଶିଥେ—
ନଭ ଦେଖା  ଦିଅ—ମୋର  ହୃଦୟ । ୦ ।
ଆସ ବକୁଳ ମୁକୁଳ ବାସେ
ଲୁଚ କଦମ୍ବ-କୁସୁମ  ହାସେ,
ଚରଣ ତଳେ ଗୁପି ଅଳତା ଲେଖ, ଏଇ ପଥେ । ୧ ।

(ଗୀତ ପ୍ରାୟ ସରିବା ବେଳକୁ ରାଜୁ ଆସି ପହଞ୍ଚି ଉଷାର ଗୀତ ଗାଇବାରେ ବାଧାଦେଇ ତୁନ ହେବାକୁ ନିର୍ଦ୍ଦେଶ ଦେଲା)

ଉଷା—ହଠାତ୍ ଏମିତି···

ରାଜୁ—ଆସ୍ତେ ।

ଉଷା—ବସ, କଥାଟା କଅଣ କହ । ଭୟ କି ନିର୍ଭୟ ?

ରାଜୁ—ଉଷା, ରାଜୁପାଖେ ତମର ଫେର୍ ଭୟ ? ଶୁଣ କଥାଟା । ମନେ ଅଛି ହଁ—ସେଦିନ ହୋଟେଲ କଥା ?

ଉଷା—ଓଃ, ତମର ସେ ବନ୍ଧୁ ?

ରାଜୁ—ହଁ, ଯାହାକୁ ତୁମେ ଡାକି ଆସିଥିଲ, ସେଇ ।

ଉଷା—କଅଣ ହେଲା ?

ରାଜୁ—ବହୁତ କଷ୍ଟରେ ତାକୁ ସାଙ୍ଗରେ ନେଇ ଆସିଛି ।

ଉଷା—ଆସନ୍ତୁ ।

ରାଜୁ—ଖାଲି ଆସନ୍ତୁ ବୋଲି କହିଦେଲେ ତ ହବନାହିଁ ! ଯନ୍ତା ତିଆରି କର, ତେବେ ତ ଶୀକାର ଧରିବ ।

ଉଷା—କେମିତି କହ, ବତେଇ ଦିଅ ।

ରାଜୁ—ତା'ର ଅଭ୍ୟାସ ନାହିଁ, ବୁଝିଲ ? ମାତ୍ର ନୂଆକରି ରମନାମ ଧରୁଛି । (ବୋତଲ ଦେଖାଇ) ଅଳ୍ପ ଟିକଏ ପଡ଼ିଯାଇ, ଗୋଲ୍‌ପି ଉଠି ଆସିଲେ, ବୋଲ ମାନିଯିବ ଯେ ।

ଉଷା—ହଉ, ଭଲ କଥା ।

ରାଜୁ—ଦେଖ ଉଷା, ହୁସିଆରରେ କାମଟି କର । ତାକୁ ପଟେଇବା ବଡ଼ ମୁସ୍କିଲ !  (କଣେଇ ଚାହିଁଲା)

ଉଷା—ମୁସ୍କିଲ !

ରାଜୁ—ହଁ, ତାର ସ୍ତ୍ରୀ ଭାରି ସୁନ୍ଦରୀ, ଗୁଣର ମଧ୍ୟ—ତା ପରେ ଦୁହିଁଙ୍କ ଭିତରେ ସଦ୍‌ଭାବ ଖୁବ୍ ବେଶି । ରୂପ ତ ଯେମିତି ଗୋଟିଏ ଗୃଉଳରେ ଗଢ଼ା ।

ଉଷା—ଓଃ, ସ୍ୱର୍ଗର ପରୀ !

ରାଜୁ—ରାଣ ଅଛି ଉଷା । ମୋ ଆଖିକି ତ ସେ ସ୍ୱର୍ଗର ପରୀଠାରୁ ବ ଯେମିତି ଆଉ କିଛି । କିନ୍ତୁ···

ଉଷା—କିନ୍ତୁ ?

ରାଜୁ—କିନ୍ତୁ ତୁମେଇ ଅଛ । ତୁମେ ଯଦି ଏ ଶୀକାରକୁ ହାତେଇ ପାର···ଧନ ଅଛି ବହୁତ, ମୋର ଯୋଗାଡ଼ ସିନା, କାମଟା ତୁମ ହାତେ ।

ଉଷା—ତୁମେ କଅଣ କରିବାକୁ କହୁଛ ଯେ, କଅଣ କରିବ ?

ରାଜୁ—କହୁଛି ନାହିଁ, ତୁମେ ହଠାତ୍ ଧରା ନ ଦେଇ ଟିକେ ଖେଳେଇ ନେଲେଇ ହେଲା । ଓଢ଼ଣୀ ତଳୁ ମୁହଁକୁ

ଲୋକ ଦେଖିବାକୁ ଚାହେଁ ବେଶି, ଜାଣ ତ ? ମୁଁ ତାକୁ ତୁମର ପରିଚୟ ଦେଇଛି—ତୁମେ ଜଣେ ଶିକ୍ଷିତା ଭଦ୍ର ମହିଳା ।

ଉଷା—ହଁ । (ଦୀର୍ଘ ନିଶ୍ୱାସ ମାରି) ଥିଲି ତ । ଦିନେ ସେଇଆ ଥିଲି, କିନ୍ତୁ ତୁମେ ତ···

ରାଜୁ—ଫେର୍ ସେଇ ପୁରୁଣା ପାଞ୍ଜି ତ ଅଡ଼େଇଲ ବସି ! ଗଲା କଥା ଗୁଡ଼ା କେତେ ଧରି ବସୁଛ ? ସେଇଥିପାଇଁ ତ ମୋର ଏତେ ଚେଷ୍ଟା । ତୁମେ କେମିତି ସୁଖରେ ରହ । ଏଇ ତ ମୋର ଦିନରାତି ଭାବନା । ଯାଅ, ତୁମେ ଆର ଘରକୁ ଚାଲିଯାଅ, ମୁଁ ତାକୁ ଟିକିଏ ଟିପ୍ସି କରେଇ ଦେଇ ତମକୁ ଆସିବାକୁ ଖବର ଦେବି ।

ଉଷା—ହଉ । (ଉଠିଲେ)

ରାଜୁ—ଆଉ ତମ ଚାକରଟା ହାତରେ ଚାରି ଛ'ଟା ଚପ୍ ମଗେଇ ପଠେଇ ଦିଅ । (ଯାଉ ଯାଉ ଫେରି) ହଁ, ବାଜାଟା ବି ସେ ଘରକୁ ନେଇଯାଅ । ଗୀତ ଗାଉଥିବ ବସି, ଆମେ ଆସିବାଟା ନ ଜାଣିବାପରି ।

ଉଷା—ବାଜାଟା ମୁଁ ମଗେଇ ନଉଚି ସେ ଘରକୁ । (ଯିବାକୁ ବସିଲେ)

ରାଜୁ—ହଁ, ଆଉ ପଦେ କଥା ମନେକରିବ ନାହିଁ ତ କହିବି ।

ଉଷା—କହ ।

ରାଜୁ—ତୁମେ ତ ସବୁ ଜାଣ । ଆଜିର ପନ୍ଥା ମୁଁ ତମର କରିଦେବି; କିନ୍ତୁ, ସେଇ···

ଉଷା—ସେଇ ?

ରାଜୁ—ଦଶଅଣା ତୁମର ।

ଉଷା—ଆଚ୍ଛା ଦେଖାଯିବ ।

ରାଜୁ—ଆଉ ଦେଖାଯିବ କଅଣ ? ମୁଁ ଗଲି । ଶୀକାର ବାହାରେ ଅଛି (ଯାଉ ଯାଉ ଫେରି) ହଁ, ଆମେମାନେ ଯିବା ବେଳକୁ ସୁବିଧା ଦେଖି ହୁଏତ ଗୋଟେ ଗହଣାର କଥା ବାହାର କରିଦେବ ।

ଉଷା—ଚିନ୍ତା ନାହିଁ—ଜଣାନାହିଁ···

ରାଜୁ—ଓଃ, କହିଲି ପରା ସେଠା ସୁବିଧା ଦେଖି ।

ଉଷା—ଦେଖିବ ।

ରାଜୁ—ହଁ, ସୁବିଧା ଦେଖି । ତେଣିକି ଆଦାପୁର ଭାର ମୋର, ଗଲି—ସାବଧାନ । (ପ୍ରସ୍ଥାନ)

ଉଷା—(କଅଣ ଭାବି, ଭଗବାନଙ୍କୁ ପ୍ରାର୍ଥନା କରି) ଭଗବାନ ! ··· (ବାହାରୁ ହସ ଶୁଭିଲା) (ଚମକି) ଓଃ । (ହାରମୋନିୟମଟା ନେଇ ଚାଲିଗଲେ ଅନ୍ୟ ଘରକୁ)

ଗୋପ—କିରେ, ଘରର ମାଲିକ ଭଳି ପଶି ଆସିଲୁ ଲମ୍ବେ ଲମ୍ବେ ! ଗୋଟେ ଖବର ଦେ ।

ରାଜୁ—ସବୁଠେଇ ତୁ ଗୋଟାଏ ଚୋରମୁହାଁ । ଭଦ୍ରଲୋକ ଘରକୁ ଭଦ୍ରଲୋକ ଆସିଚି, ସେ କଅଣ ଚୋରି କରିବାକୁ ନା କୌଣସି କୁ ମତଲବ ନେଇ ?

ଗୋପ—ତା ତ ନିଶ୍ଚୟ ନୁହେ ।

ରାଜୁ—ତେବେ, ଏତେ ଭୟ ?

ଗୋପ—କିନ୍ତୁ ଏଇଟା ଯେ ତୋର ଭଦ୍ରଲୋକର ଘର ନୁହେଁ, ଭଦ୍ରଲୋକୀ ।

ରାଜୁ—ଅରେ ହଁ ରେ ! ଲୋକ ଦେହରେ ଗୋଟେ ଡେଙ୍ଗା ଛକାର ଲାଗିଛି । ଏଇ ତ ? ଆ, ବସ୍ । (ବୋତଲଟା ଖୋଲିବାର ଉପକ୍ରମ)

ଗୋପ—ବାସ୍, ବୁଦ୍ଧି ତ ! ଠିପିଟା ଖୋଲିବୁ କେମିତି ଶୁଣେ ?

ରାଜୁ—ଶୁଣିବୁ କଅଣ, ଦେଖେଇ ଦଉଚି (ଗୋଟାଏ କର୍କସ୍କ୍ରୁ ଆଣି) ଅରେ ଆଜି କାଲିକା ଭଦ୍ରଲୋକ ଘରେ ଏ ସବୁର ଅଭାବ ନ ଥାଏ (ବୋତଲ ଦେଖାଇ) । ପ୍ରଗତି ଯୁଗର ଭଦ୍ରତା ଯେ ଯାର ଭିତରେ ଢଳ ଢଳ, ଜାଣୁ ? ନୂଆ କରି ଭଦ୍ରଲୋକ ହେବାକୁ ଯାଉଛୁ ନା ! ଜାଣିବୁ, ଜାଣିବୁ ! ଶନୈଃ ପର୍ବତ ଲଙ୍ଘନମ୍ । (ଠିପି ଫିଟାଇଲା)

ଗୋପ—ଢେଁ, ଆମର ଏଇ ଅବସ୍ଥାରେ ସଦ୍ଧ କୁମାରୀ ଉଷାଦେବୀ ପର୍ଯ୍ୟନ୍ତ ଯାନ୍ତୁ ।

(ଚାକର ଆସି ଚପ୍ ଥୋଇଦେଇ ଗଲା)

ରାଜୁ—ଏଟିକେଟ୍ ଆମକୁ ଅଜଣା ନାହିଁ । ତାଙ୍କୁ ଟେବୁଲ୍‌ଫ୍ରେଣ୍ଡ କଲେ ତ ହେଲା । ଅନ୍ତତଃ ଆମେ ଅଫର୍ କରିବାରେ ତ୍ରୁଟି କରିବୁ ନାହିଁ । ତେଣିକି ସେ ତାଙ୍କର ଭଦ୍ରତା...ନେ, (ଢାଳ) ଉଠା ।

ଗୋପ—(ଗ୍ଲାସ ଧରି) ଆରେ ର ସେ ।

ରାଜୁ—ଆରେ ଉଠ । କହିଲି ର, ଟେଷ୍ଟ୍‌କର ଟ୍ରାଇ ଟ୍ରାଇ ଏଗେଇନ୍ (try try again) ମୁଁ ସିଗାରେଟ୍ଟାଏ ଧରିଲି ଦଉଚି (ଗୋଟାଏ ଚପ୍ କାଢ଼ି) ମଝିରେ ଝଣ୍ଡେ ଖଣ୍ଡେ ଚାଲୁ । ଉଠା, ଡେରି କରନା ।

ଗୋପ—ଆରେ ଏ ଯୋଗାଡ଼ କେତେବେଳେ କଲୁ !

(ଖାଇଲା)

ରାଜୁ—ତତେ ଗାଡ଼ିରେ ବସାଇ ଦେଇ ଆଉ କଅଣ କରୁଥିଲି ?

ଗୋପ—ମୁଁ ମନେକଲି ତୁ ଏଠିକି ଖବର ଦେବାକୁ ଆସିଲୁ ନା ?

ରାଜୁ—ଆରେ, ସବୁ ଖବର ତ ଫେର ବୁଝାଯିବ । (ନିଜେ କମ୍ ଖାଇଲା) ଆଉ ଟିକିଏ ଦିଏଁ ?

ଗୋପ—ଦେଖ ରାଜୁ, ଗୋଟେ ଭଦ୍ରଲୋକ ଘରକୁ ଆସି...

ରାଜୁ—ସେ ଦାୟିତ୍ୱ ମୋର, ତୁ ଚଲନା ବାବୁ, ଗୋଟାଏ ଅଲଆଟାଏ ତୁ ! (ଗୋପାଳକୁ ଦେଲା, ସେ ଖାଇଲା) କାହା ବାପ ପଇସା ଆମେ ଖାଉଚୁ, ହକ୍ ଅଣ୍ଟାର ଧନ ।

ଗୋପ—(ଟିକିଏ ନିଶାଧରି ଆସିଲାଣି) ଅଲବତ୍ !

(ଗୀତ ଶୁଭିଲା ଆର ଘରୁ)

ରାଜୁ—ଦେଖ୍ ଗୋପ, ହୁସିଆର । ବେଶି ତ ହେଇ ଯାଉ ନାହିଁ ରେ ?

ଗୋପ—ଦୂର୍ ! ମୁଁ ଠିକ୍ ଅଛୁ, ଦେଏନା ଆଉ ଟିକିଏ ।

ରାଜୁ—ନାଁ, ନାଁ ! (ଢାଳୁଥାଏ କିନ୍ତୁ ଗ୍ଲାସରେ) ତୁ ନୂଆ ଲୋକ ।

ଗୋପ—ତୁ ବେପରୱା ଥାଆନା ବାବୁ ! ନୂଆଲୋକ, ନୂଆଲୋକ, ନୂଆଲୋକ !

(ଗ୍ଲାସଧରି ଏକା ଥରକେ ଖାଇଲା)

ରାଜୁ—(ଗୋପାଳର ଗତି ଲକ୍ଷ କରୁଥାଏ) ଏଇ, ଆଉ ଖାଆନା ।

ଗୋପ—କାହିଁକି ଖାଇବି ନାହିଁ ? ଅଲବତ୍ ଖାଇବି... କିଏ (ଗୀତକୁ ଲକ୍ଷକରି) ବୋଧହୁଏ...

ରାଜୁ—ଉଷା ଦେବୀ ।

ଗୋପ—ସୁନ୍ଦର କଣ୍ଠ ।

ରାଜୁ—ଚମତ୍କାର !

ଗୋପ—ବେଶ୍ ଭଦ୍ରତା ! ଆମକୁ ଦୂରରେ ରଖି !

ରାଜୁ—ଖବର ତ ଦିଆହୋଇ ନାହିଁ, ଡାକିବ ?

ଗୋପ—ନିଶ୍ଚୟ ଡାକିବୁ, ଆମେ କଅଣ ପଶୁ ? ଏଁ... ପଶୁ !

ରାଜୁ—କେମିତି !

ଗୋପ—ଆଉ ? ଆମକୁ କି ଗୀତ ଶୁଣି ଆସେ ନାହିଁ ? ଆମକୁ ଦୂରରେ ରଖି, ଏମିତି. ସୁନ୍ଦର ଗୀତ ଗାଇ...

ରାଜୁ—ଆରେ ନାଁ, ସେ ଜାଣେ ନାହିଁ ଆମେ ଆସିବାର, ମୁଁ ଖବର ଦଉଚି ।

ଗୋପ—ଆରେ ବୋଲଉ ନାଁ । (ଗ୍ଲାସ ଦେଖାଇ) ଜଲଦି ଦେ ।

ରାଜୁ—ଗୋପ, ଏଇ, ତତେ ନିଶା ଧରିଲାଣି । ଥାଉ, ଆଉ ଖାଆନା ।

ଗୋପ—ଅରେ ଧୁତ୍ ଢେର ଖାଆ ନା, ଢାଳ୍ ଦେ, ବୋତଲ ସାଫ୍ କର ।

ରାଜୁ—କାନ୍ତୁ ଗୋପ !··· (ଡାକିଲା)

ଗୋପ—( ଖାଇ ) ଆରେ ମୁଁ ଠିକ୍ ଅଛି । ତୁ ଯାଆନା ଡାକିଆଣ ସେ ସୁନ୍ଦର ଗୀତକୁ ।

(ରାଜୁ—ଉଠି ଚାଲି ଗଲା,-ଗୋପାଳ ଉଠି ଗୁଣୁ ଗୁଣୁ କରି ଗୀତ ଧରିଲା—ଇତି ମଧ୍ୟରେ କୁମାରୀ ଉଷାଦେବୀ ଆସିଲେ, ତାଙ୍କୁ ଦେଖି ଗୋପାଳ ନମସ୍କାର କଲା । )

ଗୋପ—ନମସ୍କାର, ସୁନ୍ଦର ଗାଆନ୍ତି ଆପଣ । ବାଃ ! ନମସ୍କାର ।

ଉଷା—ନମସ୍କାର, ବସନ୍ତୁ ନାଁ ।

ଗୋପ—(ବସି) ସଙ୍କୋଚ କଅଣ ଉଷା ଦେବୀ ! ଗାଆନ୍ତୁ ! ଭାରି ସୁନ୍ଦର କଣ୍ଠ ଆପଣଙ୍କର । ରାଜୁ !

ରାଜୁ—ବିଲ୍‌କୁଲ୍ ମିଠା, ଗାଅନ୍ତୁ ଗୋଟିଏ ଉଷାଦେବୀ, ଗୋପବାବୁ ଆପଣଙ୍କ ଗୀତ ଶୁଣିବାକୁ ଭାରି ଉତ୍କଣ୍ଠିତ ।

ଉଷା—କାନ୍ତୁ ଯାହା ତ ଗାଏଁ । ଯୋଉ ଗୀତ !

ରାଜୁ—ଗାଅନ୍ତୁ, ସଙ୍କୋଚ କାହିଁକି ?

ଗୋପ—ଆରେ ଡ୍ୟାମ୍ ଇଓର ସଙ୍କୋଚ ! ଗାଆନ୍ତୁ ନା ।

ଉଷା—(ଗାଇଲା ପୂର୍ବଗୀତ )

ଗୋପ—( ଗୀତସରୁ ନ ସରୁ ) ଚମତ୍କାର, ବାଃ, ବା, ସୁନ୍ଦର ! ଫାଇନ୍ ! ଉଷାଦେବୀ, ମାରଭଲସ୍ । ସୁନ୍ଦରୀ ! ସୁନ୍ଦର କଣ୍ଠ !( ଉଠି ) ଆସ, ଆସ, ଆଇ ଲଭ ଇଉ, [I love you] ମୁଁ ତୁମକୁ ଭଲପାଏଁ—ଅମି ତୋମାକେ ଭାଲ ବାସି, (·ଉଠାଇଲା ଉଷାକୁ, ଆଣି ପାଖରେ ବସାଇ ) ଗାଅ, ମୈ ତୁମକୁ ପ୍ୟାର୍ କର୍‌ତା ହୁଁ । (ଉଷାକୁ ଆଉଜାଇ ନେଲା ନିଜ ଦେହକୁ ) ଗାଅ । ( ଉଷା ଗାଇଲା, ଗୋପ ହଠାତ୍ ବ୍ୟସ୍ତ ହୋଇ ) ଉଃ, ଉଃ, ବଡ଼ ଗରମ୍ । ( ଆଉଜି ପଡ଼ିଲା ଚୌକି ହାତକୁ )

ଉଷା—( ଗୋପ ଦେହରୁ କୋଟ କାଢ଼ି ରଖିଦେବାକୁ ଗଲାବେଳେ ପକେଟରେ ବେଗ୍‌ଟା ଦେଖି ଖୋଲି ନୋଟ ଗଣିଲା । ନୋଟତକ ଟେବୁଲ ଉପରରେ ଓ ବେଗ୍‌ଟିକୁ ପକେଟରେ ରଖି କୋଟ ଟାଙ୍ଗି ଦେଲା ର୍‌ୟାକରେ । ରାଜୁ ଏ ସବୁ ଲକ୍ଷ୍ୟ କରୁଥାଏ । )

ରାଜୁ—( ହଠାତ୍ ଉଠି ଗୋପ ପାଖକୁ ଯାଇ ) ଉଷା ! ଡାଉନ୍ ହୋଇ ଯାଇଛି ଏକାବେଳେ । ନିଆ ଲେକ ନାଁ, ଯାଆତ, ଥିଲେ ଖଣ୍ଡେ ଲେମ୍ବୁ ଆଉ ଟିକିଏ ପାଣି ଆଣ ।

ଉଷା—ଆଣୁଚି । ( ଭିତରକୁ ଚାଲିଗଲା )

ରାଜୁ—(ଶୀଘ୍ର ଉଠି ଉପରରୁ ନୋଟ ତକ କାଢ଼ି ପକେଟସାତ୍ କରି ଗୋପର ମୁଣ୍ଡ ଅଉଁଷିବାରେ ଲାଗିଲା )

ଉଷା—(ପାଣି ଆଣି ) ଏଠି ସୁବିଧା ହେବ ? କମିତି ଯଦି ଖଟ ଉପରକୁ ଯାଆନ୍ତେ···

ରାଜୁ—(ଘଣ୍ଟା ଦେଖି) ନାଁ, ଦରକାର ନାହିଁ । ଉଚ୍ଚୁର ହେଲାଣି ଢ଼େର୍ । ତାକୁ ଘରକୁ ନେଇଯାଏଁ ।

ଉଷା—ଟିକିଏ ହୋସ୍ ଆସୁ । ଦାଣ୍ଡରେ ଗହଳଟା ଟିକିଏ ଭାଙ୍ଗୁ ।

ରାଜୁ—ଦାଣ୍ଡରେ ଗୋଳମାଳ କିଛି ନାହିଁ । ଭୀଷଣ ଶୀତ ବଢି, ଆଠଟା ବେଳକୁ ବଜାର ଶୁନ୍ । ସାମନାରେ ଗାଡ଼ି ମିଳିବ ତ ?

ଉଷା—ରିକ୍‌ସା ଦେବାର୍ ।

ରାଜୁ—ବେଶ୍, ଖଣ୍ଡେ ରିକ୍‌ସା କରିନେବି, ତା କୋଟଟା ଦିଅ । ମୁଁ ଉଠାଏଁ, ଗୋପାଳ, ଗୋପ !

ଗୋପ—ହୁଁ ।

ରାଜୁ—ଉଠ୍, ଘରକୁ ଚାଲ, ଡକେଇଛି ତୋତେ ଆରତି । ( ଉଠାଇ ଠିଆ କରାଇଲା । )

ଗୋପ—ଆରତି, ଆରତି, ଉପ୍ପର ଆରତି ? ନାଁ, ନାଁ ଡ୍ୟାମ୍ ଆରତି ! ଗେଟ ଆଉଟ୍, ଗେଟ ଆଉଟ୍ ।

ରଜ୍—ଚୂପ୍‌ରହ ! ଚଲ୍ । (ନେଇ ଯାଉଥାଏ)

ଗୋପ—ଚୁପ୍ ରହ, ଡ୍ୟାମ୍ ଆରଖ ଚୁପ୍‌ରହ, ଡ୍ୟାମ୍ ··

ଊଷା—(ସେମାନେ ଯିବାପରେ ଉପରୁ ଝୋଲ ଦେଖିଲା ନୋଟ ନାହିଁ, ଭୟବିହ୍ୱଳ ହୋଇ ଡାକିଲା)—ରଜ୍ ବାବୁ, ରଜ୍ ବାବୁ··· (ଦୂରରୁ ଶୁଭିଲା—ଡ୍ୟାମ୍)

---

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟ

( କୁଟୀର ସମ୍ମୁଖର ତୁଳସୀ ଚଉରା । ଲବଙ୍ଗ ବସି ଗୀତ ଗାଉଗାଉ ସିଲାଇ କରୁଛି କନ୍ଥା । ଲବଙ୍ଗ ଓ ତାର ଅନ୍ଧ ବୁଢ଼ା ବାପ କନ୍ଥା ଧରିଛନ୍ତି । କୁଡ଼ିଆ ପାଖେ ଗୋଟିଏ କଣ୍ଟାଖାଇ । ଲବଙ୍ଗ ଗୀତ ଗାଉଥିବାବେଳେ ବାଟବାଟେ ଆସିଲେ ଆରଖ, କଣ୍ଟା ବାଡ଼ଟାକୁ ଅଉଜି ଶୁଣୁଥିଲେ ଲବଙ୍ଗର ଗୀତ—ଲବଙ୍ଗର ନଜର ନାଇଁ ସେ ଆସିବାର, ସେ ତାର ଗାଉଛି, କନ୍ଥା ସିଉଁଛି । )

ଅନ୍ଧ ଓ ଲବଙ୍ଗ—ଗୀତ

ନାମ ଭଜନ କର ମନ !
କେତେଦିନ ଦେଖିବୁ ତୁ ମାୟାର ସପନ ରେ ? ।୦।

ଫୁଲର ଜୀବନ ତୋର ଘଡ଼କର ହସ,
ଛୁଡ଼ ଉଡ଼ ଯିବ ଯେବେ ବହେ ଅଣଶ୍ୱାସ,
ଶେଜାଇ ଶୋଉଛୁ କେତେ କୁସୁମ ଶୟନ (ଧନ) ? ।୧।

କୁଟା ପକାଇ ତୁ ମୋଟା ହେଉ ମନେ ମନେ
ତୋ ପାଖ ତ ସବୁ ମିଛ, ପାଞ୍ଚେ ଆଉ ଜଣେ ରେ
ପାଛୁଡ଼ଲେ ଜଣାଯିବ ଅଗାଡ଼ କେ ଧାନରେ ।୨।

ଆରଖ—ଲବଙ୍ଗ !

ଲବଙ୍ଗ—(ଗୀତ ବନ୍ଦକରି ଫେରି ଚାହିଁଲା) ମ, ଆଜି ଏ କି ଅସମ୍ଭବ କଥାମ ? (ଉଠି) ରଙ୍କ ପିଣ୍ଡାରେ ରଜ-କୁଣିଆଁ ?

ଅନ୍ଧ—(ହସି) ମା ଲକ୍ଷ୍ମୀଙ୍କ ପାଦ ଏ ଭଙ୍ଗା କୁଡ଼ିଆ ଦୁଆରେ କେମିତି ପଡ଼ିଲା ? ଓହୋ, କେଡ଼େ ଭାଗ୍ୟ ମୋର !

ଲବଙ୍ଗ—ମୁଁ ତ ଭଙ୍ଗା କୁଡ଼ିଆକୁ ଆସନ୍ତୁବୋଲି ଡାକି ପାରୁନାହିଁ । କୁଆଡ଼େ ଏମିତି···ଏତେବେଳେ ?

ଅନ୍ଧ—ଅକର୍ମା କପାଳକୁ ଗଙ୍ଗା ବଜେ କରିଛନ୍ତି ଲେ ଲବଙ୍ଗ ! ଡାକ, ଘରକୁ ଡାକ । ମା ଲକ୍ଷ୍ମୀ ଯେବେ ଦୟାକରି ଆସିଲେ, ଦୁଆରମୁହଁରୁ ଫେରିଯିବେ ?

ଆରଖ—ନାଇଁ ମ ତିନ ଚାରିଦିନ ହେଲା ତୁ ଆମ ଘରକୁ ଯାଇନାହୁଁ ଯେ, ଲବଙ୍ଗ ! ଭାବିଲି ଆଉ ଦେହ କଅଣ ହେଲା କି ?

ଲବଙ୍ଗ—(ହସି) ମୋ ଦେହ ? (ଭିତରୁ ଖଣ୍ଡିଏ ଗାଧୁଆ ଚୌକି ଆଣି କାନରେ ପୋଛୁ ପୋଛୁ) ମୋର ଫେର୍ କଅଣ ହବ ?

ଆରଖ—(ଅସିଲେ) କାହିଁକି ? ତୋ ଦେହ ଏମିତି କଅଣ କି ? ସୁନାର ନା ରୂପାର ?

ଲବଙ୍ଗ—ସୁନା ରୂପାର ନୁହେଁ ଯେ, କାଠ ପଥରରେ ତିଆରି । ସ୍ୱାର ଖରା କାକର ନାହିଁ କି କୁହୁଡ଼ି ବରଷା ନାହିଁ । ସବୁ ସହିବାକୁ ପରା ଜନମ ଆମର ।

ଆରଖ--ସହିଲେ କାଳୁ ଲୋକ ବଡ଼ହୁଏ, ଜାଣୁ ?

ଲବଙ୍ଗ—ହଁ, ବଡ଼ ତ ଗୁରେ ହେଲଣି ମୁଁ । ହଉ ମୋ କଥା ଥାଉ । ଏତେବେଳେ କେମିତି ଘରୁ ବାହାରି ପଡ଼ିଲେ ? ବାବୁ କଅଣ ନାହାନ୍ତି କି ?

ଆରଖ—ସେ ତ କଟେକ ଯାଇଛନ୍ତି । ଟୁନୁ ତ ସ୍କୁଲକୁ ଯାଇଛି । କେହି ଘରଟାରେ ନାହାନ୍ତି । ମନଟା କେମିତି ଲାଗିଲା ନାହିଁ, ଅସିଲି ବାହାରି ଟିକିଏ ତୋ ଗୀତ ଶୁଣିବାକୁ ।

ଅନ୍ଧ—ଲବଙ୍ଗର ଗୀତ ତେବେ ମା ଲକ୍ଷ୍ମୀଙ୍କ ଏତେବାଟ ଟାଣିଆଣିଛି ? ମୋ ଭାଗ୍ୟ ସେ । କହିଥିଲେ ତ ସେ ଘରଠିକି ଯାଇଥାନ୍ତା, ଏ ସେବ ଦୁଅଟାକୁ···

ଆରଣ୍ଣ—ଛି, ଛି, ଗରିବ କଏ, ବଡ଼ଲୋକ କଏ ? ଭାଗ୍ୟ ସବୁ କରେ । ବଡ଼ଲୋକ ଯେ ସବୁ ଦିନେ ବଡ଼ଲୋକ ଥିବ ଏମିତି କଛି କଥା ଅଛି ? ଗାଅ ଲବଙ୍ଗ, ଗୋଟିଏ ଗୀତ ଗାଅ ।

ଲବଙ୍ଗ—ଠିଆଟା ହୋଇ ରହିଲେ, ବସିଲେ ନାହିଁ ଯେ—

ଆରଣ୍ଣ—ହଁ ( ବସି ) କେଡ଼େ ସୁନ୍ଦର ଲାଗୁଚ ମୁଁ ଏ ଥାନଟି । ଘରପାଖ ଯାକ ଗଛ ଗୁଡ଼ାଏ । ମଝିରେ କୁଡ଼ଆଟି । ବେଶ୍ ପରିଷ୍କାର ପରିଚ୍ଛନ୍ନ—ଲିପାପୋଛା । ସୁନ୍ଦର ପବନ—ଚଉରାଟିଏ । ଏ ଗାଈଟି ?

ଅନ୍ଧ—ତା କଥା କହ ନାହିଁ ମାଆ ! ସେଇଟି ପରା ଲବଙ୍ଗର ଝିଅ ! ତାକୁ ସେ ଛୁଆଟିବେଳୁ ପାଳିଛି । ଗାଈ ନ ହେଲେ ଲବଙ୍ଗ ଚଳି ପାରିବ ନାହିଁ । ଦିନେ କେବେ ଲବଙ୍ଗ ଖାଇଲା ବେଳେ ଆସିଲେ ଦେଖିବ ମାଆ ! ଲବଙ୍ଗ ପାଖ ଛଡ଼ା ସେ ପୁଣି କାହାରି ପାଖେ ନ ଶୁଏ ।

ଆରଣ୍ଣ—ମୁଁ କେବେ ଅସି ନ ଥିଲି । ଋଷି କୁଡ଼ଆଟି ପରି ଲାଗୁଛି, କି ପବିତ୍ର ! ଲବଙ୍ଗ ! ବେଳ ପାଇଲେ ମଝିରେ ମଝିରେ ମୁଁ ବରାବର ଆସିବି ।

ଲବଙ୍ଗ—କି କଥା ଯେ କହନ୍ତି ! ଭଙ୍ଗା କୁଡ଼ଆରେ ରାଜଲକ୍ଷ୍ମୀ !

ଆରଣ୍ଣ—ହେ, ତୁ ଗାଅ । ମିଛଟାରେ ମତେ ଖାଲି ଆଉ ଟେକ ପକାନା ।

ଲବଙ୍ଗ—( ଉଠିଯାଇ ଏକତାରାଟା ଆଣି ) ଟିକିଏ ସୁର ଦିଅ ତ ବାପା !

ଅନ୍ଧ—( ସୁରଧରି ) ଗା ।

(ଗୀତ)

ପୂଛି ମାଳତୀ କୁଞ୍ଜ ନିକୁଞ୍ଜ ତଳେ—
ଶ୍ୟାମ ଚଞ୍ଚଳ ମଞ୍ଜିର ମଞ୍ଜୁ ଖେଳେ ।୦।

କଟୀ ପୀତ ଧଟି ଫିଟି ଲୁଟି ଲୋଳେ
ମାଳମେଘ କି ବିଜୁଳି ଘୁରି ଚଳେ । ୧ ।

ମୃଗ ଚନ୍ଦନ ଚର୍ଚ୍ଚିତ ଚନ୍ଦ୍ରାନନେ
ରୁଚି ରୋଚନା ବିନ୍ଦୁ କଳଙ୍କ ଛଳେ । ୨ ।

ବହଇ ମଳୟ ମନ୍ଦ ଖେଳଇ ଶିଖୀ ଶିଖା ଶିରେ
ବନଫୁଲ ସୁଗନ୍ଧ ପଶେ ଯମୁନା ନୀରେ
ବ୍ରଜ କାମିନୀ କାମ-ସୁଠାମ ଭୁଲେ
ରସ ସାଗରୀ ସାଜେ କଦମ୍ବ ମୂଳେ । ୩ ।

ମୁକୁନ୍ଦ—( ଅସି ) ଟେଇ ! ତୁମେ ଆସି ଲବଙ୍ଗ ଘରେ ? ଭଲ ମୁଁ ଖୋଜୁଛି ରାଇଜସାରା ଯେ ପାଇବ କୋଉଠୁ ? ଟୁନୁବାବୁ ଅସି ଧୁମ୍ ଲଗେଇଚ—ବୋଉ କୁଆଡ଼େ ଗଲା ବୋଲି ।

ଆରଣ୍ଣ—( ଉଠି ) ଆ, ଲବଙ୍ଗ ! ଯାଉଚି, ଟୁନୁ ସ୍କୁଲରୁ ଆସିଲାଣି । ମୁକୁନ୍ଦ ! ଟୁନୁ ଏତେବେଗି କେମିତି ସ୍କୁଲରୁ ଆସିଲା ?

ମୁକୁନ୍ଦ—ଆଜି ଶନିବାର ପରା ?

ଆରଣ୍ଣ—ହଁ, ହଁ ମୋର ତ ମନେ ନାହିଁ । ଲବଙ୍ଗ, ଶୁଣ ( ଟଙ୍କାଟିଏ ଦେଇ ) ନେ ରଖ । ବାପାଙ୍କର କଅଣ ଖର୍ଚ୍ଚ ଥିବ ।

ଲବଙ୍ଗ—ମ, ଦୁଆରେ ଫେର୍ ଯାଚକର ଭିକ୍ଷା ଦବାକୁ ଥିଲା ?

ଆରଣ୍ଣ—ଯ୍ୟାକୁ କଅଣ ଭିକ୍ଷା କହନ୍ତି ? କମିତି କଥା ଗୁଡ଼ା ଯେ ତୁ କହୁ ଲବଙ୍ଗ !

ଅନ୍ଧ—କଅଣ ଲବଙ୍ଗ ?

ଆରଣ୍ଣ—କିଛିନାହିଁ, ଟୁନୁ ଆସିଲାଣି ଘରକୁ ଯେ ସେଇକଥା କହୁଥିଲି ।

ଲବଙ୍ଗ—ନାହିଁ ବାପା, ଆମ ଦୁଆରକୁ ଆସି, ଯାଚକକୁ ଟଙ୍କା ଦେଇ ଯାଉଛନ୍ତି, କାଳେ ତୁମର ଦରକାର ଥିବ ବୋଲି ।

ଅନ୍ଧ—ଏ ଅନ୍ଧ ପୁଅଟା ଉପରେ ଏତେ ଅନୁଗ୍ରହ କାହିଁକି ମା, କୋଉ ଜନ୍ମରେ ମାଆ ଥିଲ ମୋର ମା ଲକ୍ଷ୍ମୀ ! ନ ମାଗୁଣୁ ଦୁଆରେ ଭିକ୍ଷା ମିଳୁଛି ! ସଦାକାଳେ ଦୁଃଖୀ ରଙ୍କୀ ପୋଷି ହୁଅନ୍ତୁ ଏଇ ହାତରୁ ତୁମର ।

ଆରତି—ଛି, ଛି, ଏ କଅଣ ଭିଖ ? କିଏ କାହାକୁ ଦେଇ ପାରୁଛି ? ତମେ ମୋତେ ପରବୋଲି ଭାବୁଛ, ନାହିଁ ? ଖର୍ଚ୍ଚ ଦର୍କାର ଥିବ, ରଖିଥା ବୋଲି ସିନା କହିଲି ।

ଅନ୍ଧ—ଖର୍ଚ୍ଚ ! କହୁଥିଲା ପିଉଁଥିଲା ଲବଙ୍ଗ; ଭିକ୍ଷା କରି ଯିବାକୁ ।

ମୁକୁନ୍ଦ—ଆସ ଦେଇ, ଚିଠି ଗୁଡ଼ା କଅଣ ଆସିଥିଲା ଯେ, ରାଜୁବାବୁ କଚେରି ଘରେ ରଖିଥିଲେ । କାଳେ ବଡ଼ବାବୁଙ୍କଠୁଁ କିଛି ଖବର ଆସିଥିବ, ସେଥିପାଇଁ ମୁଁ ଆଗେ ତରବର ହୋଇ ଡାକି ଆସିଲି ।

ଆରତି—ବାପାଙ୍କ ପାଖରୁ ଚିଠି କିଛି ଆସିଛି ବୋଲି ରାଜୁବାବୁ କହୁଥିଲେ ?

ମୁକୁନ୍ଦ—ନାହିଁ, ଗୁଡ଼ିଏ ଛଅଟା ଚିଠି କଅଣ ଥିଲା । ସେଥିରୁ ଖଣ୍ଡେ ତାଙ୍କର ବୋଲି ସେ ରଖିଲେ । ବାକି ଚିଠି ଦେଇକି ଦେ ବୋଲି କହିଲେ ।

ଲବଙ୍ଗ—ତାଙ୍କ ଚିଠି ?

ଆରତି—କେଜାଣି ?

ଲବଙ୍ଗ—ଡାକବାଲା ତମଘରେ ଦେଇଗଲା ତାଙ୍କ ଚିଠି ?

ଆରତି—କେଜାଣି କଅଣ, ମୁଁ ୩।୪ ଖଣ୍ଡ ଚିଠି ଦେଲିଣି ବାପାଙ୍କଠଉଁ କିଛି ଜବାବ ପାଉନାହିଁ । ମନଟା କେମିତି ଗୋଳେଇ ଘାଣ୍ଟି ହଉଚି । ଲବଙ୍ଗ, କାମ ନ ଥିଲେ ସଞ୍ଜବେଳକୁ ଟିକିଏ ଆମ ଘରକୁ ଯିବୁ ।

ଲବଙ୍ଗ—ହଁ ବାବୁ ଥିବେ, ବଡ଼େଇଁ ଯାକ ମିଶି ସେଦିନ ପରି ହଇରାଣ କରିବ, ଗୀତ ଗାଇବାକୁ ଧୁମ୍ ଲଗେଇବ । ନାଁ, ଆଉ କେତେବେଳେ ଯିବି । ବାକି ସଞ୍ଜବେଳେ ମୁଁ ନ ଯାଏ । ବାବୁ ଥିବେ ।

ଆରତି—(ନିଃଶ୍ୱାସ ମାରି) ବାବୁ ପ୍ରାୟ ଆଜି କାଲି ସଞ୍ଜହେଲେ ଘରେ ନଥାନ୍ତି ମ !

ମୁକୁନ୍ଦ—ମୁଁ ତ କଚେରିକି ଯାଇଥିଲି ଜଳଖିଆ ନେଇକରି ସେ ଚପ୍ରାସି ଜମା ଦେଇ ଆସିଲି । କଚେରିରେ ବି ତ ନାହାନ୍ତି । ଆସିଲାବେଳେ ଟୁନୁବାବୁଙ୍କୁ ସ୍କୁଲରୁ ନେଇ ଆସିଲି ।

ଲବଙ୍ଗ—କଚେରିରେ ବାବୁ ଆଉ କୁଆଡ଼େ କାମରେ ଥିବେ ସିନା । ସଞ୍ଜବେଳେ ନିତି କୁଆଡ଼େ ଯାଉଛନ୍ତି ଏତେ ?

ଆରତି—କେଜାଣି ସେ ଜାଣିଥିବେ । ଆଜି କାଲି ରାତି ୧୨ ଟା ଆଗରୁ ତ ଫେରୁ ନାହାନ୍ତି । ତାଙ୍କ କଥା ସେ ଜାଣନ୍ତି ।

ଲବଙ୍ଗ—ଏକା ?

ଆରତି—ହଁ, ଏକା; କେବେ ବା ରାଜୁବାବୁଙ୍କ ସାଙ୍ଗରେ । ତୁ ଆସିବୁ ନିଶ୍ଚୟ ଲବଙ୍ଗ ! ଏକୁଟିଆ ଦିନ ସାରୁନାହିଁ ଘରେ ବସି ବସି । ଟୁନୁ ତ ସଞ୍ଜବେଳକୁ ଶୋଇପଡ଼ୁଛି—ମୁଁ ଚଳେ ।

ଅନ୍ଧ—ହଁ, ମୁଁ ତାକୁ ସଞ୍ଜବେଳକୁ ପଠେଇଦେବି ମା ଲକ୍ଷ୍ମୀ ! ଲବଙ୍ଗ, ଯାଆ ମାଆଙ୍କ ସାଙ୍ଗରେ, ଘରେ ଛାଡ଼ିଦେଇ ଆସିବୁ ।

ଲବଙ୍ଗ—ହଁ । (ପ୍ରସ୍ଥାନ)

---

## ଦ୍ୱିତୀୟ ଦଶ୍ୟ

[ ଉଷାର କକ୍ଷ—ରାଜୁ ଓ ଉଷା ]

ରାଜୁ—କେତେ ବା ଟଙ୍କା ଥିଲା ! ତା ପାଇଁ ତୁମେ ମୋତେ···

ଊଷା—ଅବିଶ୍ବାସ ? ସେଭଳି କାମ ତୁମେ କରିନାହିଁ ?

ରାଜୁ—ତା ବୋଲି ତ ମୁଁ ଆଉ ନେଇ ପଳାଉ ନ ଥିଲି; ଏଇତ ତୁମର ୨୫ ଟଙ୍କା । ୧୫ ଟଙ୍କା ମାତ୍ର ମୁଁ ନେଇଛି ।

ଊଷା—ଏଟା କଅଣ ଠିକ୍ ହେଲା ?

ରାଜୁ—ଯେମିତି ବୁଝିବାକୁ ଗଲେ ତୁମର ମୋଟେ ପାଉଣା ନୁହେଁ । ତୁମେ ତ ଜାଣ, ଖାଲି ମୁଁ ତାକୁ ଏଠିକି ନେଇ ଆସିଛି—ଆଉ ତୁମେ ପାଇଛ । ଏଥିରେ ବରଂ ମୋର ପାଉଣାଟା ବେଶି ।

ଊଷା—ବେଶ୍ ବାବୁ, ତୁମର ପାଉଣା ବେଶି, ମୁଁ ମାନୁଛି । ତୁମେ ଯାଅ, ମୋର 'କାମ ଅଛି ।

ରାଜୁ—ଓଃ, (ଉଠି) ତୁମେ ତାହାହେଲେ···ଅଚ୍ଛା । (ଚାଲିଗଲେ)

ଊଷା—(ଉଠି) ରାଜୁବାବୁ ! ରାଜୁବାବୁ !

ରାଜୁ—(ଫେରିଆସି) କଅଣ କହୁଚ ?

ଊଷା—ତୁମେ ବୋଧହୁଏ ରାଗିଗଲ ।

ରାଜୁ—ନାଇଁ ତ, ରାଗିବାର କାରଣ କିଛି ନାଇଁ—ତୁମେ କହିଲ ଯାଅ, ଆଉ ମୁଁ ଯାଉଛି । ଏଥିରେ ରାଗ ରୋଷ କୋଉଠି ରହିଲା ?

ଊଷା—ଆଚ୍ଛା ବୋଲି କହି ହଠାତ୍ ଉଠିଗଲ ଯେ ?

ରାଜୁ—ତେବେ କଅଣ ଅପେକ୍ଷା କରିଥାନ୍ତି ତୁମ ଚାକରଟା ଆସି ମତେ ସଦର ଦରଜାକୁ ବାଟ ଦେଖେଇ ଦେବା ପର୍ଯ୍ୟନ୍ତ ?

ଊଷା—ନାଁ, ନାଁ ମୋର ମନଟା ଭଲ ନ ଥିଲା, କଅଣ ରାଗରେ ଯେ ତୁମକୁ କହି ପକେଇଛି, ଶୁଣ—ବସ ।

ରାଜୁ—ନାଁ, କଅଣ କହିବ କହ, ମୁଁ ଶୁଣୁଛି ! (ଊଷା ରାଜୁକୁ ହାତଟାଣି ବସାଇ)

ଊଷା—ଓଃ, ଘର ତ ରାଗ ! (ଗାଲ ଚିପିଦେଲା)

ରାଜୁ—ନାଁ, ରାଗ କଅଣ ? ଡର ଲାଗୁଚି, ତୁମର ଘର, ତୁମର ଏଠି ଅଧିକାର ଏଇନେ । ମନଟା ଭଲ ନ ଥାଇ କଅଣ ନା କଅଣ କହିଦେଲ, ଫେର୍ ଯଦି ତୁମର ମନଟା ଭଲ ନ ଥାଏ ବି ସୋଟା ମାର !

ଊଷା—ଓଃ, ମାଉକୁ ଘର ଡର ଦେଖୁଚ ! (ପୁଣି ଗାଲଚିପି) ବଡ଼ ସହିଲାବାଲା ଏକା ? କି ସୁଧର୍ମ ପିଲାଟି !

ରାଜୁ—କଅଣ କହିବାର କହ । ବାସ୍ତବିକ ମୋର କାମ ଅଛି ।

ଊଷା—ତମେ ରାଗିଲେ ଆଉ କହିବ ନାଇଁ ।

ରାଜୁ—ନାଇଁ ମୁଁ ରାଗୁନାଇଁ ।

ଊଷା—ମୋ ରାଣ ?

ରାଜୁ—ଓଃ, କହୁଚି ରାଗୁ ନାଇଁ ବୋଲି, ଅବିଶ୍ବାସ କାହିଁକି ?

ଊଷା—ସତ କୁହ ତ କୋଉଠି କାମ ଅଛି ।

ରାଜୁ—ମରଦ ପୁଅ ଆମେ, ଆମର ହଜାର ଯାଗାରେ କାମ ଅଛି । ସେସବୁ ହିସାବ ତମର କଅଣ ଦରକାର ? ଯାହା କହିବାର ଅଛି, କହିପକାଅ ।

ଊଷା—ତଥାପି ତୁମର ରାଗ ଅଛି ? କଅଣ ନ କରୁଛି ମୁଁ ତୁମପାଇଁ, କଅଣ ନ ସହୁଛି କହନା ?

ରାଜୁ—ଢେର ସହିଚ, ଢେର କରିଚ । କିନ୍ତୁ ସେଥିରେ ମୁଁ ତୁମର କିଛି କ୍ଷତି କରିନାହିଁ, ବରଂ···

ଊଷା—ବରଂ ମତେ ଦାଣ୍ଡରେ ଭସାଇ ଦେଇଚ, ତୁମେ ଭରସା ଦେଇ ନ ଥିଲେ ମୁଁ···

ରାଜୁ—ଭରସା ଦେଇ ମୁଁ ତୁମକୁ ଉପବାସ ରଖିନାହିଁ । ଯେଉଁଗୁଡ଼ାକ କାହିଁକି ଘାଣ୍ଟୁଛ ? ଘାଣ୍ଟିଲେ ଅନେକ କଥା ବାହାରିବ, ଦିନେ ତୁମେ ଗରିବ ଘରର ପିଲା ଥିଲ,—ଆଜି ତୁମେ ରାଜରାଣୀ ।

ଊଷା—କିନ୍ତୁ ସେ ଆଶାରେ ମୁଁ ତ ଘରଛାଡ଼ି ନ ଥିଲି ।

ରାଜୁ—ତଥାପି ତୁମର କିଛି କ୍ଷତି ହୋଇଛି କି ? ଆପାତତଃ ମୁଁ ତୁମର କ୍ଷତି ଦେଖିବାକୁ ଯିବି ନାହିଁ । ତା' ନୋହିଲେ ତୁମେ ଆଜି ମୋତେ···

ଊଷା—ଫେର୍ ତୁମେ ସେଇକଥା ମନରେ ଧରି ବସିଛ ?

ରାଜୁ—ନା ନାଁ, ମୁଁ କଥାକୁ କହୁଥିଲି । ତୁମର କଅଣ କହିବାକୁ ଥିଲା, କହ ତ, ମୁଁ ଶୁଣିବି ।

ଉଷା—ମୋର ଯାହା କହିବାର ଥିଲା ଆଜି ଆଉ କହିବି ନାହିଁ—ତୁମେ ରାଗିବ । ହୁଏତ··

ରାଜୁ—ରାଗିଲେ ତୁମର କିଛି କ୍ଷତି ହେବ ? ନାଁ, ସେ ଆଶା ମୋଠୁଁ କରନାହିଁ ଉଷା !

ଉଷା—ତୁମେ ରାଗିବ ନାହିଁ ତ କହିବି ।

ରାଜୁ—କହୁଚି ତ ରାଗିବି କାହିଁକି ?

ଉଷା—ତମ ବନ୍ଧୁଟି କାଲିଠାରୁ ଦେଖା ନାହାନ୍ତି କାହିଁକି ?

ରାଜୁ—ଉଷା, ମୁଁ ବୁଝି ପାରିଚି, କିନ୍ତୁ ସାବଧାନ ! ମନଟି ଦେବା ଆଗରୁ, ମନ ନେଇ ମନ ଦିଅ ।

ଉଷା—ମାନେ ?

ରାଜୁ—ତୁମେ ବୋଧହୁଏ ଟିକିଏ ଗୋପ ପ୍ରତି···

ଉଷା—(ମୁହଁ ପୋତି ଦେଲା)

ରାଜୁ—କିନ୍ତୁ ମୋ କଥା ଯଦି ଶୁଣିବ ତ କହିବି । ଆଜି ଯାହା କହିବି, ତୁମର ଭଲ ପାଇଁ—ଏତିକି ଜାଣି ରଖିଥା । କେତେଦିନ ହେଲା ତୁମର ତା ସଙ୍ଗେ ଦେଖା ? ତୁମେ ତାର କଅଣ ବୁଝିଚ ? ଜାଣ ତ ଗୋପର ସ୍ତ୍ରୀ ଆରଣ୍ଡ ଖୁବ୍ ସୁନ୍ଦରୀ—ହୁଏ ତ ହଠାତ୍ ତା'ର ଗୋଟାଏ ପରିବର୍ତ୍ତନ ଆସିବ—ତୁମେ ସେତେବେଳେ ଧନ, ଜନ ସବୁ ହରାଇ ବସିବ ।

ଉଷା—ନାଁ, ସେ କହିଥିଲେ ଆଜି ଆସିବାକୁ ।

ରାଜୁ—କିନ୍ତୁ, ତୁମେ ଯଦି ଭଲ ଚାହଁ, ଆଗେ ତାକୁ ପରଖି ନିଅ ।

ଉଷା—କେମିତି ଆଉ ? ମୁଁ ଯେ···

ରାଜୁ—ଭୁଲ କରିଚ—ଏଡ଼େ ବେଗେ ଧରା ଦେଇ । ଶୁଣ, ଯାହାର ପ୍ରାଣ ଏକାବେଳେ ତମଠି ଢଳି ଯାଇପାରେ, ସେ ତୁମପାଇଁ ଦୁନିଆରେ ନ କରିପାରେ କଅଣ ? ଆଗେ ବୁଝ, ସେ ତୁମକୁ ପ୍ରକୃତରେ ସ୍ନେହ କରେ କି ନାଁ, ତା ପରେ ସିନା ତୁମେ···

ଉଷା—ତା' ହେଲେ···

ରାଜୁ—ପରୀକ୍ଷା କରିବା ଦରକାର ।

ଉଷା—କେମିତି ?

ରାଜୁ—କିଛିନାହିଁ, ତୁମେ ଟିକିଏ ଟାଣ ହୁଅ । ମୋର ଲକ୍ଷ ତ ଜାଣିଛ । ମୋର ଲକ୍ଷ୍ୟ ଅନ୍ୟ ଯାଗାରେ, ତୁମର ଲକ୍ଷ୍ୟ ଗୋପ । ତୁମେ ଗୋପକୁ ପାଇଲେଇ···ମୁଁ କିନ୍ତୁ···

ଉଷା—କିନ୍ତୁ ?

ରାଜୁ—କିନ୍ତୁ, ତା ବୋଲି ମୁଁ ତୁମକୁ ଭସାଇ ଦେବାକୁ ଚାହେଁନା । ଗୋପ ଯେ ପ୍ରକୃତ ତୁମକୁ ମନ ପ୍ରାଣ ଦେଇ ଚାହେଁ, ଅର୍ଥାତ୍ ତୁମେ ଯେ ତା'ର ଅନ୍ତରର ଦେବୀ, ଆଉ ସେ ତୁମର ଏକନିଷ୍ଠ ପୂଜାରୀ, ମୁଁ ଦେଖିବାକୁ ଚାହେଁ ସେଇତକ । ଏଇ ହେଲା ମୋର ତମ ପ୍ରତି ଗୋଟାଏ କର୍ତ୍ତବ୍ୟ—ଶେଷ୍ । ଆଉ ତେଣିକି ମୋତେ ତୁମେ ଦୋଷ ଦେଇ ପାରିବ ନାହିଁ ଯେ ମୁଁ ତୁମକୁ ଘରୁ କାଢ଼ିଆଣି···

ଉଷା—ତୁମେ କଅଣ କରିବାକୁ କହୁଛ କହ, କରିବି ।

ରାଜୁ—କିଛି ବିଶେଷ କଥା ନୁହେଁ । ତୁମେ ତ ଜାଣ, ଧନ ତାର ଅଛି—ଅଛି ମାନେ ପ୍ରଚୁର । ଶ୍ୱଶୁର ଘର ସମ୍ପତ୍ତିରେ ପୁଣି ସେଇ ମାଲିକ । ସେ ଇଚ୍ଛାକଲେ ସବୁ କରିପାରେ । ତୁମେ ତାକୁ ଆଜି ଏଇଠି, କାଲି ସେଇଠି—ବରାଦ ଦିଅ ତ ଦେଖି । ନିଜେ ଧରା ନ ଦେଇ ଟିକିଏ ଖେଳିବା ଦର୍କାର । ନୋହିଲେ ଭଅଁର ଯେ ମଧୁଲୁଟି, ପାହାନ୍ତା ପହରେ ଚମ୍ପଟ ଦେବ—ଏଣେ ଫୁଲ ବିଚରା ବସି ଲୁହ ପୋଛୁଥିବ । ମନରେ ତୁମର ସ୍ନେହ, ପ୍ରେମ—ସବୁ ଥାଉ । ବାହାରେ ଟିକିଏ ଖେଳିବାକୁ ଶିଖ । ହଠାତ୍ ଏତେ ସରଳ ହେଲେ ଦୁନିଆରେ ଠକିଯିବ ।

(ବାହାରେ କଡ଼ା ହଲାଇବା ଶବ୍ଦ ଶୁଭିଲା)

ଉଷା—ବାହାରେ କିଏ ଡାକୁଚି ଏତେବେଳେ ?

ରାଜୁ—ଦେଖେଁ । (ଉଠିଗଲେ)

ଉଷା—(ଗୋପର ଫଟୋଟି କାଢ଼ି ନିର୍ନିମେଷ ଆଖିରେ ଚାହିଁ ରହିଲା। ଇତି ମଧ୍ୟରେ ରାଜୁ ଫେରି ଆସିଛି। ତା'ର ନଜର ପଡ଼ୁଛି ଉଷାର ଫଟୋଦେଖାରେ)

ରାଜୁ—(ପଛକୁ ଫେରିଯାଇ, ଡାକୁଛି) ଗୋପ ଆସିଛି ଉଷା !

ଉଷା—(ଫଟୋକୁ ଟେବୁଲର କାଗଜ ତଳେ ରଖିଦେଇ ହଠାତ୍) କାହିଁ ? (ଉଠିଲା)

ରାଜୁ—ଫେର୍, କହିଲି ଧରିଦେବା ଆଗରୁ, ଧରିରଖି ଧରିଦିଅ। ଗରମ ଷିଷ ଶୀତଳାଇ ନ ଖାଇଲେ ପାଟି ପୋଡ଼ିକା ହେବ ଉଷା ! ସାବଧାନ।

ଉଷା—ନାଁ, ମୁଁ ତ କଛୁ କରିନାହିଁ।

ରାଜୁ—ହଠାତ୍ ଏମିତି ଗୁନିଆଁ ହେଇ ଉଠି ପଡ଼ିଲ କାହିଁକି ? ମୁଁ ବୁଝିଛି ସବୁ। ବାକି ମୋ କଥା ନ ମାନିଲେ, ପଛରେ ଫେର୍ ମୋତେ ଆଉ ନ କହ। ବହୁ କଷ୍ଟରେ ମୁଁ ଗୋଟାଏ ଶିକାର ଯୋଗାଡ଼ କରି ଦେଇଛି। ହୁଏ ତ ତମର ଭାଗ୍ୟ ଫେରି ଯାଇପାରେ ଏଇ ମଉକାରେ; କିନ୍ତୁ ତୁମେ ସାବଧାନ ନ ହେଲେ, ମୋର ଦୋଷ କଅଣ ?

ଉଷା—ତାଙ୍କୁ ଡାକି ଆଣିଲ ନାହିଁ ? ବାହାରଟାରେ···

ରାଜୁ—ସେ ବି ଗୋଟାଏ ପରୀକ୍ଷା ଉଷା ! ଟିକିଏ ଡାକୁ। (ପୁଣି କଡ଼ା ହଲାଇବା ଶୁଭିଲା)

ଉଷା—ରାଜୁବାବୁ !··· (ଡାକକୁ ଲକ୍ଷ୍ୟକରି ଚାହିଁରହିଲା)

ରାଜୁ—(କଡ଼ା ଆଖିରେ ଚାହିଁ) ଉଷା !

ଉଷା—ତୁମେ ଯାଅ। ଡାକଦେବ।

ରାଜୁ—ନାଁ, ତୁମେ ଯାଅ। ମୁହଁରେ ଟିକିଏ ପାଣିମାରି ଯାଅ, କହିବ—ଶୋଇଥିଲି, ତମ ଡାକ ଶୁଣି ଚମକି ଉଠି ଆସିଲି। ଅଭିମାନ କରିବାକୁ ଚେଷ୍ଟା କରିବ—କାଲିଠାରୁ ସେ ଆସିନାହାଁନ୍ତି ବୋଲି, ଯାଅ।

ଉଷା—ତୁମେ ?

ରାଜୁ—ମୁଁ ଦେଖାଦେବି ନାହିଁ, ଆଉ ଘରେ ଅଛୁ, କମ୍ପା ହୁଏତ ଚାଲିଯିବ।

ଉଷା—ମୁଁ ଯାଏଁ ତେବେ— (ଚାଲିଗଲା)

ରାଜୁ—ହଁ, ଚାରିଟାବେଳେ, ସେ କଚେରୀରୁ ଫେରନ୍ତି, ଚା' ଖାଏ। ସେସବୁ ଯେମିତି ଠିକ୍ଠାକ୍···ମନ ନେବାକୁ ହେଲେ···

ଉଷା—(ଯାଉଁ ଯାଉଁ ନେପଥ୍ୟରୁ) ବୁଝିଲି।

ରାଜୁ—(ଫଟଟି କାଢ଼ି) ଓଃ, ଗୋପର ? ହୁଁ ! (ହସି) ବହୁତ ଦୂର ଆଗେଇ ଆସିଛ, ଏଇ ଦିନ କେଇଟାରେ। (ପଛପାଖ ଦେଖି)ବାଃ, ପ୍ରେଜେଣ୍ଟେଡ୍ ଟୁ ମିସ୍ ଉଷାଦେବୀ ! ଓଃ ଉଷା ଦେବୀ, ଆଗ୍ରା।

(ଯଥା ସ୍ଥାନରେ ରଖିଦେଇ ଚାଲିଗଲା। ଉଷା ଆଗେ ଆଗେ ତା ପଛେ ଗୋପ କଥା ହୋଇ ଭିତରକୁ ଆସୁଛନ୍ତି)

ଉଷା—କଣ୍ଟା ଫୁଟିନାହିଁ ତ ଗୋଡ଼ରେ ?

ଗୋପ—କଣ୍ଟା ! କାହିଁ, କୋଉଠି ?

ଉଷା—ଦୁଆରେ ପଡ଼ିଥିଲା ଯେ ମୋର, ନଇଲେ କାଲଠୁଁ କାହିଁକି ଦେଖା ନ ଥାନ୍ତା ! (ପ୍ରବେଶ)

ଗୋପ—ଓ, (ହସି) ବୁଝିଲି। (ପ୍ରବେଶ)

ଉଷା—(ଚୌକିଟାଏ ଘୁଞ୍ଚାଇ ଦେଇ) ହଉ, ସବୁ ବୁଝିଲ, ତୁମେ ବସ।

ଗୋପ—କଥାଟା ଆଗେ ଶୁଣ ତ।

ଉଷା—ବସିକରି କହିଲେ ମୁଁ ତ ବେଶ ଶୁଣି ପାରିବ। ବସ।

ଗୋପ—(ବସି, ହାତ ବଢ଼େଇଲା ପାଖକୁ ନେବାକୁ) ତୁମେ ପାଖକୁ ଆସ ତ।

ଉଷା—(ଦୂରସ୍ଥ ପଙ୍ଖାକୁ ଆଣିବାକୁ ଯାଇ) ଏଇଠୁ ମୁଁ କଥାଟା ଶୁଣି ପାରିବ ଯେ।

ଗୋପ—(ଉଠିଯାଇ ଉଷାକୁ ପାଖକୁ ଆଣି ଚୌକିର ଗୋଟିଏ ହାତ ଉପରେ ବସାଇ କାନ୍ଧରେ ହାତ ଦେଇ ବସିଲା) ଏଥର ଶୁଣ।

ଉଷା—ତୁ, (ଉଠି, ଠିଆହୋଇ) ତୁମେ ··ଦିନ ବେଳଟାରେ···

ଗୋପ—ନାଁ, ସେ କିଛି ନୁହେଁ, ସାମାନ୍ୟ।

ଉଷା—ସାମାନ୍ୟ ହୋଇ ତ ମୁହଁ ବାସୁଛି। କଚେରୀଟାରେ···

ଗୋପ—କେହି ଜାଣନ୍ତି ନାହିଁ।

ଉଷା—କେହି ନ ଜାଣିଲେ ବା, ତମର ତ ଫେର୍ ନଜର ଗୋଟାଏ··

ଗୋପ—ମୋର ନଜର କିଛି ନାହିଁ ଯେ ଉଷା !

ଉଷା—ବାଃ, ସୁନ୍ଦର ପାଣିରେ ସର ପଡ଼ିଲା ଆସେ ତୁମକୁ, ଓଲଟି ନାଁ।

ଗୋପ—ଉଷା, ବିଶ୍ୱାସ କରିବ ମୋତେ ? କଚେରୀରେ ମୁଁ କାମ ବି କରିପାରୁ ନାହିଁ, ଯେମିତି ସବୁଠି ତୁମେ। ମନଟା ଭାରି ଖରାପ ଲାଗିଲା, ମହାକାଳଗୁଡ଼ା କାଉ, ଶାଗୁଣା ପରି ଘେରି ରହିଛନ୍ତି। ଉପାୟ ନାହିଁ ବାହାରି ଆସିବାକୁ। ନିହାତି ଖରାପ ଲାଗିଲା ଯେମିତି, ମୁଁ ନିଜେ ଲୋକ ପଠାଇ ୨ଟା ପେଗ୍ ମୋତେ···କଚେରୀ କାମ ସରିଛି ତ ସାଙ୍ଗେ ସାଙ୍ଗେ ମୁଁ ଆସିଛି ଏଠିକି। ତା ପରେ କେତେବେଳେକେ ତମ ଦ୍ୱାର ଫିଟିଲା।

ଉଷା—ଏଣେ ମୋର କଅଣ ହୋଇଛି ଜାଣ ? କେତେ ଥର ଯେ ତୁମେ ଆସିବା ପରି ଲାଗିଛି, ଠିକଣା ନାହିଁ। ଚାକରକୁ ପଠାଏଁ, କେବେ ନିଜେ ଯାଇ ଦେଖେ—କେହି ନାହିଁ। ଭାବି ଭାବି ଯେମିତି ଟିକିଏ ଘୁଙ୍ଗିକା ନିଦ ଲାଗିଆସିଛି। ମୁଁ ଚେଇଁଚି କି ଶୋଇଚି ଜାଣିନାହିଁ। ନିଦ ବା ହଉଛି କୋଉଠି ? ଏଣେ ମନଟା ତ ଭଲ ନାହିଁ।

(କଟାକ୍ଷ)

ଗୋପ—(ଟୋଲିଥିବା ହସିଲି) ହଁଃ।

ଉଷା—ମନେ ହେଲା ଯେମିତି ସ୍ୱପ୍ନ ଦେଖୁଚି—ତୁମେ ଆସି ଡାକୁଚ। ମୁହଁରେ ପାଣି ଛିଟାଟାଏ ମାରି ଦୁଆରକୁ ଯିବାକୁ ତର ସହିଲା ନାହିଁ। ଦୁଆର ଫିଟେଇ ଦେଖେ ତ···

ଗୋପ—ଆଉ, ମୁଁ ଦୁଆର ଫିଟେଇ ଦେଖେ ତ (କାନ୍ଧ ଉପରକୁ ଆଉଜାଇ ନେଇ) ଉଷା !

ଉଷା—ବସ, ମୁଁ ଚା ଆଣେ। ଯାମା ଯୋତା ଖୋଲ

(ଯୋତା ଖୋଲି ବସିଲା)

ଗୋପ—ଥାଉ ନା, ମୁଁ ଖୋଲି ଦଉଚି, ଉଠ। (ଉଠି ଜାମା ଖୋଲି) ତୁମେ ଏ ଟଙ୍କାଟା ରଖ ତ। ୫୭୨ଙ୍କା ଅଛି। ଆଜିର ରୋଜଗାର ଏଇ।

(ଟଙ୍କା ଦେଲେ)

ଉଷା—(ଟିକିଏ ଅଳ୍ପ ଗୃହିଁ) ସେଇ ଟେବୁଲରେ ଥାଉ।

(ଜାମା ନେଇ ରଖିଲା)

ଗୋପ—(ସାର୍ଟ୍ ଖୋଲୁ ଖୋଲୁ) ରାଜୁର ଦେଖାନାହିଁ, ଆସିନାହିଁ ସେ ?

ଉଷା—ହଁ, (ଥମକ ଯାଇ) ନାଁ, ନାହିଁ ତ ?

ଗୋପ—କୁଆଡ଼େ କାମରେ ଯାଇଛି ବୋଧହୁଏ। (ବସି) ଓଃ, ବଡ଼ କ୍ଲାନ୍ତ ଲାଗୁଚି।

ଉଷା—ମୁଁ ଚା ନେଇ ଆସେ, ଟିକିଏ ବସ।

ରାଜୁ—ନାଁ।

ଉଷା—ଧୂଆଁଟାକୁ କହିଥିଲି, ହେଇ ରହିଛି ଯେ। ଏଇ ସାଙ୍ଗେ ସାଙ୍ଗେ ନେଇ ଆସୁଚି।

ଗୋପ—ନାଁ, ଚା ଦର୍କାର ନାଇ ଏଇନେ। ବୋତଲଟା ଟିକିଏ ଆଣ ତ।

ଉଷା—ଛି, କଚେରୀରୁ ଗୁଡ଼ାଏ ଖାଇ କରି ଆସିଛ, ଫେର୍ ଦିନ ବେଳଟାରେ ··

ଗୋପ—ସେଥିରେ କଅଣ ଅଛି ? ମୁଁ ତ ଏଇନେ କୁଆଡ଼େ ଯାଉନାହିଁ। କାଲି ଆସିନାହିଁ, ଆଜି ଏଇଠି ରହି କମ୍ପେନ୍‌ସେଟ୍ କରିଦେବି। ତା ହେଲେ ତ ତୁମର ମାନଭଞ୍ଜନ ହେଇଯିବ ? ଯାଅ—ଆଣ।

ଉଷା—ନାହିଁକି କଅଣ ବୋତଲରେ।

ଗୋପ—ଥିବ, ଥିବ, ନାହିଁ ଫେର କେମିତି ? ଅନ୍ନପୂର୍ଣ୍ଣା ଭଣ୍ଡାର କ କେବେ ଶୂନ୍ ହୁଏ ? ଦେଖ ।

ଉଷା—ଯଦି ବା ଥିବ, ଖୁବ୍ କମ୍ ।

ଗୋପ—ଆଚ୍ଛା, ଚାଲ ଦେଖି, ମୁଁ ଦେଖେଁ । (ଉଠିଲେ)

ଉଷା—( ବସାଇବାର ଉପକ୍ରମ କରି ) ତୁମେ ବସ । ମୁଁ ଆଣୁ ନାହିଁ ?

ଗୋପ—ସେ କଥା ମିଛ, ମୁଁ ବୁଝିଲିଣି ତମ ଚାଲାକିଟା—ଚାଲ ମୁଁ ସେଇଠି ଖାଇ ଆସୁଛି । ଗିଲାସ୍‌ଟା କାହିଁ ? ସୋଡ଼ା ଅଛି ତ ?

ଉଷା—ଥିବ ।

ଗୋପ—ବେଶ, ଚାଲ ।

ଉଷା—ବସ, ମୁ ଆଣିଦେଲେ ଏଇଠିକି ହବନାହିଁ ?

ଗୋପ—ନାଁ, ଚାଲ ।

ଉଷା—ତମର ଏଇ ଯୋଉ ଜିଦ୍ଦ !

ଗୋପ—କିଛି ନାହିଁ, ତୁମେ ସୁନାପିଲାଟି ପରି ଚାଲିଲ, ଆଲମାରୀଟା ଖୋଲ ତ, ମୁଁ ଦେଖେଁ—ଚାଲ । ( ପିଠିରେ ହାତମାରି ନେଇ ଗଲେ )

ରାଜୁ—( ଅନ୍ୟ ପାଖରେ ଆସି ମନି-ବ୍ୟାଗ ଦେଖି ଗଣି) ଆରେ ଭୁଲ ହେଲାକି ? ଷାଠିଏ ନୁହେଁ-ପଞ୍ଚଷଠି । ଷାଠିଏ କହିଲି ଯେ; ବେଶ୍ ବାବା । ପାଞ୍ଚଟି ଟଙ୍କା ଫାଉରେ ରହିଲା ( କୋଟରେ ରଖି ) ବାକି ଷାଠିଏର ଭାଗବଣ୍ଟା । ରାଜୁ ଅନ୍ୟାୟ କରିବାର ପିଲାଟି ନୁହେଁ । ଦଶ ଅଣାଟି ଚୋର ( ବେଗରୁ ଟଙ୍କା କାଢ଼ି ଓ ପଚିଶ ଟଙ୍କା ନିଜ ପକେଟରେ ରଖି ) ଯାହା ଏ ମହିଁରୁ ବାହାରି ପଡ଼ୁଛି । ଓକିଲାତି ଧନର ସଦ୍‌ବ୍ୟବହାର ତ ହଉ, ବାକି ପଇଁତିରିଶ ( କାଢ଼ି ) ଏ ଖଣ୍ଡି ବି ପକେଟରେ ଥାଉ । ଦରକାରବେଳେ କାମରେ ଲାଗିବ । ବେଶ୍, ବାବା ଗୋପ, ଆରାମରେ ଥାଅ ବାବା ! ବାଟ ତ ମୁଁ ଧରେଇ ଦେଇଚି, ଥାଅ, ଗୁଡ୍ ବାଇ ।

---

## ତୃତୀୟ ଦୃଶ୍ୟ

( ଗୋପାଳ ବାବୁଙ୍କ ଘର । ଆରତି ବଡ଼ ଭାବନାରେ ପଡ଼ିଛି । ଗୋପାଳ କାଲିଠାରୁ ଆସିନାହିଁ-ଟେବୁଲ, ଚିଠି ଲେଖୁଛି ବସି ବାପାଙ୍କ ପାଖକୁ । ମୁକୁନ୍ଦ ଓ ଟୁନୁ ଆସିଲେ । ଆରତି କଲମ ରଖିଦେଇ ଆଗ୍ରହ ନେସରେ ଚାହିଁଲେ ମୁକୁନ୍ଦକୁ । ପଚାରିଲେ )

ଆରତି—ମୁକୁନ୍ଦ, କିଛି ଖବର ପାଇଲୁ ?

ମୁକୁନ୍ଦ—ରାଜୁବାବୁ କହିଲେ କାଲି Station ରେ କଅଣ ଜରୁରୀ କାମଥିଲା । ସାନବାବୁ ଆଉ ସେ ସାଙ୍ଗ ହୋଇ କାହାକୁ ଛାଡ଼ିବାକୁ ଯାଇଥିଲେ । ରାତି ଅନିଦ୍ରା ହେଇ ଫେରି, ଏଇ ସକାଳୁ ଗାଧୋଇ ଚା ଖାଇ ତାଙ୍କଘରେ ଶୋଇ ପଡ଼ିଛନ୍ତି । ଖାଇବା ବେଳକୁ ତାଙ୍କୁ ଉଠାଇ ପଠେଇ ଦେବେ ଘରକୁ ।

ଆରତି—ତୁ ନିଜେ ତାଙ୍କୁ ଯାଇ···

ମୁକୁନ୍ଦ—ରାଜୁବାବୁ ପରା କହିଲେ ସେ ଶୋଇ ପଡ଼ିଛନ୍ତି, କାହିଁକି ଆଉ ? କଞ୍ଚା ନିଦଅଧା ହେଲେ ତାଙ୍କ ଦେହ ଖରାପ ହେବ । ଖାଇବାବେଳକୁ ଯିବେ ।

ଆରତି—ହଁ, ଭଲ କରିଚୁ, ଦେହ ଖରାପ ହେଇପାରେ; ନୂଆ ଦେହ ।

ଟୁନୁ—ସେ କଅଣ କରୁଛୁ ବୋଉ ?

ଆରତି—ଚିଠି ଲେଖୁଛି ବାପାଙ୍କ ପାଖକୁ ।

ଟୁନୁ—ରାଜୁବାବୁ କହିଲେ ତ ବାପା ପଛକୁ ଆସିବେ ।

ଆରତି—ଅରେ ତୋ ବାପା ନୁହେଁ, ମୋ ବାପା—ତୋ ଅଜା ।

ଟୁନୁ—ଅଜାଙ୍କ ପାଖକୁ ମୁଁ ଗୋଟାଏ ଚିଠି ଦେବି ।

ଆରତି—ତୁ ଆଗେ ଭଲକରି ପଢ଼, ଚିଠି ଲେଖି ଶିଖିଲେ ଅଜାଙ୍କ ପାଖକୁ ଚିଠି ଦବୁନାଁ । (ନେପଥ୍ୟ) ମୁକୁନ୍ଦ-ବାବୁଘରେ ଅଛନ୍ତି ?

ଆରତି—ଦେଖ ତ ମୁକୁନ୍ଦ, କିଏ ଡାକୁଚି ।

(ମୁକୁନ୍ଦ ଚାଲିଗଲା)

ଟୁନୁ—ବୋଉ, ମତେ ଖଣ୍ଡେ କାଗଜ । ମୁଁ ଲେଖିବ ।

ଆରତି—କଅଣ ଲେଖିବୁ ?

ଟୁନୁ—ଲେଖିବ··ଲେଖିବ ମୁଁ ପାଠ ପଢ଼ୁଚି ।

ଆରତି—ଆଉ ମୁକୁନ୍ଦକୁ ଘୋଡ଼ା କରି ଚଢ଼ୁଚି—ଲେଖିବୁ ନାହିଁ ?

ଟୁନୁ—ହିଁ ହୁଁ ।

ଆରତି—କିରେ, ଲାଜ ମାଡ଼ିଗଲାକି ?

ମୁକୁନ୍ଦ—( ଆସି ) ଘରବାଲା; ଆଜି ୧୨ ତାରିଖ ହେଲାଣି ?

ଆରତି—ଗଲା ମାସରେ ତ ବାବୁଙ୍କର କିଛି ରୋଜଗାର ନାହିଁ, ବେମାର ପଡ଼ିଲେ । ଏ ମାସରେ ଯାହା ବା କଚେରୀକୁ ଯାଉଛନ୍ତି ପଇସାଟିଏ ଦେଖାନାହିଁ । ଦେଖେଁ ମୋ ବାକ୍‌ସଟା । ଘର ଭଡ଼ାଟା ନ ଦେଲେ ତ ଚଳିବ ନାହିଁ । (ଗଲେ)

ଟୁନୁ—ମୁକୁନ୍ଦ, ମୁଁ ଅଜାଙ୍କ ପାଖକୁ ଚିଠି ଲେଖୁଚି ।

ମୁକୁନ୍ଦ—କଣ ଲେଖୁଚୁ ?

ଟୁନୁ—ଲେଖିବ···

ମୁକୁନ୍ଦ—ହଁ ଲେଖ ଅଜାଙ୍କୁ ଆସିବାକୁ ।

ଟୁନୁ—ହଉ ।

ଆରତି—(ଆସି ଟଙ୍କା ଦେଇ) ଏଇ ନିଅ ଚାଳିଶଟଙ୍କା । ରସିଦଟାଏ ଆଣିବ ।

ମୁକୁନ୍ଦ—କଲରା ମଞ୍ଜିପରି ଚାଳିଶି ଚାଳିଶି ଟଙ୍କା ମାସକୁ ଗଣା ହଉଚି । ଖଣ୍ଡେ ଘର ଏଠି ଆଉ ହୋଇ ପାରୁ ନାହିଁ ।

ଆରତି—ତାଙ୍କ ଖର୍ଚ୍ଚର ତ ହାତ ଗୋଡ଼ ନାହିଁ । ଘର ହଉଚି ! ଟଙ୍କା କାହିଁ ? ଯା, ଦେଇଆ ।

(ଚାଲିଗଲା ମୁକୁନ୍ଦ)

ଟୁନୁ—ବୋଉ, ଅଜାଙ୍କୁ ଆସିବାକୁ ଲେଖିବ ।

ଆରତି—ହଉ, ଲେଖ୍ ।

ଟୁନୁ—ଭିଁ, ତୁ କହି ଦଉନୁ ?

ଆରତି—ମୁଁ କହି ଦେବି, ତୁ ଲେଖିବୁ ? ଆଚ୍ଛା, ହଉ ଲେଖ ।

ଟୁନୁ—(କଲମ ଧରି ଗମ୍ଭୀର ହୋଇ ବସିଗଲା) କହ ବୋଉ !

ଆରତି—ମାନନୀୟ ଅଜାସାମନ୍ତ ମହୋଦୟ ଶ୍ରୀଚରଣ କମଳେଷୁ—ଲେଖ ।

ଟୁନୁ—ସେଇଠୁ ?

ଆରତି—ଆରେ, ସେଇତକ ଆଗେ ଲେଖିସାର ।

ଟୁନୁ—ହିଁ, ମାନନୀୟ ଶ୍ରୀଚରଣ କମଳେଷୁ ।

ଆରତି—ବାସ୍; ଆଗରୁ ପଛରୁ ଲେଖିଦେଲୁ, ଆଉ ଅଜାସାମନ୍ତ କୁଆଡ଼େ ଗଲେ ?

ଟୁନୁ—ଭିଁ ? ତୁ କହୁନୁ ? ଯା, ସେମିତି ହେଲେ ଚିରିଦେବି ସେ । (ଚିରିଦବାକୁ ବସିଲା)

ଆରତି—ନାହିଁ ନାହିଁ ଲେଖ, ଅଜା ସେଇଥିରୁ ବୁଝିବେ ସେ ତାଙ୍କ ନାତି କେଡ଼େ ଯୋଗ୍ୟର ହେଲାଣି ।

ଟୁନୁ—ଲେଖିଲି, ଅଜା ସାମନ୍ତ ।

ଆରତି—ହଉ, ଅଜାଙ୍କୁ ଦଣ୍ଡବତ କର ।

ଟୁନୁ—(ମୁଣ୍ଡିଆ ମାରି) କଲି ।

ଆରତି—(ହସି) ଆରେ ଏଠି କଅଣ ଦଣ୍ଡବତ କରୁଛୁ ? ଚିଠିରେ ଲେଖ । (ନିଜେ ଲେଖି ବସିଲେ)

ଟୁନୁ—(କାଗଜଟା ଟାଣି ନେଇ)

ଆରତି—ଆରେ ଦେ, ମୁଁ ପରି ଲେଖୁଚି ?

ଟୁନୁ—କି, ମୋ ଚିଠି ଆଗ, ତୁ ଖାଲି ତୋ ଚିଠି ଲେଖି ବସୁଚୁ !

ଆରତି—ଆଚ୍ଛା ହଉ, ତୋ ଚିଠି ଆଗ ।

(ଟୁନୁ ହାତରୁ କାଗଜ ନେଇ)

ମୁକୁନ୍ଦ—(ଆସି) ଦୁଧବାଲା ମାସୁଆରି ପଇସା ମାଗୁଚି ଦେଲ୍ଲ !

ଆରତି—(ଦୀର୍ଘନିଃଶ୍ୱାସ ମାରି) ଦୁଧବାଲା ! ଆଉ ତ ଟଙ୍କା ନାହିଁ ମୁକୁନ୍ଦ, ଡାକ୍ତର ଟଙ୍କାଟା ଅନେକ ଦିନୁ ବାକି ଥିଲା ସେ ତାଙ୍କୁ ଦେଇ ଦେଲି—

ଦେଡ଼ଶ । ବାକି ଯାହାଥିଲା ଝାଡ଼ଝୁଡ଼ି ଘରଭଡ଼ା ଦେଲି । ଖର୍ଚ୍ଚକୁ ମୋଟେ ଦୁଇ ତିନିଟା ଟଙ୍କା ଥିବ । ଆଜି ଯଦି ବାବୁ ଟଙ୍କା ନ ଆଣନ୍ତି—

ମୁକୁନ୍ଦ—ତେବେ କହି ଦେଉଚି ଆଉ ଦିନେ ଆସିବ ।

ଆରତି—ହଉ, କହିଥାଅ ।

ନେପଥ୍ୟ—(ବେହେରା)

ଆରତି—ଫେର୍ କିଏ ଡାକଲାଣି, ହାତରେ ନ ଥିଲା ବେଳେ ଯେତେ ତାଗଦା । ଯାଅ ବେହେରାକୁ କହ, ରବିବାର ଦିନ ଆସୁ—ଆଉ ଦେଖ କିଏ ଫେର୍ ଆସିଛି ।

ମୁକୁନ୍ଦ—ଦେଖେଁ । (ଚାଲିଗଲା)

ଟୁନୁ—ବୋଉ, କହ ମ, ମୁକୁନ୍ଦ ସାଙ୍ଗେ ଖାଲି ବକ ବକ ହବୁ—ମୁଁ ବସିଥିବି, ନାଁ ?

ଆରତି—ଆଚ୍ଛା ଲେଖ, ମୋର ପ୍ରଣାମ ଗ୍ରହଣ କରିବେ ।

ଟୁନୁ—(ଡାକି) ମୋର ପ୍ରଣାମ ଗ୍ରହଣ କରିବେ, ସେଇଠୁ ?

ଆରତି—ଲେଖ୍, ଆମେମାନେ ଭଲ ଅଛୁଁ ।

ଟୁନୁ—ହୁଁ ।

ଆରତି—ଆଉ ମୁଁ ଭାରି ଦୁଷ୍ଟ ହେଇଚି, ତୁମେ ଗୋଟାଏ ବାଡ଼ି ନେଇ ଆସି ମୋତେ ମାରିବ ।

ଟୁନୁ—ଉଁ, ମୁଁ କିଛି ଲେଖିବ ନାହିଁ । (ଉଠି ପଡ଼ିଲା)

ଆରତି—(ବସାଇ) ନାହିଁ ମ, ଟୁନୁ ଆମର ସୁନା ପୁଅ । ଲେଖ୍ । ତେମେ ବେଗେ ଆସିବ ।

ଟୁନୁ—ଆଉ କଅଣ ଲେଖିବି ?

ଆରତି—ଆଉ କଅଣ ତୋ ମନ, ଲେଖ ।

ମୁକୁନ୍ଦ—(ଆସି) ମକଦ୍ଦମା ତାରିଖ ଅଛି ଯେ ଦୁଇ ତିନି ଜଣ ମହକିଲ ଆସିଥିଲେ ବାବୁଙ୍କ ପାଖକୁ, ଖୋଜି ।

ଆରତି—(ଟିକିଏ ଭାବି) ତାଙ୍କୁ ସବୁ କହ—ଚାରିଟା ପାଞ୍ଚଟା ବେଳକୁ ଆସନ୍ତୁ ।

ମୁକୁନ୍ଦ—ଆଜି ତାରିଖ ବୋଲି ସେମାନେ ବ୍ୟସ୍ତ ହଉଛନ୍ତି ପରା !

ଆରତି—(ଦୀର୍ଘ ନିଃଶ୍ୱାସ ମାରି) ମୁଁ ଆଉ କଅଣ କରିବ ? ମାସେ ଦେଢ଼ ମାସ ହେବ ତାଙ୍କର କଅଣ ଯେ ହେଇଚି ! (ଚାଲିଗଲା ମୁକୁନ୍ଦ)

ଟୁନୁ—ସବୁ ଲେଖିଲି ବୋଉ ।

ଆରତି—ଆଉ ସବୁ କଅଣ ଲେଖିଲୁ ?

ଟୁନୁ——ଲେଖିଲି ବାପା ଗୋଟେ ଯାନ ସାଇକଲ ଆଣି ଦବାକୁ କହିଥିଲେ, ଦେଲେ ନାହିଁ । ମୁଁ ଚାଲି ଚାଲି ଇସ୍କୁଲକୁ ଯାଉଚି, ଭାରି ଖରା । ମୋ ପାଇଁ ଖଣ୍ଡେ ନୂଆ ସାଇକଲ, ଆଣିବ ।

ଆରତି—ଛି, ଛି, ଏ ସବୁ କାଟିଦେ । ଅଜା ଆସିଲେ ତାଙ୍କୁ ଏଇଠି କହିବୁ ଯେ କିଣିଦେବେ । ଆମର କଅଣ ଟଙ୍କା ନାହିଁ ଯେ ଅଜାଙ୍କୁ ମାଗିବା ?

ଟୁନୁ—ଟଙ୍କା ତ ବାପା ଦଉ ନାହାନ୍ତି, ସେ ଦେବେ ନାହିଁ ।

ଆରତି—ଦେବେ ମ, ଦେବେ ।

ଟୁନୁ—ଏବେ ତ ସେ ଆଉ ମୋତେ ସୁଖ ପାଉ ନାହାନ୍ତି ବୋଉ !

ଆରତି—ଛି, ତୁ ମିଛ କଥା କହୁଚୁ ।

ଟୁନୁ—କାହିଁ ? ମତେ ଆଉ ଗେଲ କରୁ ନାହାନ୍ତି, ଘରେ ରହୁ ନାହାନ୍ତି, ମୋତେ କୋଳ କରୁ ନାହାନ୍ତି ।

ଆରତି—ତାଙ୍କର ପରା ତେଣେ କାମ ଅଛି । ଆସିଲେ ତତେ ଗେଲ କରିବେ ଯେ, ବାପା ନ ଦେଲେ ନାହିଁ, ମୁଁ ତତେ ଗୋଟେ ସାଇକଲ କିଣିଦେବି ।

ଟୁନୁ—ତୋ ପାଖେ ଟଙ୍କା କାହିଁ ?

ଆରତି—ଅଛି ।

ଟୁନୁ—ଦୁଧବାଲାକୁ ଦେଲୁ ନାହିଁ ?

ଆରତି—ରବିବାର ଦିନ ଦେବି ପରା କହିଛି ।

ଟୁନୁ—ମୋତେ ?

ଆରତି—ସେଇ ରବିବାର ଦିନ ।

ଟୁନୁ—ନ ଦେଲେ ?
ଆରତି—ଦେବ ତ କହୁଛୁ, ଦେଖିବୁ ନାହିଁ ।
ଟୁନୁ—ହିଁ, ସତରେ ଦବୁନି ? ନ ଦବୁ ଯେବେ ?
ଆରତି—ନ ଦେଲେ ତୁ ମତେ ଆଉ ବୋଉ ବୋଲି ଡାକବୁ ନାହିଁ । ଯାଃ ।
ଟୁନୁ—ଉଁ, ଆଉ କଅଣ ?
ଆରତି—(କୋଳକୁ ନେଇ) ବାବୁଟା ପରା, ଛି' ଏମିତି ଅମାନିଆ ହୁଅନ୍ତି ? (ମୁକୁନ୍ଦ ଆସିଲା) ଏଇନେ ମୁକୁନ୍ଦ ଶୁଣିଲେ କଅଣ କହିବ ? କହିବ—ଟୁନୁ ଭାରି ଅଜଟିଆ; ବୋଉ କଥା ମାନୁ ନାହିଁ । ଆଣ, ଚିଠି ଆଣ (କାଟିଦେଇ ଯେଇ ଲେଖା) ବାଃ, ଦେଖିତ ମୁକୁନ୍ଦ, ଟୁନୁ ଆମର ଅଜାଙ୍କ ପାଖକୁ ଚିଠି ଲେଖିଛି ।
ମୁକୁନ୍ଦ—ଟୁନୁ ସୁନା ପୁଅ, ଅଜାଙ୍କ ପାଖକୁ କଅଣ ଲେଖିଲୁ ବାବା ?
ଟୁନୁ—ଲେଖିଲି ଅଜାଙ୍କୁ ଆସିବାକୁ ।
ମୁକୁନ୍ଦ—ହିଁ, ଅଜା ଆସୁଛନ୍ତି କୋଉଠି ? ସେ ଆସିଲେ ତ...
ଆରତି—(ଚିଠିରେ ଠିକଣା ଲେଖି) ଦେଖ, ଆଠ ଦଶଦିନ ଚଳାଅ । ନ ଆସିଲେ, ନୋହିଲେ ବେଳକୁ ତୁ ଯିବୁ ।
ମୁକୁନ୍ଦ—(ଚିଠିନେଇ) ହଉ ।
ଆରତି—ମହାଜନମାନଙ୍କୁ କହିଦେଲୁ ?
ମୁକୁନ୍ଦ—କାନ୍ଦଣୀବାନ୍ଦଣୀ ହେଇ ଗଲେ । ଆଉ କଅଣ କରିବେ ?
ଆରତି—(ନିଶ୍ୱାସ ମାରି) ହିଁ, ମୋର ଆଉ ବଳ କଅଣ ? ତୁ ଯା ମୁକୁନ୍ଦ, ଚିଠିଟା ଡାକଘରେ ପକେଇ ଦେ ।
ଟୁନୁ—ଛି'—ବୋଉ, ଖାଇବାକୁ ଦବୁ । ଭୋକ ହେଲାଣି !
ଆରତି—ଦଉଚି, ଚାଲ । (ଉଠିଲେ)

---

## ଚତୁର୍ଥ ଦୃଶ୍ୟ

[ ପୁଣି କାମନାବର ସାହି, ସାଗା ଘର ଦାଣ୍ଡ-ପିଣ୍ଡା, ଉମୀ ସୁଆଁରେ ଭାଙ୍ଗ ଘୋଟୁଥିଲେ । କୁସୁନ ପଡ଼ିଆସି ଆସିଲେ ପାନ ବଟୁଆ ଧରି,—କେଳା କେଳୁଣୀ ନାଚ ହଉଥିଲା ]

(କେଳୁଣୀ ଗୀତ)

ଭଲ ଜଣେ ତୁ ଅରେ ନୂଆ ନାଗର !
ଗଲା ରଜନୀ ଜାଳି ଜାଳି ଜାଗର ॥
ଏ ମୋର ମଲ୍ଲୀ ମାଳା, ମିଛରେ ବାସିହେଲା
ସଜଡ଼ା ଖିଲିପାନ—ବିଅର୍ଥେ ମୋର ଗଲା,
ମୁଖ ଦେଖାଉ ଆସି ପୁଣି ଆଗର ॥
କାହା ପୁରରେ ରହି, ମୋ କଥା ମନେ ନାହିଁ
ଆସୁଛ ଢଳ ଢଳ, ସାରା ରାତି ପୁହାଇ
ଯା ଯା ଶଠ୍‌ କଲି ତୋତେ ରସ ସାଗର ॥

(କେଳୁଣୀ)

ବାଡ଼ ବାଇଗଣ ପୋକାରେ ନାଗର
ତୋହପର ଫଟା ରସିକ ଟୋକା—ନାଗରରେ
ମୋ ଗୋଡ଼ ତଳକୁ ଲେଖା ।
କେଳା—ଫୁକୁ ଫୁକୁ ବେଙ୍ଗ ଗୁଲି ଲୋ ନାଗରୀ
(ତୋ) ପାନଖିଆ ଓଠ ନାହାଲବେଲି—ନାଗରୀ ଲୋ,
ଦେଖି ମୁଁ ଲାଜରେ ମଲି ॥
କେଳୁଣୀ—ପଖାଳ ଭାତରେ ଘିଅ, ତୁ ନାଗର,
ଅସୁକୁ ନାଗର ଦେଖିଲେ ତୋତେ—ନାଗର ରେ
କେବା କେବା ଫଟା ଦହ ॥
କେଳା—ଦରପଣ ହାତ ସଙ୍ଖା ଲୋ ନାଗରୀ
ପାଚିଲା ବାଳରେ ମହଣ ମଖା—ନାଗରୀ ଲୋ
ପିଠିରେ କୁଜ ସଲଖା ॥
ଉମୀ—(ଖାଲପୋଛୁ) କଅଣ ଗୁହିଁ ରହିଲ ପଡ଼ିଆସିଏ ।
ଆଖିଆ କରନାହିଁ ଆଉ, ଛାରପରା ପଦାର୍ଥକୁ ।

କୁଶୁନ—ଅଃ, ଫମ୍ପୁରୁଛ ? ବେହ୍ନଫୋ ଦୁଇଘଣ୍ଟା ଫେଲ ଅଢ଼େଇଦୋଣିଏ ହବ ମାଲ୍ ଉଗଡ଼ୁଚ ଯେ, ସମୁଦ୍ରରକୁ ବେହ୍ନଫୋ ଶଙ୍ଖେ ହବ ନାହିଁ, (ଅଣ୍ଟାରୁ କାଢ଼ି) ପକା, ପକା, ଏଣୁ ସରକାରୀ ମାଲ୍ ! ଅସଲ ବାଗୁଆ କର ଉତଡ଼ାଟେ ଉଗଡ଼ । (ଦେଲେ) ଆହେ, ପାନ ହଖଣ୍ଡ କାତ ହେ !—ନେ ଲେ ଗରଖୀ ! (କେଳୁଣୀକୁ କଚ୍ଛ ଦେଇ) ଯା, ଯା ।

(ନେଇ ଚାଲିଲେ କେଳା)

ଡମୀ—ଭଡ଼ରେ ବସ ସୁଆରେ !

କୁଶୁନ—ଏଇ ମାଲକୁ ତ ଝାଳନାଳ ଆଣ୍ଠିଏ ହେଲଣି, ଭରକ ଭଡ଼ ଅଛୁଟି ?

ଡମୀ—ଇଏ କଅଣ ଖିଲପାନ ହେଇଚନ୍ତି ? ଯ୍ୟା ନଟକୁଟ ବହୁତ । (ରାଜୁ ସେ ବାଟେ ଯାଉଛନ୍ତି)

ପଡ଼ି—କିଏ ରାଜୁବାବୁ ଯାଉଚନ୍ତି ?

ରାଜୁ—ହଁ, ପଡ଼ିଆରୀଏ ଗୋଟେ କାମ ବଡ଼ ଜରୁରୀ ଅଛି ।

ସୁଆର—ଆସିବା ହଉ, ଆସିବା ହଉ ଅବଧାନ ! ଯେଗା ଦୁଆର ଏବେ ମାଡ଼ିବାକୁ ନାହିଁ ଯେ ! ଆସିବା ହଉ ଟୋପେ ବଡ଼ ।

ଚଢ଼ିଆର—ତାଙ୍କୁ ଏଗୁଡ଼ାକ ସୁଖ ଲାଗିବ ନାହିଁ ହେ ସୁଆରେ ! ସେ ପରା ବଲାତବାଲା !

ରାଜୁ—ନାହିଁ ହେ, ମୋର କାମ ଗୋଟେ ଅଛି ।

ସୁଆର—ହଇହେ, କାମ କାହାର ନାହିଁ କି ? ବସିବା ହଉ; ଏବେତ କାହିଁକି ଯମା ଦେଖା ନାହିଁ, ଦୁଇ ତିନିଥର ଦୁଆରୁ ଫେରିଲେଣି ।

ପଡ଼ି—କେମିତି ଦେଖା ମିଳିବ ? ରାଜୁବାବୁ ପରା ଆଜିକାଲି ଗୋଟେ ନୂଆ ଖେଳରେ ଲାଗିଛନ୍ତି, ଏଣେ ତ ତାଙ୍କର ଦେହ ଭଲ ନାହିଁ, ତହିଁରେ ଦିନ ରାତି ବାର ନଟପଟ ।

ରାଜୁ—ଯାଃ ପଡ଼ିଆରୀଏ, ତୁମେ ଯୋଉ କଥା କହ !

ସୁଆର—ସତେ କି ଖେଳ ହେ ରାଜୁବାବୁ !

ରାଜୁ—ଯାଃ, ପଡ଼ିଆରୀଙ୍କ କଥା ଆଉ ଶୁଣୁଛ ସୁଆରେ !

ପଡ଼ି—ହଇହେ ରାଜୁବାବୁ ! ଗୋଟେ ଯବର ଖେଳ ଲଗେଇଚ, କହିଲକୁ ଲୁଚଉଛ ? ଆମେ କଣ ଭାଗ ନଉଛୁ କିଏ ?

ସୁଆର—ଅହେ କି ଖେଳ—ତା ନାଁ ନାହିଁ ?

ପଡ଼ି—ଆହେ ଖେଳ ! ଖେଳ !

( ଠାରି ହସିଲେ )

ସୁଆର—ଆହେ, କି ଖେଳ କହୁନା ?

ପଡ଼ି—(ସୁର୍ ଧରି) ଖେଳ ଲେଳ ଖଞ୍ଜନାକ୍ଷୀ—ଖେଳ, ବାକି ରାଜୁବାବୁ ! କି ସାହସ କଲୁରେ—ଖରାପ ତୁ ହେଲୁରେ । (ହସିଲା)

ରାଜୁ—ଛି, ତୁମେହ, ଦାଣ୍ଡଟା । ଲୋକେ ଯା ଆସ କରୁଛନ୍ତି । କଅଣ କହିବେ ଶୁଣିଲେ, କହିଲ ?

ସୁଆର—ଉଠ ପଡ଼ିଆରୀଏ, ଚାଲ ଚାଲ ଯେଗା ଭିତରକୁ ଚାଲ, ପୁରୁଣଟା ଶୁଣିବା ନା ? ଯା ରଜା, ତୁମେ ଆଜିଯାକେ କହୁନ ।

ପଡ଼ି—ରାଜୁବାବୁ ଆମର ଗୋଟେ ସାଇ ଜାଲମଣି ! ଉଡ଼େଇ ଆଣିଛି ବେହ୍ନଫୋ କୋଉଠୁ ଖଣ୍ଡେ ସୁନାଖଡ଼ିକା—ଆଉ ଦିନ ରାତି ଲାଗିଛି—ମାଳା ମାଳାଞ୍ଜଳରେ ହେ—ନାଗିଛି ।

ସୁଆର—(ପଡ଼ିଆରୀଙ୍କି ଉଠାଇ) ଉଠ, ଉଠ, ଭିତରକୁ ଆସ ।

(ମୁକୁନ୍ଦ ଟିଠି ନେଇ ଆସିଲା)

ପଡ଼ି—ଆଗେ ରାଜୁବାବୁ ଚାଲନ୍ତୁ ।

ରାଜୁ—ଚାଲ, ମୁଁ ଯାଉଚି (ଉଠି) ମୁକୁନ୍ଦ, ମୁକୁନ୍ଦ,

(ମୁକୁନ୍ଦ ଫେରି ଚାହିଁଲା)

ସୁଆର—ରାଜୁବାବୁ ତମକୁ ଜଗନ୍ନାଥଙ୍କ ହାତ୍ଧ, ନିଶ୍ଚେ ଆସିବ । (ଦୁହେଁ ଚାଲିଗଲେ)

ରାଜୁ—(ମୁକୁନ୍ଦ ପାଖକୁ ଯାଇ) କଉ ତମ ବାବୁ ?

ମୁକୁନ୍ଦ—ଘରକୁ ତ ଯାଇ ନାହାନ୍ତି ।

ରାଜୁ—ଗୋଟେ ଜରୁରୀ କାମଥିଲା ସ୍ମୃତେ ଚାଲିଆସିଲି । ତାକୁ ଉଠାଇ ଦେଇ ଆସିଥିଲି, ଫେର୍ ଶୋଇ ପଡ଼ିଲାକି କଅଣ ? ତୁମେ ଗଲ ଟିକିଏ ଡାକି ନେଇଯିବ ଆମ ଘରୁ ?

ମୁକୁନ୍ଦ—ଦେଣ୍ଟଙ୍କ ଚିଠିଟା ଅଛି; ମୁଁ ଡାକଘରେ ଦେଇ ଆସେଁ ।

ରାଜୁ—ହଁ, ମୋତେ ଦିଅ ଚିଠିଟାକୁ, ମୁଁ ଯାଉଛି ପୋଷ୍ଟ ଅଫିସକୁ ଟିକେ । ଉଠାଇବାକୁ ହେବ ଯେ, ଚାରି ବାଜିଗଲେ ଫେର୍ ମିଳିବ ନାହିଁ, ସେଇଥିକି ତର ତର ହଉଚି, ମୁଁ ତ ଯିବି, ଆଉ ତୁମେ ବୁଢ଼ାଲୋକ ମିଛଟାରେ ଦଉଡ଼ିବ କାହିଁକି ? ତୁମେ ଯାଅ, ଆମ ଘରୁ ତାକୁ ଉଠା'ଇ ନେଇଯିବ ।

ମୁକୁନ୍ଦ—ହଁ—(ମୁକୁନ୍ଦ ଗଲା, ଚିଠି ଟିକି ନେଇ ରାଜୁ ଭଲକରି ଦେଖିଲା, ଆସ୍ତେ ଫିଟାଇ ପଢ଼ିବାରେ ଲାଗିଲା । ଏତିକିବେଳେ ପୁଷ୍ପି ଦୁଆରେ ଆସି ଡାକିଲା) ଆହେ ରାଜା ! ଭିତରକୁ ଆସି ପଡ଼ୁଥା, ଆସ ।

ରାଜୁ—(ପକେଟରେ ରଖି) ଗଲି, ଚାଲିବା ହଉ ।

---

## ପଞ୍ଚମ ଦୃଶ୍ୟ

[ ଗୋପାଳର କକ୍ଷ—କମ୍‌ହୋଇ ଗୋଟିଏ ଲଣ୍ଠନ ଜଳୁଛି, ଟୁନୁ ରୋଗ ଶଯ୍ୟାରେ ପଡ଼ି ବ୍ୟସ୍ତ ହେଉଚି । ମୁଣ୍ଡପାଖେ ବସିଛି ଆରଣି—ଥରକୁ ଥର ଜଳପଟି ଭିଜାଇ କରି ଦଉଚି ]

ଟୁନୁ—( ବ୍ୟସ୍ତହୋଇ ଉଠିଲା ) ବୋଉ, ବାପା ଆସିଲେ ?

ଆରଣି—ଆସିବେ ଯେ—

ଟୁନୁ—ଭାରି ଶୋଷ, ଓଃ ଭାରି ଶୋଷ ।

ଆରଣି—ମୁକୁନ୍ଦ ଯାଇଛି ଆସୁ । ଟିକିଏ ରହ ।

ଟୁନୁ—ପାଣି, ପାଣି ଟିକିଏ ବୋଉ !

ଆରଣି—ଖାଲି ପାଣିଗୁଡ଼ାକ । ଛି, କାଲିଠୁ କିଛି ଖାଇନୁ ଯେ, ଏଇନେ ବାନ୍ତି ହୋଇ ପଡ଼ିବ ।

ମୁକୁନ୍ଦ—(ଶୁଷ୍କ ମୁଖରେ ଫେରିଆସିଲା)

ଆରଣି—ମୁକୁନ୍ଦ !

ମୁକୁନ୍ଦ—ନାଃ ଦେଲାନାହିଁ, ଦି ମାସର ପଇସା ବାକି । ବହୁତ କରି କହିଲି, ଆଜି ଦିନଟା ପାଏ ହେଲେ କ୍ଷୀର ଦେ । ମନାକଲା ।

ଆରଣି—ତାଙ୍କ ଖବର କିଛି ପାଇଲୁ ?

ମୁକୁନ୍ଦ—ନାଁ, ସେ ବୋଧହୁଏ···

ଟୁନୁ—ବୋଉ, ଛାତି ଫାଟିଯିବ । ଶୋଷ ।

ଆରଣି—ମୁକୁନ୍ଦ ! (ଦୁଇଟୋପା ଲୁହ ଝରିପଡ଼ିଲା)

ଟୁନୁ—ବୋଉ ମତେ ଦବ ନାହିଁ; ମୁକୁନ୍ଦ ! ଦୁଧ ଟିକିଏ ତୁ ଦେ ।

ଆରଣି—ଗରମ କରି ଦଉଚି ବାବା ।

(ଘର ଭିତରକୁ ଚାଲିଗଲେ)

ମୁକୁନ୍ଦ—ଦେଖ, ବାପାଙ୍କୁ ହେଲେ ଖବର ଦିଅ ।

ଆରଣି—( ଟିକିଏ ଫେରି ) କେମିତି ଆଉ ? ଚିଠି ଦେଲେ ତ ଜବାବ ନାହିଁ, ଟୁନୁର ଦିହ ଏମିତି । ଆଉରୁ ଯିବାକୁ ଯେ···ତତେ ବା ପାଖରୁ ଛାଡ଼ୁଛି କେମିତି ? (ଚାଲିଗଲେ)

ମୁକୁନ୍ଦ—(ଟୁନୁ ପାଖକୁ ଯାଇ ଟଙ୍ଗାରେ ବସି, ଦେହ ଦେଖି) ଓଃ, ତାତି ଖାଲି ଖଇ ଫୁଟୁଚି !

ଟୁନୁ—ବାପା କାହାନ୍ତି ମୁକୁନ୍ଦ !

ମୁକୁନ୍ଦ—ବାପା ପରା କଟକରୁ ଆସି ନାହାନ୍ତି ।

ଟୁନୁ—ସେ କଅଣ କଟକରେ ରହୁଛନ୍ତି ? ଯମା ତ ଆସୁ ନାହାନ୍ତି ।

ମୁକୁନ୍ଦ—ହଁ, ଆସୁ ନାହାନ୍ତି ଆଉ କଅଣ ?

ଟୁନୁ—କାହିଁ ? କାଲି ତ ଆସି ନାହାନ୍ତି ।

ମୁକୁନ୍ଦ—କାମ ଥିବ ।

ଟୁନୁ—ତୁ ତେବେ ଯା, ବାପାଙ୍କୁ କହିବୁ ଡାକ୍ତର ଡାକିଦେବେ, ଆଉ ମୋ ପାଇଁ ଫଳ ଆଣିବେ ।

ଆରଥର ଜରବେଳେ ଯୋଡ଼ ଫଳ ଆଣିଥିଲେ, ଭାରି ସୁଆଦ ।

ମୁକୁନ୍ଦ—ଯିବ, ବୋଉ ତୋ ପାଖକୁ ଆସୁ, ଯିବ ।

ଟୁନୁ—ବୋଉ ଏଇନେ ଆସିବ ନାହିଁ କି ? ମୋ ପେଇଁ ଦୁଧ ଆଣିବାକୁ ଯାଇଚି, ତୁ ଯା, ବାପା ଜାଣି ନାହାନ୍ତି ମତେ ଜର ହେଇଚି ବୋଲି । ତୁ ଏଇନେ ଯା ତାଙ୍କୁ କହିବୁ ।

ମୁକୁନ୍ଦ—କଚେରୀ କାମ ସରିଲେ ତ ବଳେ ଆସିବେ, ମୁଁ ଗଲେ କଅଣ ହବ ?

ଟୁନୁ—ନାଇଁ ନାଇଁ, ତୁ କହିବୁ ଟୁନୁ ଡାକୁଚି । ତାକୁ ଭାରି ଜର, ଆରଥର କେମିତି ମୋ' ଜରବେଳେ କଚେରୀକି ନ ଯାଇ ସେ ମୋ ପାଖେ ବରାବର ବସି ରହିଥିଲେ । ଯା, ବାପାଙ୍କୁ ଡାକିଆଣ ।

ମୁକୁନ୍ଦ—ହଉ, ହଉ, ବୋଉ ଆସୁ ।

ଆରତି—(ହାତରେ ଗୋଟେ ଫୁଟେ କାଚ ଗ୍ଲାସରେ ପେଜ ନେଇ ଆସିଛି)

ମୁକୁନ୍ଦ—ହେଇ, ବୋଉ ଆଣିଲାଣି ଦୁଧ, ଆଗେ ଟିକେ ଖାଇଦେଲୁ ।

ଆରତି—ଆଁ କର୍ ।

ଟୁନୁ—ନାଇଁ, ମୋତେ ଦେ, (ଗ୍ଲାସ ନେଲା) ଏଗୁଡ଼ାକ ବହଲିଆ ଦିଶୁଚି, ଦୁଧ ନୁହେଁ । (ଚାଖି) ଛି ପେଜ କି କଅଣ (ଫୋପାଡ଼ି ଦେଲା) ନୁଣିଆଁ ଟା ।

ଆରତି—ଛି, ଦହି ଖରାପ ଅଛି ପରା ? ଏମିତି ହୁଅନ୍ତି ? ମୋ ବାପ ପରା !

ମୁକୁନ୍ଦ—ଦେଖ !⋯

ଆରତି—(ଲୁହଭରା ଆଖିରେ ଖାଲି ଚାହିଁ ରହିଲା)

ମୁକୁନ୍ଦ—ଯୋଡ଼ାଏ ଫଳପାଇଁ ମୁଁ ଟିକିଏ ବଡ଼ବାବୁଙ୍କ ପାଖକୁ⋯

ଆରତି—ଏଠି ତ ମୋର ସାହା ଭରସା କେହି ନାହିଁ ମୁକୁନ୍ଦ !

ମୁକୁନ୍ଦ—ଆଉ କଅଣ ଏଠି ?⋯

ଟୁନୁ—ବୋଉ ଭାରି ଶୋଷ, ତୁ ଠକୁଛୁ । ମୁକୁନ୍ଦ ! ଯା'ମ ବାପାଙ୍କୁ ଡାକିଆଣ କଚେରୀରୁ ।

ମୁକୁନ୍ଦ—ଯା, ଟିକିଏ ପାଣି ଉଷୁମେଇ ଆଣିଦିଅ ହେଲେ ।

ଆରତି—(ଲୁହ ପୋଛି ଚାଲିଗଲେ)

ଟୁନୁ—ବୋଉ ?

ମୁକୁନ୍ଦ—ବୋଉ ଗଲା ପରା ତୋ ପାଇଁ ପାଣି ଆଣିବ ।

ଟୁନୁ—ତୁ ଗଲୁନାଇଁ ?

ମୁକୁନ୍ଦ—ମୁଁ ?

ଟୁନୁ—ହଁ ବାପାଙ୍କ ପାଖକୁ ମ ।

ମୁକୁନ୍ଦ—କଚେରୀ କାମ ସରିଲେ ବାପା ମନକୁ ଆସିବେ ରେ ! ବାପା ଆସିଲେ ମୁଁ ଯିବି ତୋପାଇଁ ଫଳ ଆଣିବି । ଡାକ୍ତର ଆସିବେ ।

ଟୁନୁ—ନାଇଁ ତୁ ଏଇନେ ଯା ।

ନେପଥ୍ୟେ—ବେହେରା, ବେହେରା ?

ମୁକୁନ୍ଦ—କିଏ ଡାକୁଚି, ମୁଁ ଟିକିଏ ଦେଖିଆସେଁ ।

(ଗଲା)

ଆରତି—(ପାଣିଆଣି)ବାପରେ, ଟୁନୁ, ନେ ଟିକିଏ ପି⋯

ଟୁନୁ—(ଗିଲାସ ଧରି ସବୁ ପିଇଦେଲା)

ଆରତି—ସବୁଗୁଡ଼ା ପାଣି ପିଇଦେଲୁ ? ମୁକୁନ୍ଦ କାହିଁ ?

ଟୁନୁ—କିଏ ଡାକିଲା ସେ, ଯାଇଚି ।

ଆରତି—ମୁଁ ବିଞ୍ଚି ଦେଉଚି, ତୁ ଟିକିଏ ଆଖିମୁଦି ଶୋଇ ପଡ଼ିଲୁ ।

ଟୁନୁ—ବୋଉ, ବାପାଙ୍କୁ ଡାକ ।

ଆରତି—ହଁ, ଡାକିବା ।

ଟୁନୁ—ମୁକୁନ୍ଦକୁ ପଠା ।

ଆରତି—ହଁ ଯିବ, ତୁ ପାଟି କରନା ତଣ୍ଟି ଶୁଖିଯିବ । ଆଖିବୁଜି ଶୋଇପଡ଼ ।

ଟୁନୁ—ତୁ ବାପାଙ୍କ ପାଖକୁ ମୁକୁନ୍ଦକୁ ପଠେଇବୁ ?

ଆରତି—ହଁ । (ବିଞ୍ଚିଦେଲେ, ଟୁନୁ ଶୋଇଲା ଆଖିମୁଦି, ମୁକୁନ୍ଦ ବାହାରୁ ଆସିଲା) କିଏ ଡାକୁଥିଲା ମୁକୁନ୍ଦ !

ମୁକୁନ୍ଦ—ନାଁ, କେହିନାହିଁ ।
ଆରତି—କିଏ ସେ କହୁ ନା—
ମୁକୁନ୍ଦ—ଘରବାଲା
ଆରତି—ଭଡ଼ା ତାଗଦାରେ' ନା ?
ମୁକୁନ୍ଦ—(ନୀରବ)
ଆରତି—କଅଣ କହିଲା ଆଉ ?
ମୁକୁନ୍ଦ—(ନିଶ୍ୱାସ ମାରି) ନାହିଁ ଦେଈ ! ତୁମେ କେମିତି କେମିତି ଦୁଇ ତିନ ଦିନ ସମ୍ଭାଳ ନିଅ ଟୁନୁକୁ । ମୁଁ ବଡ଼ବାବୁଙ୍କ ପାଖରୁ ଫେରିଆସେଁ ।
ଆରତି—ଘରବାଲା କଅଣ କହିଲା ?
ମୁକୁନ୍ଦ—ଘର ଖାଲିକରି ଚାଲି ଯିବାକୁ କହିଲା । କହୁଚି କହିବାଟରେ ସାତ ଦିନ ସମୟ ଦେଇଛି ।
ଆରତି—ହଁ, ଟଙ୍କା ଦବାର ଆଉ ବଳନାହିଁ । ଯାହା ଗହଣା ଦିଖଣ୍ଡ ଥିଲା···
ମୁକୁନ୍ଦ—ହଁ ସବୁ ତ ଗଲାଣି, ବାକି ଖଣ୍ଡିଆ ଦଣ୍ଡିଆ ହୋଇ ଯୋଉ ଦିଖଣ୍ଡ ଅଛି, ସେଇ ତମ ଆଖିରେ ନ ରହୁ ।
ଆରତି—ଟୁନୁଠଉ ତ ବଡ଼ ନୁହେଁ ସେ ।
ମୁକୁନ୍ଦ—ହଉ ଅଛୁ ତ କଥା—ସାତ ଦିନ । ସ୍ୱା ଭିତରେ ହୁଏ ତ ବଡ଼ବାବୁ ଆସି ପାରନ୍ତି । ତୁମେ ଯା ଗାଧୋଇ ନାଁ, ଫେର୍ ତମର ଠାକୁର ପୂଜା ଅଛି । ମୁଁ ଟୁନୁପାଖେ ବସି ବିଞ୍ଚି ଦଉଛି ।
ଆରତି—(ଟୁନୁକୁ ଦେଖି) ଟିକିଏ ଶୋଇ ପଡ଼ୁଛି ।
ମୁକୁନ୍ଦ—ଶୋଉ । (ପଙ୍ଖାକଲେ ଟୁନୁ ମୁଣ୍ଡକୁ) ତୁମେ ଯା ।
ଆରତି—(ଉଠି) ପାଣି ମାଗିଲେ ଆରଘରେ ଅଛି ଦବ, (ଚାଲିଗଲେ, ରାଜୁ ହଠାତ୍ ବାହାରରୁ ଡାକିଲା)
ରାଜୁ—ମୁକୁନ୍ଦ ! ମୁକୁନ୍ଦ !
ମୁକୁନ୍ଦ—ଫେର୍ କିଏ ? (ଟିକିଏ ଉଠିଯାଇ) କିଏ ଡାକୁଚ ।
ରାଜୁ—ମୁଁ ରାଜୁ ।
ମୁକୁନ୍ଦ—ମୁଁ ଟିକିଏ ଅଡ଼ୁଆରେ ଅଛି ଏଣେ । କଅଣ ?
ଆରତି—(ଆସି) କିଏ ଡାକୁଛି ମୁକୁନ୍ଦ ! ରାଜୁବାବୁ ?
ମୁକୁନ୍ଦ—ହଁ ।
ଆରତି—ତାଙ୍କୁ ଡାକ୍ ଏଇଠିକି ।
ମୁକୁନ୍ଦ—ଦେଈ ଡାକୁଛନ୍ତି, ଭିତରକୁ ଆସନ୍ତୁ ।
ଆରତି—ତାଙ୍କୁ ପଚାରିବ ମୁକୁନ୍ଦ, ବାବୁ କାହାନ୍ତି ?
(କହି ଆରତି ଭିତରକୁ ଚାଲିଗଲେ)
ରାଜୁ—(ଆସି ଟୁନୁକୁ ଦେଖି) ଏ କଅଣ ?
ମୁକୁନ୍ଦ—ଟୁନୁକୁ ତିନ ଦିନ ହେଲା ଜର; ତାତ ଛାଡ଼ିବାକୁ ନାହିଁ ।
ରାଜୁ—ଗୋଟେ ଖବର ବି ଦିଆ ହେଇ ପାରିଲ ନାହିଁ ମୋତେ ? ଦେଈ କାହାନ୍ତି ତୁମର ମୁକୁନ୍ଦ ! ରାଜୁ ବୋ'ଲି ଜଣେ କେହି ତାଙ୍କର ଅଛି, ଏ କଥା କଅଣ···ଟୁନୁ ଦିହ ଦେଖିଲେ) ଓଃ, ବଡ଼ ତାତିଛି ଦିହ, କିଏ ଦେଖୁଛି ?
ମୁକୁନ୍ଦ—କିଏ ଆଉ ଦେଖିବ ? ବାବୁଙ୍କର ତ ତିନ ଦିନ ହେଲା ଦେଖା ନାହିଁ ।
ରାଜୁ—ଗୋପାଳର ଦେଖାନାହିଁ ? ମୁଁ ନ ଥିଲି କଟକ ଯାଇଥିଲି, ଆଜ ତ ଆସୁଛି । ସେ କଅଣ ଘରକୁ ଆସିନାହିଁ—ତିନ ଦିନ ?
ଆରତି—ମୁକୁନ୍ଦ, ରାଜୁବାବୁଙ୍କୁ କହ, ବାବୁଙ୍କ କଥା ତ ଶୁଣୁଛନ୍ତି—ଏତେବେଳେ ସେ ଯଦି ଟିକିଏ ଟୁନୁର ···
ଟୁନୁ—(କାନ୍ଦରେ) ନାଁ, ନାଁ ସେ ଔଷଧ ମୁଁ ଖାଇବ ନାହିଁ ।
ରାଜୁ—ଟୁନୁ କଅଣ କହୁଛି ?
ମୁକୁନ୍ଦ—(ପାଖକୁ ଆସି) ଜର ବାଉଳରେ, କଅଣ ବକି ଯାଉଛି ।
ରାଜୁ—(ଚାହିଁ) କାନ୍ଦରେ ଶୋଇଛି ତ ?
ମୁକୁନ୍ଦ—ହଁ ।
ରାଜୁ—(ଦିହଦେଖି) ଓଃ, ବଡ଼ ଜୋର ଜର, ମୁଁ ଡାକ୍ତର ଡାକି ଆଣୁଛି ।

ଆରତି—ମୁକୁନ୍ଦ ! ରାଜୁବାବୁଙ୍କୁ କହ, ଡାକ୍ତର ଡାକିବା ଆଗରୁ ବାବୁଙ୍କୁ ଦେଖନ୍ତୁ, ତା ନୋହିଲେ···

ରାଜୁ—ଓ, ବୁଝିଲି, ବାବୁ ନାହିଁ ବୋଲି କଣ୍ଟୁ କାମ ରହିଯିବ ନାହିଁ, ଆଗେ ପିଲାର ଜୀବନ । ମୁଁ ଯାଉଚି ଡାକ୍ତର ଡାକିଆଣି ପିଲାକୁ ଦେଖାଏଁ, ତା ପରେ ଦେଖିବ, ଗୋପ କାହିଁଗଲା ।

ଆରତି—କିନ୍ତୁ···

ରାଜୁ—ତୁମର ସେ କିନ୍ତୁ ଫିନ୍ତୁ ମୁଁ ଶୁଣିବି ନାହିଁ ଆରତି ଦେବୀ !

ଆରତି—କିନ୍ତୁ ସେ ନାହାନ୍ତି, କଅଣ ଯେ ତାଙ୍କର ଏମିତି ହେଲା !

ମୁକୁନ୍ଦ—ଭାଗ୍ୟ, ଭାଗ୍ୟ ସେ ଆମର ରାଜୁବାବୁ, କାହାକୁ କହିବା ? ନୋହିଲେ ଗୋପବାବୁ ପରି ଯୋଗାଲୋକ ଟୁନୁକୁ ନ ଦେଖିଲେ ଯେ ପାଣି ପିଉ ନ ଥିଲେ···

ରାଜୁ—ମୁଁ ତ ଏସବୁର କାରଣ କିଛି ବୁଝି ପାରୁନାହିଁ, ତାର ଏମିତି ଅଧଃପତନ ଯେ କେମିତି ହେଲା !

ଆରତି—ଟିକିଏ ଖବର ନଅନ୍ତୁ ତାଙ୍କର ।

ରାଜୁ—ତା ତ ନିଶ୍ଚୟ ନେବି, କିନ୍ତୁ ଆଗେ ଯେ ଟୁନୁ, ମୁଁ ଆସୁଛି ଆରତି ଦେବୀ ! (ଚାଲିଗଲେ)

ଆରତି—(ଆସି) ମୁକୁନ୍ଦ ! ରାଜୁବାବୁ ଚାଲିଗଲେ ଡାକ୍ତର ଡାକି, ମୁଁ କିଛି କହି ପାରିଲି ନାହିଁ ।

ମୁକୁନ୍ଦ—ଆସିବେ ତ ଏଇନେ ।

ଆରତି—ଆସିବେ ଯେ, ଡାକ୍ତର ଫିସ୍, ଔଷଧ ଖର୍ଚ୍ଚ·· ଏ ସବୁ ତ ଅଛି, ହୁଏତ ସେ ନିଜ ହାତରୁ···

ମୁକୁନ୍ଦ—ଉପାୟ କଅଣ ଦେଇ ! ଅଶରଣ ବେଳେ ମହାପ୍ରଭୁ ରାଙ୍ଗପାଦ ଧରି ଥିଲେ ତ ।

ଆରତି—ନାଇଁ ମୁକୁନ୍ଦ, ତୁ ଯା, ଡାକିଆଣ ।

ମୁକୁନ୍ଦ—(କୁଣ୍ଠିତ) ସେ ପରି ଗଲେ ଡାକ୍ତର ଆଣିବାକୁ ।

ଆରତି—ଫେରାଇ ଆଣ ତାଙ୍କୁ ।

ମୁକୁନ୍ଦ—ଟୁନୁର ଚିକିତ୍ସା ହବ ନାହିଁ ?

ଆରତି—ତୁ ଯା ନାଁ, ଆଗେ ତାଙ୍କୁ ଡାକିଆଣ ।

ମୁକୁନ୍ଦ—(କୁଣ୍ଠିତ ହୋଇ ଯାଉ ଯାଉ) ଚାଲି ଯିବେଣି ସେ ।

ଆରତି—ଦେଖ୍ ଟିକେ ଯା । (ମୁକୁନ୍ଦ ଚାଲିଗଲା ଆରତି ହାରଟି କାଢ଼ିଲେ) ମୁକୁନ୍ଦ, ମୁକୁନ୍ଦ, (ମୁକୁନ୍ଦ ଫେରିଆସି ଛିଡ଼ାହେଲା ଆରତିଙ୍କ ଚାହିଁ, ଲୁହ ଆଖିରେ ହାରଟି ଦେଇ) ଏଇଟା ରାଜୁବାବୁଙ୍କୁ ଦେ ବିକିଦେଇ ଯାହାହେଲା ଟଙ୍କା ଆଣନ୍ତୁ ।

ମୁକୁନ୍ଦ—ଦେଇ !··· (ଚାହିଁଲା)

ଆରତି—ଟୁନୁକୁ ଅନା ମୁକୁନ୍ଦ ! ନେ, ଡେରି କରନା । ଯା, ରାଜୁବାବୁ ଚାଲିଯିବେ ଯେ !

ମୁକୁନ୍ଦ—ଦେଇ, ହାତର ଚୂଡ଼ି ଦପଟ ଛଡ଼ା ତ ଆଉ କିଛି ନାହିଁ ?

ଆରତି—ଟୁନୁ ଅଛି ମୋର—ତୁ ଯା ।

ମୁକୁନ୍ଦ—(ଟିକିଏ କୁଣ୍ଠିତ ହୋଇ ହାତ ବଢ଼ାଇଲା)

ଆରତି—ଯା—(ମୁକୁନ୍ଦ ଲୁହ ପୋଛି ପୋଛି ଚାଲିଗଲା,)

ଟୁନୁ—ତୁମେ ଆଉ କୁଆଡ଼େ ଯାଆନାଇଁ ବାପା !

ଆରତି—( ହଠାତ୍ ଟୁନୁ ପାଖକୁ ଆସି ) ଟୁନୁ । ଟୁନରେ ! (ଚାହିଁ ପୁଣି ଜଳପଟି ଦେଇ ବସିଲେ ଏତକବେଳେ ଦୂରରୁ ଗୀତ ଶୁଭିଲା । )

ନେପଥ୍ୟ ଲବଙ୍ଗ—ସୁର୍ ଶବଦ ନାହିଁ—ଘରେ, କଅଣ କେହି ନାହାନ୍ତି କି ?

ଆରତି—କିଏ—ଲବଙ୍ଗ ?

ଲବଙ୍ଗ—କଅଣ କରୁଚ ଦେଇ, ଘରେ କ'ଣ କେହି ନାହାନ୍ତି କି ? (ଆସିଲା ହାତରେ ଗୋଟିଏ ପ୍ଲେଟ ଝିଣରେ ଦୁଧ) ଏ ଦୁଧଟିକକ ରଖ ତ ।

ଆରତି—ଦୁଧ ?

ଲବଙ୍ଗ—ହଁ, ସେ ଯୋଉ ଗାଈଟି ଦେଖିଥିଲ, ଗୋଟିଏ ମାଈ ବାଛୁରି ତାର, ଆଜି ୨୧ ଦିନ ପୂରିଗଲା ଯେ, ବାପା କହିଲେ···(ଟୁନୁକୁ ଚାହିଁ) କିଏ ? ଟୁନୁ ?

ଆରତ୍ତି —ହଁ ଘର ଜର, ତିନି ଦିନ ହେଲା ଆଜକି ।

ଲବଙ୍ଗ—କେହି ନାହାଁନ୍ତି ଆଉ ପାଖରେ ? ପିଲାର ଦେହ ଏମିତି, ବାବୁ କଅଣ କଟେଜରେ ଯାଇଛନ୍ତି ?

ଆରତ୍ତି--(ନୀରବ)

ଲବଙ୍ଗ—ମୁକୁନ୍ଦ କାହିଁ ?

ଆରତ୍ତି – ଡାକ୍ତର ଡାକି ଯାଇଚି ।

ଲବଙ୍ଗ—ବଡ଼ଲୋକ ଘର ତମର, ବିଶ୍ୱାସ ଯିବ କି ନ ଯିବ ।

ଆରତ୍ତି—କଅଣ କହୁନ୍ ?

ଲବଙ୍ଗ—ଯେତେବଡ଼ ଜର ହଉ, ବାପା ଭଲ ଔଷଧ ଜାଣନ୍ତି । ସେ ଗୋଟେ ହୁକୁମ୍ ଔଷଧ, ନିଶ୍ଚେ ଗୁଡ଼ିଯିବ ।

ଆରତ୍ତି —ବିଶ୍ୱାସ ଯିବ ନାହିଁ କାହିଁକି ?

ଲବଙ୍ଗ—ଏ ଦୁଧ ତେବେ ରଖ, ମୁଁ ବାପାଙ୍କୁ ଡାକି ଆଣୁଚି । (ଯାଉ ଯାଉ) ହଁ, ଡାକ୍ତର ଔଷଧ ବାକି ଦିଆହୋଇ ପାରିବ ନାହିଁ ।

ଆରତ୍ତି—ଡାକ୍ତର ଡାକିବାକୁ ଯାଇଚି ସେ ।

ଲବଙ୍ଗ—ସେ ଦେଖ୍, ମନା ନାହିଁ, ତା ଔଷଧ ଖୁଆଇବା କଥା ହେଇ ପାରିବ ନାହିଁ, ବିଶ୍ୱାସ ଯିବ ତ କହ; ବାପାଙ୍କୁ ଡାକି ଆଣିବି ।

ଆରତ୍ତି—ସେ ବୁଢ଼ାଲୋକ; ପୁଣି ଆଖି ନାହିଁ ।

ଲବଙ୍ଗ—ସେ ଖୁସିରେ ଆସିବେ, ଝୁନୁ ପୁଅର ଦେହ ଦୁଃଖ ହେଇଛି । ବାପା ଶୁଣିଲେ, ତୁମେ ନାହିଁ କଲେ ବି ଆସିବେ । ମୁଁ ଯାଉଚି, ଦୁଧ ରହିଲା । (ଗୁଲିଗଲା)

ଆରତ୍ତି—(ଦୀର୍ଘ ନିଶ୍ୱାସ ମାରି) ଭଗବାନ ! (ଝୁନୁ ମୁଣ୍ଡ ଉପରକୁ ଝୁଙ୍କି ପଡ଼ିଲା । ମୁକୁନ୍ଦ ଆସିଲା)

ଆରତ୍ତି—(ଗୁହିଁ) ଦେଲୁ ?

ମୁକୁନ୍ଦ—ନଉ ନ ଥିଲେ, ବହୁତ କହିବାରୁ ନେଲେ, କିନ୍ତୁ ଦେଖ, ଏ ରାଜୁବାବୁଟିକୁ ମୋର କାହିଁକି···

ଆରତ୍ତି—ଝୁନୁକୁ ଗୁହାଁ···ମୁକୁନ୍ଦ ।

ମୁକୁନ୍ଦ—ହଁ, ତୁମେ ଯା, ଗାଧୋଇ ଯିବ ।

ଆରତ୍ତି—ହଁ, ମୁଁ ଯାଉଚି, ଡାକ୍ତର ଆସିଲେ ଟିକିଏ ବସେଇ ରଖିବ । ଖାଲି ସେ ଦେଖିକରି ଯିବ, ଔଷଧ କିଛି ଦର୍କାର ନାହିଁ ।

ମୁକୁନ୍ଦ—ଔଷଧ ଦରକାର ନାହିଁ ?

ଆରତ୍ତି—ନାଁ ।

ମୁକୁନ୍ଦ—ଖାଲି ଖାଲି ତେବେ ମିଛଟାରେ ହାରଟା··· ତମ ମୁଣ୍ଡ ବିଗିଡ଼ିଗଲାଣି ଦେଉ, ତମ ମୁଣ୍ଡ···

ଆରତ୍ତି—( ଗୁଲି ଯାଉ ଯାଉ ଫେରି ) ହଁ, ଦୁଧଟା ଗୁଡ଼ି ଯାଉଚି, ଚୂଲିରେ ବସେଇଦେଇ ଯାଏଁ ।
(ଦୁଧ ନେଲେ)

ମୁକୁନ୍ଦ—ଦୁଧ ?

ଆରତ୍ତି—ହଁ ମୁକୁନ୍ଦ, ଭଗବାନ ପରି ଦୁଃଖୀର, ଝୁନୁ ମୋର ଭଲ ହେଇ ଯିବ ସେ । (ଗୁଲିଗଲେ)

ମୁକୁନ୍ଦ—ତୁଣ୍ଡରେ ତମର ଫୁଲ ଚନ୍ଦନ ପଡ଼ୁ ।
(ବିଞ୍ଚିବାରେ ଲଗିଲେ)

ଝୁନୁ—ମୋ ପାଖରେ ବସ, ଯାଆ ନାହିଁ କୁଆଡ଼େ ବାପା !

ମୁକୁନ୍ଦ—( ଗୁହିଁ ) ବାଉଳି ହଉଚି ପିଲାଟା । ଓଃ କି ଜର ! (ଦେହ ଦେଖି, ବିଞ୍ଚିଲା)

( ବେଶ ମଳିନ, ମଦନିଶା ଧରିଛି, ଧୀରେ ଧୀରେ ଘରେ ପ୍ରବେଶ କଲେ ଗୋପ, ତାଙ୍କୁ ଦେଖି ମୁକୁନ୍ଦ ଚମକି ଉଠିଲା ଆନନ୍ଦରେ )

ମୁକୁନ୍ଦ—ସାନବାବୁ, ଓଃ, କଅଣ ଏମିତି ହେଇଚ ? ଓଃ, ଚିହ୍ନି ହଉନାହିଁ ମୋଟେ, କେତେ ଖାଲ !
( ଗାମୁଛାରେ ଝାଳ ପୋଛି ଦବାକୁ ବସିଲା )

ଗୋପ—( ହାତ ଛାଡ଼ିଆଡ଼ି ) ଆରତ୍ତି କାହିଁ ?

ମୁକୁନ୍ଦ—ଓଃ, ( ପଙ୍ଖା ଆଣିବାକୁ ଯାଇ ) ତାରପରି ଦେହ ! କଅଣ ହେଲା ତମର ?

ଗୋପ—ମୁକୁନ୍ଦ, ଆରତ୍ତି କାହିଁ କହ ।

ମୁକୁନ୍ଦ—ବାବୁ, ତିନ ଦିନ ହେଲା ଘରେ ଚୂଲି ଜଳିବାକୁ ନାହିଁ ( ଟୁନୁ ଆଡ଼କୁ ଧରି ନେଇ ) ଟୁନୁବାବୁଙ୍କୁ ଜିର ।

ଗୋପ—( ହାତଛୁଡ଼ ) ଆରଖା କାହିଁ ?

ମୁକୁନ୍ଦ—ଦେଈ ଏଇନେ ଗାଧୋଇବାକୁ ଗଲେ । ଟୁନୁବାବୁଙ୍କୁ ଘରି ଜର, ଭଲକଲ ଆସିଲି । ସେ ତ ଖାଲି ବାପା ବାପା ବୋଲି ନିଦରେ ବି ବାଉଳି ହଉଚ । ଆସ ଆସ ( ଗୋପ ଭିତରକୁ ପଶି ଯାଉଥିଲେ ମୁକୁନ୍ଦ ବାଧା ଦେଇ ) ସାନବାବୁ, ଟୁନୁବାବୁଙ୍କୁ ପରି ଜର ! ଆଗେ ତାଙ୍କୁ ଟିକିଏ ଦେଖ । ବାପାଙ୍କୁ ଦେଖିବ ବୋଲି ସେ ଔଷ ଥିଯୁ ଧରୁନାହାଁ । ( ଧରିଲେ )

ଗୋପ—ଛାଡ଼୍, ଗ୍ଲବ କାହିଁ ?

ମୁକୁନ୍ଦ—ତୁମେ ଟିକିଏ ଟୁନୁ ପାଖରେ ବସ । ମୁଁ ଦେଈଙ୍କି ଡାକ ଆଣୁଚ କୂଅ ମୂଳରୁ ।

ଗୋପ—ଡେମ୍ । ମୁଁ ପଗୁରୁଚ ଗ୍ଲବକାହିଁ । ଏଁ ? ଗ୍ଲବ କାହିଁ ?

ମୁକୁନ୍ଦ—ଗ୍ଲବ ମୁଁ ତ ଦେଖିନାହିଁ ।

ଗୋପ—( ମୁକୁନ୍ଦକୁ ଧରି ଝୁଙ୍କାଇ ) ତୁ ଜାଣୁ, କହ ଗ୍ଲବ କୋଉଠି ଅଛି ।

ମୁକୁନ୍ଦ—ଦେଈଙ୍କ ପାଖେ ଥିବ, ଡାକ ଦଉଚ । କଅଣ ତୁମେ ଏମିତି ହେଲ ସାନବାବୁ ! ତମ୍‌କୁ କୋଳେଇ କାଖେଇ ମଣିଷ କରିଛି—ସେଇ ମୁକୁନ୍ଦ ମୁଁ, ଆଜ ପରି ବଞ୍ଚିଛି । ମୋର ଆଖି ଆଗରେ...

ଗୋପ—( ଠେଲି ଦେଲେ ) ମର, ମର ତୁ ( ମୁକୁନ୍ଦ ପଡିଗଲା ଖଟ ଦେହରେ ତା ମୁଣ୍ଡ ବାଜିଲା ଜୋରରେ । ଟୁନୁ ପାଖକୁ ଯାଇ ତା ବେକରୁ ହାରଟି ଫିଟାଇଲା ବେଗେ, ଟୁନୁ ନିଦ ଭାଙ୍ଗିଗଲା )

ଟୁନୁ—ବାପା, ବାପା ! ( ଗୋପର ବେକ କୁଣ୍ଢାଇ ଧରିଲା )

ଗୋପ—( ଟୁନୁର ହାତ ଛଁଆଡ଼ ପଳେଇଗଲା, ଟୁନୁ ଡାକୁଥାଏ )

ମୁକୁନ୍ଦ—ଉଃ, ଉଃ ( କଷ୍ଟରେ ଉଠିବା ବେଳକୁ ତାର ମୁଣ୍ଡ ଫାଟି କଣା ହୋଇ ରକ୍ତ ବୋହୁଛି, ଡାକିଲା ) ସାନବାବୁ; ସାନବାବୁ, ( ବାଧା ଦେବାକୁ ଦଉଡ଼ିଲା ଗୋପାଳର ପିଛାରେ ) ( ଠିକ୍ ଏତିକିବେଳେ ଆରଖା ପାଣି ଢାଳଟେ ହାତରେ ଧରି ଆସିବା ବେଳକୁ ମୁକୁନ୍ଦର ସାନବାବୁ ଡାକର ଶବ୍ଦ ଶୁଣୁଛି, ଗୋପାଳ ପଳାଇ ଯିବାର ସେ ଦେଖୁଚ, ଟୁନୁ ଡାକୁଚ ବାପା, ହାତରୁ ତାର ଦୁମ୍‌କରି ଢାଳଟା ଖସି ପଡ଼ିଲା )

( ପଟ୍ଟପତନ )

---

## ତୃତୀୟ ଅଙ୍କ—ପ୍ରଥମ ଦୃଶ୍ୟ

[ ଉଷାର ଘର, ରାଜୁ ଖଟ ଉପରେ ବସି ଗୀତ ଗାଉଥିଲା ଆନନ୍ଦରେ ! ହଠାତ ଉଠି ଟେବୁଲ୍ ପାଖକୁ ଯାଇ ଗ୍ଲାସରେ ମଦ ଢାଳି ଦେଖିଲା, ଉଷା ଏତିକିବେଳେ ପଛରୁ ଆସି ହାତ ଧରିଲା ]

ଉଷା—ସେ କଅଣ ହେଉଚ ?

ରାଜୁ—ଉଷା ! ( ଖାଇବାକୁ ଯାଉଚ ) ହିଁ—

ଉଷା—( ହାତରେ ବାଧା ଦେଲା )

ରାଜୁ—ଟିକିଏ ଖାଅ—ଦେଖ କଅଣ ହଉଚ ।

ଉଷା—କେବେ ଦେଖିଚ ଭଲ ମୁଁ ଖାଇବାର, ଛି, ଛି, ତୁମେ ପରା ଶୋଉଥିଲ ?

ରାଜୁ—ନିଦ ହେଲା ନାହିଁ, ସ୍ୱପ୍ନ, ଖାଲି ସ୍ୱପ୍ନ । ସ୍ୱପ୍ନରେ ଦେଖୁଚ ଖାଲି ସେଇ—ଆରଖା, ତାରି ପାଇଁ ଧରିଲି ( ଗିଲାସ ଦେଖାଇ ) ଏଇ, ଏଇ ( ଖାଇଲେ ଟିକିଏ ମଦ । ମୁହଁ ବିକୃତ କରି ) ତମେ ଟିକିଏ...

( ରାଜୁ ଉଠି ପୁଣି ପୂର୍ବ ଗୀତ ଧରିଲା )

(ଗୀତ)

ବଧୂଲି ! ଆଜ ମଧୁର ରାତି ସୁଦୂର ଚନ୍ଦ୍ର ହସେ ଗୋ
ଭ୍ରମର ସାଥୀ, ବିରହ ଗୀତି ମରମ-ଭାଷା ଭାଷେ ଗୋ
ବନ୍ଧୁରେ ତୋ ଅଧର ଲାଗି
ଅନ୍ତରେ ତା ପିଆସ ଜାଗି
ମୁକୁଳା ବନ୍ଧୁ ଝିଲ ଦିଶେକ
ଉଦୁଁଆ ଆଖି ଶେଷେ—ଗୋ ॥
ରଜନୀଗନ୍ଧା ଗନ୍ଧ ଢାଳେ
କାନ୍ଦି କାନ୍ଦି ରଜନୀ ସାରା
ସମୀର ଝୁରେ, ଆଶାରେ ତୋ ମିଳନ ଗୀତେଁ ନଭେ ତାରା,
ଆଶାରେ ଏ ଦିନ ଯାଏ
ଆଶା ବାଲି-ବନ୍ଧ ହଏଁ
ପ୍ରେମର ବିଶ ଜାଳିଛୁ ସେ ତ
ଅଗୁରୁ ଗନ୍ଧ ବାସେ ଗୋ ॥

ଉଷା—ନାଁ, ନାଁ ତୁମେ ବସ ।

ରାଜୁ—ଟିକିଏ ଖାଅ ଉଷା । ଦେଖିବ ଗୋପ ନିଶ୍ଚେ ତୁମର ବଶ ମାନିବ । ଆଉ ଗୋପ ତୁମର ହେଲେ—ଜାଣ—ଜାଣ ଉଷା ! ଆରତି ହେବ ମୋର, ଖାଅ, ଟିକିଏ, ଖାଅ ।

ଉଷା—ତୁମେ ଏମିତି ଆରତି ଆରତି ହଉଚ, ଗୋପବାବୁ ଯଦି ଆସି ଶୁଣନ୍ତି ?

ରାଜୁ—ଶୁଣୁ, ଆସୁ, ମୁଁ ତା ଆଗରେ ସାଫ୍ ସାଫ୍ କହିବି—ଆରତି ତାର ନୁହେଁ, ଆରତିର ଜନ୍ମ ତା' ଲାଗି ନୁହେଁ ।

ଉଷା—ଛି, ଛି ଗୋପବାବୁ ପରା ତୁମର ବନ୍ଧୁ ?

ରାଜୁ—ବନ୍ଧୁ ! ନାଁ ? କିନ୍ତୁ ଜାଣ ଉଷା ! ଆରତି ମୋର ପ୍ରାଣ ! ତୁମେ ତ ଭଲ କରି ଜାଣ । ମୁଁ ଆଜଯାଏ କାହାରିକି ଚାହିଁ ନ ଥିଲି, କିନ୍ତୁ ଆରତିର କଅଣ ଅଛି ଜାଣ ? ତାରି ଆଖିରେ ଅଛି ଗୋଟାଏ ଅବ୍ୟକ୍ତ ନିମନ୍ତ୍ରଣ । ମୁଁ ଏଡ଼ାଇ ପାରିଲି ନାହିଁ, ଆରତିର ମୋର ଜନ୍ମ-ଜନ୍ମାନ୍ତର ସମ୍ବନ୍ଧ—ଗୋପ ତାର ଅନ୍ତରାୟ । ତାକୁ ହଟାଇ । ପାରିଲେ···

ଉଷା—ଛି, ତୁମେ ଆସ ଶୋଇବ ।

ରାଜୁ—ବେଶ୍, ତୁମ କଥା ମୁଁ ମାନିବି, କିନ୍ତୁ ମୋ କଥା ?

ଉଷା—କଅଣ ?

ରାଜୁ—ଗୋପକୁ ତୁମେ ବିଲକୁଲ୍ ତୁମର କରି ରଖ ।

ଉଷା—ଆଚ୍ଛା ସେଇଆ ହବ ।

ରାଜୁ—ଗୋପ କଅଣ ସତେ ତୁମର ହେଇ ରହିବ ?

ଉଷା—ସନ୍ଦେହ କରୁଚ କାହିଁକି ?

ରାଜୁ—ତୁମେ ଜାଣି ନାହଁ, ଆରତିକି ତୁମେ ଦେଖି ନାହଁ, ଏମିତି ରୂପ ଆଉ ଗୁଣ ଏକାଠି କେବେ ମିଳେ ନାହିଁ । ଦିନ ଆସିବ-ହଠାତ୍ ହୁଏତ ଗୋପ ବଦଳି ଯାଇପାରେ । ସେ ଦିନ ତୁମେ···ତୁମର କଅଣ ହେବ ? ଓଃ, ସେ ଦିନ ତୁମେ···

ଉଷା—ଏମିତି କଅଣ ଗୁରେ ତୁମେ କହୁଚ ରାଜୁବାବୁ ! ତୁମେ ଟିକିଏ ଶୁଅ, ମୁଁ ପଙ୍ଖା କରିଦିଏ । ତୁମକୁ ଭାରି ନିଶା ଧରିଛି ।

ରାଜୁ—( ହସି ) ରାଜୁର ନିଶା ? ଉଷା ! ରାଜୁର ନିଶା ମଦ ନୁହେ । ରାଜୁର ନିଶା—ଆରତି । ତୁମେ ବୁଝି ନାହଁ, ଭାବୁ ନାହଁ କିନ୍ତି ଭବିଷ୍ୟତ ବସ । ମୋତେ ନିଶା ଧରିନାହିଁ, ମୁଁ ଠିକ୍ ଅଛି । ତୁମକୁ ନିଶା ଧରିଛି ।

ଉଷା—ମତେ ନିଶା ଧରିଛି ? ( ହସିଲେ )

ରାଜୁ—ହସୁଚ ? ବସ, କହୁଚ ।
( ବସି, ବସାଇଲେ ଉଷାକୁ )

ଉଷା—ନିଜେ ନିଶା ଖାଇବ ବୋଲି ଦୁନିଆଁଟାକୁ ନିଶା ଖୋର ବୋଲି, କହୁଚ କାହିଁକି ?

ରାଜୁ—ହଁ, ନିଶା ମୁଁ ଖାଇଚି—ନିଶା ମତେ ଖାଇନାହିଁ; କିନ୍ତୁ ତୁମେ ନିଶା ଖାଇ ନାହଁ, ଆଉ ଖାଇବ ବା କିମିତି ? ନିଶା ଯେ ତମକୁ ଖାଇଚି ।

ଉଷା—କେମିତି ?

ରଜ୍—ନୋହିଲେ, ତୁମେ ଗୋପ ଲାଗି···

ଉଷା—ରଜ୍‌ବାବୁ !···

ରଜ୍—ମିଛ କହିଲି ? ମାନୁଛି, ଦୁର୍ବଳତା ସମସ୍ତଙ୍କର ଅଛି ।

ଉଷା—ତେବେ ?

ରଜ୍—ତୁମକୁ ମୁଁ ତ ବାରମ୍ବାର ସାବଧାନ କରି ଦେଉଚି ।

ଉଷା—ମୁଁ ତ ଅସାବଧାନ ହେଉ ନାହିଁ ।

ରଜ୍—କାହିଁ ? କହ ଦେଖି, ତୁମେ ତ ଗୋପକୁ ଏତେ ଭଲପାଅ, ସେ ତୁମକୁ ସେହିପରି ଭଲ ପାଏ ତ ?

ଉଷା—ବୋଧହୁଏ ପାଆନ୍ତି ।

ରଜ୍—( ହସି ) ବୋଧହୁଏ—କିନ୍ତୁ ନିଶ୍ଚୟ ବୋଲିତ କାହିଁ କହି ତ ପାରିଲ ନାହିଁ—ମନର ଦମ୍ଭ ନାହିଁ । ମୋର ଭାବନା ସେଇଠି । ଗୋପ ମୋର ବନ୍ଧୁ, ତମଠାରୁ ମୁଁ ତାକୁ ବେଶି ଜାଣେ···

ଉଷା—ତା ହେଲେ ତୁମେ କାହିଁକି—ଜାଣିଶୁଣି···

ରଜ୍—କାହିଁକି ? ତୁମର ଅଭାବ ଘୁଞ୍ଚାଇବାକୁ—ଥରେ ତ କହିଚି,—ଗୋପର ପ୍ରଚୁର ଧନ, ହୁଏତ ଯଦି କୋଉଦିନ ଜାଲ ଛିଣ୍ଡାଇ ସେ···

ଉଷା—ନାଁ, ନାଁ ସେ···

ରଜ୍—ନିଶ୍ଚୟ ଦିନେ ଯିବ, ମୁଁ କହି ରଖିଲି, ଏ ମୋର ଭବିଷ୍ୟତ ବାଣୀ—ମନେରଖ ।

ଉଷା—କିନ୍ତୁ···

ରଜ୍—ସେ କିନ୍ତୁ ପିନ୍ତୁ ଛାଡ଼ ଉଷା ! ଯାହା କରିବାର ଏତିକିବେଳେ । ତା' ପରେ ତୁମେ ଯଦି ତାକୁ ଜୀବନ ଲାଗି ପାଇଗଲ ତ ଭଲକଥା । ନୋହିଲେ ତୁମ ସୁଖେ ତୁମେ, ତା ସୁଖେ ସେ । ତୁମର ତ ଅନ୍ନଚିନ୍ତା ନ ଥିବ ।

ଉଷା—ତା ହେଲେ କଅଣ ମୁଁ···

ରଜ୍—ହଁ, ତୁମକୁ ଛଳନା ଖେଳିବାକୁ ହେବ । ମନରେ ଥାଉ ତୁମର ତା ପ୍ରତି ସ୍ନେହ, ପ୍ରେମ, ମାୟା-ବାଧାନାହିଁ । କିନ୍ତୁ ଆଦାୟ କରିନିଅ, ଯାହାପାର । ସୁଯୋଗ ଜୀବନରେ ଦି'ଥର ଆସେ ନାହିଁ ଉଷା ! ମତେ ଆଶ୍ଚର୍ଯ୍ୟ ଲାଗୁଚି ଯେ ତୁମକୁ ସାବଧାନ କରିଦେଲେ ମଧ୍ୟ ତୁମେ ଚେତୁ ନାହିଁ କେମିତି !

ଉଷା—ବାସ୍ତବିକ୍ ରଜୁବାବୁ ! ତାଙ୍କୁ ଦେଖିଲେ···

ରଜ୍—ଆଉ ବିଲକୁଲ୍ ଯେତେବେଳେ ନ ଦେଖିବ ? ସେତେବେଳେ ?

ଉଷା—ବୋଧହୁଏ ମୁଁ ଆଉ···

ରଜ୍—ତୁମ ହୁଅ, ପରକୁ ନ ଚିହ୍ନି, ନ ଜାଣି, ନିଜର ଜୀବନ ଢାଳିଦିଅନା ଉଷା ! ଅଚ୍ଛା, ଦେଖ ଏଇ ହାରଟିକି । (ହାର ଦେଖାଇଲେ)

ଉଷା—(ଆଗ୍ରହ ଦୃଷ୍ଟିରେ) ଦେଖି, ଦେଖି (ନେଇ ଓ ଅଇନା ପାଖକୁ ଯାଇ ବେକରେ ପିନ୍ଧି) ଖୁବ୍ ସୁନ୍ଦର ! ମୋ ବେକକୁ···

ରଜ୍—(ହସି) ଭାରି ସୁନ୍ଦର ଦିଶୁଚି, ନାଁ ? ପିନ୍ଧ ।

ଉଷା—କାହାର ଏ ?

ରଜ୍—ଜଣେ ଲୋକର, ପିନ୍ଧ ତୁମେ, ବେଶି ଦାମ ନୁହେଁ । ମୋଟେ ଦେଢ଼ଶ ଟଙ୍କା ।

ଉଷା—(ଫିଟାଇବାକୁ ଯାଇ) ଦେଢ଼ଶ ଟଙ୍କା ?

ରଜ୍—(ବାଧାଦେଇ) ଥାଉନା ତମ ଗଳାରେ—ମାନୁଚି ତ ବେଶ୍ ।

ଉଷା—କିନ୍ତୁ ଏତେ ଟଙ୍କା !

ରଜ୍—ବେଶ୍ ବୁଦ୍ଧି, ଏତିକିରୁ ଇ ପରିଚୟ ମିଳୁଚି ।

ଉଷା—କଅଣ ?

ରଜ୍—ଗୋପ ତ ଆସିବ, କହିଚି ତ ତା'ର ଟଙ୍କା ଦେଉ ।

ଉଷା—ତାହାହେଲେ···

ରଜ୍—ଲଜ୍ଜା କଅଣ ? ତାକୁ କହ, ତମ ପାଇଁ ଏଇଟି କିଣି ଦେଉ ।

ଉଷା—କିନ୍ତୁ ଯଦି ସେ...

ରାଜ୍—ନ ହୋଇନ୍ତି ? ଏଇ ତ ? ତେବେ ଜଣାଯିବ ସେ ତମକୁ କେତେ ଭଲପାଏ ।

ଉଷା—ନାଁ, ନାଁ, ଯଦି ଏତେ ଟଙ୍କା ତାଙ୍କର...

ରାଜ୍—ନ ଥିବ—ଏଇଆ ତ କହୁଚ ?

ଉଷା—ହଁ ।

ରାଜ୍—(ହସି) କହିବ ତ ମୋପର ଧନ ପ୍ରଚୁର । ତୁମେ ଖାଲି ତାକୁ କହିଲେ ହେଲା, କିନ୍ତୁ କହିବାର ବାଗ ଅଛି, ଢଙ୍ଗ ଅଛି, ବେଳ ଅଛି । ଆଜି ଏ କଥାରେ ଆଜ କାଲିନାହିଁ । ଗୋପ ଆସିଲେହିଁ ତାକୁ ହାରଟି ଦେଖାଇ, ସଙ୍ଗେ ସଙ୍ଗେ ଟଙ୍କାପାଇ କହ ।

ଉଷା—ସାଙ୍ଗେ, ସାଙ୍ଗେ ?

ରାଜ୍—ବୁଝିନା ମାଲ ତ ଆଉ ମୋର ନୁହେଁ, ଟଙ୍କାର ସେଇମିତି ଜରୁରୀ ଦର୍କାର ନ ଥିଲେ କେହି ଏଭଳି ଜିନିଷ ଭଲା ହାତଛଡ଼ା କରିବାକୁ ଚାହେଁ ?

ଉଷା—ସେ ଆସିଲେ ସିନା ।

ରାଜ୍—ଯାହା ଜାଲ ଫିଙ୍ଗିଚ ସୁନ୍ଦରୀ, ସେଥିରେ ତା'ର ନ ଆସି ଆଉ ଗତି ଅଛି ନାଁ ! ସେ ଏଇ ଆସୁଥିବ ବୋଲି ଜାଣ—ତୁମେ ପ୍ରସ୍ତୁତ ହୋଇପଡ଼ । ମୁଁ ତମ ଭଲପାଇଁ କହୁଚି । ବୁଝିଚ ପାରୁଚ ।

(ଧନ୍ଦା ଦଉଡ଼ି ଆସିଲା)

ଉଷା—କଅଣରେ ଧନ୍ଦା ?

(ଧନ୍ଦା ଠାରି ଦେଖାଇଲା ଜଣେଲୋକ ଆସିବାର)

ଉଷା—କାହା କଥା କହୁଚ ଧନ୍ଦା ?

ରାଜ୍—କେମିତି ବୁଝିବ ? କିଏ ଜଣେ ଲୋକ କଥା । କଅଣ ଠାରୁଚ, ଥାଅ, ମୁଁ ଦେଖି ଆସେଁ ।

(ଧନ୍ଦାକୁ ଠାରି ଡାକିନେଲା ତା ସହିତ)

ଉଷା—(ପୁଣି ଅଇନା ପାଖେ ଦେଖିଲା ବେକର ହାରଟିକି ଓ ସଜାଡ଼ିଲା)

ରାଜ୍—(ଚଞ୍ଚଳ ଆସି) ମୁଁ ଠିକ କହୁଚି । ମରିବା କଥାହିଁ ସିନା କହି ପାରିବ ନାହିଁ, ନୋହିଲେ, ବାକି ସବୁ ମୋତେ ଆଗରୁ ଜଣା ।

ଉଷା—ଜଣେ ସର୍ବଜ୍ଞ ପୁରୁଷ ନାଁ ତୁମେ । (ହସି)

ରାଜ୍—ଦେଖ, କେମିତି ହେଲା, ଗୋପ ଆସୁଚି, ଧନ୍ଦା ବଦମାସ ସବୁ ଜାଣୁଚି !

ଉଷା—କାହାନ୍ତି ସେ ?

ରାଜ୍—ଟିକିଏ ଦୂରରେ । ତୁମେ ଯାଅ, ଦୁଆରୁ ତାକୁ ଡାକି ଆଣିବ, ଆଜ ଟିକିଏ ଆଦର ବେଶି କରି ଭୁଲାଇ ଦିଅ, ତା ପରେ...

ଉଷା—ଆସନ୍ତୁ ତ ଆଗେ !

ରାଜ୍—ଦୁଆରେ ଆସି ପହଞ୍ଚି ଗିବଣି ପ୍ରାୟ, ମୁଁ ଆର ଘରକୁ ଗଲି, ଯାଅ । (ଯାଉଁ ଯାଉଁ ଫେରି) ହଁ, ହାରଟା ରହିଲା ।

ଉଷା—ମଲା; ପିନ୍ଧିଚି ପରା ମୁଁ ।

ରାଜ୍—ହଁ, ସେଇ କଥା (ଯାଉଁ ଯାଉଁ) ବେଗେ କିନ୍ତୁ ତାକୁ ବିଦାୟ କରିବ । କାହିଁକନା ପର ମାଲ୍, ସେ ଟଙ୍କା ପାଇଁ ରହିଁ ରହିଚ । ଯାଅ ତୁମେ, ତାକୁ ନେଇଆସ ।

---

## ଦ୍ୱିତୀୟ ଦୃଶ୍ୟ

[ ପଥ—ଭିଷା ଝୁଲି ହାତରେ ଲବଙ୍ଗର ବାପ ଅନ୍ଧ ଗାଇ ଗାଇ ଚାଲିଛି ବାଟରେ ]

(ଗୀତ)

ଆରେ ମନୁଆଁ, ଭୋଗିବୁ ତୁ କରମର ଫଳ ।
ମନ କହେ ମନ ! ପରା ହେବୁ ଦେବରାଜ,
ଖଟୁଥିବେ ପଦେ ତୋର ଦେବତା ସମାଜ ॥
ଟିପିଛି ସେ ଗୋଟି ଗୋଟି ତୋ କରମ ଫଳ
ଲଗେଇବୁ କରମଙ୍କା ଫଳବଳ ତାଳ ?

ଲବଙ୍ଗ—ବାପା ।

ଅନ୍ଧ—କିଏ, ଲବଙ୍ଗ, କଅଣ ମା ?

ଲବଙ୍ଗ—ତୁମେ ଏତେ ବେଗେ ଘରୁ ବାହାରି ପଡ଼ିଲଣି, ମୁଁ ଗୋପବାବୁଙ୍କ ଘରୁ ଆସୁ ଆସୁ ।

ଅନ୍ଧ—ବସି ରହି ଆଉ କଣ କରନ୍ତି ମା, ଘରି ଦୁଆର ଗଲେତ ଗୁଜୁରାନ ଚଳିବ ।

ଲବଙ୍ଗ—ତୁମେ ଟିକିଏ ଗୋପ ବାବୁଙ୍କର ଘରଠିକି ଆସିଲ ।

ଅନ୍ଧ—କାହିଁକି ? ତୁ ଯାଇଥିଲୁ ପରା ?

ଲବଙ୍ଗ—ବାପା, ଗୋପବାବୁଙ୍କ ପୁଅଟି;—ସେଇ ଟୁନୁ, ଘୋର ଜର, ଆଖି ଫିଟାଉ ନାହିଁ ଆଉ ଆରତି ଦେଈ ତା ମଥା ଉପରେ ବସି କାନ୍ଦୁଛନ୍ତି । ଘରେ କେହି ବୋଇଲେ କେହି ନାହିଁ ।

ଅନ୍ଧ—କାହିଁକି ! ଗୋପବାବୁ ?

ଲବଙ୍ଗ—ସେ ତାଙ୍କର କଚେରୀରେ !

ଅନ୍ଧ—କଚେରୀରେ ! ଗୋଟିଏ ବୋଲି ପୁଅ । ତା'ର ପୁଣି ଏ ଜର, ବାପ କଚେରୀରେ ?

ଲବଙ୍ଗ—ଧନୀଲୋକର ଧନ ଲୋଭ ବେଶି ଯେ ବାପା, ଯାର ଧନ ନାହିଁ ତାର ସିନା ସ୍ନେହ, ମାୟା, ଦୟା ସବୁ ଅଛି ।

ଅନ୍ଧ—ଧନ ଅର୍ଜନ କରିବ ବୋଲି କଅଣ ନିଜ ପୁଅକୁ ଭୁଲିଯିବ ?

ଲବଙ୍ଗ—ଏଇଟା କଅଣ ନୂଆ କଥା ହେଲା ବାପା ? ଦୁନିଆରେ ତ ଏମିତି କେତେଠେଇଁ ଏ କଥା ହଉଚି । ଟୁନୁ ତ ଏତେ ଟିକିଏ । ପୋଷିବା ପାଳିବା ପୁଅ ବ'ଢ଼ଟା ଥାଇ ତ ଫେର୍ ଲୋକଙ୍କର ଅର୍ଜନ ଲୋଭ ଯାଉ ନାହିଁ, ଏମିତି ଲୋକ କଅଣ ଏଠି ନାହାନ୍ତି ?

ଅନ୍ଧ—ହଁ, ହଁ, ମାଆ; ମୋ'ରି ଭୁଲ୍ । ରୋଗରେ ସିନା ମୁଁ ଅନ୍ଧ ହୋଇଛି, ଧନୀ ଲୋକଙ୍କୁ ଅନ୍ଧ କରିଦିଏ ଧନ ! ମନେ ପଡ଼ିଲା ମାଆ ! ହଁ ତା ନାଆଁଟା କଅଣ କି ?

ଲବଙ୍ଗ—ଛି, ତା ନାଆଁ ଧରିଲେ ଭିକ ମିଳିବ ନାହିଁ ବାପା, ତେମେ ଆସିଲ—ମୁଁ ଆରତି ଦେଈଙ୍କି ବସେଇ ଦେଇ ଆସିଛି ।

ଅନ୍ଧ—ଯିବାକୁ କହୁଚୁ ଯେ, ହାକି ତାଙ୍କର ହେଲା ବଡ଼ଲୋକ ଘର । ଡାକ୍ତର, କବିରାଜ ଲଗେଇ ପିଲା ଦେହ ଭଲ କରେଇବେ । ଆମର ଏ ଜଡ଼ିବୁଟୀ କଥା, ବିଶ୍ୱାସ କଲେତ ?

ଲବଙ୍ଗ—ଆରତି ଦେଈ କେମିତିକା ଲୋକ ତ ଜାଣିଚ ? ସେ ମୋତେ କହିଲେ ଡାକ୍ତର ଔଷଧ କରିବେ ନାହିଁ ।

ଅନ୍ଧ—ହଉ, ଚାଲ । ଭଗବାନଙ୍କ ଇଚ୍ଛା ଥିଲେ ମୋର ଔଷଧରେ ଭଲ ହୋଇଯିବ ।

ଲବଙ୍ଗ—ସେ କଥା ତ ତାଙ୍କ ହାତେ, ମଣିଷ କଅଣ କରିବ ? ତୁମେ ଚାଲ ଆଗେ । (ଟାଣିଲା)

ଅନ୍ଧ—ଆଉ ସିଆଡ଼େ କୁଆଡ଼େ ? ଘରକୁ ଚାଲ, ଔଷଧଟା ନେଇ କରି ଯିବା ସିନା, ଖାଲି ହାତରେ ଯାଇ କଅଣ କରିବ ?

ଲବଙ୍ଗ—ଚାଲ । (ଚାଲିଗଲେ ଦୁହେଁ)

---

## ତୃତୀୟ ଦୃଶ୍ୟ

[ ଗୋପବାବୁଙ୍କ ଘର, ଟୁନୁ ନିଦରେ ଶୋଇଚି, ଗୋପ ଓ ଆରତି ଛିଡ଼ା ହୋଇ ରହିଛନ୍ତି ]

ଆରତି—ଠିଆଟା ହୋଇ ରହିଲ ଯେ, ବସ ।
(ଚୌକିଟାଏ ଦେଲା ପାଖକୁ)

ଗୋପ—ନାଁ, ମୋର ଟିକେ କାମ ଅଛି ।

ଆରତି—କାମ ? ଆଜି କେତେଦିନ ପରେ ତୁମେ ଘରକୁ ଆସିଚ କହିଲ ? ଏଇ ଘରର ଅବସ୍ଥା ଦେଖିଚ କି ? ତମର ଏମିତି ହେଲା କାହିଁକି ?

ଗୋପ—କଅଣ ? ଠିକ୍ ଅଛି ତ ମୁଁ ।

ଆରତି—ଠିକ୍ ଅଛ ? ଲୋକରେ ତୁମର ସୁନାମ ଥିଲା, ତୁମର ଘର, ଦ୍ୱାର, ପୁଅ, ପରିବାର—ଅଭାବ କଅଣ ?

ଗୋପ—ଅଭାବ ମୋ'ର ଟଙ୍କା, ମୋର ଟଙ୍କା ଚାହିଁ ।

ଆରତି—ଟଙ୍କା କି ତୁମର ଅଭାବ ଥିଲା ? ରାତି ପାହିଲେ ତ ଲୋକେ ଆସି ଦୁଆରେ ଗୁଞ୍ଜି ଦେଇ ଯାଉଥିଲେ । ସେଇ ଲୋକ ତୁମେ । ଯାହା ହେବାର ହେଇ ଯାଇଛି । ଡାକ୍ତରର ସେଇ ଔଷଧ ସର୍ବନାଶ କରିଛି ମୋ'ର । ତୁମେ ସତ୍ପଥକୁ ଫେର, ଆଉ ଏମିତି ହୁଅ ନାହିଁ ।

ଗୋପ—ଫେରିବି, କିନ୍ତୁ ଆଗେ ଟଙ୍କା ଦିଅ ।

ଆରତି—ମୋତେ ଟଙ୍କା ମାଗୁଛ ? ମୁଁ ଟଙ୍କା ପାଇବି କେଉଁଠୁ ? ମୋର ଟଙ୍କା ଯେ ତୁମେ ।

ଗୋପ—ହୁଁ, ଟଙ୍କା ଲାଗି ଭଲ ପାଉଥିଲ ତୁମେ । ବୁଝିଛି ।

ଆରତି—ଟଙ୍କା ଲାଗି ମୁଁ ଭଲ ପାଉଥିଲି ? ଭଗବାନ ଜାଣନ୍ତି ସେ କଥା । କାହିଁକି ମୋତେ ଏମିତି କଲବଲ କରୁଛ ? ଗୋଡ଼ ଧରୁଚି ତୁମର, ମତେ ଟିକିଏ ବିଷ ଦିଅ, ମୁଁ ମରିଯାଏଁ । ତୁମେ ତୁମର ଟୁନୁକୁ ନେଇ··· (ଲୁହ ପୋଛି)

ଗୋପ—(ଗୋଡ଼ ଛୁଟି) ଆଖିର ଲୁହ ! ମୁଁ ବହୁତ ଦେଖିଚି । ଦରକାର ନାହିଁ, ମୋର ଦରକାର ଟଙ୍କା ।

ଆରତି—(ଉଠି) ଟଙ୍କା ମୁଁ କୋଉଠୁ ପାଇବି ? ଟଙ୍କା କା'ଇଁ ?

ଗୋପ—ଗହଣା ।

ଆରତି—ବାକ୍ସ ଦେଖ, (ଚାବି ଦେଇ) ନିଅ, ମୋତେ ଅବିଶ୍ୱାସ କରନାହିଁ ।

ଗୋପ—ହାତରେ ତ··· (ଚୂଡ଼ିକୁ ଠାରି)

ଆରତି—(ବ୍ୟସ୍ତ ହୋଇପଡ଼ି) ହାତରେ, ଆଉ ମଥାରେ ଯାହା ଅଛି ସେତକ ଯେ···

ଗୋପ—ଚାକୁଇ ଦିଅ ।

ଆରତି—କେମିତି ଦିଏ ? ଏତେ ଦୁଃଖରେ ବି ମୁଁ ସେଇଥିରେ ଭାଗ୍ୟବତୀ । ଟୁନୁର ପଥି ପାଇଁ ଜାଣି କଉଡ଼ିଟିଏ ବି ହାତରେ ନାହିଁ ଯେ, ମୁକୁନ୍ଦକୁ ପଠେଇଛି ରାଜ୍‌ବାବୁଙ୍କ ପାଖରୁ ···

ଗୋପ—ଓ, ବୁଝିଲି, ରାଜ୍ ବାବୁଇ ତା'ହାଲେ··· ତୁମର ସଂସାର ଚଳଉଚି ? ବେଶ୍, ତେବେ ଆଉ ଆଖିରେ ଲୁହ କାହିଁକି ? (ହାତଧରି ଜୋରରେ) କାହିଁକି ? କାହିଁକି ଏ ସବୁ ଛଳନା ? କାହିଁକି ? (ହାତରୁ ପଟେ ଚୂଡ଼ି କାଢ଼ିନେଲା)

ଆରତି—ଓଃ, ଓଃ, ଜୀବନରେ ମାରିଦିଅ ପଛେ, ହାତର ଚୂଡ଼ି କାଢ଼ ନାହିଁ ମୋର, ତମ ଗୋଡ଼ ଧରୁଛି ।

ଗୋପ—(ଗୋଇଠା ମାରି ଚୂଡ଼ି ନେଇ ଚାଲିଗଲା)

ଟୁନୁ—(ହଠାତ୍ ଉଠି) କିଏ ବୋଉ ? କାହାକୁ କହୁଚୁ ? ବାପା ? ମତେ ଜର ହେଉଚି—ସେଦିନ ପରି ଆଜି କଅଣ ଚାଲିଗଲେ ?

ଆରତି—(ଟୁନୁ ପାଖକୁ ଆସି, ନିଜର ଲୁହ ସମ୍ବରଣ କରି ଦୀର୍ଘ ନିଶ୍ୱାସ ମାରି) ନାଇଁମ, କେହିନାହିଁ, ତୁ ଶୁଅ, ବାପା କାହାନ୍ତି ?

ଟୁନୁ—ତୁ ଆଉ କାହାକୁ କହୁଥିଲୁ—କିଏ ସେ ?

ମୁକୁନ୍ଦ—(ଦୁଆର ମୁହଁରୁ କହି ଆସିଲା) ମୁଁ ମୁକୁନ୍ଦ ରେ ବାପ, ଦେଖ ରାଜ୍‌ବାବୁ ଟଙ୍କା ନେଇ ଆସିଛନ୍ତି ।

ଆରତି—ମୁକୁନ୍ଦ ! ଦାଣ୍ଡରେ ଆଉ କିଏ ?

ମୁକୁନ୍ଦ—କେହି ନାହାନ୍ତି ତ ! କବାଟ ଠିଆମେଲା । ଏକା ରାଜ୍‌ବାବୁ ଦୁଆରେ ଅଛନ୍ତି । କାହିଁକି ?

ଆରତି—(ଦୀର୍ଘ ନିଃଶ୍ୱାସ ମାରି) ନାଇଁ, କିଛି ନାହିଁ ।

ଟୁନୁ—ମୁକୁନ୍ଦ ! ବାପା ଆସିଥିଲେ ।

ମୁକୁନ୍ଦ—( ହସି ) ସାନବାବୁ ! ଆସିଥିଲେ ? ତାଙ୍କୁ ଅଟକେଇ ପାରିଲ ନାହିଁ ଦେଈ, ମୁଁ ଆସିବା ଯାଏ । ଓଃ, କେତେବେଳ ହେଲା ଗଲେ ?

ଟୁନୁ—ଏଇନେ ତ ।

ମୁକୁନ୍ଦ—ମୁଁ ଦେଖେଁ । (ବାହାରିଲେ)

ଆରତି—ମୁକୁନ୍ଦ ! (ମୁକୁନ୍ଦ ଫେରିଲେ)

ମୁକୁନ୍ଦ—କଅଣ ? ଏଇଠି କୋଉଠି ତ ହୋଇଥିବେ, ଦେଖିଲେ ଆଉ ତାଙ୍କୁ···

ଆରତି—ସେ ଆସିବେ ନାହିଁ ମୁକୁନ୍ଦ !

ମୁକୁନ୍ଦ—ଆସିବେ ନାଇଁ ନା ଆସିବେ ନାଇଁ ? ଗାଲଟିପି କାଲି ମୁଁ ମଣିଷ କରିଛି, ଏମିତି କଅଣ···

(ଚାଲିଗଲା)

ଆରତି—(ଉଠି) ମୁକୁନ୍ଦ ! ମୁକୁନ୍ଦ ! ସେ ଆଉ···

ମୁକୁନ୍ଦ—ତେମେ ଚୁନହ ଦେଈ, ଆସିବେ ନାଇଁ ? ଯଦ୍ଦ ପାଏଁ । (କଥା କହି କହି ଚାଲିଗଲେ)

ଟୁନୁ—ମୁକୁନ୍ଦ ଯାଉ ବୋଉ, କାହିଁକି ମନା କରୁଚୁ ? ବାପାଙ୍କୁ ଡାକି ଆଣିବ । ମୋର ଫଳ ଖାଇବାକୁ ଭାରି ମନ ହଉଚି । ଆସିଲେ ବାପାଙ୍କୁ କହିବ । ଏଁ ? ତୁ କହିବୁ ବୋଉ, ଟୁନୁ ଫଳ ଖାଇବାକୁ କହୁଚି ।

ଆରତି—ମୁକୁନ୍ଦ ଆସୁ, ମୁଁ ଫଳ ଆଣିଦେବ ତୋତେ । (ଲୁହ ପୋଛୁଥାନ୍ତି)

ଟୁନୁ—କି, ବାପା ଆଣି ଦେବେ ନାଇଁ ? (ହଠାତ୍ କିଛି ଫଳ ନେଇ ରାଜୁବାବୁ ଘରକୁ ପଶି ଆସିଲେ, ଆରତି ହାତଟି ଘୋଡ଼ାଇ ଛିଡ଼ାହେଲେ)

ରାଜୁ—କିଛି ମନେ କରିବେ ନାହିଁ ଆରତି ଦେବି, ମୁକୁନ୍ଦ ମତେ ଠିଆ କରେଇ ଦେଇ ଭିତରକୁ ଆସି ହଠାତ୍ ବାହାରି ଚାଲିଗଲା । ମୁଁ ପଚାରିବାରୁ ଖାଲି କହିଦେଇ ଗଲା—ରହ ଆସୁଚି ବୋଲି, ମୋ ମନରେ ସନ୍ଦେହ ହେଲା, ଟୁନୁର ଜର ବଢ଼ିଲାକି ଆଉ ? ତା ଦେହ ଆଜି କେମିତି ?

ଆରତି—ତାତଟା ଟିକିଏ କମିଲା ପରି ଲାଗୁଚି ସେଇ ଔଷଧରେ ।

ରାଜୁ—ମୋର ସେ ହୁକୁମ ଫୁକୁମରେ ବିଶ୍ୱାସ ନାହିଁ କିନ୍ତୁ···

ଟୁନୁ—ସେ କଅଣ ରାଜୁବାବୁ ?

ରାଜୁ—ତୋ ପାଇଁ ଫଳ ଆଣିଛି,

(ଠୋଲାଟା ବଢ଼ାଇଲେ)

ଟୁନୁ—ବୋଉ ? (ସତୃଷ୍ଣ ନୟନରେ ଚାହିଁଲା)

ଆରତି—ମୁକୁନ୍ଦ ଆସୁ ଧୋଇକରି ଦେବ । (ରାଜୁ ପ୍ରତି) ସେଇଠି ରଖି ଦିଅନ୍ତୁ ।

ରାଜୁ—(ବିବ୍ରତାରେ, ଟୁନୁ ମୁଣ୍ଡ ଉପରେ ରଖିଲା) ଏ ଟଙ୍କାଟା ରଖନ୍ତୁ । ମୁକୁନ୍ଦ ହାତରେ କହି ପଠେଇ-ଥିଲେ ଯେ···

ଆରତି—କଷ୍ଟକରି ନ ଆସି ତାକୁ ଦେଇଥିଲେ ତ ହୋଇଥାନ୍ତା ।

ରାଜୁ—ଏତେଗୁଡ଼ିକ ଟଙ୍କା, ଯେତେହେଲେ ମୁକୁନ୍ଦ ଚାକର ନା—ଆଉ କଅଣ ?

ଆରତି—ଆହା, ହା । ମୁକୁନ୍ଦ ପାଖେ ସେ ଅବିଶ୍ୱାସ କରିବେ ନାହିଁ ।

ରାଜୁ—ନାହିଁ—ଫେର୍ ଅଛି । ବେଳପଡ଼ିଲେ ପାଳଦଉଡ଼ି ବି ସାପ ହୁଏ । ନଅନ୍ତୁ—ସୁନା ଜିନିଷ ରଖିକରି ମଧ କେହି ଟଙ୍କା ଦଉ ନାହାନ୍ତି । ତା ବି ପୁରା ଟଙ୍କା ମିଳିଲା ନାହିଁ । ଏ ଷାଠିଏ ଟଙ୍କା । ଆଉ ଚାଳିଶ ଟଙ୍କା କହିଛି କାଲିକି ଦେବ । ବେଳ ଏମିତି ପଡ଼ିଛି ଯେ ମୋ ପାଖେ ବି ଟଙ୍କା ନାହିଁ, ନୋହିଲେ ଆପଣଙ୍କ ଚେନଟା କାହିଁକି···

ଟୁନୁ—କୋଉ ଚେନଟା ବୋଉ ? ମୋର ଚେନଟା, ଯୋଉଟା ବାପା ସେ ଦିନ···

ଆରତି—(ବାଧା ଦେଇ) ନାଇଁ ନାଇଁ ତୁ ଜାଣିନୁ ।

ରାଜୁ—ବାପା ନେଲେ, କି ଚେନ ? କି ଚେନ କଥା ଟୁନୁ କହୁଛି ? ତୋପ କଅଣ···

ଆରତି—ନାଇଁ ଏଇ ଚେନ କଥା ! ଜର ବାଉଳାରେ କଅଣ ନାଇଁ କଅଣ ଯେ ବକୁଚି ।

ରାଜୁ—ନଅନ୍ତୁ ଟଙ୍କାଟା (ବଢ଼ାଇବା, ଆରତି ହାତ ପାତଇବା, ରାଜୁ ହାତ ଦେଖି) ଆପଣଙ୍କ ହାତ ଏମିତି କଅଣ ?

ଆରତି—ଚୂଡ଼ିଟା ଖୋଲି ରଖି ଦେଇଚି ବାକ୍ସରେ ।

ରାଜୁ—ଏ ହାତରେ ତ ଅଛି ।

ଆରତି—ନାହିଁ, ଝୁଲା ଖସି ଯାଇଥିଲା ଯେ···

ରାଜୁ—ପାଠେଇ ଦେଲେ ନାହିଁ, ମୁଁ ମରାମତି କରେଇ ଦେଇଥାନ୍ତି, ହାତଟାରୁ ଚୂଡ଼ିଟା··

ଆରତି—ହଁ, ରଖି ନେଇଚି ତ ଟ୍ୟୁସନ୍ ଲାଗି ଗୋଟାଏ ମାନସିକ କରି ।

ରାଜୁ—ଓ, ଟଙ୍କାଟା ଗଣି ନଅନ୍ତୁ ।

(ଦୃଷ୍ଟି ଆରତିଠାରେ)

ଆରତି—ହଁ, ଗଣିବ କଅଣ ? (ଟଙ୍କା ନେଇ) ଆପଣ ତ ଆଣିଛନ୍ତି, ଠିକ୍ ଥିବ । (ଟ୍ୟୁସନ୍ ମୁଣ୍ଡ ଉପରେ ରଖିଲେ)

ରାଜୁ—ଦେଖିକରି ନେଲେ ନାହିଁ, କଥାରେ ଅଛି ପରା ପାଣି ପିଇବ ଛାଣି—ପଇସା ନବ ଗଣି ।

ଆରତି—ହଁ, ଠିକ୍ ଥିବ ।

ରାଜୁ—(ଟିକିଏ ଠିଆ ହୋଇ) ତା ହେଲେ···

ଆରତି—ନମସ୍କାର, ଆସନ୍ତୁ, ବହୁତ କଷ୍ଟଦେଲି ।

ରାଜୁ—କଷ୍ଟ ? ସେମିତି କହିବେ ନାଇଁ କେବେ ହେଲେ ! ଆପଣ ଜାଣନ୍ତି ନାହିଁ ବୋଧହୁଏ ଆରତି ଦେବୀ ! ମୋର···

ଆରତି—ସବୁ ଜାଣେ, ତଥାପି···

ରାଜୁ—ତଥାପି ବୋଲି ଗୋଟାଏ କଥା କହୁଛି ସେଠି ନାହିଁ ଆରତି ଦେବୀ ! ମୁଁ ବୁଝିଛି । ଏ ସମ୍ବନ୍ଧ ଜନ୍ମ ଜନ୍ମାନ୍ତରର । ନୋହିଲେ··

ଆରତି—ମୁକୁନ୍ଦ ଆସିଲା ବୋଧହୁଏ ।

ରାଜୁ—ଆସୁ, ମୁକୁନ୍ଦ ଚାକରଟାଏ । ସେ ଭୟ ମୁଁ କରେ ନାହିଁ, କେବଳ ତୁମେ ଯଦି···

ଆରତି—(ଚମକି) ଆପଣ କଅଣ କହୁଛନ୍ତି ରାଜୁବାବୁ !

ରାଜୁ—ମାନେ···ମୋତେ ଏଇ ଆପଣ ବୋଲି କହିବା···

ଆରତି—କ୍ଷତି କଅଣ ସେଥିରେ ?

ରାଜୁ—କ୍ଷତି ? ଜନ୍ମ ଜନ୍ମଧରି ଯେ ସମ୍ବନ୍ଧ, ତା'ର ଗୋଟାଏ ବଡ଼ ଅନ୍ତରାୟ···ଏଇ ଆପଣ ଶବ୍ଦଟା ।

ଆରତି—କିନ୍ତୁ ମୁଁ ବୋଧହୁଏ ପାରିବି ନାହିଁ ।

ରାଜୁ—ପାରିବ ନାହିଁ ତୁମେ ?···ଆରତି !

(ହାତ ଧରିଲା)

ଆରତି—(ହଠାତ୍ ହାତଟିକି ପଛକୁ ଘୁଞ୍ଚି) ରାଜୁବାବୁ !

ରାଜୁ—ବୁଝିଲି, ଗୋପି ଆମର ଅନ୍ତରାୟ, ତା'ରି କଥା ନେଇ କହୁଚ ? ସେ କିନ୍ତୁ ଅନ୍ୟର ପୁଷ୍ପାଗ୍ର, ବିଶ୍ୱାସ ନ ହେଲେ ଦେଖ । (ଫଟୋ କାଢ଼ିଲେ) ଏ ଖଣ୍ଡି ଜଣକୁ ସେ ଉପହାର ଦେଇଥିଲା । ମୁଁ କୌଣସି ମତେ ହସ୍ତଗତ କରିଛି, ଏଇ-ତା'ର ନାଆଁ ଉଷା, ପଢ଼ ।

ଆରତି—ମୁଁ ପଢ଼ିବାକୁ ଚାହେଁ ନାହିଁ ରାଜୁବାବୁ ! ସେ ଯାହା ହୁଅନ୍ତୁ ଆପଣଙ୍କର ଏସବୁ ମୋ ଆଗରେ କହିବାର କାରଣ କଅଣ ?

ରାଜୁ—କାରଣ ? ଆରତି ତୁମେ ଜାଣନାଇଁ, ମୁଁ ତୁମର ଏ କଷ୍ଟ ଦେଖି ଆଉ ସହି ପାରୁ ନାହିଁ—ସହି ପାରିବ ନାହିଁ । କାରଣ ? ମୁଁ ଯେ ତୁମର···

ଆରତି—ରାଜୁବାବୁ କଷ୍ଟ ସହିବାକୁ ହେଲେ ମୁଁ ସହୁଚି, ସହିବି, ସହି ପାରିବି । ଯଥେଷ୍ଟ ହେଇଚି, ଆପଣ ଘରକୁ ଯାଆନ୍ତୁ ।

ରାଜୁ—ଆରତି ! ତୁମେ ବୋଧହୁଏ ମତେ···

ଆରତି—ଖୁବ୍ ଚିହ୍ନିଛି, ଆପଣ ଯାଆନ୍ତୁ ।

ରାଜୁ—କିନ୍ତୁ ଆରତି, ଆଉଥରେ ଭାବି ଦେଖ, ତୁମେ ··

ଆରକ୍ଷୀ—ରାଜୁ ବାବୁ ! ଏତେ ଅଭଦ୍ର ଆପଣ ! (ଟୁନୁ ଟୋକରୁ ଫଳଟିଏ ଖାଇବାକୁ—ନେଉଥିଲା ତାଠୁ ଛଡ଼ାଇ ଫଳସବୁ ରାଜୁ ଉପରକୁ ଫିଙ୍ଗିଲା)

ରାଜୁ—ଆରକ୍ଷୀ ! (ରାଗରେ ଗର୍ଜିଲା)

ଆରକ୍ଷୀ—(ଗର୍ଜି) ଚାଲିଯାନ୍ତୁ ରାଜୁ ବାବୁ ! ଆପଣ ଏତେଦୂର···

ରାଜୁ—ହଁ, ଆଚ୍ଛା, (ରାଗରେ ଯାଉ ଯାଉ ମୁକୁନ୍ଦ ଦେହରେ ଧକ୍କା ବାଜିଲା)

ମୁକୁନ୍ଦ—ମଣିଷ ବି ଚିହ୍ନି ପାରୁନା ରାଜୁ ବାବୁ !

ଆରକ୍ଷୀ—(ସେଆଡ଼ପଟେ ଠିଆ ହୋଇଥିଲା) ମୁକୁନ୍ଦ !

ମୁକୁନ୍ଦ—ନାଁ, ପାଇଲି ନାହିଁ ଦେଖ ।

ଆରକ୍ଷୀ—ନାଁ, ଦରକାର ନାହିଁ । ତୁ ଯା'ତ ଲବଙ୍ଗକୁ ଡାକି ଆଣିବୁ ।

ମୁକୁନ୍ଦ—(ଘରକୁ ଗର୍ଜି) ଏଁ; ସେ କଅଣ ? କିଏ ଏମିତି କଲା ?

ଆରକ୍ଷୀ—ତୁ ଯା—ଯା ନାଁ, ଡାକିଆଣ ଆଗେ ।

ମୁକୁନ୍ଦ—ତୁମେ ଏମିତି କଣ ହେଉଚ ଦେଖି ? ହାତରେ ପଟ୍ଟ ଚଢ଼ି ନାହିଁ ।

ଆରକ୍ଷୀ—ତୁ ଆଗେ ଯା ନାଁ, ପଛେ ଶୁଣିବୁ । ଲବଙ୍ଗକୁ ଡାକି ଆଣିବୁ ।

ମୁକୁନ୍ଦ—ଲବଙ୍ଗ ?

ଆରକ୍ଷୀ—ହଁ, ହଁ, ଲବଙ୍ଗ ?

ମୁକୁନ୍ଦ—ଏଇନେ ?

ଆରକ୍ଷୀ—ହଁ ଏଇନେ ।

ମୁକୁନ୍ଦ—ଲବଙ୍ଗକୁ କହିଦେଇ ଆସିବି ଆସିବାକୁ, ନାଁ ? (ମୁକୁନ୍ଦ ଚାଲି ଯାଉଥିଲା)

ଆରକ୍ଷୀ—ନାହିଁ ନାହିଁ, ସାଙ୍ଗରେ ନେଇ ଆସିବୁ ତାକୁ । ଚାଲ୍, ମୁଁ ବାହାର କବାଟ ଦେଇ ଆସୁଚି, ଆସିଲେ ଡାକିବୁ ।

ଟୁନୁ—ବୋଉ ?

ଆରକ୍ଷୀ—ଆସୁଚି, ଆସୁଚି, (ଚାଲିଗଲେ ଦୁହେଁ) ।

---

## ଚତୁର୍ଥ ଦୃଶ୍ୟ

[ ରାଜପଥ—ଅନ୍ଧ ଗୀତ ଗାଇ ଗାଇ ଚାଲିଛି ।]

( ଗୀତ )

ଖାଲି ଖାଲି ସପନ ଛାୟା
ଏ ତୋ ସୁନ୍ଦର କାୟା
ଭାଇ ! ଏ ତୋ ସୁନ୍ଦର କାୟା । ୧ ।

ଧନ ଦଉଲତ ସଞ୍ଚୁ ଯା ତୁ
ଏ ତେରା ସାରା ଦୁନିଆଁ
ଆଖି ମୁଦି ଥରେ ଭାବୁ ନାହୁଁ ବାବୁ !
ସବୁ ପର ହ'ବ ଦିନିଆଁ ?
ଭାଇ—ଏ ତୋ ସୁନ୍ଦର କାୟା । ୨ ।

କେ ତୋର ସଙ୍ଗୀ କେ ତୋର ସାଥି ?
ସଙ୍ଗେ ନେବୁ କି ସେଜ ସୁପାତି ରେ !
ଆସିଛୁ ଏକା ତୁ ଯିବୁ ଏକାକୀ
ଯିବେ ନାହିଁ ତୋ ମିତ ସଙ୍ଗାତ
ଦିନ ଗଲା ଆସି ସଞ୍ଜ ହେଲା ତ
ଭରମ ନା ମିଛ ମାୟା
ଭାଇ—ଏତ ସୁନ୍ଦର କାୟା । ୩ ।

ମୁକୁନ୍ଦ—(ପ୍ରବେଶ କରି ଅନ୍ଧକୁ ଧରିଲା)

ଅନ୍ଧ—(ହଠାତ୍ ଗୀତ ବନ୍ଦକରି) କିଏ ?

ମୁକୁନ୍ଦ—ମୁଁ, ମୁକୁନ୍ଦ ।

ଅନ୍ଧ—ମୁକୁନ୍ଦ ! ହଁ, ଟୁନୁ ବାବୁଙ୍କ ଦିହ କେମିତି ? ଟିକିଏ ଉଣା ଅଛନ୍ତି ?

ମୁକୁନ୍ଦ—ଏକାବେଳେକେ ଜର ଛାଡ଼ି ନାହିଁ, ବାକି ତାତି ଟିକିଏ କମିଲା ପରି ଲାଗୁଚି ।

ଅନ୍ଧ—ହଁ, ବଢ଼ିଗଲା, ଫେର୍ ଧୀରେ ଧୀରେ ଛାଡ଼ିବ ତ ? ବାକି ନିଶ୍ଚେ ଛାଡ଼ିଯିବ । ଆମ ଗୁରୁଙ୍କର ସେ ଗୋଟାଏ ହୁକୁମ ଔଷଧ ।

ମୁକୁନ୍ଦ—ଭଗବାନଙ୍କ ଇଚ୍ଛାରେ କେମିତି ବେଗେ ଜମିଯାଉ, ବଡ଼ କଷ୍ଟ ପାଉଛନ୍ତି ।

ଅନ୍ଧ—ଆଉ ଦିନ ଗୋଟେ ଯୋଡ଼େ ଲାଗିବ । ତୁମେ ସ୍ୱାଡ଼େ କୁଆଡ଼େ ଯାଇଥିଲ ?

ମୁକୁନ୍ଦ—ତମର ଘରଯାଏ, ଦେଖ ପଠେଇଥିଲେ ଲବଙ୍ଗଙ୍କୁ ଡାକିବାକୁ ଯେ···

ଅନ୍ଧ—ଲବଙ୍ଗ ତ ଘରେ ନ ଥିବ, ଚୌଧୁରୀଙ୍କ ବଗିଚାକୁ ଯାଇଥିବ—ଠାକୁରଙ୍କ ଫୁଲପାଇଁ ।

ମୁକୁନ୍ଦ—ପାଇଲି ନାହିଁ, ଫେରି ଆସିଲି ।

ଅନ୍ଧ—ହଁ, ଆଉ ପାଆନ୍ତ କେମିତି ? ମୁଁ ଭିକ୍ଷାରୁ ଫେରେଁ, ତାକୁ ପଠେଇ ଦେବି ।

ମୁକୁନ୍ଦ—ନାଇଁ, ଦେଖ ସାଙ୍ଗେ ସାଙ୍ଗେ ନବାକୁ କହିଛନ୍ତି···

ଅନ୍ଧ—ସାଙ୍ଗେ ସାଙ୍ଗେ ? ତେବେ ତ ନିଶ୍ଚୟ ବଡ଼ କଥା କଅଣ ହୋଇଥିବ । ଚାଲ, ମୁଁ ଗଲେ ହବନାଇଁ ?

ମୁକୁନ୍ଦ—ହଁ, ନଇଲେ ତମେ ଚାଲ । ଆସ, ହାତ ଧର ।

ଅନ୍ଧ—ବାଟ ମତେ ଜଣାଅଛି, ହାତ ଧରିବା ଦରକାର ନାହିଁ, ତମେ ଆଗରେ ଚାଲ ।

( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

[ଉଷାର କକ୍ଷ—ଉଷା ଝରକାରେ ବାହାରକୁ ଚାହିଁ ଗୀତ ଗାଉଛି, ପଛରୁ ରାଜୁ ଆସି ତାର ପିଠିରେ ହାତ ମାରିଲା । ଉଷା ଚମକି ଉଠିଲା ]

ଉଷା—କିଏ ?

ରାଜୁ—ତମର କଅଣ ଅଛି ? କୌଣସି କଥାକୁ ତ ଖରୁଚମ ନାଇଁ, ଗୋଟେ ବଳେଇ ଯେତେ-ବେଳେ ମୋ ମୁଣ୍ଡ ଉପରେ ଖଡ଼ା ହୋଇଛି···

ଉଷା—କଅଣ ?

ରାଜୁ—ତୁମର ବୋଝ, ଆଉ କଅଣ ?

ଉଷା—(ଅଭିମାନରେ) ହଁ, ମୁଁ ତମକୁ ତ ଭାରି ବୋଝ ହୋଇଛି, ମୋ ଲାଗି ତମ ତଣ୍ଡିରେ ଗ୍ରାସ ଗଳୁ ନ ଥିବ !

ରାଜୁ—ତମେ କାହିଁକି ସେ କଥା ବୁଝିବ ? ଗୋପ ଚେନ୍ ଟଙ୍କା ଦେଲା ? ଚେନ୍ ପିନ୍ଧିବାକୁ ତ ଭାରି ସକ୍, ମୁଁ ତାକୁ ଟଙ୍କା ଦିଏଁ କୋଉଠୁ ? ମୋର ଯେ ଡେରେ ସେ ପ୍ରାଣ ଖାଉଛି ।

ଉଷା—ଷାଠିଏ ଟଙ୍କା ତ ସେ ନେଇଥିଲେ ।

ରାଜୁ—ବହୁତ ହୋଇଗଲା ! ଗଡ଼ା ମଜୁରି ବାଦେ, ପୁରୁଣା ଜିନିଷ ବୋଲି, ଏକା ସୁନାଟିକ ଯେ ଦେଢ଼ଶ ଟଙ୍କା ଉପରେ-ଏଇକ୍ଷଣି ସେ ମୋ ଦୁଆରକୁ ଲୋକ ପଠାଇଥିଲା—କେତେଦିନ ଆଉ ତାକୁ ଆଜିକାଲି କରିବ ?

ଉଷା—ଆଜି ବାକି ଟଙ୍କାଟା ଦେବେ ବୋଲି ତ କହିଛନ୍ତି ।

ରାଜୁ—ତା ତ ତୁମେ ଦୁଇଦିନ ହେଲା କହୁଚ । କିନ୍ତୁ ସେ ଆଜିଟି ଆଉ ହଉନାଇଁ, କି ହବାର ବି ନୁହେଁ । ମୁଁ ଜାଣେ ଗୋପ ତମକୁ ଧପାଦବ ।

ଉଷା—ସେ ମୋତେ ଧପାଦେବେ !

ରାଜୁ—ଧପା ଦେଉ ନ ଦେଉ, ତୁମେ ବୁଝ ସେ ବୁଝ । ମୁଁ ଆଜି ଟଙ୍କାଟା ପାଇଲେ ଗଲା, ନାଇଁତ ମୋତେ ଚେନଟା ଫେରନ୍ତ କରିଦେବ—(ଚାଲି ଯାଉ ଯାଉ) ମୁଁ ରକ୍ଷା ପାଏଁ ।

ଉଷା—ଶୁଣ, ଏମିତି ରାଗିକରି ଚାଲି ଯାଉଚ ଯେ !

ରାଜୁ—(ଘର ବାରଣ୍ଡାକୁ ଆସି ଚୌକି ପାଖେ ଠିଆ ହୋଇ) ଯିବନାଇଁ, ଆଉ କଅଣ ତମ ଦୁଆରେ ଧାରଣା ଦେଇଥିବ ? କହିଲେ ତ ଶୁଣିବ ନାହିଁ—

ଉଷା—କଅଣ ନ ଶୁଣିଲି ମୁଁ ?

ରାଜୁ—କହୁଚ, ସେଇଦିନ ସାଙ୍ଗେ ସାଙ୍ଗେ ତାକୁ ପଠେଇ ଟଙ୍କାଟା ଆଦାୟ କରିନିଅ । ଦିବାକୁ କେଇଜଣ ସୁଖ ପାଆନ୍ତି ? ଗୋପଠୁଁ ଆଉ ଟଙ୍କାଟା ପାଇବ—ଏ ଆଶା ମୁଁ କରିପାରୁ ନାହିଁ । ତମେ ଯାହା ମନେକର, ତୁମେ ଯେମିତି ସମସ୍ତଙ୍କୁ ଗୋଟାପଣେ ନିଜର ବୋଲି ବିଶ୍ୱାସ କରିପକାଅ—ଠିକ୍ ସେ ଶିଡ଼ାଟି କାଟିବ ।

ଉଷା—ମୋତେ ? ଗୋପବାବୁ ?

ରାଜୁ—ହଁ, ତମକୁ—ତମର ଗୋପବାବୁ, ଆଉ ଶିଡ଼ା କାଟିବାର ବେଶି ଡେରି ନୁହେଁ, ଆଜି ମୁଁ ଯାହା ଦେଖି ଶୁଣି ଆସିଛି,—ଯଦି ମୋ ଅନୁମାନ ସତ ହୋଇଥାଏ···

ଉଷା—କଅଣ ?

ରାଜୁ—ବଳେ ଗୋପ ଆସିଲେ ତମେ ଜାଣିବ । ଯଦି ତୁମେ ଟେନ୍‌ର ଟଙ୍କାଟା ପାଇଗଲ, ଜାଣ ତୁମ ଭାଗ୍ୟ ।

ଉଷା—ଟଙ୍କାଟା କଣ ସେ ଦେବେ ନାହିଁ ? କହିଛନ୍ତି ଯେତେବେଳେ···

ରାଜୁ—ଛଣି ଠିକ୍ କରି ରଖ ।

ଉଷା—ତମେ ଇମିତି ରାଗୁଚ କାହିଁକି ? କହୁନ କଥାଟା କଅଣ ?

ରାଜୁ—ବିଶ୍ୱାସ କଲେ ତ, ତୁମେ ଦେଖୁଚ ଗୋଟାପଣେ ଯେ ଗୋପର ହୋଇ ଯାଇଚ, ହଠାତ୍ ଏମିତି ଗୋଟେ ଅଚିହ୍ନା ଅଜଣା ଲୋକକୁ···

ଉଷା—ଭୁଲ କରିଥିଲେ ତୁମେଇ ତାକୁ ସଜାଡ଼ିବ, ମୁଁ ତ ତମ କଥାରୁ ବାହାରି ଯାଇନାହିଁ, କି ଯାଉନାହିଁ ।

ରାଜୁ—ସେ କାଳ ଆଉ ନାହିଁ ।

ଉଷା—ଏ କଥା କାହିଁକି କହୁଚ ? କଅଣ ଦେଖିଚ କହୁନା ?

ରାଜୁ—କହିଲି ତ, ଗୋପ ଆସିଲେ ବଳେ ଜାଣିବ । ବେଶି ଡେରି ନାହିଁ ।

ଉଷା—କଅଣ କଥାଟା କହ, ଏତେ ଲୁଚଉଚ କାହିଁକି ମତେ ?

ରାଜୁ—ସିଂହଦ୍ୱାର ପାଖେ ସେ କେମିକାଲ ଦୋକାନଟା ଜାଣ ତ ? ଗୋପକୁ ମୁଁ ସେଇଠି ଦେଖିଲି, ପଟେ ସୁନ୍ଦର କେମିକାଲ ଚୂଡ଼ି ତା ହାତରେ, ଦାମ୍ ପାଞ୍ଚ ସାତ ଟଙ୍କା ହେବ—ବୋଧହୁଏ ଯୋଡ଼ା···

ଉଷା—ତା'ପରେ ?

ରାଜୁ—ଚୂଡ଼ିଟା ତା ହାତରେ ଦେଖି, ମୁଁ ପଛରେ ଠିଆ ହେଲି ଚୁପ୍‌କରି, କଥାଟା କଅଣ ହଉଚି ଦେଖିବାକୁ । ଭଗବାନଙ୍କ ବିଚାର ତ ! ଧନଟା ଧନ, ରକ୍ତଟା ଯେ ରକ୍ତ । ଓଃ, ଠିକ୍ ଜାଗାରେ କେମିତି ଧକ୍କା ପକେଇ ଦଉଛନ୍ତି ସେ !

ଉଷା—କଅଣ ହେଲା ?

ରାଜୁ—ଦୋକାନୀକି ଅନେକ କଥା ପଚାରିଲା ସେ, କଲା ପଡ଼ିବ କି ନାହିଁ—କଅଣ ହବ···

ଉଷା—କାହିଁକି ?

ରାଜୁ—ଟିକିଏ ଗଲେ ବଳେ ଜାଣିବ ଯେ--

ଉଷା--କଅଣ ତାକୁ···

ରାଜୁ—ପଟେ ଆସୁଛି ଯେ—ତମ ପସନ୍ଦ ପାଇଁ ବୋଧହୁଏ । ତୁମେ ତାକୁ ଦେଖି ଲୋଭ କଲେଇ ହିଁ ଶୀଘ୍ର ପଟ ଆସି ପହଞ୍ଚିବ । ଆଉ ତୁମେ ତ ପସନ୍ଦ କରି ସାରିଥିବ, ମାସକପରେ କଳା ପଡ଼ିଲେ, ସେ ତୁମର ଦୋଷ—ତାକୁ କହିବାକୁ ନ ଥିବ ।

ଉଷା—ରାଜୁବାବୁ ! ଲୋକ ଫେରି···

ରାଜୁ—ଏମିତି ଥାନ୍ତି, ଏମିତି ଅଛନ୍ତି,—ଯଦି ମୋର ଅନୁମାନ ଠିକ୍ ହୁଏ ।

ଉଷା—ମାନେ ?

ରାଜୁ—ମାନେ,···ସେ ଯଦି ତୁମ ପାଖକୁ ପ୍ରକୃତରେ ଆସୁଥାଏ, ତାହାହେଲେ ବଳେ ଶିଖିବ—ଗୋପଟି ତମର କେମିତି ଲୋକ ।

ଊଷା—କଅଣ କହିବ ତେବେ ?

ରାଜୁ—ଦେଖ, ତୁମର ଯା ଇଚ୍ଛା—ମୁଁ ଯାଉଚି, ଠିକ୍ ଟା କିନ୍ତୁ ମୋତେ ଆଜି ଦେଇଦେବ । ଲୋକଟା ମୋର ପ୍ରାଣ ଖାଉଚି । କେତେ ଚକିବ ? ଜାଣ ତ ମୋତେ ସେସବୁ ଢଙ୍ଗ ଭଲ ଲାଗେ ନାହିଁ । ମୁଁ ଗଲି, ତୁମେ ଯାହା କରିବାର କର ।

ଊଷା—ମତେ କହୁଚ, ମୁଁ କଅଣ କରିବ ?

ରାଜୁ—ଦେଖ । ( ଚାଲି ଯାଉଥିଲେ )

ଊଷା—( ଡାକିଣିଧରି ) ରାଜୁବାବୁ ! ତମେ ଚାଲିଗଲେ ··

ରାଜୁ—ଆଉ କଅଣ କରିବ କହ ?

ଊଷା—ମୁଁ କହିବ ? ମୋର କହିବାର ହେଇଥିଲେ ··

ରାଜୁ—( ବସିଯାଇ ) ମୁଁ ତ କିଛି ଭାବି ପାରୁ ନାହିଁ ଏତେବେଳେ । ବଡ଼ ଚାଲ ଖେଳିଲା ଗୋପ, ତେମେ ବ ନ ବୁଝି ବହୁତ ଦୂର ଭାସିଯାଇଛ ଯେ, ଉପାୟ କଅଣ ଏତେବେଳେ··· ( ଭାବିଲା )

ଊଷା—( ମୁହଁ ଶୁଖେଇ ) ଦେଖ, ମୁଁ ଆଉ କଅଣ କହିବ ତୁମକୁ ?

ରାଜୁ—ମୁଁ ଜାଣେ ତମେ କେଇଆ କହିବ । ଆଜି ଭାସି ଗଲାବେଳେ ଏମିତି ଭାସି ଯାଇଥିବ ଯେ, ଫେରି ଥଳ କୂଳ ପାଇବା ମୁସ୍କିଲ, ତା ନୋହିଲେ ଆଜି ଏତେ ଭାବିବାକୁ ଦେଉନ୍ତା କାହିଁକି ?

ଊଷା—ଦେଖେଁ, ଧନ୍ଦା କାହିଁ ? ବାହାର କବାଟଟା ମେଲାଅଛି । କଟେ ଗୋପବାବୁ ବୁଲି ଅସନ୍ତି ।

ରାଜୁ—ହଁ, ଦେଇଆସ, ଡାକିଲେ ଫିଟାଇବ ।

ଊଷା—( ଚାଲିଗଲା )

ରାଜୁ—( ଊଷା ଯିବା ବାଟକୁ ଚାହିଁ ) ହୁଁ ( କୁଟହସ ହସି ) ଆରଥର ହାତ ଲାଗିଲା, ଏଣେ ଗୋପ ହାତରେ ପଟେ ସୁନା'ଚାନ୍ଦ, ସବୁ Chance । ଆଚ୍ଛା, ଆରଥର ଦମ୍ଭ ! ନାଁ ?

( ନେପଥ୍ୟେ ଊଷାର ପଦଧ୍ୱନି ଶୁଣି ପଛକୁ ଚାହିଁ ଭାବିଲା ପରି ବସିଗଲା )

ଊଷା—କିଛି ଠିକ୍ କଲ ? ( ଆସୁ ଆସୁ କହିଲା )

ରାଜୁ—( ଗମ୍ଭୀର ଭାବରେ ଦୀର୍ଘ ନିଶ୍ୱାସ ମାରି ) ହଁ, ( ଊଷା ମୁହଁ ଶୁଖାଇ ନୀରବରେ ଠିଆହେଲା )

ରାଜୁ—ତୁମେ କେବେ ଥିଏଟର ଦେଖିଚ ଊଷା ?

ଊଷା—ପିଲାଦିନେ ଅନେକ ଦେଖିଚ, ସାବିତ୍ରୀ ସତ୍ୟବାନ, ନଳ ଦମୟନ୍ତୀ···

ରାଜୁ—ସେମାନେ କଅଣ ସତରେ ସାବିତ୍ରୀ-ସତ୍ୟବାନ, ନାଁ ନଳ-ଦମୟନ୍ତୀ ।

ଊଷା—ନାଇଁ, ଲୋକେସବୁ ସେମିତି ବେଶ ହୋଇଥାନ୍ତି ।

ରାଜୁ—ହଁ ଅଭିନୟ, ତମକୁ ସେଇ ଅଭିନୟ କରିବାକୁ ହେବ ।

ଊଷା—କାହିଁକି ? ନାଁ, ନାଁ ମୁଁ ପାରିବ ନାହିଁ । ଖାଲି ଲାଜ ମାଡ଼ିବ ।

ରାଜୁ—ସେକଥା କହିଲେ ଚଳିବ ନାଇଁ ଊଷା ! ତମକୁ ଆଜ ଅଭିନୟ କରିବାକୁ ହେବ,—ଯଦି ମୋର ଭଲ କଥା ଶୁଣ ।

ଊଷା—ମୋତେ ଫେର୍···

ରାଜୁ—ହଁ, ତୁମକୁ ଅଭିନୟ କରିବାକୁ ହେବ । ତୁମେ ହେବ ନାୟିକା, ଗୋପ ହେବ ନାୟକ । ମୁଁ ଜାଣେ—ଆଉ ଭଲକରି ଜାଣେ ଯେ ଗୋପ ତୁମର ହୃଦୟ ଏକାବେଳେ ଅଧିକାର କରି ପକାଇଛି, କିନ୍ତୁ ସେଟା ଗୋପର ଛଳ ଅଭିନୟ । ନାୟିକା ଭାବରେ ତୁମକୁ ଆଜ ଅଭିନୟ କରିବାକୁ ହେବ, ଅଭିମାନରେ ।

ଉଷା—ମାନେ ?

ରାଜୁ—ମାନେ, ଯଦି ଗୋପ ସତରେ ସେ କେମିକାଲ ଗନ୍ଧଶାଟି ନେଇ ଆସେ, ତାହାହେଲେ ନିଶ୍ଚୟ ଜଣାଯିବ ଯେ ଚେକ୍ ଟଙ୍କା ତ ସେ ତମକୁ ଆଉ ଦେବନାହିଁ, ଓଲଟି ତମକୁ ଧପାଦେବା ତା'ର ମତଲବ୍ । ଏଥିରେ ଆଉ ସନ୍ଦେହ କଅଣ ରହିବ ?

ଉଷା—ନାଁ ।

ରାଜୁ—ବେଶ୍, ମୁହେଁ ମୁହେଁ ତାର ଗୁଣ୍ଡଟା ଫିଙ୍ଗିଦେଇ ଏକାବେଳେ ତୁମେ ଚାଲିଯିବ ଘର ଭିତରକୁ ଦରଜା ବନ୍ଦକରି ।

ଉଷା—ଏଁ ? ଦରଜା···

ରାଜୁ—ହିଁ ବନ୍ଦକରି, ଟାଣ ହୁଅ ତୁମେ ଉଷା ! ଲୋକ ଚିହ୍ନି ବ୍ୟବହାର କରିବାକୁ ଶିଖ । ( ବାହାରେ ଦୁଆର କଡ଼ା ବାଡ଼ଆ ଶୁଭିଲା କଏ ଡାକୁଚି :—ଧନ୍ଦା ! ଧନ୍ଦା )

ରାଜୁ—ଏଇ, ତମ ରସିକ ଶେଖର ଆସିଗଲେ । ଏଇକ୍ଷଣି ବଲେ ଦେଖିନେବ ମୋ କଥା ସତ କ ମିଛ । ମୁଁ ଏଠି ରହିବା ଠିକ୍ ହବନାହିଁ, ବିଶେଷତଃ ତମର ଏଇ ନାୟକ ନାୟିକାଙ୍କ ଅଭିନୟର Romance ବେଳେ, ଯାଉଛି ମୁଁ ।

ଉଷା—ନାଁ ଯଦି—କହୁଛି···

ରାଜୁ—ଡରୁଛ ? ଅଚ୍ଛା ମୁଁ ଅଛି, ଧନ୍ଦାକୁ କହିଦିଅ କବାଟଟା ଫିଟେଇ ଦଉ, ଆଉ ତୁମେ ଆସି ଏଠି ମୁହଁ ଶୁଖାଇ ବସ । ଅଗେ ଟଙ୍କାଟା ମାଗିବ ।

ଉଷା—ହଉ । ( ଯାଉ ଯାଉ କହିଲା )

ରାଜୁ—ତା ହେଲେଇ ପ୍ରଥମରୁ ବୁଝି ପାରିବ । ( ଉଷା ଯିବା ବାଟକୁ କାନ ଡେରି ରହିଲେ, ଉଷା ଫେରି ଆସିଲା ) ଧନ୍ଦା ଗଲା ?

ଉଷା—ହୁଁ ( ମୁହଁ ଶୁଖାଇ ବସିଲା )

ରାଜୁ—ତମ ପାଇଁ ତ ଦେଖୁଚ ଶହର୍ସାଲ ଦବା ଦର୍କାର ନାହିଁ, ସୁନ୍ଦର ଅଭିମାନ ଆସୁଚି । ( ମୁହଁ ଟେକି )

ଉଷା—ଯାଃ—

ରାଜୁ—ଉଁଃ ! (ମୁହଁ ଚିପିଦେଇ ଚାଲିଗଲା ଘରଭିତରକୁ)

ଗୋପ—( ପଦାସ୍ଥ ) ଉଷା ! ଉଷା ! ( ପାଖକୁ ଯାଇ ) ଉଷା ! ( ମୁହଁ ଟେକି ଦେଲା )

ଉଷା—( ଛଳ କୋପରେ ମୁହଁ ନେଇଯାଇ ) କଅଣ ? ମତେ କଅଣ ଶୁଭୁନାହିଁ ? ଉଷା ! ଉଷା ! ଉଷା ! ଉଷା !

ଗୋପ—( ମୁହଁକୁ ଚାହିଁ ) ତୁମେ ଆଜ ଏମିତି କାହିକ ?

ଉଷା—ମ, ସବୁବେଳେ କଅଣ ମଣିଷ ସମାନ ଥାଆନ୍ତି ।

ଗୋପ—କଅଣ ଦିହ ଭଲ ନାହିଁ ?
( ଉଷା ମୁହଁରୁ ନିଜ କାନରେ ଝାଲ ପୋଛୁ )

ଉଷା—( ହାତ ଛୁଆଁଡ଼ ) ଭଲ ଅଛୁ ତ ।

ଗୋପ—ତେବେ, ମୁହଁଟି ଫୁଲେଇ ବସିଛ ଯେ ?

ଉଷା—ଯାହାର ମୁହଁ ଯେମିତି ନାଁ, ଆଉ···

ଗୋପ—ହୁଁ, ମୁହଁ ସେମିତି ? ଦେଖି—
( ମୁହଁ ଟେକିଲା )

ଉଷା—ଉଁଃ, ଅତ ଦେଖେଇ ହଉଚନ୍ତି ବସି, ଯାଃ—

ଗୋପ—( ପାଖରେ ବସି ) ସତେ, କଅଣ ହେଉଚ ତୁମର କହନା ।

ଉଷା—ହେଉଚ ଛେନା ଗୁଡ଼, ଅସି ଉଷା ବୋଲି ଡାକଦେଇ ଗେଲଟିକିଏ କରିଦେଲେ ମୋର ମାନ ଇଜତ ବଢ଼ିଯିବ, ନାଇଁ ? ( ଦୀର୍ଘନିଶ୍ୱାସ )

ଗୋପ—କଅଣ ହେଉଚ କଥାଟା କହିଲେ ସିନା ଜାଣିବ ।

ଉଷା—ଟେନ୍‌ବାଲା ଏଇନେ ଆସି ମୋ ସାଙ୍ଗେ ଧୂମ ଲଗେଇ ଯାଇଚି । ଛୋଟ ଲୋକଙ୍କର ଏ ଡାଗଦା ମୁଁ ସହି ପାରିବି ନାହିଁ । ତମର ଯେବେ ଇଚ୍ଛା ନ ଥିଲା ମୋତେ ମନାକରି ଦେଇଥିଲେ ତ ହୋଇଥାନ୍ତା । କାହିଁକି—ଟେନ୍‌ଟା ନ ପିନ୍ଧିଲେ ଆଉ···

ଗୋପ—ଟେନ୍‌ବାଲା ଆସିଥିଲା ? ବେଶ, ତା ଟଙ୍କା ତ ନବ—ଆଉ କଅଣ ? ଜୁଲମ କାହିଁକି ? ଏଇଟା ଯେ ବେଆଇନ ।

ଉଷା—ସେ ଆଇନ ବେଆଇନ ତୁମେ କଚେରୀରେ ବୁଝୁଥା' । ମୁଁ ଜାଣେ, ଦରକାର ଥିଲେ ଲୋକ ଜୁଲମ୍ କରେ, ପୁଣି ଏତେ ଗୁଡ଼ାଏ ଟଙ୍କାର ମାଲ୍, ସେ ବିଶ୍ୱାସରେ ମତେ ଏତେଦିନ ଯାଏ···

ଗୋପ—ଆଚ୍ଛା ତା ଟଙ୍କା କାଲି ଦିଆଯିବ ।

ଉଷା—ଫେ'ର୍ କାଲିକି ଗଲାଣିଟି !

( ବାକ୍ସ ପଛରୁ ଦେଖୁଥାଏ )

ଗୋପ—ତୁମେ ଆଉ ଗୋଟିଏ ଜିନିଷ ଦେଖ ତ ଯଦି ତୁମ ହାତକୁ ଫିଟ୍‌କରେ (ଫିଟାଉ ଫିଟାଉ) ଆଉ ପଛେ ନେଇ ଆସିବା । (ଉଷା ହାତକୁ ବଢ଼ାଇଲା)

ଉଷା—ଏ ଚୂଡ଼ି ମୋର କଣ ହେବ ?

ଗୋପ—ପିନ୍ଧ, କିସି ଦେଖ ଆଗେ ।

ଉଷା—(ଠିଆ ହୋଇ ରାଗରେ) ଏ ଚୂଡ଼ି ? ନାଁ, ମୁଁ ଜାଣେ, ଏଚୂଡ଼ି ଯୋଉଠୁ ଆସିଚି, ଯେମିତି ଆସିଛି । ( କଡ଼ା ଆଖିରେ ଚାହିଁ ) ଗୋପବାବୁ ! ଏତେଦୂର ତୁମେ···

ଗୋପ—ଉଷା ! ତୁମେ ଆଗେ···

ଉଷା—ମୋର ଦରକାର ନାହିଁ ଏ ଚୂଡ଼ି । ଦେଇଆସ ଯୋଉଁଠୁ ଆଣିଚ (ଉପରକୁ ଫିଙ୍ଗି ଦେଲା) ମୁଁ ସବୁ ଜାଣେ—(ଭିତରକୁ ଚାଲିଗଲା, ଭିତରୁ) ହଁ, ହଁ, ମୁଁ ଜାଣିଛି—ଜାଣିଛି ଏ ଚୂଡ଼ି କଥା ସବୁ ।

ଗୋପ—(କିଛିକ୍ଷଣ ଉଷା ଯିବା ବାଟକୁ ଚାହିଁଲା, ଚୂଡ଼ିକି ଉଠାଇ ନିରୀକ୍ଷଣ କଲା, ଦୀର୍ଘ ନିଃଶ୍ୱାସ ମାରି ଥରେ ଚୂଡ଼ିକୁ ଛାତିରେ ଚାପି ଧୀରେ ଧୀରେ ଘର ଛାଡ଼ିଲା )

ଉଷା—(କିଛିବେଳେ ପରେ ଖୋଜିଲା, ଜବାବ ନ ପାଇ ଗୋପବାବୁଙ୍କ ଯିବା ବାଟ ଅର୍ଥାତ୍ ବାହାରକୁ ଯାଉଥିଲା, ପଛରୁ ହଠାତ ଶୁଭିଲା ପୈଶାଚିକ ହସ, ଉଷା ଚମକି ପଛକୁ ଚାହିଁଲା କହିଲା) କିଏ ?

---

## ଚତୁର୍ଥ ଅଙ୍କ—ପ୍ରଥମ ଦୃଶ୍ୟ

[ରାଜ ପଥ—ଗୋପାଳର ଘର ସାମନା ରାସ୍ତା । ସମୟ—ରାତି ୧୨ଟା । ବିଜୁଳିବତି ଲିଭିଯାଇଥିବା ହେତୁ ଚାରିଆଡ଼େ ବିଶେଷ କିଛି ଦେଖା ଯାଉନାହିଁ]

ଗୋପ—(ଆସି) ଭୁଲ କଲି ? ଅନ୍ଧାରଟାରେ ଆଉ କଅଣ ଘର ଭୁଲ ହେଲି ? (ଘର ଦୁଆରକୁ ଯାଇ) ନା, ଏଇଟା ତ (ଠାରି) ମୁକୁନ୍ଦ ! ମୁକୁନ୍ଦ ! ବାହାରକୁ ଟିକିଏ ଆଲୁଅ ଆଣ ତ ? (ଟିକିଏ ଅପେକ୍ଷା କରି ପୁଣି ଡାକମାରି) ଆରେ କେହି ଶୁଣିବାକୁ ନାହିଁ । ଟୁନୁ ! ଟୁନୁ ! ନା ଟୁନୁକୁ ଜର (ପଶିଗଲା ଘର ଭିତରକୁ ଡାକ ଡାକି) ଆରତି ! ଅନ୍ଧାରଟାରେ ମୁଁ···ଟିକିଏ ଆଲୁଅ ଦେଖାଅ ଆରତି । ଭାରି ଅନ୍ଧାର, କିଛି ଦେଖି ପାରୁନାହିଁ, ଟିକିଏ ଆଲୁଅ । (ଘର ଭିତରୁ ଖାଲି ଆରତି, ମୁକୁନ୍ଦ ଡାକ ଶୁଭୁଚି, କିନ୍ତୁ ଜବାବ ନାହିଁ । ଗୋପ ଫେରି ଆସିଛି—ହାତରେ ଗୋଟାଏ ଶାଢ଼ିର ଧଡ଼ି । ଦୁଆରେ ଛିଡ଼ା ହେଲା ଘର ଆଡ଼କୁ ଚାହିଁ) ମୋ ଘର ନୁହେଁ ? ଏତେ ଭୁଲ କଲି ? (ଧଡ଼ିଟିଏ ଦେଖି) ନାଇଁ ତ, ଏ ଆରତି ଲୁଗାର ଧଡ଼ି; ପୂଜାବେଳେ ଏଇ ଶାଢ଼ୀ ଆଣି ଦେଇଥିଲି ମୁଁ । ୭।୮ ମାସ ତଳର କଥା । ଘରେ କେହି ନାହିଁ !

ଝୁନୁ ! ଝୁନୁ, ଝୁନୁ, ମୋର କାହିଁ ? ଗାଆଁକୁ ଚାଲିଗଲେ ? ଏତେ ବେଗେ ? ନା, ଝୁନୁ ମୋର—ଛି, ଛି, (ଆଉଥରେ ଦୁଆର ମୁହଁରେ ଡାକିଲା ଚୂଡ଼ିଟି ହାତରେ ଧରି) ଆରତି ! ଆରତି ! ଏଇ ତମ ଚୂଡ଼ି, ଆରତି ? ଆରତି ? ଝୁନୁ ! ଝୁନୁ ରେ ! ମୁଁ କଅଣ ଦେଖି ପାରିଲି ନାହିଁ ? ଭୁଲ କଲି ? (ପୁଣି ଘର ଭିତରକୁ ପଶିଯାଇ) ଆରତି ! ମୁଁ ଅନ୍ଧାରରେ ଯେ—ଆଲୁଅ ଦେଖାଅ ।

---

## ଦ୍ୱିତୀୟ ଦୃଶ୍ୟ

[ କୁଟୀର—ଆରତି ଓ ଅନ୍ଧ ବସିଥିଲେ—ନେପଥ୍ୟରୁ ମୁକୁନ୍ଦ ଡାକିଲା ]

ମୁକୁନ୍ଦ—ଲବଙ୍ଗ ! ଡିବିଟା ଟିକିଏ ଦେଖେଇଲୁ ମାଆ ! ବଡ଼ ଅନ୍ଧାର ।

ଆରତି—(ଉଠି) ଆଲୁଅଟା ନିଅ, ମୁକୁନ୍ଦ ଡାକୁଚି ।

ଅନ୍ଧ—ହଁ, ହଁ, ଲବଙ୍ଗ କୁଆଡ଼େ ଗଲାକି ?

ଆରତି—ସେ ଝୁନୁକୁ ନେଇ ଶୁଆଉଚି । ଝୁନୁକୁ ପାଇ ସେ କଅଣ ମୋ ପାଖ ଆଉ ମାଡୁଚି ? (ନେପଥ୍ୟରୁ)—ମୁକୁନ୍ଦ !

ମୁକୁନ୍ଦ—ହଁ, ଯେଉଁଠି ଥାଉ, ଦିଶିଲା । ଅଜଣା ବାଟଟା ନା, ଏଇ ଗଛଟା ମଝିରେ ଅଛୁ ଯେ (ଆସିଲେ ଥକାମରା ହୋଇ ମୁଣ୍ଡରୁ ଜିନିଷ ଓହ୍ଲେଇ ବସିଗଲେ) ଓଃ ! କି ଦୁର୍ଯୋଗ ।

ଆରତି—କଅଣ ମୁକୁନ୍ଦ ! ତମ ବାହା ମୁଣ୍ଡ ଏମିତି କଅଣ ?

ମୁକୁନ୍ଦ—ଭଲ ପାଣି ଅଛି ? ଆଗେ ମୁନ୍ଦେ ଦେଲ, ମୁଁ ତାଳେ ପିଇଯିବି ।

ଆରତି—(ପାଣି ଆଣିବାକୁ ଗଲେ)

ଅନ୍ଧ—ଏମିତି କାହିଁକି ବ୍ୟସ୍ତ ହଉଚ ମୁକୁନ୍ଦ ! ଘରୁ ସବୁ ଜିନିଷ ଆଇଲାଟି ?

ମୁକୁନ୍ଦ—ଘରେ କୁଟାଷିଏ ଆଉ ନାହିଁ । ଚୌକି, ଆଲମାରି—ଯାହା ଯୋଉଠି ସବୁ ବଡ଼ ବଡ଼ ଜିନିଷ—ଦେଲି ବାକି, କଅଣ ହୁଅନ୍ତା ସେଗୁଡ଼ା ଆଉ ? ବାକି ଯାହାଥିଲା, ସବୁ ରୁଣ୍ଡେଇପୁଣ୍ଡେଇ ଅଣିସାରି, ଏଇତକ ଆଣିବା ବେଳକୁ ତ···

ଆରତି—କଅଣ ହେଲା ମୁକୁନ୍ଦ ! ଏତେ ଉଚ୍ଛୁର କାହିଁକି କଲ ? (ପାଣି ତାଳ ଆଣିଦେଲେ)

ମୁକୁନ୍ଦ—(ତକ ତକ କରି ପିଇ) ଓଃ, (ବାହା ମୁଣ୍ଡ ଝାଡ଼ି) ଏଥର କହୁଚି । ମୁଁ ତ ଘରଦ୍ୱାର ବୁଲି ଯାହା ଯୋଉଠି ଥିଲା ଧରି ଆସିକରି ଶ୍ୟାମକୁଞ୍ଜ ଗଳି ମୁଣ୍ଡରେ ହେଇଚି, ସିଆଡ଼ୁ ଯେମିତି ବଜ୍ର ପଡ଼େ । ଧାଡ଼ିକନ ମୋ ଆଗଚ୍ଛମୁଆଁ ଗୋଟାଏ ଧକ୍କା ବାଜିଲା ।

ଆରତି—ଏଁ !

ଅନ୍ଧ—କୋଉଠି ? କୋଉଠି ?

ମୁକୁନ୍ଦ—ଶ୍ୟାମକୁଞ୍ଜ ଗଳି ମୁଣ୍ଡରେ । ଜିନିଷଗୁଡ଼ା ତଳେ ପଡ଼ିଗଲା, ଲୋକଟା ବି ଗଛ କାଟିଲା ପରି ପଡ଼ିଲା କରୁଡ଼ ହୋଇ, ତା ସାଙ୍ଗେ ସାଙ୍ଗେ ମୁଁ ପଡ଼ିଲି ଆଣୁ ମାଡ଼ି ତା ଧକ୍କାରେ । ପଛେ ପଛେ ଦି ଜଣ କିଏ ଆଗପଛ ହୋଇ ପବନପରି ସେବାଟେ ଦୌଡ଼ି ପଳାଇଲେ, ଅନ୍ଧାର ତ ହେଇଚି ଯେ ମୁହଁକୁ ମୁହଁ ଦିଶିବାକୁ ନାହିଁ ।

ଆରତି—ସେଇଠୁ ?

ମୁକୁନ୍ଦ—ଜିନିଷଗୁଡ଼ା ସେଇଠି ସେମିତି ପଡ଼ିଥାଏ, ପାଖରୁ ଜଣକ ଘରୁ ଆଲୁଅ ଆଣି ଦେଖେଁ ତ ରାଜୁବାବୁ ।

ଆରତି—ରାଜୁବାବୁ ?

ମୁକୁନ୍ଦ—ହଁ, ରାଜୁବାବୁ ପଡ଼ିଛି ସେଁ ଚେତା ଚଇତନ ନାହିଁ ।

ଆରତି—ଫେର୍ କଅଣ ହେଲା ?

ମୁକୁନ୍ଦ—ପାଣି ପାଣି ମାରି, ପ୍ରାଣାୟାମ କରି ଉଠାଏଁ ତ, ଉଠି ପାରୁ ନାହାଁନ୍ତି ଭୂଇଁରୁ । ଗୁଣ୍ଡଟା ଉପରେ ମାଡ଼ ହୋଇଚି । ଛଅଣା ପଇସା ଖର୍ଚ୍ଚ କରି, ଗାଡ଼ିଟାଏ କରି, ସାଇରୁ ଚାରି ପାଞ୍ଚ ଲୋକଙ୍କୁ ନେଇ ତାଙ୍କୁ ଧରାଧରି କରି ଉଠାଇ, ଡାକ୍ତରଖାନା ନେଇଗଲି ।

ଆରତି—ଭଲ କଲୁ, ତମ ବଡ଼ମୁଣ୍ଡ ଧଳ ବାଳ ।

ଅନ୍ଧ—ତମର କଷ୍ଟ ହେଇନ ତ ବାପା ?

ମୁକୁନ୍ଦ—ନାଇଁ, ଖାଲି ଏଇ ଆଣ୍ଠୁଟା···ଟିକଏ ଦରାଣ ଲାଗୁଚି । ଛେଚି ହେଇଗଲା ନା ।

ଅନ୍ଧ—ଗୋଟେ ମାଲିସତେଲ ଅଛି ଘରେ । ସାଙ୍ଗେ ସାଙ୍ଗେ ଉଣା ହେଇଯିବ । ଲବଙ୍ଗକୁ କହିବ ଯେ, ଦବ ।

ମୁକୁନ୍ଦ—ହଉ, ସେ ତ ଅଛି, ଜିନିଷଗୁଡ଼ା ଟିକଏ ଦେଖିଲ ଦେଖି, ସବୁ ଠିକ ଅଛିଟି ? ତଳେ ପଡ଼ି, ତାର ଆଉ କାନ୍ତି ଗୋଟେ ନାଇଁ ।

ଆରତି—ହଁ, ହଉ । ମଣିଷର ଜୀବନ ଆଗ ନା ଜିନିଷ ଆଗ ? ବଡ଼ମୁଣ୍ଡ କଷ୍ଟ ହେଇନ ସେତିକିରେ ମୁଁ ସନ୍ତୋଷ । ମୁଁ ପଚାରୁଚି—ରାଜ୍ ବାବୁଙ୍କୁ ଏମିତି କିଏ କଲା ?

ଅନ୍ଧ—ଆଜି କାଲି ମଟିମଟିରେ ଚାରିଆଡ଼ ଯୋଉ ଅନ୍ଧାର, ଏଥିରେ କଅଣ କହିହେବ କିଛି ?

ମୁକୁନ୍ଦ—ଯେ କଲା, ଧନପାଇଁ କରିଛି । ବାକି କିଛି ପାଇଲା ନାହିଁ ।

ଆରତି—କେମିତି ?

ମୁକୁନ୍ଦ—ଧନ ତ ମୋ ହାତରେ, ହେଲଟି ଦେଖିଲ ଦେଖି, ଏ କାହା ହାର ? (ଦେଖାଇଲା)

ଆରତି—(ଆଶ୍ଚର୍ଯ୍ୟ ହୋଇ) ଏ ତ ମୋ'ର ଚେନ୍ । ରାଜ୍‌ବାବୁଙ୍କୁ ଯୋଉଟା ତମ ହାତେ ଦେଇଥିଲି ।

ମୁକୁନ୍ଦ—ତା'ର ସୁଟ୍‌କ୍ ବାରି କିଏ ରାଜୁବାବୁଙ୍କଠୁ ମାରି ନବାକୁ ବସିଥିଲା ଯେ, ସେଇରକୁ ବାଟରେ ବାଘ ନେଲା ।

ଆରତି—ପ୍ୟାଁକୁ କୋଉଠୁ ପାଇଲ ?

ମୁକୁନ୍ଦ—ରାଜ୍ ବାବୁ ପକେଟରୁ ତଳେ ପଡ଼ି ଯାଇଥିଲା । ମାଡ଼ବେଳେ ଆଉ କଅଣ ହୋସ୍ ଅଛି ? ଅଲୁଅଟା ଯେମିତି ଆଣିଚି, ଆଗେ ମୋତେ ଚକ ଚକ ହେଇ ଦିଶିଲା ଏଇଟା । ଏ ତ ମୋ ଚିହ୍ନା ହାର । ଆଗେ ଗଣ୍ଠି କରି, ତା ପରେ ଲୋକଙ୍କୁ ଡାକିଲି ରାଜୁବାବୁଙ୍କୁ ଉଠେଇବାକୁ ।

ଅନ୍ଧ—କି ହାର ସେ ମାଆ ?

ଆରତି—ମୁଁ ଦେଇ ପଠେଇଥିଲି ବନ୍ଧି କରିବାକୁ ସେଇ ରାଜୁବାବୁଙ୍କ ହାତରେ ।

ଅନ୍ଧ—ଓଃ, ରକ୍ଷାହେଲା, ଠାକୁର କିଏ ଦେଖି ବଗୁରା ପଛେ ପଛେ ଲାଗିଥିଲେ ନେବାକୁ ଯେ, ପାରିଲେ ନାହିଁ ! ଧର୍ମର ମାଲ । ଦେଖ ! ଗୋବିନ୍ଦଙ୍କ ଲୀଳା ଦେଖ ! ଯାହା ଜିନିଷ ତା'ର ହାତକୁ କେମିତି ଆସୁଛି ।

ଆରତି—ନାଇଁ ନାଇଁ, ଏଇଟା ବିକ ସେ ମୋତେ କେତେ ଟଙ୍କା ଦେଇଥିଲେ ! ବାକି ଅଳ୍ପ ଅଛି, ଏଇଟା ତ ଆଉ ମୋର ନୁହେଁ । ମୁଁ କାଲି ନିଜେ ଯାଇ ଡାକ୍ତରଖାନାରେ ରାଜ୍‌ବାବୁଙ୍କୁ ଦେଖି ଆସିବି, ଏ ହାରଟା ତାଙ୍କୁ ଦେଇ ଆସିବି ।

ମୁକୁନ୍ଦ—ତୁମେ ନିଜେ ଯିବ ଡାକ୍ତରଖାନା ?

ଆରତି—କଅଣ ହେଲା ? ଏମିତି କଅଣ ଲୋକେ ନିଜର କେହି ଲୋକ ପଡ଼ିଥିଲେ ଦେଖି ଯାଉ ନାହାନ୍ତି ?

ମୁକୁନ୍ଦ—ଯାଉଛନ୍ତି ଯେ ରାଜୁବାବୁଙ୍କୁ···

ଆରତି—କଅଣ କହୁଚୁ ମୁକୁନ୍ଦ ! ସେଇ ରାଜୁବାବୁ କଥା ମନେ ପଡ଼ୁନାଇଁ ? ତମ ସାନ ବାବୁଙ୍କ ବଡ଼ ଦୁଃଖ ବେଳେ···

ମୁକୁନ୍ଦ—ସବୁ ସେ କରିଛି, ଭଲ କରିଛି ଯେତିକି, ମନ୍ଦ କରିଛି ତାହାଠୁ ବେଶି । ନୋହିଲେ କି ଆଜି ସାନ ବାବୁ···

ଆରତୀ—ସେ ମୋ ଭାଗ୍ୟ ମୁକୁନ୍ଦ ! ଲୋକଙ୍କୁ ଦୋଷ ଦେଇ ଲାଭ କଅଣ ? ଯାଆ, ଗୋଡ଼ ହାତ ଧୁଅ ।

ମୁକୁନ୍ଦ—ଟିଙ୍କୁ ବାବୁ ?

ଆରତୀ—ଲବଙ୍ଗ ଥିଲେ ମୋର ଆଉ ଟିଙ୍କୁର ଚିନ୍ତା କାହିଁକି ?

ମୁକୁନ୍ଦ—ଶୋଇ ପଡ଼ିଲାଣି ତେବେ, ଭଲ । ଜର ତ ଆଉ ନାହିଁ ?

ଅନ୍ଧ—ଆଉ ନାହିଁ କି ଆଉ ହବ ନାହିଁ ! କହୁଛି ପରା—ସେ ହୁକୁମ ଔଷଧ । ଯେତେ ବଡ଼ ଜର ହଉ—ଛନପାନ ।

ଆରତୀ—ଗଲ ମୁହଁ ହାତ ଧୋଇଲ···

ମୁକୁନ୍ଦ—ତମ ବିଛଣାଟା କରିଦିଏଁ ଏକାବେଳେ ।

ଆରତୀ—ମୁଁ ସେଇ ବଉଳ ମୂଳେ ଶୋଇବି ।

ଅନ୍ଧ—ବଉଳ ମୂଳ, ଠିଆ କାକରଟାରେ ?

ଆରତୀ—ଭଲ ହବ, ସେଇଠି କର ।

ମୁକୁନ୍ଦ—ହଉ । (ବିଛଣା ଉଠାଉ ଉଠାଉ) ଦେଖ ! ମୁଁ ବାକି କାଲ ବଡ଼ ପାହାନ୍ତାରୁ ଯିବି ଗାଆଁକୁ ।

ଆରତୀ—ମୁକୁନ୍ଦ ! ବାପାଙ୍କୁ କଅଣ ବୋଲି···?

ମୁକୁନ୍ଦ—କହୁ ନାହିଁ, ମୋ ବାଟ ମୁଁ କରିବି ନାହିଁ ? ବାକି ତୁମେ ଆଉ ମତେ ମନା କରନା ଦେଖି ! ଦିନଟେ ଏଇଠି ଲବଙ୍ଗ ଦେଇକାଙ୍କ ସାଙ୍ଗେ ଚଳିଯାଆ—ସକାଳେ ଯାଇ ସଞ୍ଜେ ପଛେ ଆସିବି । ବଡ଼ବାବୁଙ୍କୁ ନ ଦେଖି, ମନ ଖାଲି ଆଟୁପାଟୁ ହଉଚି ।

ଆରତୀ—ହଉ, ତମ ମନ ।

ମୁକୁନ୍ଦ—ମନ ଆଉ କଅଣ ? ଗୋଟେ କହୁ ବାଟ ତ ପୁଣି କରିବାକୁ ହବ ।

ଆରତୀ—ଚାଲ, ରାତି ବହୁତ ହେଲାଣି ।

ମୁକୁନ୍ଦ—ଯାଉଚି ତମ ବିଛଣା କରିଦିଏଁ । ଆମଯୋଗୁଁ ବୁଡ଼ାବି ଅନିଦ୍ରା ।

ଅନ୍ଧ—ହଁ, ଅନିଦ୍ରା କଅଣ ? ମୋର ତ ଆହୁରି କେତେ କାମ ଅଛି । ଯାଉଚ ମୁକୁନ୍ଦ—ଲବଙ୍ଗ ପାଇଁ ଥିଲେ ଟିକିଏ ପଠେଇ ଦେଇ ଯିବ ଏଠିକି ତ ।

ମୁକୁନ୍ଦ—ହଉ । (ଚାଲି ଯିବାକୁ ଠାବ ଦେଲେ ଆରତୀ)

ଆରତୀ—ଲବଙ୍ଗ ଆଉ ଏତେବେଳେ କଅଣ କରିବ ?

ଅନ୍ଧ—(ହସି) ମୋର ଗୋଟେ ବଡ଼ କାମ ବାକି ଅଛି । ଏଇ ଯୋଉ ଦିଅଁକୁ ଦେଖୁନା ମାଆ ? ଗୋବିନ୍ଦ, ଗୋବିନ୍ଦ, ବଡ଼ ଅଝଟିଆ ସେ । ଗାଥାଏ ଗୀତଗୋବିନ୍ଦ ନ ଶୁଣିଲେ ଆଉ ନ ଶୁଅନ୍ତି ସେ । (ଡାକ ଅଣ୍ଡାଳି) ଆରେ ! ଦେଇ, ଯାଇ ନାହିଁ ପରା ?

ଆରତୀ—କଅଣ ?

ଅନ୍ଧ—ଏକତାରାଟା ଯେ, ଲବଙ୍ଗ ଆସିବ ତ ।

ଆରତୀ—(କଣରୁ ଏକତାରାଟା ଆଣି) ହେଇଟି ନିଅ । (ଦେଲେ)

ଅନ୍ଧ—ମ, ମ, ଏତିକି ଫେର୍ ଘର ବୋହିବାକୁ କିଏ କହିଲା ?

ଆରତୀ—କଅଣ ହେଲା ସେଇଠୁ ? ମୁଁ କଅଣ ତମ ଝିଅ ନୁହେଁ ?

ଅନ୍ଧ—(ଗାଇଲା) କିଏ କହିଲା ନୁହେଁ ? ଆଗେ ପରା ତେମେ ମୋର···ଲବଙ୍ଗ ପଛେ ସିନା !

(ସୁର ବାନ୍ଧି ଗୀତ ଗାଇଲା)

ରତିସୁଖସାରେ ଗତମଭିସାରେ
ମଦନ ମନୋହର ବେଶମ୍

ଆରତୀ—(ଗାଇଲା)

ନ କୁରୁ ନିତମ୍ବିନି, ଗମନ ବିଲମ୍ବନ
ମନୁସର ତଂ ହୃଦୟେଶମ୍ ।

ଅନ୍ଧ—କିଏ ? ଲବଙ୍ଗ ।

ଆରତୀ—ନାହିଁ,—ମୁଁ ।

ଅନ୍ଧ—ତୁମେ ? ଏଡ଼େ ସୁନ୍ଦର ତୁମେ ଗାଅ ମା ଲକ୍ଷ୍ମୀ ! ଗାଅ; ଗାଅ; ଦେଖେଁ ଆଜ ସୁଖରେ ପଦ୍ମଭ୍ରୂ କରିବେ । ଆହା ହା, କି ସୁନ୍ଦର କଣ୍ଠ ! ଗାଅ—

ଆରତି—(ଗାଇଲେ)—

ଧୀରସମୀରେ, ଯମୁନାତୀରେ
ବସତି ବନେ ବନମାଳୀ
ପୀନପୟୋଧରପରିଶର ମର୍ଦ୍ଦନ—
ଚଞ୍ଚଳକରଯୁଗଶାଳୀ ॥
ନାମସମେତଂ କୃତସଙ୍କେତଂ
ବାଦୟତେ ମୃଦୁ ବେଣୁମ୍
ବହୁ ମନୁତେ ନନୁ ତେ ତନୁସଙ୍ଗତ
ପବନଚଳିତମପିରେଣୁମ୍ ॥

---

## ତୃତୀୟ ଦୃଶ୍ୟ

[ ପଥ—ଗୁଣ୍ଡା ଦୁହେଁ ]

୧ମ ଗୁଣ୍ଡା—ଯୋଗ ଗୋଟେ ରେ ଗୋଟେ, ନଇଲେ ଏମିତି ପଟ କ ଖସି ଯିବା କଥା ?

୨ୟ ଗୁଣ୍ଡା—ମୁଁ ଜାଣେ ପରା, ମୋର ଢନଠା ଆଜ ସେମିତି ସେମିତି ଯିବ ।

୧ମ—କାହିଁକି ? କହେଇ ଅବଧାନଠି ପାଞ୍ଜି ଗଣେଇ ନ ଥିଲୁ କରେ ?

୨ୟ—ଆରେ ପାଞ୍ଜି କଅଣ ଗଣେଇବ ? କବାଟଟା ଫିଟେଇ ଦେଲାବେଳକୁ ବେହ୍ନପୋ ଛୁଡ଼ା ହେଇଚି ଘନଆଁ ।

୧ମ—ଆରେ ତା ମା ମରୁ, ବେହ୍ନପୋ ଖରୁଆ ଘନଆ କରେ ? ସେଇଟା ତମ ସାଇରେ କଅଣ କରୁଥିଲା ?

୨ୟ—ତା କଥା ଭଲ ପଗ୍ଗୁରୁଛୁ ଦାମା ! ସେ ଗୋଟେ ମାମଲତକାର ହେଇଗଲାଣି ସାଇରେ । ପଗ୍ଗରିଲେ ବୋପା ନାଁ ଆସିବ ନାଇଁ ।

୧ମ—ମଲା, ଭାରି ବଡ଼ କଥାଟେ କହିଲୁ ! ସତେରେ କଅଣ ବାପ ନାଁ ତାକୁ ଜଣା ଅଛୁ କ ? ସେ ପରା ଗୋଟେ··· (କାନରେ କହିଲେ)

୨ୟ—ହଁ ରେ ସତକଥା, ସତକଥା । ବେହ୍ନପୋ ସାଇକଲ ଖଣ୍ଡେ, ଧୋବ କୁରୁତା, ଧୋବଲୁଗା ଖଣ୍ଡେ ହେଲେ, କଅଣ ନାଁ ଘନବାବୁ !

୧ମ—ମୁଁ ଜାଣିଛୁ, ତୁ ଏବେ ଆଜଯାଏ ତାକୁ ଚହ୍ନି ନାହୁ ବୋଲି ?

୨ୟ—ଆରେ ନାଇଁମ । ଖଚ ମିଛ ତା'ର ବେଉସା, ଏଇତକ ଜାଣିଚି ।

୧ମ—ତା ମୁହଁ ଗୁହିଁଲେ ବରକତ ନାହିଁ ପରା ! ଦେଖୁନୁ ଆଜ ଏବେ କ ପଟ ଖସିଗଲା । ରାଜୁବାବୁଟା ପଛେ ଏତେବାଟ ଲାଗି ଲାଗି ଶାମକୁଞ୍ଜ ଗଳାଠେଇଁ ମାଟି କାମୁଡ଼େଇଲା ତାକୁ । ସେତିକବେଳକୁ ବେହ୍ନପୋ ଆଗରେ ହାବୁଡ଼ିଲା ଜବର ଏକ ବୁଢ଼ା ।

୨ୟ—ଯାଃ, ସେ ବ ଅଧାପ୍ରାଣ । ରାଜୁ ଧକ୍କାରେ ସେ କଚଡ଼ାଟେ ଖାଇଥିବ । ଆଣ୍ଠୁ, ଗଣ୍ଠି ବୁଢ଼ାଟାର ଛିଡ଼ି ଯାଇଥିବ ।

୧ମ—ଆରେ, ଯାଉ ନ ଯାଉ, ଆମର ତ ଗୋଟେ ଶିକାର ହାତରୁ ଗଲା । ରଜୁ ହାତରେ ମାଲ ଥିଲା ରେ ।

୨ୟ—ମୁଁ ଜାଣେ ଆଜ ନଷ୍ଟିଲା ଯିବ ଢନଠା । ଅନୁକୂଳରୁ ଘନଆ ମୁହଁ ଗୁହିଁଛି ।

୧ମ—(ନେପଥ୍ୟକୁ ଗୁହିଁ) ପାଟି କରନା । ବେହ୍ନପୋ ଘନଆ ସେବେ ହେଇଥିବ ।

୨ୟ—ଆରେ ହଉ, ଘନଆ । ଜାଣି ନ ଥିଲା ତା କଥା ମୁଁ, ବେହ୍ନପୋ ଏଥର ସେବବ ମୁହଁ ଖୋଲିବ କ ଖଚ ମିଛ କହିବ,—ଶୁଣିଚ ମୁଁ, ଦେବ ତାର ସାତ ପୁରୁଷ ଉଦ୍ଧାର ସେ ଫେର୍···

୧ମ—ଆରେ, ଉତ୍ୟାଳବୁ ପଚେଛ, ତୁନି ହ। ଦାଣ୍ଡଟାରେ ସେ କଥା ଆଜ କାହିଁକି ? କଥାଟା ମନେ ମନେ ରଖିଥା । ତାଙ୍କୁ ଦେଖି ହବୁ ଯେ ସ୍ମୃତେ—ଯେମିତି ମୂହଁ ଆଉ ଦେଖେଇ ପାରିବ ନାଇଁ, ବଜାର ଭିତରେ ।

୨ୟ—ହଁ, ସେଇକଥା । ଆରେ ହେ ! ଗୋଟେ କିଏ ଆସୁଛି । (ଗୋପ ଆସିଲା ପାଗଳପରି)

ଗୋପ—(ପଚାରିଲା) ତୁମେ ଦେଖିଛ ?

୧ମ—କାହାକୁ ?

ଗୋପ—ନାଇଁ, ତୁମେ ଦେଖିନା, ତୁମେ ? (ଆରଜଣକୁ ପୁଚ୍ଛିଲା) ତୁମେ ଦେଖିଛ ଆରକ୍ଷୀକ ? ଏଁ ? ଆରକ୍ଷୀକ ଦେଖିଛ ?

୨ୟ—କୋଉ ଆରକ୍ଷୀ ହୋ ! ଏଇଟା କଅଣ ବାୟାଟେ କି ?

ଗୋପ—ଆରକ୍ଷୀକ ଦେଖିନ ?

୧ମ—ନାଇଁ ନାଇଁ, ଆଗରେ ଦେଖ, ଖୋଜ ।

ଗୋପ—ହଉ; ତାକୁ ଦେଖିଲେ କହିବଟି ଟିକିଏ; ତା ଚୂଡ଼ ଦବାକୁ ଖୋଜୁଛି ମୁଁ । (ଚାଲିଯାଉ ଯାଉ) ଦେଖିଁ ଥିବେ ଆଗରେ ?

୨ୟ—ହଁ ଦେଖ ।

୧ମ—ଦେଖିବା କି ? (ଆଖିଠାର)

୨ୟ—ଦୁର୍, ପାଗଳାଟେ ।

୧ମ—ଗୋପ ବାବୁ ଉତ୍କଳ ମୂହଁ ପରି ଦିଶୁଛି, ଅନ୍ଧାରଟାରେ ଭଲକରି ଚିହ୍ନି ହେଲା ନାହିଁ, ପିଲ୍ଲଧରି ଦେଖିବା ଚାଲ ।

୨ୟ—ଗୋପବାବୁ ଉତ୍କଳର ଦୁଃଖ ନ ଥିଲା ଏମିତି ଅନ୍ଧାରରେ ଦାଣ୍ଡରେ ଆରକ୍ଷୀ ଆରତି ହୋଇ ବୁଲିବ ! କିଏ ନାହିଁ କିଏ ବେହିପୋ ।

୧ମ—ଚାଲନା ଦେଖାଯାଉ କିଏ ସେ ।

୨ୟ—ଚାଲ, ବେହିପୋ ଖରାଦିନ, ଗାତରେ କୋଉ ନିଦ ହଉଛି ? ଚାଲ, ବେହିପୋ ନିଶାଚର ତୁ । କୁଆଡ଼େ ଯିବୁ—ଚାଲ ।

(ଉଭୟେ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

[ ଡାକ୍ତରଖାନା—ରାଜୁବାବୁ ହାତରେ ବ୍ୟାଣ୍ଡେଜ ଭିଡ଼ା ହୋଇଛି, ମୁଣ୍ଡ ଉପରେ ବରଫଥଳି, ଆରକ୍ଷୀ ପଙ୍ଖା କରୁଛି, ଡାକ୍ତର ତାର ହାତ ପରୀକ୍ଷା କରୁଛନ୍ତି ]

ଆରକ୍ଷୀ—କଅଣ ଦେଖିଲେ ?

ଡାକ୍ତର—ଡେଞ୍ଜର ଆଓ୍ୱାର, ମାନେ ବିପଦର ସମସ୍ତ ଆଉ ନାହିଁ ।

ଆରକ୍ଷୀ—ଜ୍ଞାନ ନାହିଁ ଯେ ।

ଡାକ୍ତର—ଭାବନ୍ତୁ ନାହିଁ, କଟୁ, ଔଷଧଟା ଦିଆ ହେଉଛି ଜ୍ଞାନ ଏଇ ଆସିଗଲା ବୋଲି—ଦୁଇ ମିନିଟ୍ ଭିତରେ । ଆପଣ ତା' ହେଲେ ତ ଅଛନ୍ତି । ଧୀରେ ଟିକିଏ ପଙ୍ଖା କରନ୍ତୁ—ମୁଣ୍ଡରେ ଖାଲି । ଯାଏଁ ଗୋଟେ ଅପରେସନ୍ ଆଟେଣ୍ଡ କରିବାକୁ ଅଛି, ପେସେଣ୍ଟ ବେଡ଼ ଉପରେ ଥିଲା । ଆପଣ କଅଣ ତାଙ୍କର ଭଉଣୀ ?

ଆରକ୍ଷୀ—ନାଁ ।

ଡାକ୍ତର—ଓ, ବୁଝିଲି । ଭୟ କରନ୍ତୁ ନାହିଁ, ରୋଗୀ ଭଲ ଅଛନ୍ତି ।

ଆରକ୍ଷୀ—(ହାତରୁ ପଙ୍ଖା ଖସିପଡ଼ିଲା, ଗୋଟେଇ ନେଲେ, ଡାକ୍ତର ପୁଣି ଫେରିଆସିଲେ ଶବ୍ଦ ଶୁଣି)

ଡାକ୍ତର—କଅଣ ହେଲା ?

ଆରକ୍ଷୀ—ପଙ୍ଖାଟା···

ଡାକ୍ତର—ଆଉ ଯୋଉଟରେ ଠିକଏ ହାଓ୍ୱା କରନ୍ତୁ; ଭାବନା କରନ୍ତୁ ନାହିଁ କହୁଛି, ସେ ଆପଣଙ୍କର ଭଲ ହୋଇଯିବେ, ପଙ୍ଖା କରନ୍ତୁ । (ଚାଲିଗଲେ)

ଆରତି—(ଲୁହ ପୋଛୁ ପଙ୍ଖା କରିବାକୁ ଲାଗିଲେ)

ରାଜୁ—(ବ୍ୟସ୍ତ ହୋଇ ଗୁଡ଼ରେ ହାତ ଦେଲା, ଆରତି ହାତ କାଢ଼ି ନବାବେଳକୁ ହାତଧରି) କିଏ ମା ତୁମେ ? ମା ! ମା ?

ଆରତି—କଥା କୁହନ୍ତୁ ନାହିଁ, ଚୁପ ହୋଇ ଶୁଅନ୍ତୁ ।

ରାଜୁ—ମୁଁ କେଉଁଠି ଅଛୁ ?

ଆରତି—ଡାକ୍ତରଖାନାରେ ।

ରାଜୁ—ତୁମେ ?…(ମୁଣ୍ଡ ଟେକି ଚାହିଁବାକୁ ଚେଷ୍ଟା କଲେ)

ଆରତି—ବ୍ୟସ୍ତ ହୁଅନ୍ତୁ ନାହିଁ, ରାଜୁବାବୁ !

ରାଜୁ—ଓ, ଆରତି ଦେବୀ ! ମୁଁ କଅଣ ସ୍ୱପ୍ନ ଦେଖୁଚି ? ମନେ ଅଛୁ ନ୍ଦରେ ମୋତେ କିଏ ଯେମିତି ପେଲିଦେଲା ଜୋରରେ, ତା ପରେ, ତା ପରେ…

ଆରତି—ତା ପରେ ମୁକୁନ୍ଦ ଆଣି ଆପଣଙ୍କୁ ଏଠି ଛାଡ଼ି-ଦେଇ ଯାଇଚି—ପରେ ଶୁଣିବେ, ଚୁପ ହୋଇ ଶୁଅନ୍ତୁ ।

ରାଜୁ—ତୁମେ…ତୁମେ କେମିତି ? ଦେବୀ ଏଠି କେମିତି ?

ଆରତି—ଆପଣଙ୍କୁ…

ରାଜୁ—ଦେଖିବାକୁ ? ମୋର ଅପରାଧ ତୁମେ କ୍ଷମା ନ କଲେ…

ଆରତୀ—ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ଭଲ ହୋଇ ଯିବେ ।

ରାଜୁ—( ଆରତୀର ହାତ ମୁଣ୍ଡକୁ ଟାଣି ) ତୁମେ ଆଶୀର୍ବାଦ କରୁଚ ଦେବୀ ? କ୍ଷମା କରି ପାରିବ ମୋତେ ?

ଆରତି—ଛି, ଛି, ଏମିତି ହେଲେ ପୁଣି ଆପଣଙ୍କର ଫିଟ୍ ହୋଇପାରେ, ଶୁଅନ୍ତୁ ।

ରାଜୁ—ଶୋଇବି ? ବହୁତ ଶୋଇଚି, ଆଉ ନିଦ ହେବ ନାହିଁ, ତୁମେ ଚେତାଇ ଦେଇଚ । ମୋର ଚେତା ଆସିଛି । ଏଥର—ଏଥର…

ଆରତୀ—ମନେ ପଡୁଛି କି ଆପଣଙ୍କର ପକେଟରେ କଅଣ ଥିଲା ସେଇ ରାତିରେ ?

ରାଜୁ—ପକେଟରେ ? ପକେଟରେ ଥିଲା…

ଆରତି—ଚେନ୍‌ଟା, (ଦେଖାଇ) ନିଅନ୍ତୁ ।

ରାଜୁ—ମୋର ତ ନୁହେଁ ସେଇଟା, ସେଟା ଯେ ତମର ଆରତି !

ଆରତି—କିନ୍ତୁ ମୁଁ ତ ବିକିବାକୁ ଦେଇଥିଲି, ଦାମ ପାଇଛି ।

ରାଜୁ—ଦିଅ । ହଁ, ମୋର ସେଇଟା, ମୋତେ ଦିଅ । (ହାତ ବଢ଼େଇଲେ)

ଆରତି—(ଚେନ୍ ଦେଲା)

ରାଜୁ—ଠିକଏ ଏ ପାଖକୁ ଆସ, ମୋର ତମଠି କାମ ଅଛି । ମୁଁ ଆଉ ପଶୁ ନୁହିଁ—ମୁଁ ରାଜୁ, ତୁମେ ଯାହାକୁ ଚେତନା ଦେଇଛ । ଆସ, (ହାତ ଧରି କରିକୁ ନେଲା) ଆରତି ଦେବି ! ମନେଅଛି ତମକୁ ଆରତି ବୋଲି ଡାକିବାକୁ ମୁଁ ବଡ଼ ଉତ୍କଣ୍ଠିତ ହୋଇଥିଲି, ତାର ଶାସ୍ତି ପାଇଛି । ଆଜି କିନ୍ତୁ ଆଉ ଥରେ ଡାକିବି । ଶୁଣିବ ନାହିଁ ?

ଆରତି—ଶୁଣିବି ନାହିଁ କାହିଁକି ?

ରାଜୁ—ଡାକେଁ, ଡାକେଁ ତେବେ ?

ଆରତି—(ନୀରବ)

ରାଜୁ—ଓ, ଠିକଏ ବସିବ ? (ଚେଷ୍ଟାକଲା)

ଆରତି—ରହନ୍ତୁ । (ତକିଆଟା ଘୁଞ୍ଚାଇ ଆଉଜାଇଦେଲା)

ରାଜୁ—ହଁ ହେଲା, ମୁଁ ଭଲ ହୋଇ ଗଲିଣି ଆରତି ! ଆରତି ! (ପାଖକୁ ଟାଣିଆଣି) ତୋ ରାଜୁଭାଇ ଖାଇଥାଇ ତୋ ବେକ ଆଉ ଲଙ୍ଗଳା ଦେଖି ପାରିବ ନାହିଁ । ଡାକ ଆରତି, ଥରେ ଭାଇ ବୋଲି ଡାକ । ମୋତେ କ୍ଷମାଦେବ ଆରତି !

ରାଜୁ—(ବାଧାଦେଇ) ଥାଉ ଥାଉ ।

ଆରକ୍ଷୀ—ଆଜ୍ଞା !

ମୁକୁନ୍ଦ—(ପ୍ରବେଶ କରି ଲୁବ୍ଧ ଆଖିରେ) ଦେଖନ୍ତୁ ! ଦେଖନ୍ତୁ ! ବେଗେ ଚାଲ, ଗାଆଁକୁ ଯିବାକୁ ହେବ ।

ଆରକ୍ଷୀ—ଗାଁ'କୁ ?

ରାଜୁ—ଏଇନେ ଗାଁ'କୁ ?

ମୁକୁନ୍ଦ—ହଁ, ଏଇ ସାଙ୍ଗେ ସାଙ୍ଗେ । ଲୋକ ଆସିଛି ଖବର ନେଇ ଯେ ଦୈବ ଯୋଗକୁ ବଜାରରେ ମୋର ଦେଖା ହେଲା । ବଡ଼ ବାବୁଙ୍କର···

ଆରକ୍ଷୀ--ବାପା ?

ମୁକୁନ୍ଦ--ଚାହୁଁଛ କଅଣ ? ଗାଡ଼ିକୁ ବେଳ ଅଛି, ଚାଲ । ରାଜୁବାବୁ ! ଯାଉଛୁଁ ଆମେମାନେ, ସାନବାବୁ ତମକୁ ନାଗିଲେ । ଆସ ଦେଖନ୍ତୁ !

ଆରକ୍ଷୀ—(ପ୍ରଣାମ କରି) ଆଜ୍ଞା ! (ଚାହିଁଲେ)

ରାଜୁ—ହଁ; ମୁଁ ଏଠୁ ଉଠିଲେଇ ଦେଖିବ ଗୋପକୁ । ତୋ ବିପଦ ବେଳେ ପାଖରେ ଟିକିଏ ଠିଆ ହୋଇ ପାରିଲ ନାହିଁ । ଯା ଆରକ୍ଷୀ, ତତେ ଆଉ ଅଟକେଇବ ନାହିଁ, ଗାଡ଼ିବେଳ ହୋଇଗଲାଣି । ଘରେ ପହଞ୍ଚି ସାଙ୍ଗେ ସାଙ୍ଗେ ଚିଠିଦେବୁ । ଉଃ, ଉଃ ! (ଶୋଇପଡ଼ିଲେ)

---

## ପଞ୍ଚମ ଦୃଶ୍ୟ

[ ପଥ—ଦୁଇଟି ପିଲ ଡୁ ଡୁ ଖେଳୁଥିଲେ, ଚନ୍ଦ୍ରପକ୍ଷ ରାତି ]

ପ୍ରଥମ ପିଲ—(ଅନ୍ୟ ଜଣକୁ ଖେଳ ଦେଲା) ବାଗ ଡୁ ଡୁ ବାଗ ଡୁ ଡୁ ।

ଦ୍ୱିତୀୟ ପିଲ—ଘାଇ ଉପରେ କାହିଁକି ଛୁଡ଼ା ହେଉଛୁ ? ବାହାରକୁ ଆ ।

୧ମ—(ଟିକିଏ ଦୂରକୁ ଯାଇ ପୂର୍ବବତ୍ ଖେଳ ଦେଇ ଚାଲିଗଲା)

୨ୟ—ବାଗ ଡୁ ଡୁ—ବାଗ ଡୁ ଡୁ ।

(ତାକୁ ଗୋଡ଼େଇଲା)

(ପଛରୁ ତାକୁ ଯାଇ ଗୋପ ଧରି ପକାଇଲା)

ଗୋପ—(ପିଲକୁ କୁଣ୍ଢେଇ) ଟୁନୁ ! ଟୁନୁ ରେ ! ହେଇ ତୋ ବୋଉର ଚୂଡ଼ି । ଚାଲ୍ ଘରକୁ ଚାଲ୍ ।

୨ୟ—(ଛଟି ପିଟିହେଇ) ଆରେ ! ଛାଡ଼ ମୋତେ ଧର ନାଇଁ—ମରିଯିବି । ଥୁକୁଲୁ ଥୁକୁଲୁ ।

ଗୋପ—(ପୁଣି କୁଣ୍ଢାଇ) ଟୁନୁ ! ମୋ ଟୁନୁରେ !

୨ୟ—ଆରେ କିଏ ହୋ ତୁମେ ? ମୁଁ ଟୁନୁ ନୁହେଁ, ମୋ ନାଁ ମାଧୁ—ଟୁନୁ ନୁହେଁ । ଛାଡ଼ ମୋତେ ।

(ଛଟିପିଟି ହେଲା)

ଗୋପ—ଏଁ ଟୁନୁ ନୁହଁ ? ମାଧୁ ! ଟୁନ ନୁହେଁ (ଛାଡ଼ି) ଟୁନୁ କାହିଁ ତେବେ ? ଟୁନୁକୁ ଦେଖିଛ ?

ପିଲଏ—କୋଉ ଟୁନୁ ହେ ? ସ୍ୟାଡ଼େ କୁଆଡ଼େ ଥିବ ଦେଖ ।

ଗୋପ—କୁଆଡ଼େ ?

୧ମ—ସେଇଆଡ଼େ ଦେଖ । (ହାତରେ ଠାରି)

୨ୟ—ଦେ, ଖେଳ ଦେ ।

୧ମ—(ଛାଡ଼ିଦେଲା ବାଗ ଡୁ ଡୁ କରି)

ଗୋପ—ଏଇ ଆଡ଼େ ? ଟୁନୁ ଏଇ ଆଡ଼େ ଯାଇଛି ? ଟୁନୁ ! ଟୁନୁ ରେ ! ଆରକ୍ଷୀ, ଆରକ୍ଷୀ !

(ଚାଲିଗଲା ଡାକି ଡାକି)

---

## ଷଷ୍ଠ ଦୃଶ୍ୟ

[ ଗୋଟିଏ ଭଙ୍ଗା କୁଡ଼ିଆ ଭିତରୁ ଜଣେ ବୁଢ଼ା ଗୋଟିଏ ସ୍ତ୍ରୀ ଲୋକକୁ ଧକ୍କା ଦେଇ ବାହାର କରି ଦେଉଛି ]

ସ୍ତ୍ରୀ—ମରିଗଲି ଲୋ ମାଆ ।

ପୁରୁଷ—ଯା, ଯା' ମର ।

ସ୍ତ୍ରୀ—ମର୍‌ଗଲି ଲୋ ମା ! ମୋତେ ତିନିଦିନ ହେଲା ଖାଇବାକୁ ନ ଦେଇ ଗାଡପଶା ଘରୁ ମାରି ତଡ଼ ଦଉଚି ! (ଗୋଟିଏ ଜାଗାରେ ବସି) ମୋର ସିନା କେହି ନାହାଁ ବୋଲି । କୋଳରେ କେଁ କରିବାକୁ ଗୋଟିଏ ବଲେଇ ଥିଲେ—ଗାଡପଶା, ତୁ ପୁଣି ଆଜ ମୋତେ ତଡ଼ ଦଅନ୍ତୁ ଘରୁ ? ହାତ ଧରି ବାହା ହେଇ···

ପୁରୁଷ—(ଭିତରୁ) କହୁଚି, ପାଟି କରନା । ପିଠିରେ ଫେର୍ ଶାଳୀର କଳାହାଣ୍ଡିଆ ଚାଳ ପଡ଼ିବଟି !

ସ୍ତ୍ରୀ—ରଇଜଳା ! ବୋଇଲା କଳାହାଣ୍ଡିଆ ଚାଳ ! ତୁ ନାଁ ତୋ ପର ପଣେ ? ଆ ତ ଖଣ୍ଡିଆ ପଦ'କୁ । ତୋ ଭକୁଆ ମରଦ ପଣିଆ ଯେବେ ଛଡ଼େଇ ନ ଦଉଚି । ତିନି ଦିନ ହେଲା ଘରେ ଚୂଲି ଲଗିବାକୁ ନାଇଁ, କହୁଚି କଅଣ ନାଁ ଭାତ ଦେ, ଉପାସରେ ମୋତେ ମାରିଲାରି ଘରୁ ତଡ଼ୁଚି ! ହେ ଧରମ ! ତୁ ଥିଲେ ବୁଝିବୁ । (କାନ ଫିଠେଇ ପିଠାଗୁଡ଼ା ଗାଉଁ ଗାଉଁ କରି ଖାଇ) ହେ ଧରମ ! ତୁ ଥିଲେ ବୁଝିବୁ । ରଇଜଳା ! ତୋ ଘର ଦ୍ୱାର ଯେବେ ଆଉ ମାଡ଼ିଚି···

ଭିତରୁ—ଖବରଦାର ଶାଳୀ, ପାଟି କରନା କହୁଚି । ଚୁପ୍ ହେଇ ବସ ।

ସ୍ତ୍ରୀ—ଚୁପହେଇ ବସ୍, ସ୍ୱାର କଥାରେ ? କାହିଁକରେ ଖଣ୍ଡିଆ ! ତୁ ମୋର ଆଉ କଅଣ କ ? ଗାତ— ନାଁ ଚୂଲି—ନାଁ ନଆଁ ?

ଗୋପ—( ଆସି ) ଆରଖାକ ଦେଖିଚ ?

ସ୍ତ୍ରୀ—( ରାଗି ) ଏଁ ?

ଗୋପ—ଆର୍‌ଟୀ—ଝୁନୁ ବୋଉ, ଏଇ ଟା ଚୂଡ଼ ଆଣିଚି ।

ସ୍ତ୍ରୀ—ପଲ ପଲ ହଉଚନ୍ତି ଏ ମିଣିପିଗୁଡ଼ାକ । ମଲାରେ ଏଠି ବି ଟିକିଏ ଠାବ ଦେବେ ନାଇଁ ।

ଗୋପ—ଦେଖିନାହଁ ? ଆରଟୀକ···

ସ୍ତ୍ରୀ—ଉଠ୍ ଉଠ୍, ଗୋଟେ ଛଦରମ ଅଣ୍ଡିରଟାଏ ପୁଣି, ଅଇଲା କେଉଁଠୁ ! ମୁଁ ଦେଖି ନାଇଁ, ଯାଃ—

ଗୋପ—ଏଇ ବାଟେ ଯାଏଁ—ଏଁ ଏଁ ?

ସ୍ତ୍ରୀ—ହଁ ହଁ ଚୂଲିକ ଯା—ଗାତକୁ ଯା ( ପୁଣି ଖାଉ ଖାଉ ) ଟିକିଏ ଏକୁଟିଆରେ ବସିବାକୁ ଯାଗା ଅଛି ? ମଲା ରେ ଅଣ୍ଡିରଗୁଡ଼ାକ । ମାଇପିଟିଏ ଦେଖିଲେ ତ ପଛେ ପଛେ ନାଗିଲେ । ଛି ତମ ଗରବ ମୁହଁରେ ନିଆଁ । (ଖାଇ ଖାଇ ଯାଉ ଯାଉ ) ତିନିଦିନ ହେଲା ଉପାସ ଯେ କେହି ଟିକିଏ ଆଉ ଆହା ବୋଲିବାକୁ ନାଇଁ, ପୋଡ଼ ଯାଉ କନା ତମ ସୁଆଗ ।

---

## ସପ୍ତମ ଦୃଶ୍ୟ

[ନଦୀଘାଟ—ଚତୁର୍ଲତାରେ ଅନ୍ଧାରିତ ନଦୀର ବନ୍ଧ, ଦୂରରୁ, ଗୀତ ଶୁଭିଲା ଜାଲଫିଙ୍ଗି କେଉଟ ଗାଉଚି ।]

କାଉ ଖାଇ ଗଲା ଧାନ ମୁଁ ବୋଲଇଁ
କାଉ ଖାଇଗଲା ଧାନ

ସୁନା ଗୁଡ଼ ଜଲୁ ଖପରରେ ମନ, ବାଇଧନ !
ଗଜା ହେବକ ଡ଼ିଷୁଆ ଧାନ ?

ବାଇଆ ଚଢ଼େଇ ବସା ମୁଁ ବୋଲଇଁ
ବାଇଆ ଚଢ଼େଇ ବସା

କିଏ ଦେଲା ତୋତେ ବାଇ ବୁଦ୍ଧି
କରେ ବାଇଧନ !
ତୁ ତ ତୋଲରେ ରଖିଲୁ ମୁଷା ।

ଦେଉଳରେ ଢିଅଁ ଘର ମୁଁ ବୋଲଇ
ଦେଉଳରେ ଢିଅଁ ଘର

ଖୋଜ ତୁ ବୁଲୁଛୁ ଚନ୍ଦବଦନରେ ବାଇଧନ
ତାକୁ କରଦେଇ ସାତପର ।

ଗୋପ—( ଗୀତ ଅଧାରୁ ଆସି କାନେଇଁ ଠିଆ ହେଲେ ) କିଏ ? ଆରତୀ—ଆରତୀ—ଆରତୀ !!

( ନଦୀ ଆଡ଼କୁ ଗଲା ଡ଼ାକ ଡାକ )

( ପଟ୍ଟପତନ )

---

## ପଞ୍ଚମ ଅଙ୍କ—ପ୍ରଥମ ଦୃଶ୍ୟ

[ ଅନ୍ଧର କୁଟୀର, ଅନ୍ଧ ଓ ଲବଙ୍ଗ ଗାଉଥିଲେ ଗୀତ, 'ଅନ୍ଧ ଏକତାର ଧରିଛି, ଠାକୁରଙ୍କ ଆଗରେ ବସିଛି । ଲବଙ୍ଗ ପାଖରେ ବସି ବାସନ ମାଜୁଛି । ]

ଚରଣ ତଳେ ତବ ଶରଣ ମାଗେ
ବରଜ-ବନ-ବନଚାରୀ
କେକୀ ଝୀଲର ଶ୍ୟାମ ନାଗର
ଗୋପୀକା ମନୋହାରୀ ॥
ଫୁଲ୍ଲ ଶତଦଳ ବଦନ ନିରମଳ
କୋଟି ଶଶି ଶିରି ହାରି ହେ
ନବୀନ ନୀରଦ- କାନ୍ତି ଝଲମଲ
ମୋହନ ମୁରଲୀ ଧାରୀ ।୧।
ରାଇ ପ୍ରେମ ପିପାସୀ ନଟବର
ପ୍ରଣତ ଜନ ହିତକାରୀ ହେ !
ଅନ୍ତେ ଚରଣରେ ସ୍ଥାନ ଦିଅ ହରି
ମିନତି ଦେନ ଗିରିଧାରୀ ।୨।

ନେପଥ୍ୟେ—କିଏ ଅଛ ?

ଅନ୍ଧ—କିଏ ଡାକୁଛ ଦୁଆରେ ?

ଲବଙ୍ଗ—କିଏ ?

ନେପଥ୍ୟେ—ଚିଠି ।

ଅନ୍ଧ—ଚିଠି ? କାହାର ?

ଲବଙ୍ଗ—ଦେଖେଁ ( ଉଠିଯାଇ ନେଇ ଆସିଲା ) ମୋ ନାଆଁରେ ଆସିଛି । ମୋତେ ଫେର୍ ଚିଠି କିଏ ଦେଇଛି ମ ?

ଅନ୍ଧ—ଫିଟା, ପଢ଼ ।

ଲବଙ୍ଗ—(ଚିଠି ଦେଖି ଆନନ୍ଦରେ) ବାପା, ଆରତୀ ଦେଖା ।

ଅନ୍ଧ—କାଇଁ, ମା ମୋର୍ ଆସିଛନ୍ତି ?

ଲବଙ୍ଗ—ନାଇଁ ମ, ଚିଠି ଦେଇଛନ୍ତି ନାଁ ।

ଅନ୍ଧ—ଓହୋ ! ଗୁଡ଼ାଏ ମାସ ହେଲାଣି ଯେ, ଖବର ଟିକିଏ ନ ପାଇ ମନଟା । ଗୋଳେଇ ଘାଣ୍ଟି ହଉଥିଲା । ପଢ଼ିଲୁ ପଢ଼ିଲୁ, କଅଣ ଲେଖିଛନ୍ତି ।

ଲବଙ୍ଗ—(ଚିଠି ପଢ଼ିଲା)

ଶ୍ରୀ ହରି ଶରଣ । ମୁ:-ଜଗତ୍‌ସିଂହପୁର
ତା ୧୭-୭-୪୨ ରିଖ

ପ୍ରିୟ ଲବଙ୍ଗ !

ବାପାଙ୍କ କାଳ ହେବା ଖବର ତ ପାଇଥିବୁ, ରୋଗ ଶଯ୍ୟାରେ ବି ମୁଁ ତାଙ୍କର ଟିକିଏ ସେବା କରି ପାରିଲି ନାହିଁ । ଭାଗ୍ୟ ତ ମୋର ସବୁଆଡ଼ୁ ଜଳି ପୋଡ଼ି ଯାଇଛି, ଏତକ ପୋଡ଼ା କର୍ମକୁ ମିଳନ୍ତା କାହିଁ ? ଘରର ଜଞ୍ଜାଳ ଏତେ ବେଶି ଯେ ମୋର ନିଃଶ୍ୱାସ ମାରିବାକୁ ତର ନାହିଁ । ଯୁଆଡ଼କୁ ନ ଗୁହାଁଳେ ତା ନୋହିଲା । ଆଉ ତ କେହି ନାହିଁ ଯେ କାହାକୁ କହିବି । ମୁକୁନ୍ଦଟି ମୋର ଭରସା । କାମ ଟିକିଏ ଗୁରୁ ଛଅ ଦିନ ହେଲା ବାଗେଇ ଆସିଲାଣି, ସ୍ୱର୍ଗଦ୍ୱାରରେ ମୁଁ ଖଣ୍ଡିଏ ଜାଗା କିଣିଛି । ଯେତେଦିନ ବଞ୍ଚିବାକୁ ହେବ ଦୁଃଖରେ ଜଗନ୍ନାଥଙ୍କ ଚରଣ ତଳେ ହେଲେ କଟୁ । ରାଜୁବାବୁ ଘର ଡିଆଣି ଘର ନେଇଛନ୍ତି; ଏଇନେ ରହିବା ଭଳି ଦୁଇ, ତିନି ବଖରା ଘର ହୋଇଗଲାଣି । ସେଥିରେ ରହି ସବୁ ଘରଗୁଡ଼ା ଆଖି ଆଗରେ କରେଇ ନେବି । ତମମାନଙ୍କ ଋଣ ମୁଁ ସୁଝିବା ଅସମ୍ଭବ । ବାପାଙ୍କୁ କହିବୁ ପଅରଦିନ ପୁରୀ ଯିବି । ସାକ୍ଷାତରେ ଆଉସବୁ । ରବିବାର ଦିନ କଟକରୁ ଯାଉଥିବା ଦିନପାସେଞ୍ଜରରେ ମୁଁ ପହଞ୍ଚିବ

ଅନ୍ଧ—କୋଉଦିନ ?

ଲବଙ୍ଗ—ରବିବାର ।

ଅନ୍ଧ—କଅଣ ରବିବାର ମ ? ଆଜିପରା ରବିବାର ?

ଲବଙ୍ଗ—ଆଜ୍ଞେ ହଁ ଚ, ଆଜ ଚ କଅଣ ରବିବାର ?

ଅନ୍ଧ—ଆଉ କଅଣ ଲେଖିଛନ୍ତି ?

ଲବଙ୍ଗ—ଲେଖିଛନ୍ତି, ଟୁନୁ ଭଲଅଛୁ । ଆଉ ସବୁ ସାଷ୍ଟାଙ୍ଗରେ । ଇତି । ତୋର ସ୍ନେହର ଆରଣ୍ଣ ।

ଅନ୍ଧ—ବେଳ କେତେ ହେବ ?

ଲବଙ୍ଗ—ବାରଟା ହେବ ।

ଅନ୍ଧ—ଦେ ଉଠ, ବାଡ଼ଟା ମୋର ଦେ । ଷ୍ଟେସନ୍‌କୁ ଯିବା । ମା' ଆସିବେ—ଟିକଏ ପାଗ୍ଲେଟି ଆଣିବା ନାହିଁ ?

ଲବଙ୍ଗ—ଠାକୁର ଭୋଗ ?

ଅନ୍ଧ—ଆସିଲେ ହବ । ଗୁଲ-କେତେ ବାଟ ସେ···

ଲବଙ୍ଗ—ବାଡଟା ଆଣେଁ··· ( ଗୁଲ ଯାଇ ଆଣିଲା, ହାତକୁ ଦେଇ ) ହେଇଟି ।

ଅନ୍ଧ—(ଉଠିଲା ବାଡ଼ଧରି)

---

## ଦ୍ୱିତୀୟ ଦୃଶ୍ୟ

[ ପୁଷ୍ପ ବଉଦାଣ୍ଡ—ଟୁନୁ ଓ ମୁକୁନ୍ଦ ]

ଟୁନୁ—ମୁଁ ତୋ ସାଙ୍ଗରେ ଯିବ ।

ମୁକୁନ୍ଦ—ଏତେ ବାଟ ବୁଲି ବୁଲି ଆଇଲୁଣି ମୋ' ସାଙ୍ଗେ, ଫେର୍ କଅଣ ? ବେଳ ହେଲାଣି ପରା, ଘରକୁ ଗୁଲ ଭୋକ ହେବଣି ।

ଟୁନୁ—ନାହିଁ ମୋତେ ଭୋକ ହେଇନ ମ ।

ମୁକୁନ୍ଦ—କେମିତି ହବ ? ବଜାର ବୁଲା ପରା ହଉଛୁ ? ଗାଁ'ରେ ଆଉ ଏତକ ହେଇପାରୁ ନ ଥିଲା ।

ଟୁନୁ—ଗାଆଁଟା ଖାଲି କାଦୁଅ ବଲବଲ ।

ମୁକୁନ୍ଦ—ହଁ ରେ ବାପ, ସେଇ କାଦୁଅ ବଲବଲ ଭୂଇଁରେ ଧାନ, ମୁଗ ଫଳେ, ଛାକୁଇ ଖାଇ ଏ ସହରରେ ବଡ଼ ବଡ଼ ବାବୁମାନେ ବଡ଼ ବଡ଼ ପେଟ କାଢ଼ି ବସନ୍ତି । ଜାଣିଚୁ ? ଗୁଲ୍ ।

ଟୁନୁ—ଆଉ ଟିକଏ ସେଇ ବଜାରରୁ ବୁଲିକରି ଗୁଲ ଆସିବା ।

ମୁକୁନ୍ଦ—(ସ୍ୱଗତ) ସୁନା ପୁଅଟି ପରା; ବୋଉ ତେଣେ ଏକୁଟିଆ ଥିବ ସେ···

ଟୁନୁ—ତୁ ମତେ ବାପାଙ୍କ ପାଖକୁ ତ କାହିଁ ନେଲୁ ନାହିଁ ?

ମୁକୁନ୍ଦ—ବାପା ଆସିବେ ସେ···

ଟୁନୁ—ଉଁ···ସବୁଦିନ ଖାଲି ଠକୁଚୁ ।

ମୁକୁନ୍ଦ—ନାହିଁ ମ, ତୁ 'ପୁଷ୍ପ ଆସିଲୁଣି ବୋଲି ବାପା ଜାଣି ନାହାନ୍ତି ।

ଟୁନୁ—ତୁ ଯାଇ କହିକରି ଡାକି ଆଣ, କାଲିଠୁ ଆସିଲେଣି ଆମେ, ତୁ ଚଲୁ ନାହିଁ କାହିଁକି ?

ମୁକୁନ୍ଦ—ଆଜି ଯିବି ପରା ? ତୋତେ ଘରେ ଛାଡ଼ି ଆସିଲେ ସିନା ।

ଟୁନୁ—କି ? ମୁଁ ତୋ ସାଙ୍ଗେ ଯିବ ।

ମୁକୁନ୍ଦ—ତୁ କୋଉଠିକି ଯିବୁ ? ଏତେ ବାଟ ! ଘରକୁ ଯା । ମୁଁ ଯାଉଚି ବାପାଙ୍କୁ କହିବି ।

ଟୁନୁ—ହଁ, କହିବୁ ଟୁନୁ ଆସିଚି । ତେମେ ବେଗେ ଆସ ।

ମୁକୁନ୍ଦ—ହଁ, ତୁ ଏଇଠୁ ଘରକୁ ଯା ଘର । ଘର ଚହ୍ନିବୁଟି ?

ଟୁନୁ—ହେଇଟି ଦିଶୁଚି ଆମ ନୂଆ ଘର ।

ମୁକୁନ୍ଦ—ମୁଁ ଗୁହିଁଚି, ତୁ ଗଲୁ ଦେଖି ।

ଟୁନୁ—(ଯାଉ ଯାଉ ଫେରି) ତୁ ବଜାରରୁ ମୋପାଇଁ କଅଣ ଆଣିବୁ ?

ମୁକୁନ୍ଦ—ଲେବନ୍‌ଚୁସ୍ ମିଠେଇ ।

ଟୁନୁ—ଆଉ ଗୋଟେ ଭଲ ମଟର ଗାଡ଼ି ।

ମୁକୁନ୍ଦ—ମଟର ଗାଡ଼ି ?

ଟୁନୁ—ହିଁ ମ, ଚାବି ଦେଲେ ଘର ଘର ଚାଲିବ ।

ମୁକୁନ୍ଦ—ହିଁ, ମିଳିବ ଯେବେ ଆଣିବ ।

ଟୁନୁ—ନାଇଁ, ନିଶ୍ଚେ ଆଣିବୁ, ତୁ ଖୋଜିବୁ ।

ମୁକୁନ୍ଦ—ହଉ, ତୁ ଘରକୁ ଯା...ମୁଁ ଆନେଇଚି, ଦଉଡ଼ି ଗଲୁ ଦେଖି ।

ଟୁନୁ—(ଦଉଡ଼ି) ତୁ ନିଶ୍ଚେ ମଟର ଆଣିବୁ । (କହି ଚାଲିଗଲା)

ମୁକୁନ୍ଦ—(ଚାହିଁ ଦୀର୍ଘ ନିଃଶ୍ୱାସ ମାରି) ବାପାଙ୍କୁ ଖବର ଦେବ ! ଚାରିମାସ ହେଲା ଯାହାର ପତ୍ତା ନାହିଁ !!! (ଚାଲିଗଲା)

---

## ତୃତୀୟ ଦୃଶ୍ୟ

[ଆରଖାର ନୂଆ ଘର, ଘର ଆଗରେ କିଛି ଦୂର ଛାଡ଼ି ଗୋଟିଏ ଅଳ୍ପ ଉଚ୍ଚ ପାଚେରୀ । ଫାଟକର ଖୁଣ୍ଟରେ ନେମ୍‌ପ୍ଲେଟ ଲଗାଉ ଥିଲା ଜଣେ ମିସ୍ତ୍ରୀ । ଭିତରୁ କୋବା ବାଡ଼ଆ ଶବ୍ଦ ଶୁଭୁଥିଲା—କୋବା ବାଡ଼ଆ ପିଲାଙ୍କ ଗୀତ ସହିତ । କିଛି ସମୟ ପରେ ଆସିଲେ ରାଜୁବାବୁ । ]

ରାଜୁ—(ମିସ୍ତ୍ରୀର ପଛରୁ ଚାହିଁ) ଟିକିଏ ବଙ୍କା ବସିଲା ପରି ଦିଶୁଛି ମିସ୍ତ୍ରୀଏ !

ମିସ୍ତ୍ରୀ—(ଉଠି ଆସି ଦୂରରୁ ଟିକିଏ ଦେଖି) ନାଁ, ସାମନାରୁ ଦେଖନ୍ତୁ ।

ରାଜୁ—(ଦେଖି) ହିଁ ଠିକ୍ ଅଛି ତ ।

ମିସ୍ତ୍ରୀ—ଗୋପ ବାବୁଙ୍କ ଖବର କିଛି ଅଉ ପାଇଲେ ?

ରାଜୁ—ଆଜି ଶୁଣୁଛି, କୁଆଡ଼େ ଏଠିକି ଆସିଥିଲା । ପୁଣି କଟକ ଚାଲି ଯାଇଛି, ସତ କି ମିଛ କେଜାଣି ।

ମିସ୍ତ୍ରୀ—କଟକ ଯିବେ ସେ କାହିଁକି ?

ରାଜୁ—ମ, ତା'ର ମନର ଠିକଣା ଅଛି ! ଶଶୁରଙ୍କ ମରିବା ଖବରର ସେ ତ ଆଉ ପାଇ ନାହିଁ । ଯାଇଛି ହୁଏତ ସେ ଅଛନ୍ତି ବୋଲି, ତାଙ୍କ ଘରକୁ ।

ମିସ୍ତ୍ରୀ—କିଏ ଯାଇଛି ଖୋଜିବାକୁ ?

ରାଜୁ—କାହିଁ ଆଉ ? କିଏ ଗଲା ? କାଲି ଦେଖିବା, ମୁଁ ଯାଆନ୍ତି, ସ୍ୱାଡ଼େ ତ ଘର କାମଟି ମୋ ଉପରେ ।

ମିସ୍ତ୍ରୀ—ହିଁ ତଳ ଘରଗୁଡ଼ା ତ ଆଜିଯାଏ ବି କାମ ସରି ନାହିଁ, ଛାତ ପିଟା ତ ଚାଲିଛି ।

ରାଜୁ—କାଲି ତିଥିଟା ଥିଲା ଗୃହ ପ୍ରବେଶକୁ, ସେଥିପାଇଁ ଆଜି ଅନୁକୂଳଟା କରିଦେଲି ।

ମିସ୍ତ୍ରୀ—ମା କଅଣ ଏଠି ଆସି ରହିଲେଣି ?

ରାଜୁ—ସକାଳୁ ନାଁ, ହୋମ ଫୋମ ଟିକିଏ କରେଇ ଦେଇଛି ।

ମିସ୍ତ୍ରୀ—ପ୍ରତିଷ୍ଠା ନ ହୋଇ, କେମିତି ଖାଇବେ ଏଠି ଫେର୍ ?

ରାଜୁ—ଆଜି ଦିନକ ମହାପ୍ରସାଦରେ ଚଳୁ, କାଲି ପ୍ରତିଷ୍ଠା କରିଯିବ । ମନରେ ସୁଖଥିଲେ ସିନା ସବୁ ।

ମିସ୍ତ୍ରୀ—ଆଉ କଅଣ ? ଗୋପବାବୁ ଥିଲେ ଏତେବେଳେ...

ରାଜୁ—ସେ କଥା ଆଉ କାହିଁକି କହୁଚ ? ଏତେ ଖୋଜିଲି, ସେ କଅଣ ଏକ ଜାଗାରେ ରହୁଛି ଯେ ପାଇବ ?

ମିସ୍ତ୍ରୀ—ସେ ମାଇପିଟା ?

ରାଜୁ—ତା କଥା ସେ ଜାଣିଥିବ । ଶୁଣିଲି ତ ଜିନିଷପତ୍ର ସବୁ ବିକା ଭଙ୍ଗା କରି ବୃନ୍ଦାବନ ଗଲାଣି ।

ମିସ୍ତ୍ରୀ—ହିଁ ଆମର କଅଣ ହେଇଥିରେ...

ରାଜୁ—ତୁମେ କାମ ସାରି, ଯିବ । ମୁଁ ଯାଏଁ ଭିତର କାମ ଦେଖେଁ । (ଚାଲିଗଲେ)

ମିସ୍ତ୍ରୀ—ମୋର ବ ସଇଲା ଯେ । (କାମ ଶେଷକରି ଦୂରରୁ ଦେଖିଲେ) କାହିଁ ? ବଙ୍କାଟଙ୍କା ତ କରୁ ନାହିଁ । ସିଧା ଲଗିଛୁ, **"ଗୋପ ନିବାସ"**
(ଲୁଗା, ଗାମୁଛା ଓ ହତିଆର ନେଇ ଚାଲିଗଲା)

ଟୁନୁ—(ଘର ଭିତରରୁ ଆସି ଗେଟ୍ ପାଖେ ଯେପରି କାହାର ଆସିବାକୁ ଚାହିଁରହିଲା । )

ଆରତି—(ସାଦା ଲୁଗା ପିନ୍ଧିଛି, ହାତକେ ପାଣି ଗାଡ଼ୁ, ଆଉ ହାତକେ ଗୋଟିଏ ଥାଳିଆରେ ଫୁଲ ହାରଟାଏ—ଧୂପ ଇତ୍ୟାଦି ରହିଛି, ଘର ଦୁଆର ମୁହଁକୁ ଆସି)ଟୁନୁ ! ଏକୁଟିଆ ଯାଆନା କୁଆଡ଼େ ।

ଟୁନୁ—ନାଇଁ ବୋଉ ! ମୁଁ କୁଆଡ଼େ ଯାଉ ନାହିଁ ।

ଆରତି—ଆ, ଘରକୁ ଆ···କଅଣ କରୁଛୁ ସେଠି ?

ଟୁନୁ—ମୁକୁନ୍ଦ ଏତେବେଳଯାଏଁ ଆସିଲା ନାହିଁ ଯେ ··

ଆରତି—ତୁ ଚାଲିଆ । ସେ କୁଆଡ଼େ ଯାଇଛି ବଳେ ଆସିବ ନାହିଁ ।

ଟୁନୁ—ଯାଇଛି ପରା ବାପାଙ୍କୁ ଡାକି ଆଣିବ ଆଉ ମୋ ଲାଗି ମଟର ଗାଡ଼ି ଆଣିବ । ମୁଁ ଆସିଛି ବୋଲି ଶୁଣିଲେ ବାପା ନିଶ୍ଚେ ଆସିବେ ନାଇଁକି ବୋଉ !

ଆରତି—ହଁ, ତୁ ଘରକୁ ଚାଲିଆ···(ଆଖି ଛଳ ଛଳ ହୋଇଗଲା, ଘର ଭିତରକୁ ଚାଲିଗଲେ )

ଟୁନୁ—(ସେହିପରି ଚାହିଁ ରହିଲା)

ଆରତି—(କିଛିଏ ସମୟ ପରେ ପୁଣି ଡାକିଲେ ଭିତରୁ) ଟୁନୁ !

ଟୁନୁ—ମୁଁ ଏଇଠି ଅଛି ବୋଉ !

ଆରତି—ଆଉ କୁଆଡ଼େ ଯାଆନା—ସଞ୍ଜ ହେଇ ଆସିଲାଣି !

ଟୁନୁ—ନାଇଁ । କୁଆଡ଼େ ଗଲା ମୁକୁନ୍ଦ ?
( ଏକ ଦିଗକୁ ଯାଇ ଅଦୃଶ୍ୟ ହୋଇଗଲାବେଳେ ପଛ ପାଖରୁ ଆସିଛି ଗୋପ, ଟୁନୁକୁ ଦେଖି ଥକାହୋଇ ଛିଡ଼ା ହେଲା । )

ଆରତି—(ଭିତରେ ଥାଇ ଗୋପର ଫଟୋରୁ ବାସି ଫୁଲ କାଢ଼ି ସଜ ଫୁଲ ହାର ପିନ୍ଧାଇବାର ଉପକ୍ରମ କରୁଛି ଗୀତ ଗାଇ ସାମନାରେ ବସିଲା, ଏ ସବୁ ଘର ଭିତରେ ଝରକାରେ ଦେଖା ଯାଉଥିଲା । ଆରତି ସେଇ ପ୍ରଥମ ଗୀତ ଏଇଠାରେ ପୁଣି ଗାଇଲା । )

ଗୋପ—(ଧୀରେ) ଟୁନୁରେ ଟୁନୁ, (ଅଗ୍ରସର ହେଉ ହେଉ ଗେଟ୍‌ର ନେମ୍‌ପ୍ଲେଟ୍‌ରେ ଆଖି ପଡ଼ୁଛି, ଆରତିର ଗୀତ ଶୁଭୁଛି । ସେ କର୍ତ୍ତବ୍ୟ ଠିକ୍ କରି ନ ପାରି ଗେଟ୍ ଟପି, ଝରକା ପାଖକୁ ଯାଇ, ଆରତିର କାର୍ଯ୍ୟ ଦେଖୁଛି, ଆରତି ଯେତେବେଳେ ପ୍ରଣାମ କରୁଛି ସେ ଆଉ ବାହାରକୁ ଦେଖାଗଲା ନାହିଁ । ଚୂଡ଼ାନ୍ତ ଧୈର୍ଯ୍ୟ ଗୋପ ଡାକିଲା—ବଡ଼ ଧୀରେ) ଆରତି ! (ନିଜ ମୁହଁ ବନ୍ଦକରି ଚୂଡ଼ାନ୍ତି ପାହାଚ ଉପରେ ରଖି ଫେରି ଆସିଲା ଧୀରେ ଧୀରେ ଲୁହ ପୋଛି, ସାହାସ ନାହିଁ ଆଉ ଡାକିବାକୁ । ସେ ଗେଟ୍ ପାରହୋଇ ଟୁନୁ ଯାଇଥିବା ବିପରୀତ ଦିଗକୁ ଗଲା ବେଳକୁ ଚେଇଁ ଆସିଛି ମୁକୁନ୍ଦ । )

ମୁକୁନ୍ଦ—( ସାମନାରୁ ଆସି ) କିଏ ? ସାନବାବୁ ? ଓହୋ !
( କୁଣ୍ଢାଇ ପକେଇଲା)

ଟୁନୁ—(ଦଉଡ଼ି ଆସି) ମୁକୁନ୍ଦ ! ପାଇଲୁ ?

ମୁକୁନ୍ଦ—ପାଇଛି, ପାଇଛି, ଆ—ହେଇଟି ନେ ।

ଟୁନୁ—(ଦଉଡ଼ି ମୁକୁନ୍ଦକୁ କୁଣ୍ଢାଇ ଧରି) କାଇଁ ?

ମୁକୁନ୍ଦ—ହେଇଟି ! କିଏ ଦେଖିଲୁ ବାପା !

ଗୋପ—(ହଠାତ୍ ଝୁନୁକୁ କୋଳକୁ ନେଲା)

ଝୁନୁ—(ବେକ କୁଣ୍ଢାଇ) ବାପା, ବାପା !

ମୁକୁନ୍ଦ—ଦେଖ ଦେଖ ! (ଘରକୁ ମୁହାଁଉଥିଲା)

ଆରତୀ—(ହଠାତ୍ ଦୁଆରେ ପହଞ୍ଚ ପ୍ରଥମେ ଚୂଡଟି ଦେଖି ଗୋଟେଇ ଗୃହାଁ ରହିଲେ । ହାତରେ ଫୁଲ ହାରଟି ରହିଛି, ଦିଆ ହୋଇପାରି ନାହିଁ ଫଟୋରେ । )

ଅନ୍ଧ ଓ ଲବଙ୍ଗ—( ଗାଇ ଗାଇ ଆସୁଥିଲେ ଲବଙ୍ଗ ଏ ଅବସ୍ଥା ଦେଖି ଥକାମାରି ରହିଲା । )

ଲବଙ୍ଗ—କିଏ ?

ରଜୁ—(ଭିତରୁ ଆରତୀକ ପାଖେଇ ଦେଇ) ଗୋପ ?
(ଶୀଘ୍ର ଆସିଲା ବାହାର)

ଅନ୍ଧ—ବାବୁ !

ମୁକୁନ୍ଦ—(ଟାଣିଆଣି ରଜକୁ) ଆସ, ଆସ, ରଜୁବାବୁ ।

ଝୁନୁ—ରଜୁ ମାମୁଁ ···ବାପା ।

ମୁକୁନ୍ଦ—ଆଉ ଏଠି କାହିଁକି ? ଚାଲ ଘରକୁ ଚାଲ ।

ଗୋପ—(ରଜୁକୁ ହାତ ଟେକି ପ୍ରଣାମ କଲା) ରଜୁ !

ମୁକୁନ୍ଦ—(ଗୋପ ଅଣ୍ଟାକୁ ଧରି) ଚାଲ ଘରକୁ ଚାଲ ।

ରଜୁ—ନମସ୍କାର ! (ହାତ ଟେକିଲା, ଗୋପ ହାତଧରି ତାକୁ ଘର ଆଡ଼କୁ ଫେରାଇ ନେଇଗଲା । )

( ଯବନିକା ପତନ )



● Printed by Sri Bipracharan Sahoo at BIJAYA PRINTERS; Cuttack-1.